# ସ୍ମୃତିରେ ବାମାଚରଣ




କଥାକାର ବାମାଚରଣ ମିତ୍ରଙ୍କ ବ୍ୟକ୍ତିତ୍ୱ ଓ ରଚନା ସମ୍ପର୍କିତ ଆଲେଖ୍ୟ

ସମ୍ପାଦନା: ପ୍ରକାଶ ମହାପାତ୍ର

Digitized by srujanika@gmail.com



# ସ୍ମୃତିରେ ବାମାଚରଣ

Digitized by srujanika@gmail.com

ସମ୍ପାଦନା: ପ୍ରକାଶ ମହାପାତ୍ର

# ସ୍ମୃ ତି ରେ  ବା ମା ଚ଼ ର ଣ




ସଂକଳକ-

ତୁଷାରକାନ୍ତି ଘୋଷ

ଡା. ଚନ୍ଦ୍ରମୌଳି ମିତ୍ର

ତପନ କୁମାର ଦାସ

ତ୍ୱିଷାମପତି ମିତ୍ର

ମନ୍ୟୁମାନ୍ ମିତ୍ର


Digitized by srujanika@gmail.com

ସ୍ମୃତିରେ ବାମାଚରଣ
ପ୍ରକାଶିକା : ସଂଘମିତ୍ରା ଘୋଷ
ସଂଯୋଜନା : ବସୁମିତ୍ରା ଦାସ
ଏଲ୍/୩-୧୪୪, ଆଚାର୍ଯ୍ୟବିହାର,
ଭୁବନେଶ୍ୱର - ୭୫୧୦୧୩
ମୁଦ୍ରଣ ଓ ସମ୍ପାଦନା : ଇଭେଣ୍ଟ୍ସ
ଅଳଙ୍କରଣ : ଦିପ୍ତି ରଞ୍ଜନ ପଣ୍ଡା
ପ୍ରଥମ ସଂସ୍କରଣ - ୨୦୧୬
ଦୂରଭାଷ : ୯୪୩୭୦୭୫୦୫୦
ମୂଲ୍ୟ : ₹ ୩୨୦

SMRUTIRE BAMACHARAN
Sanghamitra Ghosh
Compilation : Basumitra Das
Printed and Edited by :
Events Publications,
4555.VSS Nagar BBSR
Layout : Dipti Ranjan Panda
L/3-144, Acharyavihar,
Bhubaneswar-751013
Mob : 9437075050
1st Edition : 2016
Email : manyuman_mitra@yahoo.com
Price : ₹ 320

Digitized by srujanika@gmail.com



## 'ସ୍ମୃତିରେ ବାମାଚରଣ'
## ଅନ୍ତରଙ୍ଗ କିଛି ଉଚ୍ଚାରଣ...

କେହି କେବେ ଏ ପୃଥିବୀରୁ ଚାଲି ଯାଏନି। ତାର ସ୍ମୃତି ଚିତ୍ର ହୋଇ ରହିଯାଏ ଦରଦୀ ମଣିଷର ଅଭ୍ୟନ୍ତରରେ। ବିଶେଷ କରି ସେ ଯଦି ଜଣେ ସର୍ଜନାତ୍ମକ ଅମୃତମୟ ବ୍ୟକ୍ତିତ୍ୱ ହୋଇଥାଏ। ସେଥିପାଇଁ ମଣିଷକୁ ବୋଧେ ଅମୃତସ୍ୟ ପୁତ୍ରାଃ ବୋଲି କହିଥାନ୍ତି। ହଁ, ସମୟର ହାତ ବାଜି ସେ ଚିତ୍ର ହୁଏତ ଟିକେ ଫିକା ପଡିଯାଇ ଥାଇପାରେ। କିନ୍ତୁ ସମ୍ପୂର୍ଣ୍ଣ ଲିଭିଯାଏନା। ଆଜି ସ୍ମୃତିଚାରଣ ଅବସରରେ ସେ ଚିତ୍ରକୁ ପୁନଃ ବିନ୍ୟାସ କରିବାର ସମୟ ହୁଏତ ଆସିଛି। 'ସ୍ମୃତିରେ ବାମାଚରଣ' ସେଇ ପୁନଃ ବିନ୍ୟାସର ଏକ ଅଭିନବ ପ୍ରୟାସ।

ଏ ପୁଣ୍ୟ ପ୍ରୟାସର ସୂତ୍ରଧର ଭାବେ ମୁଁ ଯାହାଙ୍କ କଥା କହିବି ସେମାନେ ହେଉଛନ୍ତି ମନ୍ୟୁମାନ ମିତ୍ର ( ବାମାଚରଣଙ୍କ କନିଷ୍ଠ ପୁତ୍ର) ଓ ମୁନିପୁଷ୍ପ ଘୋଷ୍ ( ତାଙ୍କ ନାତି) । ସେମାନେ ପାଣ୍ଡୁଲିପି ଦେଲାବେଳେ ମୁଁ ସେମାନଙ୍କ ମୁହଁରେ ଦେଖିଛି ବାମାଚରଣଙ୍କ ପ୍ରତି ଥିବା ସ୍ନେହ ଓ ଅଗାଧ ଭଲପାଇବା। ପ୍ରକୃତରେ ସମ୍ପାଦନାର ସବୁ ଶ୍ରେୟ ସେମାନଙ୍କର। ମୁଁ କେବଳ ନିମିତ୍ତ। ଲେଖା ସଂଗ୍ରହଠାରୁ ଆରମ୍ଭ କରି ତାକୁ ଟିକ୍‌ନିଖ ଦେଖିବା ଓ ଭୁଲ୍ ଗୁଡିକୁ ସୁଧାରିବାରେ ଥିବା ସମୟସାପେକ୍ଷ ବିରକ୍ତିବୋଧକୁ ନିହାତି ସମ୍ବେଦନଶୀଳ ଓ ସ୍ୱାଭାବିକ ଢଙ୍ଗରେ ଗ୍ରହଣ କରିବା ଭିତରେ ପ୍ରତିଭାତ ହେଉଥିଲା ତାଙ୍କ ଭଲପାଇବା। ସେମାନେ ହିଁ ବାମାଚରଣଙ୍କ ଅମରତ୍ୱର ସୂତ୍ରଧର।

Digitized by srujanika@gmail.com

ବାମାଚରଣଙ୍କ ବ୍ୟକ୍ତିତ୍ୱ ଓ ସୃଜନାତ୍ମକ ନିଷ୍ଠା ସମ୍ପର୍କରେ କେବଳ ଗୋଟିଏ ଦୁଇଟି କଥା କୁହାଯାଇପାରେ। ତାଙ୍କ ବ୍ୟକ୍ତିତ୍ୱ ସୃଜନାତ୍ମକ କ୍ଷେତ୍ରରେ ଥିଲା ବହୁଧା ବିଭକ୍ତ। ସୃଜନର ବିଭିନ୍ନ ମାଧ୍ୟମ ଦେଇ ସେ କାର୍ଯ୍ୟ କରି ଆସିଛନ୍ତି। ସେ ଏକାଧାରରେ ଥିଲେ ଜଣେ କଥାକାର, ପ୍ରାବନ୍ଧିକ, ଔପନ୍ୟାସିକ। ଏମିତି କି ସେ ଡିଟେକ୍‌ଟିଭ୍ ଉପନ୍ୟାସ ବି ଲେଖିଛନ୍ତି। ରସବହ ବ୍ୟଙ୍ଗାତ୍ମକ ଉଚ୍ଚାରଣ ହିଁ ଥିଲା ତାଙ୍କ ରଚନାର ମୁଖ୍ୟ ବିଭବ। ସୃଜନକୁ ନେଇ କ୍ୟାରିଅର୍ କରିବାଠାରୁ ସୃଜନରୁ ତୃପ୍ତି ଓ ଆନନ୍ଦ ପାଇବାକୁ ସେ ଅଧିକ ଶ୍ରେୟ ମଣୁଥିଲେ। କେବଳ ସେତିକି ନୁହେଁ ସେ ଜୀବନକୁ ଖୁବ୍ ଭରପୂର ଭାବେ ବଂଚିବାକୁ ଚାହୁଁଥିଲେ ଓ ବଞ୍ଚିଥିଲେ ମଧ୍ୟ। ଖେଳ, ସନ୍ତରଣ, ସଙ୍ଗୀତପ୍ରୀତିରେ ତାଙ୍କ ଜୀବନ ଥିଲା ବୈଚିତ୍ର୍ୟମୟ। ତାଙ୍କ କର୍ମ ନିଷ୍ଠା, ସାଧୁତା ନେଇ ସେ ଥିଲେ ଅନ୍ୟର ଉଦାହରଣ। 'ସ୍ମୃତିରେ ବାମାଚରଣ' ପଠନାନ୍ତେ ପାଠକମାନଙ୍କର ସେହି ଅବବୋଧ ହେବ ବୋଲି ମୋର ଆଶା ଓ ବିଶ୍ୱାସ....

ପ୍ରକାଶ ମହାପାତ୍ର (କଥାକାର)

Digitized by srujanika@gmail.com

 ସୂଚୀପତ୍ର



Digitized by srujanika@gmail.com

# ବାମାଚରଣ ମିତ୍ରଙ୍କ ଜୀବନାଲେଖ୍ୟ ଓ ସାହିତ୍ୟ ସାଧନାର ବିକାଶ ଧାରା


## ଶ୍ରୀମତୀ ଜ୍ୟୋସ୍ନାମୟୀ ମହାନ୍ତି


(ସ୍ରଷ୍ଟା ବାମାଚରଣ ମିତ୍ର : ପିଏଚ୍.ଡି. ଉପାଧି ନିମିତ୍ତ ଉପସ୍ଥାପିତ ଗବେଷଣା ସନ୍ଦର୍ଭ, ଉତ୍କଳ ବିଶ୍ୱବିଦ୍ୟାଳୟ, ୧୯୯୫ର ପ୍ରଥମ ପରିଚ୍ଛେଦ)
(ଦିଗ୍‌ଦର୍ଶକ-ଡକ୍ଟର ଦଶରଥ ନାୟକ, ଓୟୁଏଟି, ଭୁବନେଶ୍ୱର)

ଓଡ଼ିଆ ସାହିତ୍ୟ ଜଗତରେ ସାହିତ୍ୟିକ ବାମାଚରଣ ମିତ୍ର ଏକ ସୁପରିଚିତ ନାମ । ସାହିତ୍ୟର ସବୁ ବିଭାଗରେ ସେ ଲେଖନୀ ଚାଳନା କରିଥିଲେ । ଗଳ୍ପ ବିଭାଗରେ ତାଙ୍କରି ସିଦ୍ଧି ସର୍ବାଧିକ । ତାଙ୍କର ପ୍ରବନ୍ଧ ଓ ରମ୍ୟରଚନାଗୁଡିକ ମଧ ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ଗୁରୁତ୍ୱପୂର୍ଣ୍ଣ ସ୍ଥାନ ଲାଭ କରିଛି । ଏହି ପ୍ରତିଭାଧର ସ୍ରଷ୍ଟା ୧୯୧୫ ମସିହା ଡିସେମ୍ବର ତା ୧୭ରିଖରେ ଯାଜପୁର ଜିଲ୍ଲାର ବରୁହାଁ ପୁରୁଷୋତ୍ତମପୁର ଗ୍ରାମରେ ଏକ ମଧ୍ୟବିତ୍ତ ବଙ୍ଗୀୟ ପରିବାରରେ ଜନ୍ମଗ୍ରହଣ କରିଥିଲେ । ତାଙ୍କର ବାପାଙ୍କ ନାମ ଶ୍ରୀ କୃଷ୍ଣଚନ୍ଦ୍ର ମିତ୍ର ଓ ମାତାଙ୍କ ନାମ ଶ୍ରୀମତୀ ସାରଦା ମିତ୍ର । ତାଙ୍କର ଜନ୍ମର କିଛିଦିନ ପୂର୍ବରୁ ତାଙ୍କର ମା' ନୀଳାଚଳଧାମ ପୁରୀର ପଥୁରିଆ ସାହିସ୍ଥିତ ତାଙ୍କର ବାପାଙ୍କ ଘରକୁ ଯାଇଥିଲେ । ତେଣୁ ପୁଣ୍ୟକ୍ଷେତ୍ର ପୁରୁଷୋତ୍ତମ କ୍ଷେତ୍ରରେ ଶିଶୁ ବାମାଚରଣ ନିଜର ମାମୁଁଘରେ ଭୂମିଷ୍ଠ ହୋଇଥିଲେ । ତାଙ୍କର ମାମୁଁମାନଙ୍କ ନାମ ଯଥାକ୍ରମେ ଶୀତଳପ୍ରସାଦ ବସୁମଲ୍ଲିକ, କୃଷ୍ଣପ୍ରସାଦ ବସୁମଲ୍ଲିକ ଓ ହରିପ୍ରସାଦ ବସୁମଲ୍ଲିକ । ତାଙ୍କର ଛଅ



Digitized by srujanika@gmail.com

ଭଉଣୀ ଓ ତିନି ଭାଇ ଥିଲେ । ସେ ତାଙ୍କର ପିତାଙ୍କର ଷଷ୍ଠ ସନ୍ତାନ ଥିଲେ । ତାଙ୍କର ଡାକ ନାମ ଥିଲା ବଉଲ୍ ।

**ବଂଶ ପରମ୍ପରା**

ଯାଜପୁର ଜିଲ୍ଲାର ପୁରୁଷୋତ୍ତମପୁର ଗ୍ରାମ ମୁଖ୍ୟ ଯାଜପୁର ସହରଠାରୁ ପ୍ରାୟ ୧୨ କିଲୋମିଟର ଦୂରରେ ପଶ୍ଚିମକୁ ଅବସ୍ଥିତ । ସନ୍ନିକଟସ୍ଥ ବୁଢ଼ାବଲଙ୍ଗ ଓ ଖରସୁଆ ନଈ ତଥା ବଣ, ଧାନବିଲରେ ପରିପୂର୍ଣ୍ଣ ଏ ଗ୍ରାମର ପ୍ରାକୃତିକ ପରିବେଶ ବେଶ୍ ମନୋମୁଗ୍ଧକର । ଏହି ଗ୍ରାମର ଏକ ବଙ୍ଗୀୟ ପରିବାରରେ ସାହିତ୍ୟିକ ବାମାଚରଣ ମିତ୍ର ଜନ୍ମଗ୍ରହଣ କରିଥିଲେ । ଯଦିଓ ସେ ବଙ୍ଗାଳୀ ଥିଲେ ତଥାପି ଓଡ଼ିଆ ତଥା ଓଡ଼ିଆ ସାହିତ୍ୟକୁ ଅତି ନିବିଡ ଭାବରେ ଭଲପାଉଥିଲେ । ଓଡ଼ିଶାର କଳା, ସାହିତ୍ୟ, ସଂସ୍କୃତି ଓ ଜୀବନଚର୍ଯ୍ୟା ସଙ୍ଗେ ସେ ନିଜକୁ ପୂରାପୂରି ମିଶେଇ ଦେଇଥିଲେ ଓ ନିଜକୁ ଜଣେ ଖାଣ୍ଟି ଓଡ଼ିଆ ବୋଲି ଭାବୁଥିଲେ । ସେଇଥିପାଇଁ ଓଡ଼ିଆଙ୍କ ଆରାଧ ଦେବତା ଶ୍ରୀଜଗନ୍ନାଥ ତାଙ୍କର ଇଷ୍ଟଦେବତା ଥିଲେ ଓ ତାଙ୍କ ଭିତରେ ସାରଳା ଦାସ, ଅଭିମନ୍ୟୁ, ଭୀମଭୋଇ, ଜଗନ୍ନାଥ, ପଞ୍ଚସଖା, ବୈଷ୍ଣବ ପାଣି ପ୍ରଭୃତିଙ୍କ ଚେତନା ଭରି ରହିଥିଲା । ସେ ନିଜକୁ ଓଡ଼ିଆ ବୋଲି କହିବାରେ ବେଶ୍ ଗର୍ବ ଅନୁଭବ କରୁଥିଲେ ।

ବାମାଚରଣଙ୍କ ପୂର୍ବପୁରୁଷମାନେ ଶ୍ରୀ ଚୈତନ୍ୟଦେବଙ୍କର ଅନୁଚର ହୋଇ ଓଡ଼ିଶା ଆସିଥିଲେ । ସେହି ଚୈତନ୍ୟ ପଦାନୁସାରୀ କେହି କେହି ଓଡ଼ିଶାରେ ବିବାହ କରି କ୍ରମେ ଓଡ଼ିଶାର ସ୍ଥାୟୀବାସିନ୍ଦା ହୋଇଯାଉଥିଲେ । ସେହିପରି ଏକ ପରିବାର ମଧ୍ୟରୁ ବାମାବାବୁଙ୍କର ପରିବାର ଥିଲା ଅନ୍ୟତମ । ବାମାଚରଣ ଓଡ଼ିଶାବାସୀ ବଙ୍ଗାଳୀ ଥିଲେ । ତେଣୁ ଖାଣ୍ଟି ବଙ୍ଗାଳୀମାନେ ନିମ୍ନ ଦୃଷ୍ଟି ଯୋଗେ ଉକ୍ତ ସମ୍ପ୍ରଦାୟମାନଙ୍କ ପ୍ରତି କେରା ଶବ୍ଦ ପ୍ରୟୋଗ କରୁଥିଲେ । ଇଂରେଜ ସରକାରଙ୍କ ସମୟରେ ଏହି କେରାମାନଙ୍କର ଏକ ବିଶେଷ ପଦମର୍ଯ୍ୟାଦା ଥିଲା । କେରା ବଙ୍ଗଳାରେ ଆମେ ଓଡ଼ିଆ ମିଶ୍ରିତ ବଙ୍ଗଳାର ସ୍ୱରୂପ ଦେଖିବାକୁ ପାଇଥାଉ । କାରଣ ବଙ୍ଗାଳୀଙ୍କର ଓଡ଼ିଆ ଗୃହିଣୀଟି ନିଜର ଭାଷାର ବୈଶିଷ୍ଟ୍ୟ ରଖି ନ ପାରି ଓଡ଼ିଆ ମିଶ୍ରିତ ବଙ୍ଗଳା ଭାଷା ସୃଷ୍ଟି କରିଛି ଓ ଏହା ହିଁ କେରା ନାମରେ ନାମିତ ହୋଇଛି । ବାମାଚରଣ ଯଦିଓ କେରା ବଙ୍ଗାଳୀ ଥିଲେ ମାତ୍ର ବଙ୍ଗାଳୀ ଭାଷାରେ ତାଙ୍କର ବେଶ୍ ପାରଦର୍ଶିତା ଥିଲା । ସାହିତ୍ୟିକା ମୈତ୍ରୀ ଶୁକ୍ଳଙ୍କ ସହ ବିଶୁଦ୍ଧ ବଙ୍ଗଳାରେ କଥା କହିଲା ପରେ ନିଜର ରସରସିଆ ବକ୍ତବ୍ୟ ମାଧ୍ୟମରେ ସେ



Digitized by srujanika@gmail.com

କେରା କଥା ଆରମ୍ଭ କରିଥିଲେ । ଏଥିପାଇଁ ନିଜର ପେଟ ଫାମ୍ପି ଦେବାର ଇଙ୍ଗିତ ପ୍ରଦାନ କରି କେରା କଥା କହିଲେ ତାଙ୍କ ଅଶ୍ୱସ୍ତି ଦୂର ହେବାର ସୂଚନା ଦେଇଥିଲେ । ସେ ଯଦିଓ ବଗୁହାଁ ପୁରୁଷୋତ୍ତମପୁର ଗ୍ରାମରେ ଜନ୍ମଗ୍ରହଣ କରିଥିଲେ ମାତ୍ର ତାଙ୍କ ଶିକ୍ଷାର ଭିତ୍ତିଭୂମି ଥିଲା କଟକ । ତାଙ୍କ ବାପା କଟକ କଚେରୀରେ ପେସ୍କାର ବୃତ୍ତି ଅବଲମ୍ବନ କରୁଥିଲେ । ସେତେବେଳେ କଟକର ବାଖରାବାଦସ୍ଥିତ ସନ୍‌ସାଇନ୍ ଖେଳପଡିଆକୁ ଲାଗି ତାଙ୍କର ଘର ଥିଲା । ତାଙ୍କର ପ୍ରାଥମିକ ଶିକ୍ଷା କଟକରେ ନିର୍ମାନ ସ୍କୁଲରୁ ଆରମ୍ଭ ହୋଇଥିଲା । ପରେ ରେଭେନ୍‌ସା କଲେଜିଏଟ ସ୍କୁଲରୁ ସେ ୧୯୩୩ ମସିହାରେ ହାଇସ୍କୁଲ ସାର୍ଟିଫିକେଟ ପରୀକ୍ଷାରେ ଓ ୧୯୩୮ ମସିହାରେ ରେଭେନ୍‌ସା କଲେଜରୁ ବି.ଏ. ପରୀକ୍ଷାରେ ଓ ୧୯୪୧ ମସିହାରେ ପାଟନା ବିଶ୍ୱବିଦ୍ୟାଳୟରୁ ବି.ଏଲ୍. ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଥିଲେ ।

**ବିବାହ**

୧୯୪୪ ମସିହା ଆଷାଢ଼ ମାସରେ ପୁରୁଷୋତ୍ତମପୁର ଗ୍ରାମ (ସିଂହସାଇ)ର ଶ୍ରୀଯୁକ୍ତ ଜଗତ ବଲ୍ଲଭ ଓ ଶ୍ରୀମତୀ କୁସୁମ କୁମାରୀ ସିହ୍ନାଙ୍କର ଷୋହଳ ବର୍ଷ ବୟସ୍କା କନ୍ୟା ସୁଶ୍ରୀ ପ୍ରତିଭାମୟୀଙ୍କ ସହ ବାମାଚରଣଙ୍କର ବିବାହ ସମ୍ପନ୍ନ ହୋଇଥିଲା । ବାମାଚରଣଙ୍କର ଘର ମଧ୍ୟ ସେହି ଗ୍ରାମର ରାଇସାଇରେ ଥିବାରୁ ଅନେକ ଏହାକୁ ପ୍ରେମବିବାହ ଆଖ୍ୟା ଦେଲେ ମଧ୍ୟ ତାହା ପ୍ରକୃତରେ ପ୍ରେମବିବାହ ନ ଥିଲା । ବାମାବାବୁ ନିଜେ ତାଙ୍କର ବାହାଘର କଥା ତାଙ୍କର **ଥାପିରେ କହ ତଥାପିରେ** ପ୍ରବନ୍ଧରେ ଉଲ୍ଲେଖ କରିଛନ୍ତି । ତାଙ୍କର ବିବାହ ତାଙ୍କ ଗାଁରେ ହୋଇଥିଲା ଏବଂ କନ୍ୟାଘର ତାଙ୍କ ଘରଠାରୁ ମାତ୍ର ଛଅଟି ଘର ପରେ ଥିଲା । ଉଭୟ ବାମାବାବୁ ଓ ତାଙ୍କର ସ୍ତ୍ରୀ ଥିଲେ ନିମ୍ନ ମଧ୍ୟବିତ୍ତ ପରିବାରର । ବାମାବାବୁ ସେତେବେଳେ ନୂଆ କରି ଚାକିରି ଜୀବନ ଆରମ୍ଭ କରିଥାନ୍ତି ଏବଂ ସେତେବେଳେ ସେ ମାତ୍ର ଚାଳିଶ ଟଙ୍କା ଦରମା ପାଉଥିଲେ । ତେଣୁ ତାଙ୍କର ବାହାଘର ଖର୍ଚ୍ଚ ପାଇଁ ଖଣ୍ଡେ ଜମି ବିକ୍ରି କରିବାକୁ ପଡିଥିଲା । ଏପରିକି କନ୍ୟାର ଶାଢ଼ୀ ଓ ଲଜ୍ଜାବସ୍ତ୍ର ମଧ୍ୟ ଅନ୍ୟ ଜଣକ ପାଖରୁ ଧାର କରି ଆଣି ବାହାଘର ତୁଲାଇବାକୁ ପଡିଥିଲା । ଶ୍ରୀମତୀ ପ୍ରତିଭାମୟୀ ମିତ୍ର ଏକାଧାରାରେ ଥିଲେ ସାହିତ୍ୟିକ, ବାମାଚରଣଙ୍କର ସହଧର୍ମିଣୀ ତଥା ସହକର୍ମିଣୀ । ଏକଥା ନିଜେ ମଧ୍ୟ ବାମାଚରଣ ତାଙ୍କର ସାହିତ୍ୟ ମାଧ୍ୟମରେ ବହୁସ୍ଥାନରେ ସ୍ୱୀକାର କରିଛନ୍ତି । ଘରର ଯାବତୀୟ ଜଞ୍ଜାଳ ନିଜର ସ୍ତ୍ରୀ ଉପରକୁ ନିର୍ବିବାଦରେ ଟେକି ଦେଇ ସ୍ରଷ୍ଟାପୁରୁଷ ସାହିତ୍ୟ



Digitized by srujanika@gmail.com

ସେବାରେ ନିଜକୁ ସାହିତ୍ୟ ତଥା ଆଧ୍ୟାତ୍ମିକ ଭାବରସରେ ଅହରହ ବୁଡ଼ାଇ ଦେଇଥିଲେ । ତେଣୁ ଓଡ଼ିଆ ସାହିତ୍ୟ ନିଶ୍ଚିତ ରୂପେ ପ୍ରତିଭାମୟୀ ମିତ୍ରଙ୍କ ନିକଟରେ ଚିରଋଣୀ ହୋଇ ରହିବ ।

## ପରିଧାନ ଓ ପ୍ରସାଧନ

ଶ୍ରୀ ମିତ୍ର ସାଦାସିଧା ଅଥଚ ସୌଖୀନ ଥିଲେ । ଅଫିସ ସମୟ ବ୍ୟତୀତ ସେ ସବୁବେଳେ ସୁପରଫାଇନ୍ ବା ମିଡିୟମ ଧୋତି ଉପରେ ଧଳା ପଞ୍ଜାବୀ ପିନ୍ଧୁଥିଲେ । କନକ ଅତର ତାଙ୍କର ପ୍ରିୟ ଥିଲା । ପିଲାଦିନୁ ସେ ଅତରପ୍ରିୟ ବୋଲି ନିଜେ ସ୍ୱୀକାର କରିଛନ୍ତି । ତାଙ୍କର ବୁଦ୍ଧଦୀପ୍ତ ଚେହେରା ଓ ବୌଦ୍ଧିକତା ସମ୍ପନ୍ନ ବ୍ୟକ୍ତିତ୍ୱଟି ସହଜରେ ବାରିହୋଇପଡେ । ବିଶେଷତଃ ଛଅଫୁଟ ଉଚ୍ଚତା ବିଶିଷ୍ଟ ଏହି ବ୍ୟକ୍ତି ପୁରୁଷଟିର ବୁଦ୍ଧିଦୀପ୍ତ ଆଖିରୁ ତାଙ୍କର ଶାଣିତ ବ୍ୟଙ୍ଗ ବିଦ୍ରୂପର ସ୍ୱରୂପ ତାଙ୍କୁ ଓଡ଼ିଆ ସାହିତ୍ୟରେ ଏକ ସ୍ୱତନ୍ତ୍ର ଆସନ ପ୍ରଦାନ କରିଛି ।

## ବୃତ୍ତି

ସେ ପ୍ରଥମେ ରେଜିନ୍ୟୁ କ୍ଲର୍କ ବା ଆଇନ ସହାୟକ ଭାବରେ ସଚିବାଳୟରେ ଆଇନ ବିଭାଗରେ ନିଯୁକ୍ତି ପାଇଥିଲେ । ଏ ସମ୍ପର୍କରେ ମଧ୍ୟ ଗୋଟିଏ କୌତୁହଳ କଥା ରହିଛି । ଥରେ ଭୟଙ୍କର ନଈବଢ଼ି ସମୟରେ ଦୁଃସାହସୀ ବାମାଚରଣ ନିଜର ଜୀବନକୁ ବିପନ୍ନ କରି ଭାସିଯାଉଥିବା ଗୋଟିଏ ଜୀବନ୍ତ ମଇଁଷିକୁ ଉଦ୍ଧାର କରିଥିଲେ ଏବଂ ତାଙ୍କର ଏହି ଦୁଃସାହସିକତାର ଦୃଶ୍ୟ ପ୍ରାତଃଭ୍ରମଣରେ ବୁଲୁଥିବା ଇଂରେଜ କଲେକ୍ଟରଙ୍କ ଦୃଷ୍ଟି ଆକର୍ଷଣ କରିଥିଲା । ଫଳରେ ଗୁଣଗ୍ରାହୀ ଇଂରେଜ କଲେକ୍ଟର ତାଙ୍କୁ ସାଙ୍ଗେ ସାଙ୍ଗେ ସରକାରୀ ଚାକିରିରେ ନିଯୁକ୍ତି ଦେଇଥିଲେ ।

ଆଇନ ସହାୟକ ପଦବୀରେ ରହିଥିଲା ବେଳେ ସେ ମାଜିଷ୍ଟ୍ରେଟ୍ ପଦବୀ ନିମନ୍ତେ ଜରୁରୀ କାଳୀନ ନିଯୁକ୍ତିର ଲିଖିତ ପରୀକ୍ଷାରେ ସମଗ୍ର ଓଡ଼ିଶାରେ ପ୍ରଥମ ସ୍ଥାନ ଅଧିକାର କରିଥିଲେ। ସେହି ସମୟରେ ବିଚାର ବିଭାଗ ଓ ପ୍ରଶାସନିକ ବିଭାଗ ଏକତ୍ର କାମ କରୁଥିଲା । ଯେତେବେଳେ ବିଚାର ବିଭାଗ ପ୍ରଶାସନିକ ବିଭାଗରୁ ଅଲଗା ହୋଇଗଲା ସେତେବେଳେ ବିଚାର ବିଭାଗକୁ ଆସି ସେ ନୀଳଗିରି, କେନ୍ଦ୍ରାପଡା, ଛତ୍ରପୁର ଓ ନୂଆପଡାଠାରେ କାର୍ଯ୍ୟରତ ଥିଲେ । ତାଙ୍କ ଶେଷ ଚାକିରି ଜୀବନ ଭୁବନେଶ୍ୱର ସଚିବାଳୟ ନଗର ଉନ୍ନୟନ, କୃଷି ଓ ପୂର୍ତ୍ତ ବିଭାଗର ଅଣ୍ଡରସେକ୍ରେଟାରୀ ଭାବରେ କଟିଛି । ବିଚାର ବିଭାଗ ଓ ପ୍ରଶାସନିକ ବିଭାଗ ଅଲଗା ହୋଇଯିବା ପରେ ସେ ଓଡ଼ିଶା ପ୍ରଶାସନିକ ସେବା ବା ଓଏଏସ୍‌ର



Digitized by srujanika@gmail.com

ସଭ୍ୟ ହୋଇଥିଲେ । ରାଜ୍ୟ ସରକାରଙ୍କର ନଗର ଉନ୍ନୟନ ବିଭାଗରେ ଅଣ୍ଡର ସେକ୍ରେଟାରୀ ଥାଇ ୧୬.୧୨.୧୯୭୦ ଦିନ ସେ ଅବସର ଗ୍ରହଣ କରିଥିଲେ । ସେ ତାଙ୍କର ଚାକିରି ଜୀବନ କାଳରେ ଜଣେ କର୍ତ୍ତବ୍ୟନିଷ୍ଠ ତଥା ସଚ୍ଚୋଟ ଅଫିସର ଥିଲେ । ତାଙ୍କ ନିକଟରେ ଉଚ୍ଚପଦସ୍ଥ ଅଫିସରର ଆତ୍ମପୌଢ଼ି ନଥିଲା । ବରଂ ସହୃଦୟତାର ସହ ସେ ବିଭିନ୍ନ ସମସ୍ୟାର ସମାଧାନ କରୁଥିଲେ । ୧୯୫୬ ମସିହା ରାଜ୍ୟ ପୁନର୍ଗଠନ କମିଶନ ରିପୋର୍ଟ ବେଳର ଆନ୍ଦୋଳନ ଯେତେବେଳେ ଭୟଙ୍କର ଆକାର ଧରିଥାଏ ସେହି ସମୟରେ ଯେଉଁ ତିନି ଜଣ ରାଜପୁରୁଷଙ୍କ ଉପରେ କଟକ ସହର ଅଞ୍ଚଳର ବିଭିନ୍ନ ଶାନ୍ତିରକ୍ଷା ଦାୟିତ୍ୱ ନ୍ୟସ୍ତ ହୋଇଥିଲା, ସେମାନଙ୍କ ମଧ୍ୟରେ ବାମାଚରଣ ଥିଲେ ଅନ୍ୟତମ । କାରଣ ପୂର୍ବରୁ ସହିଦ ସୁନୀଲ ପାଇଁ କଟକରେ ହୋଇଥିବା ସାମ୍ପ୍ରଦାୟିକ ଗଣ୍ଡଗୋଳ ବେଳେ ବାମାଚରଣ ଶାନ୍ତିସ୍ଥାପନ ପାଇଁ ନିଯୁକ୍ତି ପାଇଥିଲେ ଓ ଦକ୍ଷତାରସହିତ ଗୁଳିକାଣ୍ଡର ସମାଧାନ କରିଥିଲେ । ଯେଉଁ ବାମାଚରଣ ମିତ୍ର କେବେହେଲେ କୌଣସି ସଭାସମିତିରେ ବକ୍ତୃତା ଦେଇପାରନ୍ତିନାହିଁ, ସେଇ ବାମାଚରଣ ମିତ୍ର ନିଜ ଜୀବନକୁ ବିପନ୍ନ କରି ପୁଲିସ ବଡ ସାହେବଙ୍କ ଗୁଳି ଚଳାଇବ ଆଦେଶକୁ ବିରୋଧ କରି ଏକା ଏକା ଉତ୍‌କ୍ଷିପ୍ତ ଜନତାର ସମ୍ମୁଖୀନ ହୋଇ ସବୁର ସମାଧାନ କରିଥିଲେ । ନିଜର ସ୍ୱାର୍ଥ ଅପେକ୍ଷା ସେ ସମୂହ ସ୍ୱାର୍ଥ ପ୍ରତି ଅଧିକ ଗୁରୁତ୍ୱ ଦେଉଥିଲେ ।

ତେବେ ତାଙ୍କର ସାହିତ୍ୟ ଭଣ୍ଡାର ତାଙ୍କ ଚାକିରି ଜୀବନର ନାନା ଖଟାମିଠା, ଘଟଣା ଦୁର୍ଘଟଣାରେ ଯେ ପରିପୂର୍ଣ୍ଣ ଏହା ଯେ କେହି ଜାଣିପାରିବ । ସେ ନିଜେ ସଚ୍ଚୋଟ ଥିବାରୁ ଚାକିରି ଜୀବନର ଯାହା କିଛି ଦୋଷ, ଦୁର୍ବଳତା ଅତି ସହଜରେ ତାଙ୍କ ଆଖିରେ ଧରାପଡିଯାଏ । ସେ ସବୁ ଘଟଣାଗୁଡ଼ିକୁ ଅତି ସୁନ୍ଦର ଭାବରେ ବ୍ୟଙ୍ଗାତ୍ମକ ଶୈଳୀରେ ତାଙ୍କ କ୍ଷୁଦ୍ରଗଳ୍ପ, ପ୍ରବନ୍ଧ, ରମ୍ୟରଚନା ଇତ୍ୟାଦିରେ ସନ୍ନିବେଶିତ କରିଛନ୍ତି ।

ଜୀବିକା ତାଙ୍କୁ କାବୁ କରିପାରି ନଥିଲା । ଯଦିଓ ସେ ଜଣେ ଦକ୍ଷ, ସଚ୍ଚୋଟ ତଥା ନିପୁଣ ପ୍ରଶାସକ ଥିଲେ ତଥାପି ସେ ଜୀବନ ଖୋଜୁଥିଲେ । ସାହିତ୍ୟ, ସଙ୍ଗୀତ, ଅଧ୍ୟବସାୟ, କ୍ରୀଡା ଏସବୁ ତାଙ୍କର ଜୀବନ ଥିଲା । ବସ୍ତୁନିଷ୍ଠ ସାଂସାରିକ ଜୀବନ ଓ ଚାକିରି ଜୀବନର ପେନ୍‌ସନ୍, ପଦୋନ୍ନତି, ମହଙ୍ଗାଭତ୍ତା ଇତ୍ୟାଦି ପ୍ରତି ତାଙ୍କର କୌଣସି ଆଗ୍ରହ ନଥିଲା । ବରଂ କେମିତି ଏକ ଦାର୍ଶନିକ ଭାବ ନେଇ ସେ ଜଟିଳ ସାଂସାରିକ ଜୀବନରୁ ସାମାନ୍ୟ ନିଷ୍କୃତି ପାଇ ସାହିତ୍ୟ ଏବଂ ଆଧାତ୍ମିକ



Digitized by srujanika@gmail.com

ଆଲୋଚନାରେ ନିଜକୁ ସାହିତ୍ୟିକ ବନ୍ଧୁ ଗୋପୀନାଥ ମହାନ୍ତି, ସୁରେନ୍ଦ୍ର ମହାନ୍ତି, ଶାନ୍ତନୁ କୁମାର ଆଚାର୍ଯ୍ୟ, ଅଖିଳମୋହନ ପଟ୍ଟନାୟକ, ରାଜକିଶୋର ମହାନ୍ତି, କୃଷ୍ଣପ୍ରସାଦ ମିଶ୍ର, ମାହାପାତ୍ର ନୀଳମଣି ସାହୁ, ଚନ୍ଦ୍ରଶେଖର ରଥ, ହରିହର ଦାସ ଓ ଆହୁରି ଅନେକ ସାହିତ୍ୟ ଓ ସଙ୍ଗୀତ ଶିଳ୍ପୀମାନଙ୍କ ସହ ରତ ହେଉଥିଲେ ।

ନିଜ ଅଭିଜ୍ଞତାରେ ଆସିଥିବା ପ୍ରଶାସନିକ କଳର ବହୁ ଦୋଷ, ଦୁର୍ବଳତାକୁ ସେ ଏମିତି ଭାବରେ ଦେଖାଇଛନ୍ତି ଯାହାକୁ ପଢ଼ି ପାଠକ ହସି ହସି ବେଦମ ହୋଇଯିବେ ।

## ରୋଗର ଶିକାର

ଯେଉଁ ଲୋକ ଦିନେ ଉଚ୍ଛୁଳା ନଈକୁ ପହଁରି ଯାଉଥିଲେ, ଜୀବନକୁ ବିପନ୍ନ କରି ମାନବ ଓ ମାନବେତର ଜୀବମାନଙ୍କୁ ବଞ୍ଚାଇବାକୁ ଭରା ନଈକୁ ଡେଇଁ ପଡୁଥିଲେ ଓ ଜଣେ ଦକ୍ଷ ଖେଳାଳି ଭାବରେ ନାଁ ଅର୍ଜିଥିଲେ, ସେହି ଛ' ଫୁଟିଆ ମଣିଷଟା ମାତ୍ର ପଚାଶ ବର୍ଷ ବୟସରୁ ରୋଗର ଶିକାର ହୋଇ ଭାଙ୍ଗିପଡିଥିଲେ । ଶ୍ୱାସ ବେମାରୀରେ ଆକ୍ରାନ୍ତ ହୋଇ ସେ ଭୀଷଣ ଯନ୍ତ୍ରଣା ଭୋଗ କରୁଥିଲେ । ଅନେକ ସମୟରେ ସେ ତାଙ୍କର ରୋଗ ଯନ୍ତ୍ରଣାର ଜ୍ୱାଳାକୁ ଅନ୍ୟ ଆଗରେ ପ୍ରକାଶ କରିବାକୁ ମଧ ପଛାଇନାହାନ୍ତି । ଜୀବନ ସାରା ନ୍ୟାୟ, ସତ୍‌ପଥ ଅନୁସରଣ କରି ମଧ ବାମାଚରଣ ଚାକିରି କ୍ଷେତ୍ରରେ ଉପଯୁକ୍ତ ପଦୋନ୍ନତି ପାଇପାରି ନଥିଲେ । ଅଚାନକ ରୋଗର ଆକ୍ରମଣ ତାଙ୍କର ମନର ବଳ ଓ ଦେହର ବଳକୁ ଏକାବେଳକେ ଭାଙ୍ଗିପକାଇଥିଲା ।

ଜୀବନର ଶେଷଦିନ ପର୍ଯ୍ୟନ୍ତ ସେ ସାହିତ୍ୟ, ସଙ୍ଗୀତର ଉନ୍ନତି ପାଇଁ ଯୁକ୍ତି ବାଢ଼ିଛନ୍ତି । ଦୀର୍ଘ ପଚିଶ ବର୍ଷ ଧରି ସେ ବିଭିନ୍ନ ବିଭାଗରେ କଲମ ଚାଳନା କରି ଓଡ଼ିଆ ସାହିତ୍ୟକୁ ସମୃଦ୍ଧ କରିଛନ୍ତି । ନିଜେ ଜଣେ ଦକ୍ଷ ତଥା ସଚ୍ଚୋଟ ଶାସକ ଥିଲେ ମଧ ସେ ଓଡ଼ିଶା ଓ ଓଡ଼ିଆମାନଙ୍କଠାରୁ ଉପଯୁକ୍ତ ପରିଚର୍ଯ୍ୟା ପାଇନାହାନ୍ତି । ତାଙ୍କର ଗଳ୍ପ, ଉପନ୍ୟାସ, ପ୍ରବନ୍ଧ କୌଣସିଟି ତାଙ୍କ ପାଇଁ କୌଣସି ଧନସମ୍ପତ୍ତି ବା ପ୍ରତିପତ୍ତି ଆଣିପାରିନାହିଁ । ତାଙ୍କର ଅବସର ପରେ ତାଙ୍କୁ କୌଣସି ସରକାରୀ ବା ଅର୍ଦ୍ଧସରକାରୀ ସଂସ୍ଥାରେ ପୁନଃନିଯୁକ୍ତି ଦିଆଯାଇଥିଲେ ଅନ୍ତତଃ ତାଙ୍କର ଅକାଳ ମୃତ୍ୟୁ ହୋଇନଥାନ୍ତା ।

ସେ ଜଣେ ଉଚ୍ଚପଦସ୍ଥ ଅଫିସର ହୋଇଥିଲେ ମଧ ତାଙ୍କର ନିଜର ଘର ଖଣ୍ଡିଏ ନଥିଲା । ଶେଷ ଜୀବନ ତାଙ୍କର ଭଣଜାଙ୍କର ନଅ ନମ୍ବର ସରକାରୀ ଫ୍ଲାଟ କ୍ୱାର୍ଟରରେ କଟାଇ ସେହିଠାରେ ଶେଷ ନିଶ୍ୱାସ ତ୍ୟାଗ କରିଥିଲେ ।



Digitized by srujanika@gmail.com

## କ୍ରୀଡ଼ାପ୍ରବୃତ୍ତି

ଛାତ୍ର ଜୀବନରୁ ବାମା ମିତ୍ର ରେଭେନ୍‌ସା କଲେଜରେ ପଢ଼ିବାବେଳୁ ଫୁଟ୍‌ବଲ, ହକି ଖେଳରେ ବେଶ୍ ଖ୍ୟାତି ଅର୍ଜନ କରିବା ସଙ୍ଗେ ସଙ୍ଗେ ଜଣେ ଦକ୍ଷ ସନ୍ତରଣକାରୀର ଗୌରବ ହାସଲ କରିଥିଲେ । ହକି ଖେଳରେ ସେ ରେଭେନ୍‌ସା କଲେଜ ଟିମ୍‌ରେ ସ୍ଥାନ ପାଇ ବିଭିନ୍ନ ହକି ପ୍ରତିଯୋଗିତାରେ ଅଂଶଗ୍ରହଣ କରି ଖ୍ୟାତ ଲାଭ କରିଥିଲେ । ପହଁରା ପ୍ରତିଯୋଗିତାରେ ମଧ୍ୟ ୧୯୩୩ ମସିହାରେ ଉକ୍ତ କଲେଜରେ ରେକର୍ଡ ସ୍ଥାପନ କରିଥିଲେ ଏବଂ ସେ ରେକର୍ଡ ପ୍ରାୟ ୧୯୮୦ ମସିହା ପର୍ଯ୍ୟନ୍ତ ବଳବତ୍ତର ରହିଥିଲା । ତାଙ୍କର ପହଁରା ପ୍ରତିଯୋଗିତା ସମ୍ପର୍କରେ ମଧ୍ୟ ଗୋଟିଏ କୌତୂହଳ କଥା ରହିଛି । କାରଣ ତାଙ୍କ ବାପା ତାଙ୍କର ଏ ପ୍ରକାର ଖେଳଓ୍ୱାର୍ଡ ମନୋବୃତ୍ତିକୁ ପସନ୍ଦ କରୁନଥିବାରୁ ସନ୍ତରଣ ପ୍ରତିଯୋଗୀତା ଦିନ ତାଙ୍କୁ ଏକପ୍ରକାର ଅଟକବନ୍ଦୀ କରି ରଖିଥିଲେ । ଶେଷ ମୁହୂର୍ତ୍ତରେ ଛାଡ ପାଇ ଗାମୁଛା ପିନ୍ଧା ଅବସ୍ଥାରେ ନଈକୂଳରେ ପହଞ୍ଚି ସେ ପ୍ରତିଯୋଗିତାରେ ଭାଗ ନେଇ ସାଫଲ୍ୟ ଅର୍ଜନ କରିଥିଲେ । ସେ ଯେ କେବଳ ପୁରସ୍କାର ଆଶାରେ ସନ୍ତରଣ ପ୍ରତିଯୋଗିତାରେ ଭାଗ ନେଉଥିଲେ ତାହା ନୁହେଁ, ବରଂ ଅନେକ ସମୟରେ ସେ ଉଛୁଳା ନଈକୁ ଡେଇଁପଡି ବହୁ ଜୀବନ ବଞ୍ଚାଇଛନ୍ତି । ତାଙ୍କର ନିଜ ଜୀବନ ଅପେକ୍ଷା ଗୋଟିଏ ପଶୁର ଜୀବନ ତାଙ୍କ ଆଖିରେ ମୂଲ୍ୟବାନ ହୋଇପଡେ ।

୧୯୪୨ ମସିହାରେ କଟକରେ ତାଙ୍କର ବନ୍ଧୁମାନେ 'ଲୋପେଜ ଚେସ୍ କ୍ଳବ' ନାମରେ ଗୋଟିଏ ଚେସ୍ କ୍ଲବ ଗଠନ କରିଥିଲେ । ସ୍ପେନର ଧର୍ମଯାଜକରୁ ଲୋପେଜ୍ ଜଣେ ବିଶିଷ୍ଟ ଚେସ୍ ଖେଳାଳି ଥିଲେ । ତାଙ୍କରି ନାମାନୁଯାୟୀ ଏ ଚେସ୍ କ୍ଲବଟି ଗଠିତ ହୋଇଥିଲା । ସେଥିରେ ବିଶିଷ୍ଟ ସାହିତ୍ୟିକ ତଥା ସଙ୍ଗୀତଶିଳ୍ପୀମାନେ ସଭ୍ୟ ହୋଇଥିଲେ । ସୁରେନ୍ଦ୍ର ମହାନ୍ତି, କ୍ଷିତୀଶଚନ୍ଦ୍ର ମୈତ୍ର, ଜ୍ୟୋତିରିନ୍ଦ୍ର ମୋହନ ଜୋଆରଦାର, ପ୍ରାଣବନ୍ଧୁ କର ଓ ବାମାଚରଣ ମିତ୍ର ପ୍ରଭୃତି ସାହିତ୍ୟିକ ଓ ସଙ୍ଗୀତଶିଳ୍ପୀମାନେ ଏଥିରେ ସଭ୍ୟ ହୋଇଥିଲେ । ଯଦିଓ ଏହା ଏକ ଚେସ୍ କ୍ଲବ ଥିଲା ମାତ୍ର ଏଥିରେ ସାହିତ୍ୟ ଓ ରାଜନୀତି ଚର୍ଚ୍ଚା ହୋଇଥିଲା ।

### ଦୁଃସାହସ

ତୁଳସୀ ଦୁଇପତ୍ରରୁ ବାସିଲା ପରି ବାମାଚରଣଙ୍କର ଛାତ୍ରଜୀବନରୁ ତାଙ୍କର ଦୁଃସାହସୀ ବ୍ୟକ୍ତିତ୍ୱର ପରିଚୟ ମିଳିପାରିଥିଲା । ୧୯୪୧ ମସିହାରେ ରାମଗଡ କଂଗ୍ରେସ ଅଧିବେଶନ ଦେଖିବା ଲାଗି ସେ ଓ ତାଙ୍କର ଅନ୍ତରଙ୍ଗ ଘନିଷ୍ଠ ଖେଳାଳି



Digitized by srujanika@gmail.com

ଓ ଦୁଃସାହସୀ ବନ୍ଧୁ ତଥା ଓଡ଼ିଶାର ବରେଣ୍ୟ ଜନନାୟକ ଶ୍ରୀଯୁକ୍ତ ବିଜୁ ପଟ୍ଟନାୟକଙ୍କ ସହ ସାଇକେଲରେ ଯାଇଥିଲେ । ବାଟରେ ଖାଇଥିବା ଚା' ଜଳଖିଆର ହିସାବ ବାମାଚରଣ ଲେଖି ରଖିଥିଲେ । ସେହି ହାତଲେଖା ଶ୍ରୀମତୀ ମିତ୍ରଙ୍କ ପାଖରେ ଏବେ ବି ସୁରକ୍ଷିତ ଥିବା କଥା ଶ୍ରୀମତୀ ମିତ୍ର ଏକ ସାକ୍ଷାତକାରରେ କହିଛନ୍ତି । ନିଜେ ତାଙ୍କର ବନ୍ଧୁ ସମ୍ମାନନୀୟ ମୁଖ୍ୟମନ୍ତ୍ରୀ ବିଜୁ ପଟ୍ଟନାୟକ ମଧ୍ୟ ଏକ ସାକ୍ଷାତକାରରେ ତାଙ୍କର ଖେଳାଳି ତଥା ଦୁଃସାହସୀ ପହଁରାଳି ମିତ୍ରଙ୍କ କଥା ଉଲ୍ଲେଖ କରିଛନ୍ତି (ଯାହାକି ଟେପ୍ ରେକର୍ଡିଂ କରିଆରେ ସଂଗୃହୀତ ହୋଇଛି) ।

ଛାତ୍ରଜୀବନରୁ ଯଦିଓ ସେ ବିନୟୀ ତଥା ମିଷ୍ଟାଳାପୀ ଥିଲେ ତଥାପି ଅନ୍ୟାୟ ଦେଖିଲେ ସେ ତା'ର ଦୃଢ଼ ପ୍ରତିବାଦ କରୁଥିଲେ । ୧୯୪୦ ମସିହାରେ ଇଂରେଜ ସାମ୍ରାଜ୍ୟର କୋକୁଆଭୟ । ପରିସ୍ଥିତିରେ ମିଷ୍ଟର ଗିଲ୍ ନାମକ ଜଣେ ଏ.ଅଇ.ଜି.ଙ୍କର ଔଦ୍ଧତ୍ୟରେ ଉତ୍ତେଜିତ ହୋଇ ବାମାଚରଣ ମିତ୍ର, ତାଙ୍କର ବନ୍ଧୁ ନାଟ୍ୟକାର ପ୍ରାଣବନ୍ଧୁ କର ଓ ତାଙ୍କର ଅନ୍ୟ ଏକ ବନ୍ଧୁ ତାଙ୍କୁ ବାଡେଇଥିଲେ । ଉଦାରମନା ମିଷ୍ଟର ଗିଲ୍ ପରେ ଅନୁତାପ କରି ଉଦାରତାର ସହିତ ଏମାନଙ୍କୁ ଛାଡିଦେଇଥିଲେ । ଏ ସମ୍ପର୍କରେ ନାଟ୍ୟକାର ପ୍ରାଣବନ୍ଧୁ କର ଗୋଟିଏ ଗଳ୍ପ ଲେଖି ସେ ଓ ସ୍ୱର୍ଗତ ମିତ୍ରଙ୍କ ତରଫରୁ ଇଂରେଜ ଅଫିସର ଗିଲ୍ ଦମ୍ପତିଙ୍କୁ ଉପହାର ଦେଇଛନ୍ତି ।

### ସଙ୍ଗୀତ ପ୍ରତି ଆଗ୍ରହ

ସାହିତ୍ୟ ପରି ସଙ୍ଗୀତ ଥିଲା ତାଙ୍କର ଆଉ ଏକ ଅନ୍ତରଙ୍ଗ ବନ୍ଧୁ । ସାହିତ୍ୟ ଓ ସଙ୍ଗୀତକୁ ସେ ମଣିଷର ଶ୍ରେଷ୍ଠତମ ତଥା ସୂକ୍ଷ୍ମତମ ଆତ୍ମିକ ପରିପ୍ରକାଶ ବୋଲି ଭାବୁଥିଲେ । ସଙ୍ଗୀତ ପ୍ରତି ତାଙ୍କର ଗଭୀର ଆନ୍ତରିକତା ଯୋଗୁ ସେ ଉଭୟ ଲଘୁସଙ୍ଗୀତ ଓ କ୍ଲାସିକାଲ ସଙ୍ଗୀତରେ ହଜିଯାଉଥିଲେ । କ୍ଲାସିକାଲ ସଙ୍ଗୀତର କେତେକ ବିଶେଷତ୍ୱ ସମ୍ପର୍କରେ ସେ ଜ୍ଞାନ ଅର୍ଜନ କରିଥିଲେ ଓ ତାଙ୍କର ସଙ୍ଗୀତାନୁରାଗ ତାଙ୍କୁ ସେଇଥିପାଇଁ ବିଶିଷ୍ଟ ସଙ୍ଗୀତଜ୍ଞମାନଙ୍କ ପ୍ରତି ଆକୃଷ୍ଟ କରିଥିଲା ଓ ସେଥିପାଇଁ ସେ 'ସ୍ମୃତିର ଅତଳେ' ନାମରେ ଗୋଟିଏ ଗୋଟିଏ ଅନୁବାଦ ପୁସ୍ତକ ଲେଖିଛନ୍ତି । ସେ ନିଜେ ସଙ୍ଗୀତପ୍ରିୟ ଥିବାରୁ ବହୁ ସଙ୍ଗୀତଶିଳ୍ପୀମାନେ ବି ତାଙ୍କର ଘନିଷ୍ଠ ବନ୍ଧୁ ହୋଇଯାଇଥିଲେ । ଲବ୍ଧପ୍ରତିଷ୍ଠିତ ସଙ୍ଗୀତଶିଳ୍ପୀ କ୍ଷିତୀଶଚନ୍ଦ୍ର ମୈତ୍ର, ନାଟ୍ୟକାର ଅଶ୍ୱିନୀ କୁମାର ଘୋଷଙ୍କ ସାନଭାଇ ଧଡ଼ି (କାର୍ତ୍ତିକ କୁମାର ଘୋଷ) ଓ କଟକର ବ୍ୟାଣ୍ଡ ପାର୍ଟିର ମାଷ୍ଟର ତାଙ୍କର ଘନିଷ୍ଠ ତଥା ଅନ୍ତରଙ୍ଗ ବନ୍ଧୁ ଥିଲେ । ସେ କିଛିଦିନ ଉତ୍କଳ ସଙ୍ଗୀତ ସମାଜରେ ତବଲା ବାଦନ ଶିଖୁଥିଲେ । ଓଡ଼ିଶୀ ନୃତ୍ୟର ପ୍ରଚାର ଓ ପ୍ରସାର



Digitized by srujanika@gmail.com

ପାଇଁ ଅଗ୍ରଣୀ ଭୂମିକା ମଧ୍ୟ ଗ୍ରହଣ କରିଥିଲେ । ତାଙ୍କ ଜୀବନର ଅନ୍ତିମ ଶଯ୍ୟାରେ ଯେତେବେଳେ ସେ ରୋଗଗ୍ରସ୍ତ ହୋଇ ଛଟପଟ ହେଉଥିଲେ ସେତିକିବେଳେ ସମ୍ମାନନୀୟ ସାହିତ୍ୟିକ ଗୋପୀନାଥ ମହାନ୍ତି କେତେଜଣ ବିଶିଷ୍ଟ ସଙ୍ଗୀତଜ୍ଞମାନଙ୍କର ସଙ୍ଗୀତକୁ ଟେପ୍ କରି ଶୁଣାଇଥିଲେ ଓ ସେହି ସଙ୍ଗୀତଗୁଡ଼ିକ ଶୁଣୁ ଶୁଣୁ ସେ ଭାବାବେଶରେ କାନ୍ଦି ପକାଇଥିଲେ । ଆଉ ଯାହାକୁ ଦେଖି ନିଜେ ଗୋପୀନାଥ ମହାନ୍ତି ଆଶ୍ଚର୍ଯ୍ୟ ହୋଇଯାଇଥିଲେ । କାରଣ ସଙ୍ଗୀତ ପ୍ରତି ସେମିତି ଆନ୍ତରିକତା ନଥିଲେ ଜଣେ ଭାବାବେଶରେ କାନ୍ଦିପାରିବନାହିଁ । ତାଙ୍କ ବାହାଘରରେ ବେସୁରା ବାଜାର ତାଳ, ଲୟ ତାଙ୍କୁ ଭୀଷଣ ଭାବରେ ଯନ୍ତ୍ରଣା ଦେଇଥିଲା । କାରଣ ସଙ୍ଗୀତଶିଳ୍ପୀ କ୍ଷିତୀଶଚନ୍ଦ୍ର ମୈତ୍ର ଓ ଧଡ଼ିଭାଇଙ୍କ ସହାୟତାରେ ଶାସ୍ତ୍ରୀୟ ସଙ୍ଗୀତ ପ୍ରତି ତାଙ୍କ କାନ ଓ ମନ ଉଭୟ ତିଆରି ହୋଇଯାଇଥାଏ । ଆଉ ଯେତେବେଳେ ଆର୍ଥିକ ଦୁରାବସ୍ଥା ଯୋଗୁ ତାଙ୍କ ବାହାଘରରେ ପ୍ରସିଦ୍ଧ ବ୍ୟାଣ୍ଡବାଜା ଯାଇପାରି ନଥିଲା, ତା ପରିବର୍ତ୍ତେ ବେତାଳୁଆ ଢ଼ୋଲ ଦିଇଟା ପିଟାଯାଇଥିଲା। ସେତେବେଳେ ତାଙ୍କର ଅନ୍ତରରେ ଦାରୁଣ ଆଘାତ ଲାଗିଥିଲା । ତାଙ୍କ ଜୀବନର ସେହି ଅବଶୋଷ ହିଁ ତାଙ୍କ ପ୍ରବନ୍ଧ 'ଥାପିରେ କହ ତଥାପି'ରେ ସୁନ୍ଦର ଭାବରେ ରୂପାୟିତ ହୋଇଛି ।

## ଧର୍ମ ଓ ଦର୍ଶନ

ବାମାଚରଣଙ୍କର ଦୃଷ୍ଟିରେ ହିନ୍ଦୁ, ମୁସଲମାନ ଓ ଖ୍ରୀଷ୍ଟୀୟାନଙ୍କ ଭିତରେ କୌଣସି ତଫାତ ନଥିଲା । ତନ୍ନ ତନ୍ନ କରି ସେ କୋରାନ୍, ବାଇବେଲ ଓ ଗୀତାକୁ ପଢ଼ିବା ସଙ୍ଗେ ସଙ୍ଗେ ତାକୁ ବିଶ୍ଳେଷଣ ମଧ୍ୟ କରିଛନ୍ତି । ମସଜିଦ୍, ମନ୍ଦିର, ଗୀର୍ଜା ସବୁଠାରେ ସେ ଉପାସନା କରିଛନ୍ତି । ମାତ୍ର ସେ ତାଙ୍କ ଅନୁଭବରୁ ଈଶ୍ୱର, ଆଲ୍ଲା ଓ ଯୀଶୁଙ୍କ ମଧ୍ୟରେ କୌଣସି ପ୍ରଭେଦ ବାରିପାରିନାହାନ୍ତି । ସେ ପିଲାବେଳୁ ବହୁ ଉଦାର ଭାବାପନ୍ନ ଧାର୍ମିକ ବ୍ୟକ୍ତିଙ୍କର ସଂସ୍ପର୍ଶରେ ଆସିଥିବାରୁ ଧର୍ମ ସମ୍ପର୍କରେ ସମ୍ପୂର୍ଣ୍ଣ ଉଦାର ଥିଲେ ।

୧୯୩୦ ମସିହାରେ ସେ ନବମ ଶ୍ରେଣୀରେ ପଢ଼ିବାବେଳୁ ତାଙ୍କର ଶିକ୍ଷକ ହମିଦ ମିଆଁଙ୍କର ଗୀତା, ବାଇବେଲ, କୋରାନ ଚର୍ଚ୍ଚାର ଆତ୍ମବିହ୍ୱଳତା ଓ ସଙ୍ଗୀତଶିଳ୍ପୀ ଖାନ୍ ମିଆଁଙ୍କର କାଳିମନ୍ଦିର ଯାଇ ଭାଗବତ ପାଠ ଶୁଣିବାର ତନ୍ମୟ ଭାବ ତାଙ୍କ ହୃଦୟରେ ପିଲାବେଳୁ ଉଦାର ଧର୍ମଭାବର ପରିସ୍ଫୁରଣ କରିଥିଲା । ଅପରନ୍ତୁ ତାଙ୍କର ଆତ୍ମା ସର୍ବଦା କୃଷ୍ଣ ଚେତନାରେ ନିମଗ୍ନ ଥିଲା । ତାଙ୍କ ଆଗରେ ଯଦିଓ କେହି ଭଗବାନ କହିଲେ ସେ ଅଯଥା ସ୍ନାୟବିକ ଦୁର୍ବଳତା କହି ଚିଡୁଥିଲେ ମାତ୍ର



Digitized by srujanika@gmail.com

ସେ ନିଜେ ଆନ୍ତରିକ ଭାବରେ ତାଙ୍କ ମନ ଓ ହୃଦୟରେ ଶ୍ରୀକୃଷ୍ଣଙ୍କୁ ସାଇତି ରଖିଥିଲେ ଓ ଭିତରେ ଭିତରେ ସେ ପରମ ବୈଷ୍ଣବ ଏବଂ ରାଧାଭାବର ସାଧକ ଥିଲେ । ଏପରିକି ଶ୍ରୀକୃଷ୍ଣଙ୍କର ଭାବରସରେ ସେ ଏପରି ନିମଜ୍ଜିତ ହୋଇଯାଇଥିଲେ ଯେ ନିଜକୁ ଶ୍ରୀରାଧା ଭାବରେ ଧୂଳି ଧୂସରିତ ଦାଣ୍ଡରେ ଗଡିଯାଉଥିଲେ । ସେ ଏକାନ୍ତ ଭାବରେ ଥିଲେ କାମନା, ବାସନା ଶୂନ୍ୟ ନିର୍ଲିପ୍ତ କୃଷ୍ଣ ପ୍ରେମିକା ।

ସମାଜରେ ଧର୍ମ ନାମରେ ପ୍ରଚଳିତ ନାନାଦି କୁସଂସ୍କାର ଓ ଧର୍ମାନ୍ଧତାକୁ ସେ ଗଭୀର ଭାବରେ ସମାଲୋଚନା କରୁଥିଲେ । ଏପରିକି ହିନ୍ଦୁ ଧର୍ମରେ ଥିବା ଜାତିଭେଦ, ଜଗନ୍ନାଥ ମନ୍ଦିରରେ ଅଣହିନ୍ଦୁମାନଙ୍କର ପ୍ରବେଶ ନିଷେଧକୁ ମଧ୍ୟ ସେ ବିଭିନ୍ନ ଯୁକ୍ତି ଉପସ୍ଥାପନ କରି ବିରୋଧ କରିଛନ୍ତି । ହିନ୍ଦୁମାନଙ୍କର ବାହ୍ୟ ଆଡମ୍ବର ପୂଜା ଓ ତା ସଙ୍ଗେ ସଙ୍ଗେ ଦୁର୍ଗାପୂଜାରେ କଳିଗୋଳରେ ଭଙ୍ଗା ଦୁର୍ଗା ମୂର୍ତ୍ତିଗୁଡିକର ବିଭତ୍ସ ଅବସ୍ଥା ସମ୍ପର୍କରେ ବିଦ୍ରୂପ କରି ସେ ହିନ୍ଦୁଧର୍ମକୁ ହିନ୍ଦୁମାନେ ବି ଗୁରୁତ୍ୱ ଦେଉନାହାନ୍ତି ବୋଲି ଦର୍ଶାଇଛନ୍ତି । ତେବେ ପ୍ରକୃତପକ୍ଷେ ମାନବବାଦିତା ହିଁ ହେଉଛି ତାଙ୍କର ଆଧ୍ୟାତ୍ମିକତା । ସେ ନିଜ ସ୍ୱାର୍ଥ ଅପେକ୍ଷା ସମାଜର ସ୍ୱାର୍ଥ ପାଇଁ ଅଧିକ ଭାବୁଥିଲେ ଓ ସାମ୍ୟବାଦର ଚିନ୍ତାଧାରା ଦ୍ୱାରା ତାଙ୍କର ହୃଦୟ ଉଦ୍‌ବୋଧିତ ହୋଇଥିଲା । ସମାଜର ନିମ୍ନବର୍ଗ ବିଶେଷତଃ ଅର୍ଥନୀତି ଦୃଷ୍ଟିରୁ ଯେଉଁମାନେ ଦୁର୍ବଳ ସେମାନଙ୍କ ପାଇଁ ସେ ସର୍ବଦା ସମ୍ବେଦନଶୀଳ ଥିଲେ । ସେଥିପାଇଁ ମୃତ୍ୟୁପରେ ତାଙ୍କର ଦଶାହକୁ କେବଳ କୁଷ୍ଠରୋଗୀମାନେ ନିମନ୍ତ୍ରିତ ହୋଇ ଆସିବାର ଅଭିଳାଷ ପୋଷଣ କରି ଯାଇଥିଲେ । ତାଙ୍କର ଅନେକ ସାହିତ୍ୟିକ ବନ୍ଧୁମାନଙ୍କ ମତରେ ଯଦିଓ ସେ ମାତ୍ର ପଚାଶ ବର୍ଷ ବୟସରୁ ବ୍ରୋଙ୍କାଇଟିସ୍ ଆଜ୍‌ମାର ଶିକାର ହୋଇଥିଲେ ମାତ୍ର କୃଷ୍ଣ ଭାବର ଉନ୍ମତ୍ତତା ହିଁ ତାଙ୍କ ସ୍ୱାସ୍ଥ୍ୟକୁ ଦୋହଲାଇ ଦେଇଥିଲା ।

ସେ ପ୍ରକୃତରେ କହୁଥିଲେ ଯେ ସବୁ ମଣିଷଙ୍କୁ ସମାଜ ଆଗେ ଖୋଇ ପେଇ ଥଇଥାନ କରୁ । ତା'ପରେ ଯାଇଁ ଧର୍ମ । ଆଗେ ଯେ କୌଣସି ଉପାୟରେ ମଣିଷର ଦୁଃଖ ଦୁର୍ଦ୍ଦଶା ଦୂର ହେଉ । ଏଥିପାଇଁ ସାମ୍ୟବାଦ ଆସୁ ବା ଭଗବାନଙ୍କୁ ଦୂରେଇ ଦିଆଯାଉ, ମାତ୍ର ମଣିଷର ଦୁଃଖ ଦୂର ହେଉ । ସେ ପୂରାପୁରି ଗାନ୍ଧୀବାଦୀ ଥିଲେ । ଅହିଂସା ଉପରେ ପ୍ରତିଷ୍ଠିତ ଗଣତାନ୍ତ୍ରିକ ସମାଜବାଦ ଉପରେ ସେ ଆସ୍ଥା ରଖିଥିଲେ ।

**ବ୍ୟକ୍ତିତ୍ୱ**

ତାଙ୍କର ଦୀର୍ଘ ଦେହ ପରି ତାଙ୍କର ବିଶିଷ୍ଟ ବ୍ୟକ୍ତିତ୍ୱ ମଧ୍ୟ ସେହିପରି ବାରି ହୋଇପଡେ । ସେ ଛାତ୍ରଜୀବନରୁ ମିଷ୍ଟାଳାପୀ ତଥା ବନ୍ଧୁବତ୍ସଳ ଥିଲେ । ସେ



Digitized by srujanika@gmail.com

କୌଣସି କଥାକୁ ଶୁଣି ବିଶ୍ୱାସ କରିବା ଲୋକ ନଥିଲେ ବରଂ ବଳିଷ୍ଠ ପାଣ୍ଡିତ୍ୟପୂର୍ଣ୍ଣ ଯୁକ୍ତି ମାଧ୍ୟମରେ କୌଣସି ମତକୁ ଗ୍ରହଣ କରୁଥିଲେ । ସେ କେବେହେଲେ ପରନିନ୍ଦା, ପରଚର୍ଚ୍ଚା ବା କୁତ୍ସାରଟନା କରୁ ନଥିଲେ । ବରଂ ଅନ୍ୟଠାରୁ ଗୁଣ ଖୋଜୁଥିଲେ ଓ ଛାତ୍ର ଜୀବନରୁ ଅଧ୍ୟବସାୟୀ ଥିଲେ । ସେ ଜଣେ ସମ୍ବେଦନଶୀଳ, ଅମାୟିକ ସମସ୍ତଙ୍କ ପ୍ରତି ହିତାକାଙ୍କ୍ଷୀ ମଣିଷ । ସେ ପୁରାପୁରି ନିଃସ୍ୱାର୍ଥପର ଥିଲେ ଓ ଅପରଠୁ ଗୁଣ ହିଁ ଖୋଜୁଥିଲେ । ଅସଦ୍‌ଗୁଣ ଓ ଅନୈତିକତାକୁ ସେ ଘୃଣା କରୁଥିଲେ ଓ ନିଜକୁ ସବୁବେଳେ ଛାତ୍ରଭାବରେ ମନେକରୁଥିଲେ । ସମସ୍ତଙ୍କଠାରୁ ଓ ସବୁଠୁ ସେ ନୂଆ କିଛି ଦେଖିବାକୁ ଓ ଶିଖିବାକୁ ଇଚ୍ଛା କରୁଥିଲେ ।

ସେ ଅନ୍ୟର ଦୁଃଖରେ ଯେମିତି କାନ୍ଦି ପକାଉଥିଲେ ସେମିତି ପ୍ରତିଭାବାନମାନଙ୍କୁ ଉପଯୁକ୍ତ ସମ୍ମାନ ଦେବାକୁ ପଛାଉ ନଥିଲେ । ସେଥିପାଇଁ ସେ ଚିହ୍ନି ନଥିବା ଚେସ୍ ଖେଳାଳିର ସମଦୁଃଖରେ ଦୁଃଖୀ ହୋଇ ଆର୍ଥିକ ସାହାଯ୍ୟ ଦେଇଥିଲେ, ତତ୍କାଳିନ ଆଦର୍ଶବାଦୀ ପ୍ରଧାନମନ୍ତ୍ରୀ ଲାଲବାହାଦୁର ଶାସ୍ତ୍ରୀଙ୍କ ଅକାଳ ମୃତ୍ୟୁରେ ଭୋ ଭୋ ହୋଇ କାନ୍ଦି ଉଠିଥିଲେ ତ ବୈଷ୍ଣବ ପାଣିଙ୍କ ପ୍ରଶଂସାରେ ଶତଜିହ୍ୱା ହୋଇ ଉଠୁଥିଲେ ।

ଜୀବନର ବିଭିନ୍ନ ଝଡ-ଝଞ୍ଜା ଦେଇ ଗତି କଲେ ମଧ୍ୟ ସେ ନିଜ ଆଦର୍ଶ ଓ ନୀତିକୁ କେବେହେଲେ ହତ୍ୟା କରି ନଥିଲେ । ଅବସର ଗ୍ରହଣ ପରେ ସେ ରୋଗଗ୍ରସ୍ତ ହୋଇପଡିଲେ ଏବଂ ସେତିକିବେଳେ ତାଙ୍କୁ ବହୁ ଆର୍ଥିକ ଦୁରାବସ୍ଥା ଦେଇ ଗତି କରିବାକୁ ହେଉଥିଲା । ତତ୍କାଳୀନ ମୁଖ୍ୟମନ୍ତ୍ରୀ ଶ୍ରୀମତୀ ନନ୍ଦିନୀ ଶତପଥୀ ଏବଂ ବିଶିଷ୍ଟ ସାହିତ୍ୟିକ ତଥା ତତ୍କାଳୀନ ଉଚ୍ଚପଦସ୍ଥ ପ୍ରଶାସକ ରମାକାନ୍ତ ରଥ ସାହିତ୍ୟିକ ବାମାଚରଣଙ୍କୁ ସରକାରଙ୍କ ତରଫରୁ ଆର୍ଥିକ ସାହାଯ୍ୟ ଦେବାକୁ ଯାଇଥିଲେ । ମାତ୍ର ଆଦର୍ଶବାନ୍ ବାମାଚରଣଙ୍କର ସ୍ଥିତି ଯଦିଓ ସେତେବେଳେ ଆର୍ଥିକ ଦୁରାବସ୍ଥାର ଝଞ୍ଜାର ଆଘାତରେ ଦୋଦୁଲ୍ୟମାନ ହେଉଥିଲା ତଥାପି ସେ ଦାନକୁ ବିନମ୍ରତାର ସହିତ ପ୍ରତ୍ୟାଖ୍ୟାନ କରିଥିଲେ । ତାଙ୍କର ସେହି ପ୍ରକାର ତ୍ୟାଗ ଓ ଆଦର୍ଶର ସନ୍ଦର୍ଶନରେ ଉଦ୍‌ବୋଧିତ ହୋଇ ବିଶିଷ୍ଟ ସାହିତ୍ୟିକ ରାଜକିଶୋର ମହାନ୍ତି 'ଉପକଥାର ନାୟକ' ଗଳ୍ପଟିକୁ ରଚନା କରିଥିଲେ । ସେ ନିଜର ସ୍ୱାର୍ଥ ପାଇଁ କେବେ ଲଢୁ ନଥିଲେ ବା ସାହିତ୍ୟ ପୁରସ୍କାର ପାଇଁ କେବେ ଉଦ୍‌ଯୋଗ ବି କରୁ ନଥିଲେ । ସବୁକୁ ସେ ଈଶ୍ୱରଙ୍କ ଇଚ୍ଛା ଭାବରେ ଗ୍ରହଣ କରିନେଇଥିଲେ । ତାଙ୍କର ଦୃଢ଼ ବିଶ୍ୱାସ ଥିଲେ ଯେ ଈଶ୍ୱରଙ୍କ ଦୟା ହେଲେ ସାଧନା ସଫଳ ହୁଏ ।

ସେ ଥିଲେ ନିରାସକ୍ତ ମୁନି । କାରଣ ଋଷି ଗତାନୁଗତିକ ଧର୍ମକୁ ଅନୁସରଣ କରନ୍ତି, କିନ୍ତୁ ମୁନି ସ୍ୱାଧୀନ ଚିନ୍ତା ଦେଇ ସବୁ ବିଚାର କରିଥାନ୍ତି ।



Digitized by srujanika@gmail.com

### ପାରିବାରିକ ଜୀବନ

ବାମାବାବୁ ଚାକିରି କରିବା ପୂର୍ବରୁ ତାଙ୍କର ବାପାଙ୍କର ଦେହାନ୍ତ ହୋଇଯାଇଥିଲା । ସେ ତାଙ୍କ ମା' ଏବଂ ବନ୍ଧୁବାନ୍ଧବମାନଙ୍କୁ ଅତି ଗଭୀର ଭାବରେ ଭଲପାଉଥିଲେ । ତାଙ୍କ ଜୀବନ କକ୍ଷରେ ଅନ୍ୟ କୌଣସି ନାରୀଙ୍କର ଅନୁପ୍ରବେଶ ଘଟି ନଥିଲା । ସେ ତାଙ୍କର ସ୍ତ୍ରୀଙ୍କୁ ଗଭୀର ଭାବରେ ଭଲପାଉଥିଲେ । ତାଙ୍କର ସ୍ତ୍ରୀ ସାହିତ୍ୟିକ ସ୍ୱାମୀଟିକୁ ତାଙ୍କ ସାହିତ୍ୟ ସାଧନାରେ ଛାଡିଦେଇ ନିଜେ ସମସ୍ତ ପରିବାରର ଗୁରୁଭାରକୁ ଆପେ ଆପେ ମୁଣ୍ଡେଇ ନେଇଥିଲେ । ହୁଏତ ପ୍ରତିଭା ମିତ୍ରଙ୍କ ପରି ସହଧର୍ମିଣୀ ଓ ସହକର୍ମିଣୀଟିଏ ପାଇ ନଥିଲେ ସାହିତ୍ୟିକ ବାମାଚରଣଙ୍କ ସାହିତ୍ୟ ସାଧନାର ମୋଡ କି ରୂପ ନେଇଥାନ୍ତା କିଏ ଜାଣିଛି ।

ବାମାଚରଣଙ୍କ ଜୀବନରେ ଧାର୍ମିକା ମା'ଙ୍କର ଆବିର୍ଭାବ ଏବଂ ସହନଶୀଳତା ସ୍ତ୍ରୀଙ୍କର ଅନୁପ୍ରବେଶ ତାଙ୍କ ଜୀବନକୁ ଗଭୀର ଭାବରେ ପ୍ରଭାବିତ କରିପାରିଥିଲା । ସେ କେବଳ ତାଙ୍କ ମା'ଙ୍କୁ ସମ୍ମାନ କରିନ୍ତି ତାହା ନୁହେଁ, ବରଂ ସମଗ୍ର ନାରୀ ଜାତି ପ୍ରତି ତାଙ୍କର ଗଭୀର ସମ୍ମାନବୋଧ ରହିଥିଲା । ସେଥିପାଇଁ ଯୌବନରେ ମନେ ମନେ ପ୍ରେମ କରିବାକୁ ଯାଇ ସେ ସଙ୍କୋଚବଶତଃ ପ୍ରକାଶ କରିପାରି ନଥିଲେ । ଯାହାର ସ୍ୱରୂପ ତାଙ୍କର ଗଳ୍ପ 'ମହାଯୁଦ୍ଧ'ରେ ଅତି ସୁନ୍ଦର ଭାବରେ ରୂପ ପାଇଛି ।

ତାଙ୍କର ତିନି ପୁଅ ଓ ଦୁଇ ଝିଅ ଅଛନ୍ତି । ସାହିତ୍ୟିକ ବାମାଚରଣ ତାଙ୍କ ସନ୍ତାନମାନଙ୍କର ନିଜେ ନାମକରଣ କରିଥିଲେ ଓ ସେହି ନାମକରଣ ମଧ୍ୟରୁ ତାଙ୍କ ସାହିତ୍ୟିକ ମନର ପରିଚୟ ମିଳିଥାଏ ।

ବଡପୁଅ ଶ୍ରୀମାନ ଚନ୍ଦ୍ରମୌଳି ମିତ୍ର ବର୍ତ୍ତମାନ ଡାକ୍ତର, ଦ୍ୱିତୀୟ ପୁତ୍ର ତ୍ୱିଷାନ୍‌ପତି ଓ ତୃତୀୟ ପୁତ୍ର ମନ୍ୟୁମାନ ଓ ଦୁଇ ଝିଅ ସଂଘମିତ୍ରା ଓ ବସୁମିତ୍ରା । ସମସ୍ତେ ଆଜି ନିଜ ନିଜ କର୍ମକ୍ଷେତ୍ରରେ ସୁପ୍ରତିଷ୍ଠିତ ଓ ଝିଅ ଦୁହେଁ ଉଚ୍ଚଶିକ୍ଷିତା ଓ ସୁଗୃହିଣୀ ।

### ଲେଖାଲେଖି ସମୟ

ରାତ୍ରିର ବିଳମ୍ବିତ ପ୍ରହରରେ ସେ ଲେଖାଲେଖି କରନ୍ତି । ବିଶେଷତଃ ରାତି ଦଶଟା ପରେ ସେ ତାଙ୍କର ଲେଖକ ଜୀବନର ପରିଧି ଭିତରେ ବିଚରଣ କରନ୍ତି (ସାକ୍ଷାତକାରରେ ଏହି ମୂଲ୍ୟବାନ ତଥ୍ୟ ଶ୍ରୀମତୀ ମିତ୍ର ପ୍ରକାଶ କରିଥିଲେ) ।



Digitized by srujanika@gmail.com

### ମୃତ୍ୟୁ ଓ ଶେଷ ଅଭିଳାଷ

ଶେଷ ବେଳକୁ ସେ ବ୍ରୋଙ୍କାଇଟିସ୍ ଓ ହୃଦ୍ ରୋଗରେ ଆକ୍ରାନ୍ତ ହୋଇପଡ଼ିଲେ । ନିଃଶ୍ୱାସ ନେବାରେ କଷ୍ଟ ହେଉଥିବାରୁ ତାଙ୍କୁ ବାରମ୍ବାର ଅକ୍ସିଜେନ ଦିଆଯାଉଥାଏ । ଶେଷରେ ସେ ହୃଦ୍‌ରୋଗର ଶିକାର ହୋଇ ଶେଷ ନିଃଶ୍ୱାସ ତ୍ୟାଗ କଲେ । ଯୀଶୁ, ବିବେକାନନ୍ଦ, ରବୀନ୍ଦ୍ରନାଥଙ୍କ ଛବି ସହିତ ତାଙ୍କ ଘର ବାରଣ୍ଡାରେ ଟଙ୍କା ହୋଇଥାଏ ବ୍ୟଙ୍ଗାତ୍ମକ ଅଭିନେତା ଚାର୍ଲି ଚାପ୍‌ଲିନ୍‌ଙ୍କର ଛବି । ଶୋଇବା ଘରୁ ଉଠିଆସି ଏ ସବୁ ଛବି ଆଗରେ ସେ ଶେଷ ନିଃଶ୍ୱାସ ତ୍ୟାଗ କରିଥିଲେ ।

ତାଙ୍କର ତିନୋଟି ଅନ୍ତିମ ଅଭିଳାଷ ଥିଲା । ପ୍ରଥମତଃ ମୃତ୍ୟୁବେଳକୁ ଭାଗବତ ଶୁଣିବା ଓ ଦ୍ୱିତୀୟରେ ତାଙ୍କ ସ୍ତ୍ରୀ ହାତରୁ ଚୁଡ଼ି ନ ଓହ୍ଲାଇବା ଓ ତାଙ୍କର ଦଶାହ କର୍ମରେ ବ୍ରାହ୍ମଣ ଭୋଜନ ନ କରାଇ କୁଷ୍ଠରୋଗୀମାନଙ୍କୁ ମନଭରି ଖୁଆଇବା । ଏହା ମାଧ୍ୟମରେ ଗୋଟିଏ ମାନବବାଦୀ ସାହିତ୍ୟ ଶିଳ୍ପୀର ହୃଦୟବତ୍ତାକୁ ସହଜରେ ଅନୁଭବ କରିହୁଏ ।

ପର ଦୁଃଖରେ ଦୁଃଖୀ ଓ ପର ସୁଖସୌଭାଗ୍ୟରେ ସେ ଆନନ୍ଦିତ ହେଉଥିଲେ । ସେ ଉଚ୍ଚ ପଦବୀରେ ରହିଥିଲେ ବି ତଳିଆ କର୍ମଚାରୀ ଯଦି ତାଙ୍କର କୌଣସି ଭୁଲ ଦେଖାଇ ଦେଉଥିଲେ ତେବେ ସେ କୃତ୍ୟ କୃତ୍ୟ ହୋଇ ଧନ୍ୟବାଦ ଜଣାଉଥିଲେ ।

ମାତ୍ର ୬୦ ବର୍ଷ ବୟସରେ ଫେବୃଆରୀ ୨୧ ତାରିଖ ଭୌମୀ ଏକାଦଶୀର ପୂର୍ବ ଦଶମୀ ୧୯୭୫ ମସିହାରେ ସେ ସେପୁରକୁ ଚାଲିଯାଇଥିଲେ । ସେଦିନଟି ଦୀକ୍ଷା ଗ୍ରହଣ, ନବାହ୍ନ, ଅନ୍ନପ୍ରାଶନ, ନାମକରଣ, ନିଷ୍କ୍ରମଣ, ଔଷଧିକରଣ, ରାଜଦର୍ଶନ, ଗୃହାରମ୍ଭ ଓ ଗୃହପ୍ରବେଶ ପ୍ରଭୃତି ଶୁଭ କାର୍ଯ୍ୟ ପାଇଁ ଗୋଟିଏ ଶୁଭଦିନ ଥିଲା ଓ ସେହିପରି ଏ ଶୁଭଦିନରେ ବାମାବାବୁଙ୍କର ଜୀବନର ଦୀପଶିଖା ଚିରଦିନ ପାଇଁ ଲିଭିଯାଇଥିଲା ।

ମହାମହିମ ଗିରିଶୃଙ୍ଗ ପାରିପବନର ଅତ୍ୟାଚାର ସହିବା ପରି ସେ ସବୁ ଉପେକ୍ଷା, ଅବଜ୍ଞା ଓ ଅଭାବକୁ ସହ୍ୟ କରି ଲେଖାଲେଖି ଅବ୍ୟାହତ ରଖିଥିଲେ । ଯେଉଁ ଓଡ଼ିଆ ସାହିତ୍ୟକୁ ସେ ଦୀର୍ଘ ପଚିଶ ବର୍ଷ ହେଲା ସେବା କରିଥିଲେ ସେ ସାହିତ୍ୟ ତାଙ୍କୁ କ'ଣ ବା ଦେଲା ? ବଡ ଦୁଃଖର କଥା ଯେ ତାଙ୍କର ଶବ ଶୋଭାଯାତ୍ରା ହେବା ତ ଦୂରର କଥା ବରଂ ତାଙ୍କ ପରି ଜଣେ ଲବ୍ଧ ପ୍ରତିଷ୍ଠିତ ସାହିତ୍ୟିକଙ୍କ ଶବ ମାତ୍ର ଚାରିପାଞ୍ଚ ଜଣ ଶବବାହକଙ୍କ ଦ୍ୱାରା ବୁହା ହୋଇ ଯାଇଥିଲା । ହୁଏତ



Digitized by srujanika@gmail.com

ତାଙ୍କର ଉଦାର ଆତ୍ମା ଓଡ଼ିଆମାନଙ୍କୁ ଏଥିପାଇଁ କ୍ଷମା ଦେଇଥିବ । କାରଣ ସେ ଅନ୍ତତଃ ତାଙ୍କର ନିଜ ଶବ ପାଇଁ ଶୋଭାଯାତ୍ରାର ଆୟୋଜନକୁ ନାପସନ୍ଦ କରୁଥିଲେ । ମାତ୍ର ବିଶିଷ୍ଟ ସାହିତ୍ୟିକ ଚନ୍ଦ୍ରଶେଖର ରଥଙ୍କ ମନରେ ବାମାବାବୁଙ୍କ ପ୍ରତି ଓଡ଼ିଆମାନଙ୍କର ଉଦାସୀନତା ପାଇଁ ଦାରୁଣ ଆଘାତ ଲାଗିଛି । ସେ ତାଙ୍କର ଶାଣଦିଆ କଣ୍ଠରେ କହନ୍ତି ଯେ, ଓଡ଼ିଆମାନେ ବହୁତ କଲେ, ପତ୍ରିକାରେ ଲେଖା ଛପେଇଦେଲେ, ଖୁବ୍ ପ୍ରଶଂସାପତ୍ର ଦେଲେ, ବହୁତ ଚିହ୍ନିଲେ ଓ ସମ୍ମାନ ଦେଲେ, ଆଉ ବା କ'ଣ କରିଥାନ୍ତେ ? ବର୍ଷେ ଦି ବର୍ଷ ଶ୍ରାଦ୍ଧବାସରୀୟ ଲେଖା ଦୁଇଟି ଛପେଇଦେଲେ ବାମାବାବୁଙ୍କ ପ୍ରାପ୍ୟ ପାଇଯିବେ ।

**ସାହିତ୍ୟ ସୃଷ୍ଟିର ପୃଷ୍ଠଭୂମି**

ସ୍କୁଲ, କଲେଜ ଜୀବନରୁ ବାମାଚରଣ ମିଷ୍ଟାଳାପ ଓ ବନ୍ଧୁପ୍ରିୟ ଥିଲେ । ସାହିତ୍ୟ, ସଙ୍ଗୀତ, କ୍ରୀଡା ପ୍ରଭୃତିରେ ତାଙ୍କର ଗଭୀର ଅନୁରକ୍ତି ଥିଲା । ତେଣୁ ସେହି ଦୃଷ୍ଟିରୁ ତାଙ୍କର ସମଗୁଣ ସମ୍ପନ୍ନ ଅନେକ ବନ୍ଧୁ ଥିଲେ । ବିଶେଷତଃ ତାଙ୍କର ଘନିଷ୍ଠ ସାହିତ୍ୟିକ ବନ୍ଧୁ ଶ୍ରୀ ଜ୍ୟୋତିରିନ୍ଦ୍ର ମୋହନ ଜୋଆରଦାରଙ୍କର ଉତ୍ସାହ ଓ ପ୍ରେରଣା ଦ୍ୱାରା ବାମାଚରଣଙ୍କର ସାହିତ୍ୟିକ ଜୀବନ ଅୟମାରମ୍ଭ ହୋଇଥିଲା । ବନ୍ଧୁ ଜୋଆରଦାର ମଧ୍ୟ ଜଣେ ଉଚ୍ଚକୋଟୀର ଅନୁବାଦକ । ତାଙ୍କର ବନ୍ଧୁ ଗଳ୍ପକୁ ପରବର୍ତ୍ତୀ ସମୟରେ ସେ ଇଂରାଜୀ ଓ ବଙ୍ଗଳାରେ ଅନୁବାଦ କରିଛନ୍ତି । "Bamacharan on Life and Art" ମଧ୍ୟ ତାଙ୍କର ଅନ୍ୟତମ କୃତି ଯାହା କେନ୍ଦ୍ର ସାହିତ୍ୟ ଏକାଡେମୀର ମୁଖପତ୍ର Indian Literature ରେ ପ୍ରକାଶ ପାଇଛି । ଏହାଛଡା ତାଙ୍କର ଚେସ୍ କ୍ଲବ ବା ବ୍ରଜସୁନ୍ଦରବାବୁଙ୍କ ମୁକୁର ପ୍ରେସକୁ ମଧ୍ୟ ଓଡ଼ିଶାର ଲବ୍ଧପ୍ରତିଷ୍ଠ ସାହିତ୍ୟିକମାନେ ଆସନ୍ତି । ସେଠାରେ ଉଭୟ ରାଜନୀତି ଓ ସାହିତ୍ୟ ଚର୍ଚ୍ଚା ହୁଏ । ତେଣୁ ଏ ଦୃଷ୍ଟିରୁ ବାମାବାବୁଙ୍କର ସାହିତ୍ୟ ପ୍ରତି ଅହେତୁକ ଶ୍ରଦ୍ଧା ଜାତ ହେବା ସ୍ୱାଭାବିକ ଥିଲା । ସେ ଛାତ୍ର ସମୟରୁ ଅଧ୍ୟବସାୟୀ ଥିଲା । ସେ ଉଭୟ ପ୍ରାଚ୍ୟ, ପାଶ୍ଚାତ୍ୟ, ସାହିତ୍ୟ-ଦର୍ଶନ, ପୁରାଣ, ରାଜନୀତି, ଅର୍ଥନୀତି ସବୁକୁ ତନ୍ନ ତନ୍ନ କରି କେବଳ ପଢ଼ି ନ ଥିଲେ ହଜମ ବି କରିଥିଲେ ।

ପ୍ରଥମେ ସେ ଇଂରାଜୀ Arthur Conan Doyel ଙ୍କର ବହିମାନଙ୍କର ଅନୁକରଣରେ ଲେଖିବା ଆରମ୍ଭ କରିଥିଲେ । ଅର୍ଥର ଯେମିତି ଗଳ୍ପ ଲେଖନ୍ତି ଏବଂ ଠାଏ ଠାଏ ମଣିଷ ଚରିତ୍ର ଓ ମଣିଷ ଜୀବନ ଉପରେ ଗଭୀର ମନ୍ତବ୍ୟ ଦିଅନ୍ତି, ସେହିପରି ବାମାବାବୁଙ୍କର ପସନ୍ଦ ଥିଲା ଏବଂ ସେ ବି ସେହି ପ୍ରକାର



Digitized by srujanika@gmail.com

ଲେଖା ଲେଖିବାକୁ ଚେଷ୍ଟା କରିଥିଲେ । ବଙ୍ଗଳାର ରବୀନ୍ଦ୍ରନାଥ ଠାକୁର ଓ ସୁକୁମାର ରାୟ (ଶିଶୁ ସାହିତ୍ୟିକ), ସତ୍ୟଜିତ ରାୟ (ଚଳଚ୍ଚିତ୍ର ନିର୍ଦ୍ଦେଶକ), ରାଜ ଶେଖର ବୋଷ (ବଙ୍ଗଳା) ଇତ୍ୟାଦିଙ୍କର ପ୍ରଭାବ ତାଙ୍କ ଉପରେ ପଡିଥିଲା ।

ତେବେ ତାଙ୍କ ସାହିତ୍ୟିକ ପ୍ରତିଭାର ଉନ୍ମେଷ ସମ୍ପର୍କରେ ସେ ନିଜେ ନିଜ ହାତ ଲେଖାରେ ଲେଖିଛନ୍ତି–

"କବିଗୁରୁ ରବୀନ୍ଦ୍ର ନାଥ କହିଛନ୍ତି, ସାହିତ୍ୟ ଓ ଲାଙ୍ଗୁଡ଼ ଭିତରେ ନଥିଲେ କେହି ଭିଡିଓଟାରି ବାହାର କରିପାରିବେନାହିଁ । ପଢ଼ି ମନରେ କଷ୍ଟ ହୋଇଥିଲା । ଭାବି ଯେ କବିଙ୍କ ଭିତରେ ଯିଏ ଋଷି ସେ ପୁଣି ମୋତେ ଥଟ୍ଟା କରି ଏମିତି ଲେଖିଲେ । ହେଲେ, ମୋର ପ୍ରିୟ ସୁହୃଦ୍ ସାହିତ୍ୟ ରସିକ ଶ୍ରୀ ଜ୍ୟୋତିରିନ୍ଦ୍ର ମୋହନ ଜୋଆରଦାର, ମୋର 'ଓସ୍ତାଦଜୀ' ତାଙ୍କର ଅଣୁବୀକ୍ଷଣ ସାହାଯ୍ୟରେ ଦେଖିଲେ ଯେ ମୋ ଭିତରେ ବକଟେ ଦିଶୁଛି । 'ଭାଲିଆ ଭାଲିଆ' ପଦ ବୋଲି ସେ ବକଟକ ସେ ବାହାର କଲେ । ଆଉ ମହାଖୁସିରେ ସେ ବକଟକ ଟେକି ଯେତେବେଳେ ମୁଁ ପ୍ରଥମ କୁଦା ମାରିଲି ସାହିତ୍ୟ ବୃକ୍ଷର ଡିଟେକ୍ଟିଭ ଶାଖାକୁ ସେତେବେଳେ 'ଉସ୍ତାଦଜୀ' ଖୁସିରେ କହିଲେ ବାଃ ବାଃ ।

ତାଙ୍କୁଇ ମୁଁ ମୋର 'ଗୁପ୍ତ ମଣିଷ' ଦେଲି, ଦିଅଁ ଗଢୁ ଗଢୁ ଯଦି ମାଙ୍କଡ଼ ଗଢ଼ିଥାଏ ତ ତା ତାଙ୍କୁ ଲଗା' ।

ପ୍ରଥମ କରି 'କୀର୍ତ୍ତିଯସ୍ୟ' ଓ 'ନର ଛଞ୍ଚାଣ' ଦୁଇଟି ମନସ୍ତତ୍ତ୍ୱମୂଳକ ରହସ୍ୟ ରୋମାଞ୍ଚ ବହି ଲେଖି ସେ ୧୯୫୦ ମସିହାରେ ଜଣେ ଲେଖକ ଭାବରେ ପରିଚିତ ହୋଇଥିଲେ । ସେ ଭାବୁଥିଲେ ଯେ ତାଙ୍କର ବନ୍ଧୁ ସ୍ୱର୍ଗତ ଆଶୁତୋଷ ରାୟଙ୍କ ପରି କେବଳ ରହସ୍ୟ ରୋମାଞ୍ଚ ବହି ଲେଖିବେ । ମାତ୍ର ତାଙ୍କ ଅଜାଣତରେ ତାଙ୍କ ଭିତରେ ଯେ ଗୋଟିଏ ମାନବବାଦୀ ଲେଖକ ଛପି ରହିଥିଲା, ଏହା ହୁଏତ ତାଙ୍କୁ ଜଣା ନଥିଲା ।

ବାମାଚରଣଙ୍କର ସାହିତ୍ୟିକ ପ୍ରତିଭାର ଉନ୍ମେଷ ପାଇଁ ତାଙ୍କର ଗଭୀର ଅଧ୍ୟବସାୟ ଓ ଅନୁଭୂତି ଜଡିତ ଥିଲା । ଉଭୟ ପ୍ରାଚ୍ୟ ଓ ପାଶ୍ଚାତ୍ୟ ସାହିତ୍ୟ ଦର୍ଶନକୁ ସେ ଗଭୀର ଭାବରେ ଅଧ୍ୟୟନ କରୁଥିଲେ । କାମ୍ୟୁ, ସାର୍ତ୍ରେ, କାଫ୍‌କା, ରିବେଲ, ଆଁଘାଷ୍ଟ, ଅଲିନିଏସନ୍, ବୌଦ୍ଧ, ସାଂଖ୍ୟ, ଗୀତା, ଭାଗବତ, ବାଇବେଲ, କୋରାନ୍, କାଣ୍ଟ, ହେଗେଲ, ଅରବିନ୍ଦ ଦର୍ଶନ ଇତ୍ୟାଦି ଭିତରକୁ ସେ ଗଭୀର ଭାବରେ ପ୍ରବେଶ କରିଥିଲେ, ଯାହାକି ତାଙ୍କର ସାହିତ୍ୟକୃତି ମାଧ୍ୟମରେ ବେଶ୍ ସ୍ପଷ୍ଟ ହୋଇଉଠେ ।



Digitized by srujanika@gmail.com

୧୯୫୦ ମସିହାରେ ତାଙ୍କର ପ୍ରଥମ କ୍ଷୁଦ୍ରଗଳ୍ପ 'ମହାଯୁଦ୍ଧ' ଯେତେବେଳେ ପ୍ରଜାତନ୍ତ୍ର ପ୍ରଚାର ସମିତି ତରଫରୁ ହୋଇଥିବା ପ୍ରଥମ ଗଳ୍ପ ପ୍ରତିଯୋଗିତାରେ ପ୍ରଥମ ହୋଇ ପୁରସ୍କୃତ ହୋଇଥିଲା, ସେତେବେଳର ଯୁବପିଢ଼ିଇର ଗାଳ୍ପିକମାନଙ୍କ ମଧ୍ୟରେ ସେ ଜଣାଶୁଣା ହୋଇନଥିଲେ । ତେବେ, ତା'ପରେ ସେ ନିୟମିତ 'ଝଙ୍କାର' ଓ 'ପ୍ରଜାତନ୍ତ୍ର'ରେ ଲେଖାଲେଖି କରି ପ୍ରତିଷ୍ଠା ଅର୍ଜନ କରିଥିଲେ । ସ୍ୱର୍ଗୀୟ ମିତ୍ରଙ୍କର ଲେଖା 'ଝଙ୍କାର'ରେ ପ୍ରକାଶ ନ ପାଉଥିଲେ ବିଭିନ୍ନ ମହଲରୁ ଅଭିଯୋଗ ହେଉଥିଲା ଓ ତାଙ୍କର ଏକ ସ୍ୱତନ୍ତ୍ର ପାଠକଗୋଷ୍ଠୀ ଥିଲା ।

ବିଶିଷ୍ଟ ସାହିତ୍ୟିକ ଗୋପୀନାଥ ମହାନ୍ତିଙ୍କ ସହିତ ବାମାବାବୁଙ୍କର ଘନିଷ୍ଠ ପରିଚୟ ତାଙ୍କର ପ୍ରଥମ କ୍ଷୁଦ୍ରଗଳ୍ପ 'ମହାଯୁଦ୍ଧ' ପୁରସ୍କୃତ ହେବା ପରେ ହୋଇଥିଲା । ନିଜ ଲେଖାର ଉତ୍କର୍ଷ କିପରି ବଢ଼ିବ ସେଥିପାଇଁ ବାମାବାବୁଙ୍କର ଉଦ୍ୟମ, ଅଭ୍ୟାସ ଓ ଅଧ୍ୟୟନ ଅବ୍ୟାହତ ରହିଥିଲା ଓ ଲେଖକଟିଏ ଦେଖିଲେ ସେ ଆଗ୍ରହର ସହିତ ସାହିତ୍ୟ ଆଲୋଚନା କରିବାକୁ ଆଗେଇ ଆସୁଥିଲେ । ସାହିତ୍ୟ ସୃଷ୍ଟି ପାଇଁ ତାଙ୍କର ଏ ପ୍ରକାର ଆବେଗ, ଉଦ୍ୟମ, ଅବିରତ ଚେଷ୍ଟା ଓ ଅନୁଶୀଳନ ଆଜୀବନ ରହିଥିଲା ଓ ୧୯୫୩ ମସିହା ବେଳକୁ ସେ ଜଣେ କ୍ଷୁଦ୍ରଗଳ୍ପ ଲେଖକ ଭାବରେ ପ୍ରତିଷ୍ଠିତ ହୋଇସାରିଥିଲେ ।

ସାହିତ୍ୟର ପ୍ରତି ବିଭାଗରେ ବାମାଚରଣ ଲେଖନୀ ଚାଳନା କରିଥିଲେ ହେଁ କ୍ଷୁଦ୍ରଗଳ୍ପ ଉପରେ ସେ ଅଧିକ ଗୁରୁତ୍ୱ ଆରୋପ କରିଥିଲେ । ତାଙ୍କର କ୍ଷୁଦ୍ରଗଳ୍ପଗୁଡ଼ିକରେ ଆଦର୍ଶ ତଥା ନୈତିକତା ସ୍ପଷ୍ଟ ଚିତ୍ର ଅଙ୍କିତ ହୋଇଅଛି । ଆଧୁନିକ ଜଟିଳ ଜଞ୍ଜାଳ ଜୀବନ ପାଇଁ କ୍ଷୁଦ୍ରଗଳ୍ପ ଯେ ଏକମାତ୍ର ମାଧ୍ୟମ ସେ ଭଲଭାବରେ ବୁଝିପାରିଥିଲେ ଓ ସେଇଥିପାଇଁ ଓଡ଼ିଆ କ୍ଷୁଦ୍ରଗଳ୍ପ ପ୍ରତି ଜୀବନରେ ତାଙ୍କର ଗୋଟିଏ ବଡ ଆସକ୍ତି ଆସିଯାଇଥିଲା । ୧୯୬୯ ରୁ ୧୯୭୩ ମଧ୍ୟରେ ପ୍ରକାଶିତ ପୁସ୍ତକ-'ଏଣୁଣ୍ଡ ତେଣୁଣ୍ଡ'ପାଇଁ ତାଙ୍କୁ ଓଡ଼ିଶା ସାହିତ୍ୟ ଅକାଦେମି ମରଣୋତ୍ତର ପୁରସ୍କାର ୧୯୭୭ରେ ପ୍ରଦାନ ହୋଇଥିଲା । ମଣିଷ ଚରିତ୍ର ସମ୍ପର୍କରେ ତାଙ୍କର ଗଭୀର ଗବେଷଣା ଓ ଧ୍ୟାନ ରହିଥିବା ଯୋଗୁ ମଣିଷ ମନର ନାନାଦି ଦୋଷ, ଦୁର୍ବଳତା ଓ ତା'ର ଅନ୍ଧାରୀ ମନର ଗୋପନ କଥାକୁ ରୂପାୟିତ କରିବା ସଙ୍ଗେ ସଙ୍ଗେ ସେହି ନିରୀହ ମଣିଷଟି ପ୍ରତି ସେ ସମ୍ବେଦନଶୀଳ ହୋଇପଡ଼ିଛନ୍ତି । ଚାର୍ଲି ଚାପ୍‌ଲିନ୍‌ଙ୍କର ଚଳଚ୍ଚିତ୍ରଗୁଡ଼ିକରେ କରୁଣ ହସ ମଧ୍ୟ ଦେଇ ନାନା ଦୋଷ, ଦୁର୍ବଳତା ପୂର୍ଣ୍ଣ ସାଧାରଣ ମଣିଷ ପ୍ରତି ତାଙ୍କର ଯେଉଁ ଗଭୀର ସମବେଦନା ପ୍ରକାଶ ପାଇଥାଏ, ତାହାକୁ ବି ବାମାଚରଣ ନିଜ ସାହିତ୍ୟରେ ରୂପ ଦେଇଛନ୍ତି ।

ଶ୍ରୀ



Digitized by srujanika@gmail.com

# ଛିନ୍ନ ପୃଷ୍ଠା

## ପ୍ରାଣବନ୍ଧୁ କର

ଦ୍ୱିଜବର ଓରଫ୍ ଦିଜ ବହୁ ବର୍ଷ ହେଲା ଏ ଦୁନିଆଁ ଛାଡି ଚାଲିଯାଇଛି । କିନ୍ତୁ ମୋର ସ୍ମୃତି ବହୁଳ ସତ୍ତା ଭିତରେ ସେ ଏକ ସ୍ୱତନ୍ତ୍ର ଚରିତ୍ର ଆଉ ବ୍ୟକ୍ତିତ୍ୱ, ଯାହାର ଘଟ ଭିତରେ ଆମ ଘରର ଚାକର ଦିଜର ବ୍ୟକ୍ତିସତ୍ତା ପଶିଯାଇଥିଲା ମାତ୍ର କେଇଘଣ୍ଟା ପାଇଁ ସେଇ ଦୁର୍ଦ୍ଦାନ୍ତ ଓ ଅସ୍ଥିର ବ୍ୟକ୍ତିଟି ମୋର ଅନ୍ତରଙ୍ଗ ବନ୍ଧୁ 'ବାଉଲ୍' ଅର୍ଥାତ୍ ବାମାଚରଣ । ସେ ବି ଅନେକ ଦିନ ହେଲା ବାର୍ଦ୍ଧକ୍ୟ ପ୍ରପୀଡନକୁ ଆଡେଇ ଚାଲିଯାଇଛି । ଅନେକ ସମୟରେ 'ବାଉଲ୍' କଥା ମୋର ମନେ ପଡିଲେ ଦିନର ମୁହଁଟା ଭାସି ଉଠେ ମୋ ଆଖି ଆଗରେ ଏବଂ ମାତ୍ର କେଇଟି ମୁହୂର୍ତ୍ତ ମଧ୍ୟରେ ବାଉଲ୍ ଓ ଦ୍ୱିଜ ମିଶି ଏକାକାର ହୋଇଯାଆନ୍ତି । ଆଉ ତା'ପରେ ପରେ ଏକ ଯନ୍ତ୍ରଣା ଦାୟଦ ଅନୁଶୋଚନା ।

ଅଥଚ ଏବେ କେଇଦିନ ଏମିତି ଏକ ଘଟଣା ଘଟିଲା- ଘଟଣା ନକହି ବରଂ ଅଘଟଣ କହିଲେ ଠିକ୍ ହେବ ଯେତେବେଳେ ମୁଁ ନିଜକୁ ବିଡମ୍ବିତ ମନେ କରୁଥିଲି । ସୁଦୂର ଅତୀତର ସ୍ମୃତି ଗୁଡାକୁ ମୋର ଚେତନାର ସ୍ତରକୁ ଟାଣିଆଣୁଥିଲି



Digitized by srujanika@gmail.com

ଏଇ ବିଡମ୍ବିତ ଅବସ୍ଥାରୁ ମୁକ୍ତି ପାଇବା ପାଇଁ ଠିକ୍ ସେଇ ଅବସ୍ଥାରେ ବାଉଲ୍ କିମ୍ବା ଦିଜ କେହି ମୋର ଚେତନା ଗୁରୁ ହେଲେନି ।

ସେଦିନ ମାଟିନ ସୋରେ ଗୋଟିଏ ଇଂରେଜୀ ଚଳଚିତ୍ର ଦେଖିସାରି ବାହାରି ଆସୁଥିଲି ଶ୍ରୀୟା ସିନେମା ହଲ୍ ବାହାରକୁ । ହଠାତ୍ ମୋର ପାଖକୁ ଲାଗିଆସି ଜଣେ କହିଲେ କିରେ ଅଧ୍ୟାପକ, କଅଣ ମତେ ଚିହ୍ନି ପାରୁଚ ? ଚାହିଁଲି ଭଦ୍ରଲୋକଙ୍କ ଆଡେ ଆଖିରେ ମୋର ନଚିହ୍ନିପାରିବାର ଭାଷା । ଭଦ୍ରଲୋକ ହସି ହସି କହିଲେ ଚିହ୍ନି ପାରିଲୁନିତ ? ସମ୍ଭବ ବି ନୁହେଁ ତୋ ପକ୍ଷରେ । ମୁଁ ବେଶ୍ ମୋଟା ହୋଇଯାଇଚି-ଆଉ ତୁ ଯେମିତି ଥିଲୁ ବର୍ଷତଳେ ଠିକ୍ ସେମିତି ଅଛୁ । ଏ ବିରାଟ ବ୍ୟବଧାନ ଭିତରେ ଆମେ ତ ଆଉ ଭେଟା ଭେଟି ହେଇନେ । ଅପ୍ରସ୍ତୁତ ହୋଇଯାଇ କହିଲି- କ୍ଷମା କରିବେ । ମୁଁ ଆପଣଙ୍କୁ ଆଦୌ ଚିହ୍ନି ପାରୁନି । ପଟ୍‌କରି ମୋ କାନ୍ଧରେ ହାତ ପକେଇ ଦେଇ ଭଦ୍ରଲୋକ କହିଲେ- ବାସ୍, ମୁଁ ତତେ ତୁ'ତା କହୁଚି ଆଉ ତୁ ମତେ ଆପଣ କହୁଛୁ ? ଆଚ୍ଛା ତୋର ବି.ଏ. କ୍ଲାସର ଚୁଟିଆ ଚଇତନ କଥା ମନେ ପଡୁଚି ? ତୁ ବି ବହୁତ ଥର ମୋ ଚୁଟି ଟାଣିଚୁ ।

ମନେ ପଡିଗଲା । କୁଣ୍ଢେଇ ପକେଇ କହିଲି- ଆରେ ! ତୁ ସେଇ ଚୁଟିଆ ଚଇତନ ? କେମିତି ଚିହ୍ନିବି କହିଲୁ ? ସେତେବେଳେ ଗୋଟେ ସ୍କେୟାର କ୍ରୋ ଥିଲୁ । ଅଥଚ କି ମୋଟା ହେଉଚୁ ତୁ ଏବେ ? କିଏ ? କଳାବଜାର ବ୍ୟବସାୟୀ ନା ଲାଞ୍ଚଖିଆ ଡିପାର୍ଟମେଣ୍ଟର ଅଫିସର ? ଚଇତନ କହିଲା- ଦିଟାରୁ କୋଉଟା ନୁହେଁ । ଚାଟର୍ଡ ଆକାଉଣ୍ଟାଟ୍ ପାଶ୍ କରି ପ୍ରାଇଭେଟ୍ ପ୍ରାକ୍ଟିସ୍ କରୁଥିଲି । ଏବେ ପୁଅ ପ୍ରାକ୍ଟିସ୍ କରୁଚି । ମୁଁ ଆଉ ପାରୁନି । ଆରେ ଧେତ୍ ତତେ ଦେଖି ମୁଁ ଗପରେ ମସଗୁଲ ଅଥଚ ହେଇ ସେଠି ଜଣେ ଭଦ୍ର ମହିଳା ତତେ ଭେଟିବାକୁ ଅପେକ୍ଷା କରିଛନ୍ତି । ଦେଖିଲି ପନ୍ଦର କୋଡିଏ ହାତ ଦୂରରେ ଜଣେ ବେଶ୍ ବୟସ୍କା ମହିଳା ଆମେ ଆଡେ ଚାହିଁ ମୁରୁକି ମୁରୁକି ହସୁଛନ୍ତି ।

ପଚାରିଲି ଚଇତନକୁ- ମତେ ଭେଟିବାକୁ ଅପେକ୍ଷା କରିଛନ୍ତି ? ଆଶ୍ଚର୍ଯ୍ୟ ତୋ ସ୍ତ୍ରୀକୁ ତ ମୁଁ କେବେ ଦେଖିନି ? ଚଇତନ ନଜାଣିଲା ଭଳି ଉତ୍ତର କଲା ମୁଁ କେମିତି ଜାଣିବି ? ଆମେ ହଲରୁ ବାହାରି ଆସୁ ଆସୁ ମୋତେ କହିଲେ-

ହେଇ ତମ କଲେଜ ସାଙ୍ଗ ପ୍ରଣବ ବାବୁ । ତୋ ଗଳ୍ପ ଏକାଂକିକାର ବଡ ଭକ୍ତ ତ- ଦେଖିଥିବେ ତତେ ସାହିତ୍ୟ ସଭାରେ ବକ୍ତୃତା ଦେଉଥିବାବେଳେ- ଆ- ।



Digitized by srujanika@gmail.com

ଚଇତନ ମୋ ହାତଧରି ଭିଡି ନେଇଗଲା ତା ସ୍ତ୍ରୀଙ୍କ ପାଖକୁ... ସେ ମତେ ନମସ୍କାର କଲେ- ମୁଁ ତାଙ୍କ ମୁହଁକୁ ବଲ ବଲ କରି ଚାହିଁ ପ୍ରତି ନମସ୍କାର କଲି । ଚଇତନ ତା ସ୍ତ୍ରୀଙ୍କୁ ସମ୍ବୋଧନ କରି କହିଲା- ହେଇ ନିଅ ତମ ପେଟ୍ ଲେଖକ ଅସାମୀଙ୍କୁ । ବ୍ୟସ୍ତ ହେଉ ପଡୁଥିଲ ତାଙ୍କୁ ଭେଟି ଆଳାପ ପରିଚୟ କରିବାକୁ । କର-ମୁଁ ଗୋଟାଏ ସିଗାରେଟ୍ ପ୍ୟାକେଟ୍ ଧରି ଆସୁଚି । ଏହା କହି ଚଇତନ ଚାଲିଗଲା । ମୁଁ କଥା ଆରମ୍ଭ କରିବା ଆଗରୁ ଚଇତନର ସ୍ତ୍ରୀ କହିଲେ- କଅଣ ? ମତେ କୋଉଠି ଦେଖିଲା ଭଳି ମନେ ପଡୁଚି ? ଉତ୍ତର ଦେଲି... ନା'ତ । ସେ କହିଲେ ଟିକେ ଚେଷ୍ଟା କରନ୍ତୁ ମନେ ପକେଇବାକୁ ।

-ଚେଷ୍ଟା କରୁଚି- କିନ୍ତୁ ମନେ ପଡୁନି...

-ମୁଁ ଆପଣଙ୍କ ସହିତ କଥାବାର୍ତ୍ତା କରିଚି । ଆପଣ ମୋତେ ଭଲକରି ଦେଖିଛନ୍ତି ।

-କଥାବାର୍ତ୍ତା କରିଛନ୍ତି ? କୌଣସି ସାହିତ୍ୟ ବା ସାଂସ୍କୃତିକ ସଭାରେ ?

-ନା କୌଣସି ସୋସାଲ ମିଟ୍‌ରେ ବି ନୁହେଁ ।

-ତେବେ କୋଉଠି ? ଆପଣ ମତେ ଏମିତି ଗୋଟାଏ ଗୋଲକ ଧନ୍ଦାରେ ନପକେଇ କହି ଦିଅନ୍ତୁନା କୋଉଠି ?

ସ୍ମିତ ହସି ଚଇତନର ସ୍ତ୍ରୀ ଉତ୍ତର ଦେଲେ ବେଶ୍ ପରିହାସ ଗଳାରେ । ତା' କୁହାଯିବନି, ଜଣେ ନାଁ କରା ଲେଖକ ଯଦି ତାଙ୍କ ଘଟଣା ବହୁଳ ଜୀବନର ବିଶେଷ ତାତ୍ପର୍ଯ୍ୟପୂର୍ଣ୍ଣ ଅଭିଜ୍ଞତା ଓ ଅନୁଭୂତିକୁ ତାଙ୍କ ମନର ଟିପା ଖାତାରେ ଲେଖିବ ନରଖିବେ ତେବେ ତାଙ୍କ ସ୍ମୃତି ଶକ୍ତି ଦୁର୍ବଳ ବୋଲି କୁହାଯିବ । ଦେଖିଲି ତାଙ୍କ ଓଠରେ ଗୋଟାଏ ଦୁଷ୍ଟାମି ମିଶା ହସର ସ୍ପଷ୍ଟ ଇଙ୍ଗିତ-ସେ ହସର ଉଦ୍ଦେଶ୍ୟ ଯେମିତି ମତେ ବିବ୍ରତ କରି ମଜା ଦେଖିବା । କହିଲି- ମୁଁ ଲେଖେ ସିନା- ହେଲେ ମୋର ସ୍ମୃତି ଶକ୍ତି ପ୍ରଖର କେବେ ନଥିଲା । ଇତିହାସ ଓ ସଂସ୍କୃତରେ ଖୁବ୍ କମ୍ ନମ୍ବର ରଖିଥିଲି ସ୍କୁଲରେ ପଢ଼ିଲାବେଳେ ।

-ଇତିହାସ ବା ସଂସ୍କୃତ ଭଳି ମୁଖସ୍ତିଆ ପାଠରୁ କଳା ସ୍ରଷ୍ଟାର ସ୍ମୃତିର ପ୍ରଖରତା ମପାଯାଏନି... । ହସି ହସି କହିଲି...ଆପଣଙ୍କ କଥାବାର୍ତ୍ତାରୁ ଜଣା ପଡୁଛି ମତେ ଗୋଟାଏ ଅତି ଗୋଳମାଳିଆ ପରିସ୍ଥିତିରେ ପକେଇ ଖୁବ୍ ଖୁସି ହେଉଛନ୍ତି ।

-ଆରେ ନା ନା ସେମିତି କିଛି ଭାବନ୍ତୁନି ବରଂ ଆପଣ ମତେ ନେଇ ଘଟିଥିବା ଘଟଣାକୁ ସମ୍ପୂର୍ଣ୍ଣ ଭାବେ ମନ ଭିତରୁ ପୋଛି ଦେଇଛନ୍ତି ବୋଲି ମୁଁ କ୍ଷୁବ୍ଧ ହଉଚି ।



Digitized by srujanika@gmail.com

ମୁଁ କିଛି କହିବା ଆଗରୁ ଚଇତନ ସିଗାରେଟ୍ ପ୍ୟାକେଟ୍ ଧରି ଫେରି ଆସି କହିଲା କିରେ ଭଦ୍ରମହିଳାଙ୍କୁ ମନେ ପକେଇ ପାରିଲୁ ? କମଳା, ଆସାମୀକୁ ଜେରା କରି ତାର ସ୍ମୃତିର ସାଗର ମନ୍ଥନରୁ କିଛି ଅମୃତ ମିଳିଲା ?

ହସି ହସି କମଳାଦେବୀ କହିଲେ ଅମୃତ ମିଳିବାର ଆଶା ବି ଖୁବ୍ କମ୍ । ଚଇତନ କହିଲା ତେବେ ତାକୁ ବାନ୍ଧି ନିଆଯାଉ ଆମ ଘରକୁ - ଚା' କପେ ପିଇ ମୁଣ୍ଡଟାକୁ ତାଜା କରିସାରୁ । ପଦାରେ ତାକୁ ଠିଆ କରାଇ ଜେରା କରିବାଟା ନିହାତି ଅଭଦ୍ରାମି । ଏଇ ପ୍ରଣବ-ଚାଲ ଆମ ଘରକୁ । ଏଇ ପାଖରେ । କିହଲି ତମେ ଦିହେଁ ମତେ ଏ ଗୋଳକ ଧନ୍ଦାରୁ ମୁକ୍ତ କରିସାରିଲେ ମୁଁ ତୋ ଘରକୁ ଯିବି ।

କମଳାଦେବୀ କହିଲେ- ତା କେମିତି ହବ ? କଥାଟା ଖୋଲି କହିଦେଲେ ଆପଣଙ୍କର ଆଉ ପତ୍ତା ମିଳିବନି... ଚାଲନ୍ତୁ... ଆପଣଙ୍କୁ ସମୟ ଦିଆଗଲା ଆମ କଥାବାର୍ତ୍ତାର ଖିଅ ଧରି ଧରି ସୁଦୂର ଅତୀତକୁ ଫେରିଯାଇ ସେତେବେଳର ଘଟଣା ଗୁଡ଼ିକୁ ମନେ ପକେଇବାକୁ ଚେଷ୍ଟା କରନ୍ତୁ - ଏ ଘଟଣାଟି ମନେ ପଡ଼ିଯିବ... ନିଶ୍ଚୟ ।

ଚଇତନର ମାରୁତି ଗାଡ଼ିରେ ବସି ତା ଘରକୁ ଆସିଲି । ଚା' ଜଳଖିଆ ଖାଉ ଖାଉ କେତେକ ସାଂସାରିକ କଥାର ଆଲୋଚନା ହେଲା ଉଭୟଙ୍କ ପରିବାର ବିଷୟରେ । ଚଇତନର ଡ୍ରାଇଭର କାରରେ ମତେ ଘରେ ଛାଡ଼ିଦେଇଗଲା । ରାତିରେ ଖାଇପିଇ ସାରି ଶୋଇବାକୁ ଗଲି । ଅନ୍ଧାର ଭିତରେ ଚିତ୍ ହୋଇ ଶୋଇ ଆଖିବୁଜି କମଳାଦେବୀଙ୍କ କଥା ଭାବିଲି । କମଳା ଡେଣାକଟା ପରୀ ନହେଲେ ବି ତାର ଯୌବନ ବେଳେ ଦେଖିବାକୁ ସୁଶ୍ରୀ ଥିଲା ସନ୍ଦେହ ନାହିଁ । ବେଶ୍ ସ୍ମାର୍ଟ ଓ ଶିକ୍ଷିତା ନିଶ୍ଚୟ । ଦେହ ଓ ମୁହଁର ଗଢ଼ଣରୁ ଷାଠିଏ ଟପି ଯାଇଥିବା ପରେ ବି ଯୌବନର ଦୀପ୍ତି ସମ୍ପୂର୍ଣ୍ଣ ଲିଭିଯାଇନାହିଁ । ତା ମୁହଁର କି ପରିବର୍ତ୍ତନ ଘଟିଚି ଯେଉଁଥିପାଇଁ ମୁଁ ତାକୁ ଚିହ୍ନି ପାରୁନି ? ନା ମୋର ଅବକ୍ଷୟୀ ବାର୍ଦ୍ଧକ୍ୟ ଏଇ ସ୍ମୃତି ହ୍ରାସ ପାଇଁ ଦାୟୀ ? କିନ୍ତୁ ମୋର ଅତୀତର ସବୁ ବିଶିଷ୍ଟ ଘଟଣା ତ ପ୍ରାୟ ମନେ ଅଛି- ଯଦି ସତରେ କମଳାକୁ ନେଇ ସଦୂର ଅତିତରେ କିଛି ଘଟିଥାଏ ତେବେ ସେଇଟା ମନେ ପଡୁନି କାହିଁକି ? ସନ୍ଧ୍ୟାବେଳୁ ସେଇ ଗୋଟାଏ ଚିନ୍ତାରେ ବୁଡ଼ିରହି ମୁଣ୍ଡଟା ଭାରାକ୍ରାନ୍ତ ହୋଇଯାଇଥିଲା । କ୍ଳାନ୍ତି ବୋଧ କରୁଥିଲି । ଛାଇ ନିଦ ଲାଗି ଆସିଲା । କେତେ ସମୟ ଜାଣେନି । ହଠାତ୍ ନିଦଟା ଭାଙ୍ଗିଗଲା । ଉଠିବସିଲି ମଶାରି ଭିତରେ । ଛାଇ ନିଦ ଅବସ୍ଥାରେ ମୋର ଅବଚେତନ ମନ ସୁଦୂର ଅତୀତର ଗୋଟିଏ ସ୍ମୃତିର ଛିନ୍ନ ପୃଷ୍ଠାକୁ ଯୋଡ଼ି ଯୋଡ଼ି ମୋ ଚେତନାର ପର୍ଦ୍ଦା ଉପରେ



Digitized by srujanika@gmail.com

ଥାପିଦେଲା ସେହି ପୃଷ୍ଠାଟିକୁ ଧରି ଠିଆ ହୋଇଛି ମୋର ଅନ୍ତରଙ୍ଗ ବାଉଲ୍ ଯାହର ମୁହଁ ବାଉଲ୍ ଓ ଦିଜ ମୁହଁର ଏକ ଅଦ୍ଭୁତ ସଂମିଶ୍ରଣ । ଆଉ ତା ପରେ ପରେ ଭାସି ଉଠିଲା ଗୋଟିଏ ସରଳ ପଲ୍ଲୀ ତରୁଣୀର ମୁହଁ ।

ମୋ ଦେହ ଡିସେମ୍ବର ମାସର ଶୀତ ରାତିରେ ବି ଝାଳେଇ ଗଲା... । ଏ ତେବେ କଅଣ ସେଇ ଝିଅ ? ଏଇ କମଳା ତେବେ କଣ କମଳିନୀ ?

୧୯୩୯ ମସିହା । ବାଉଲ୍ ଓ ମୁଁ ଆଇନ ଶ୍ରେଣୀର ଶେଷ ବର୍ଷର ଛାତ୍ର । ବାଜେ ଛାତ୍ର ଭାବରେ ଆମ ଦୁହିଁଙ୍କର ସୁନାମ ଥିଲା । ତେଣୁ ଆଇନ ପଢ଼ିବା ଛଡା ଗତ୍ୟନ୍ତର ନଥିଲା । ଆଇନ୍ କ୍ଲାସ୍ ହୁଏ ସକାଳେ ସାତଟାରେ । ପ୍ରଥମ ପିରିୟଡଟା ପ୍ରଫେସର ବାନାର୍ଜୀଙ୍କର । କ୍ଲାସ ଆରମ୍ଭ ହୋଇନଥାଏ ଗୋଟାଏ ଆର୍ଟୋଚି ଧରି ପଶିଲି କ୍ଲାସ ଭିତରେ । ପଛ ବେଞ୍ଚରୁ ବାଉଲ୍ ପାଟିକଲା- କିବେ ସେଇଟା କଅଣ ? ଯିବୁକି କୁଆଡେ କଲେଜ ଓଭର୍ ହେଲାପରେ ? ବାଉଲ୍ ପାଖରେ ବସୁ ବସୁ କହିଲି- ହଁ । କୁଆଡେ ? ବାଉଲ୍ ପଚାରିଲା ।

-ଗଡରନ୍‌ପୁର ।

-କି କାମ ଅଛି ?

-ଅଛି ତ କହିଲି

-କହବେ, କେତେ ଫେଚକାମି ବାହାର କରୁଛି ? ପ୍ରଥମ ପିରିୟଡ ଆରମ୍ଭ ହେଇଗଲା । ସାଙ୍ଗେ ସାଙ୍ଗେ ପ୍ରଫେସର ବାନାର୍ଜୀ କ୍ଲାସରେ ତୁକିଲେ । ପଛ ସିଟ୍‌ରେ ଆମ ମୁଣ୍ଡ ସାମାନ୍ୟ ନୁଆଁଇ ଦେଲୁ । ଆମର ଠିକ୍ ଆଗ ସିଟ୍‌ରେ ଦିଜଣ ଡେଙ୍ଗୁ । ପ୍ରଫେସର ଆମକୁ ଦେଖି ପାରିବେନି । ରୋଲକଲା ଆରମ୍ଭ ହେଲା.. ଫିସ୍ ଫିସ୍ ଗଳାରେ ବାଉଲ୍ କହ କୁଆଡେ ଯାଉଚୁ-

-ଝିଅ ଦେଖି

-ତୋ ପେଇଁ

-ନାଇଁ ମ, ତୋ ପେଇଁ ବେ । ଆବେ 'ଲ' ପାସ୍ ପରେ ତ ଅଦାଲତରେ ସେଇ ଝାମ୍ପୁଲା ବରଗଛଟା ତଳେ ଠିଆ ହେଇ ଚିନାବାଦାମ ଚୋବେଇ ଚୋବେଇ ଚାରିଟାବେଳେ ଘରକୁ ଫେରିବୁ, ବାହାହବୁ କଣ ବେ ?

-ଝିଅ ଦେଖିଯିବା ମାନେ କଣ ବାହାହବା ? ଘରେ ଲଗେଇଛନ୍ତି ଝିଅ ଦେଖି ଯିବାକୁ ଯାଉଛି ।

-ଝିଅ ଯଦି ପସନ୍ଦ ହେଇଯାଏ ?



Digitized by srujanika@gmail.com

-ବାପା ବୋଉ କହୁଛନ୍ତି ବୁକ୍ କରି ରଖିବେ ।

-ତୁ ସେଥିରେ ରାଜି ହେଇଚୁ ? ହସି ପକେଇ ମୁଁ କହିଲି-ଭାକ୍, ମୁଁ ଫେର୍ ରାଜି ହେବି । ଗୋଟାଏ କିଛି ଆଳ ଦେଖେଇ ମନା କରିଦେବିନି ?

ବାଉଲ୍ କହିଲା ଚାଲ ମୁଁ ଯିବି ତୋ ସାଥିରେ ।

-କହିଲି ହେଇପାରିବନି

-କାହିଁକି ବେ ହେଇପାରିବନି

-କୌଣସି ସାଙ୍ଗ ନେଇ ଯିବାକୁ ମଧୁସ୍ମି ମନା କରିଚି-ଭାରୀ କୁଆଡେ କଞ୍ଜରଭେଟିଭ୍ ।

-ଆବେ କଞ୍ଜାରଭେଟିଭ ନା ଛତୁ । ତତେ ଗୋଟାଏ ରୟାଲ ଟ୍ରିଟ୍‌ମେଣ୍ଟ ମିଳିବ । ବଢ଼ିଆ ଖାନା ହେଇଥିବ । ଶଳା ତୁ ଖାଇବୁ । ମୁଁ ଖାଇବିନି ? ମୁଁ ତେବେ ତୋ ଚାକର ସାଜି ଯିବି ।

-ମୋ ଚାକର ସାଜି ଯିବୁ ? ଧରା ଯଦି ପଡୁନା-ହାଲତ ଖରାପ ହେଇଯିବ । ଆଉ ସେ ଝିଅଟା ଅପମାନିତ ବୋଧ କରିବ ।

-ନାଇଁବେ ମୁଁ ଠିକ୍ ଚାକର ରୋଲ୍ କରିପାରିବି କେହି ଧରିପାରିବେନି ।

-ମୋ ସାଙ୍ଗରେ ଚାକରଟାଏ ଯିବାର ଦରକାର କଅଣ ବୋଲି କହିବି ସେମାନଙ୍କୁ, ଯଦି ପଚାରନ୍ତି ?

-ଆବେ ଇଡିୟଟ୍ ମୁଁ କହିବି ପସନ୍ଦ ହେଲେବି କାଳେ ପସନ୍ଦ ହେଲାନି ବୋଲି ଘରେ ଯାଇ କହିବୁ ସେଇଥିପାଇଁ ମୋତେ ତୋସାଙ୍ଗେ ପଠେଇଲେ ।

-ଇସ୍ ! ଶଳା ପେଟୁ ଖାଇବା ଲୋଭରେ କେତେ ବୁଦ୍ଧି ବାହାରୁଚି । ନାଇଁ ବାଉଲ୍ ତୁ ଯାଇପାରିବୁନି ଖୁବ୍ ରିସ୍କି ।

-ବାଉଲ ରାଗିଯାଇ ସାମାନ୍ୟ ବଡ ପାଟିରେ କହିଦେଲା ଅଲ୍‌ବତ୍ ଯିବି ।

-ହୁ ସେଡ୍ ଦ୍ୟାଟ୍ 'ଅଲ୍‌ବତ୍ ଯିବି' ପ୍ରଫେସର୍ ବାନାର୍ଜୀଙ୍କର ଗୁରୁଗମ୍ଭୀର ସ୍ୱର । କ୍ଲାସର ସମସ୍ତେ ତଟସ୍ଥ ହୋଇ ପଛକୁ ଚାହିଁଲେ । ବାଉଲ କଣ୍ଠସ୍ୱର ସଭିଙ୍କୁ ଜଣା । ଛାତ୍ରମାନଙ୍କର ଚାହାଣୀକୁ ଅନୁସରଣ କରି ପ୍ରଫେସର କହିଲେ-

-ହ୍ୟାଲୋ ମିତ୍ର !

-ବାଉଲ ଠିଆ ହୋଇଯାଇ କହିଲା- ଆଇ ଆମ୍ ସରି ସାର୍ ।

-ଥିଂକିଂ ଆଲାଉଡ ? ହସି ହସି ପ୍ରଫେସର କହିଲେ । ପୁଣି ରୋଲ୍ କଲ୍ ଚାଲିଲା... ଖୁବ୍ ଆସ୍ତେ ଗଳା ‌ରେ କହିଲି ।



Digitized by srujanika@gmail.com

-ଠିକ୍ ହୋଇଚି-ଶଳା ପେଟୁ । ବାଉଲ୍ ନିରୁତ୍ତର- ଭାବିଲି ଲାଜରା ହେଇଯାଇଚି- ମୋ ସାଙ୍ଗେ ଯିବାକୁ ଚାହିଁବନି- କିନ୍ତୁ ଯେମିତି ପିରିଅଡ ଓଭର ହେଲା ବଡ ପାଟିକରି ବାଉଲ୍ ପଚାରିଲା- ଟ୍ରେନ୍ କେଇଟା ବେଳେରେ ।

-ନ'ଟା ତିରିଶରେ-

ବାଉଲ ତା ହାତ ଘଡି ଦେଖି କହିଲା- ଆଠଟାକୁ ଆଉ ମାତ୍ର ପାଞ୍ଚ ମିନିଟ୍- ମାତ୍ର ଦେଢ଼ ଘଣ୍ଟା ସମୟ... ଆବେ ଉଠ୍ । ଏ ପିରିୟଡଟା ତତେ ମିସ୍ କରିବାକୁ ପଡିବ । ଚାଲ୍‌ବେ ଚାଲ- ମତେ ଚାକର ମେକ୍‌ଅପ କରିବାକୁ ସମୟ ଲାଗିବ । ୱେଷ୍ଟ ହଷ୍ଟେଲରୁ ଗୋଟାଏ ଗାମୁଛା, ଗୋଟାଏ ଗେଞ୍ଜି ଓ ଗୋଟାଏ ମୋଟା ସଫା ଧୋତି ଯୋଗାଡ କରି ତାକୁ ଗୋଟାଏ ଖବର କାଗଜରେ ଗୁଡେଇ ଚାଲିଲୁ ଷ୍ଟେସନକୁ । ଆମ ସ୍କୁଲ ସାଙ୍ଗ ଜି.ଆର.ପି.ର ସବ୍‌ଇନିସପେକ୍ଟର ଆମକୁ ଦେଖି ପଚାରିଲା- ତମେ ଦି'ଟା ଲଫଙ୍ଗା ଇୟାଡେ କୁଆଡେ ?

ବାଉଲ୍ କହିଲା- ରଃ ବେ- ଗୋଟାଏ ଶୁଭକାମରେ ଯାଉଚୁ କିଛି ପଚାରନା ।

କୃପାସିନ୍ଧୁର ଅଫିସ ରୁମ୍‌ରେ, ଜଣେ କନେଷ୍ଟବଲ୍ ଉପସ୍ଥିତିରେ ବାଉଲ ନିଜ ପୋଷାକ କାଢ଼ି ଚାକର ପୋଷାକ ପିନ୍ଧିଲା- ଅଣ୍ଟାରେ ଗାମୁଛା ଭିଡିଲା । କାନରେ ଗୋଟାଏ ଖଣ୍ଡିଆ ବିଡି ଖୋସିଲା । କୃପାସିନ୍ଧୁ ସାମନାରେ ଠିଆ ହେଇ ପଚାରିଲା- କୁରୁପା, ଦେଖିଲୁ, ମୁଁ ଗୋଟାଏ ଚାକର ଭଳି ଦିଶୁଚି ନା ନାହିଁ ।

କୃପାସିନ୍ଧୁ ଦାନ୍ତ ଦେଖେଇ କହିଲା- ଶଳା, ଯୋଉତ ଚେହେରା । ଚାକର ଭଳି ଦେଖା ନଯାଇ ଆଉ କଅଣ ଭଳି ଦେଖା ଯାଇଥାଆନ୍ତୁ? କିବେ କଥା କଅଣ ? ବାଉଲ୍ ଗୋଟେ ଚୌକିରେ ବସିପଡି କହିଲା- ଏ ଚୁହାଡ୍ ବେହ୍ୟା ଯାଉଚି ଝିଅ ଦେଖିବାକୁ ଗଡ ରନ୍‌ପୁର । ମୁଁ ତା ଚାକର ହେଇଯାଉଚି- ଏଇ ପ୍ରଣବ- ଏଇ ମୁହୂର୍ତ୍ତରୁ ମୁଁ ତୋର ସାଙ୍ଗ ନୁହେଁ- ମୁଁ ତୋ ଚାକର ଦିଜ... ତୁ ମୋର ବାବୁ ।

କୃପାସିନ୍ଧୁ କହିଲା- ହଇରେ ବିକଳା- ଭଲ ଖାନା ଖାଇବା ପାଇଁ ଚାକର ସାଜି ଯାଉଚୁ ।

-ଆବେ ନାଇଁ ଏଇଟା ଗୋଟାଏ ଆଡଭେଞ୍ଚର ।

ଟ୍ରେନ୍ ଆସିଲା- ଟିକେଟ କିଣିବାକୁ ପଡିଲାନି- ଟି.ଟି.ଆଇ.କୁ କହି କୃପାସିନ୍ଧୁ ଆମକୁ ଗୋଟିଏ ଛୋଟିଆ ଫାଙ୍କା ଥାର୍ଡକ୍ଲାସ ଡବାରେ ବସେଇ ଦେଲା । ଆମ ଦୁହିଁଙ୍କୁ ଛାଡି ଡବାରେ ଆଉ ମାତ୍ର ତିନିଜଣ ଯାତ୍ରୀ । ଜଣେ ଧୋବ ଧଉଳିଆ । ଟ୍ରେନ୍ ଛାଡିଲା ପରେ ଚାଲିଲା ଆମର ବାବୁ ଚାକର ରିହେରସାଲ । ବାବୁ ଚାକର ସମ୍ପର୍କଟା ଖୁବ୍ ଭଲ ଭାବରେ



Digitized by srujanika@gmail.com

ଦୃଢ଼ିଭୂତ ହେଇଗଲା ପରେ କିଛି ସମୟ ପାଇଁ ଆମେ ଦୁହେଁ ଚୁପ୍‌ଚାପ୍ ବସି ରହିଲୁ- ମୁଁ ସିଗାରେଟ୍ ପିଉ ପିଉ ଝରକା ବାଟେ ବାହାରକୁ ଚାହିଁ ରହିଲି ଆଉ ବାଉଲ୍ ମୁହଁ ତଳକୁ କରି ବିଡି ଟାଣିଲା । ଗଡ ରନ୍‌ପୁର ଷ୍ଟେସନ ପାଖେଇ ଆସିଲା । ଦିଜକୁ ଚାହିଁ ଡାକିଲି ।

-ଦିଜ !

-ଷ୍ଟେସନ ପାଖେଇ ଆସିଲା

-ହଁ ଆଜ୍ଞା

ଗଡ ରନ୍‌ପୁର ଷ୍ଟେସନ୍‌ରେ ଗାଡି ରହିଲା । ମୁଁ ଗାଡି ଦରଜା ପାଖରେ ଠିଆହେଇ ଦେଖିଲି ପ୍ଲାଟଫର୍ମ ବାହାରେ ଗୋଟିଏ ଚିତ୍ରା ମୁଣ୍ଡିଆ ହାତୀ । ପ୍ଲାଟଫର୍ମରେ ମଧ୍ୟସ୍ଥି ବୁଢ଼ା ଦାନ୍ତ କିଲେଇ ଚାହିଁଛନ୍ତି ମୋ ଆଡେ । ମୁଁ ଓ ମୋ ପଛେ ପଛେ ମୋ ଆଟାଚିଟା ଧରି ଦିଜ-ଗାଡିରୁ ଓହ୍ଲେଇଲୁ । ଦିଜକୁ ଦେଖି ମଧ୍ୟସ୍ଥି ପଚାରିଲେ- ଏ ଲୋକଟି କିଏ ?

ଉତ୍ତର ଦେଲି- ମୋ ଭାଇନାଙ୍କ ଚାକର ।

ଦିଜ ମୁଣ୍ଡ ନୁଆଇ ହାତ ଯୋଡି କହିଲା- ଆଜ୍ଞା ଜୁହାର ହଉଚି ।

ମଧ୍ୟସ୍ଥି ପୁଣି ପଚାରିଲେ- ତାକୁ କାହିଁକି ସାଙ୍ଗରେ ଆଣିଲ ପ୍ରଣବ ବାବୁ ?

ମୁଁ କିଛି କହିବା ଆଗରୁ ଦିଜ କହିଲା- ଆଜ୍ଞା- ବାବୁ ମେତେ ଆଣିଥାନ୍ତେ ? ବାୟାହେଲେ- ମା' ପଠେଇଲେ- କାଳେ ବାବୁ ଏଠୁ ଫେରି ମିଛରେ କହିବେ ଝିଅ ମନକୁ ପାଇଲାନି- ଆଜ୍ଞା ଯାହା କହନ୍ତୁ... ହେଲେ ମା'ଙ୍କର ମୋ ଉପରେ ଭାରୀ ବିଶ୍ୱାସ । ସବୁ କଥାକୁ ଦିଜା । ମଧ୍ୟସ୍ଥି ଖୁସୀ ହୋଇଯାଇ କହିଲେ-ମା ଠିକ୍ କରିଛନ୍ତି । ଆଜି କାଲିକା ଟୋକାଙ୍କୁ କି ବିଶ୍ୱାସ ଅଛି... ?

ମଧ୍ୟସ୍ଥି ମୋ ମୁହଁକୁ ଚାହିଁ ଇଷତ୍ ହସି ଜଣେଇ ଦବାକୁ ଚାହିଁଲେ ଯେ ତାଙ୍କ ଉକ୍ତିଟା ତାଙ୍କ ମନର କଥା ନୁହେଁ ।

ଦିଜ କହିଲା- ସେଇତା ପରା । ହେଲେ ଆମ ଏ ବାବୁ ଆଜି କାଲିକା ଟୋକା ଟୋକାଳିଆଙ୍କ ମେତି ନୁହେଁ ।

ମୁଁ ଦିଜକୁ ଗୋଟେ ଧମକ ଦେଇ କହିଲି- ଚୁପ୍‌କର କେତେ ବକର ବକର ହଉଚୁ ।

ଦିଜ ଅତି ସଂଭ୍ରମ ଭାବରେ କହିଲା- ହେଲି ଆଜ୍ଞା । ହାତୀ ଅଣ୍ଠେଇ ବସିଲା- ଆମେ ତିନିହେଁ ରଜାଙ୍କ ହାତୀ ଚଢ଼ି ଗଡ ଅଭିମୁଖେ ଯାତ୍ରାକଲୁଁ ।

ବୈଠକ ଖାନାରେ ମୁଁ ବସିଲି ଗୋଟାଏ ଚୌକିରେ- ଦିଜ ବସିଲା କବାଟ ଏରୁଣ୍ଡି ବନ୍ଧ ବାହାର ପଟକୁ ଜାକିଜୁକି ହେଇ । ମଧ୍ୟସ୍ଥି ଭିତରକୁ ଚାଲିଗଲେ ।



Digitized by srujanika@gmail.com

କିଛି ସମୟ ପରେ ମୋ ପେଇଁ ରୂପା ଗ୍ଲାସରେ ଦହି ସରବତ । ଦିଜ ପାଇଁ ଗୋଟାଏ ଆଲୁମିନିୟମ୍ ଗ୍ଲାସରେ । ଦିଜ ସରବତ ପିଇଦେଇ ଉଠିଗଲା ଓ ଗ୍ଲାସଟି ଧୋଇଧାଇ ଉଗୁଡେଇ ରଖିଦେଲା ଏଗୁଣ୍ଡି ବନ୍ଧର କୋଣକୁ । ମୁଁ ସୁପ୍ରଶଂସା ଆଖିରେ ମୋର ପରମବନ୍ଧୁ ବାଉଲ୍‌ର ଦିଜ ରୋଲ୍‌ରେ ଅଭିନୟକୁ ଲକ୍ଷ୍ୟ କରୁଥିଲି ସେକ୍‌ସପିଅରଙ୍କ ଚରିତ୍ର । ନିକ୍ ବଟମ୍ ଗଧମୁଖା ପିନ୍ଧି ଠିକ୍ ଗଧ ପାଲଟି ବୋବେଇବା ଓ ବ୍ୟବହାର କରିବାଭଳି ବାଉଲ୍ ଗୋଟିଏ ଓଡ଼ିଆ ଚାକରର ଅବିକଳ ରୂପ ପରିଗ୍ରହ କରିଚି । ମୁଁ ତା' ଭିତରେ ଦୁର୍ଦ୍ଦାନ୍ତ ହକି ଖେଳାଳୀ ଅରଉ ଭରା କାଠଯୋଡ଼ି ନଈରେ ସାବ୍‌ଲୀଳା ଷ୍ଟ୍ରୋକ୍‌ରେ ଭୀଷଣ ସୁଅ କାଟି ଭଉଁରୀ ଭିତରେ ପଶିଯାଇ ତାକୁ ନିଜର ପ୍ରଣୟନୀ ଭଳି ଆଲିଙ୍ଗନ କରି ପରମତୃପ୍ତିରେ ଚକାଭଉଁରୀ ଖେଳୁଥିବା ବାଉଲ୍‌କୁ ଖୋଜି ପାଇଲି ନାହିଁ ।

ସରବତ୍ ପିଇ ସାରିବାର ତିନି ଚାରି ମିନିଟ୍ ପରେ ମଧସ୍ଥି ଓ କନ୍ୟା ପିତା ଆସିଲେ । ବାଉଲ୍ କନ୍ୟାପିତାଙ୍କୁ ମୁଣ୍ଡନୋଇଁ ପ୍ରଣାମ କଲା- ମୁଁ ଠିଆ ହୋଇଯାଇ ତାଙ୍କୁ ନମସ୍କାର କଲି- ଅଳ୍ପ କେଇ ମିନିଟ୍ ମୋ ସହିତ କଥାବାର୍ତ୍ତା ପରେ କନ୍ୟାପିତା ଘର ଭିତରକୁ ଚାଲିଗଲେ । ତାର କିଛି ସମୟ ପରେ ସ୍ୱୟଂ କନ୍ୟାଟି ଗୋଟିଏ ରୂପାଥାଳିଆରେ ଗୁଆ, ମସଲା ଧରି ଦୁଆର ସେପଟେ ଆସି ଠିଆ ହେଲା ବ୍ରୀଡାବନତ ମୁଖରେ । ମଧସ୍ଥି କହିଲେ- ଆ ମା କମଳିନୀ, ଲାଜ କରନା ।

କମଳିନୀ ଧୀରେ ଧୀରେ ପାଦ ପକେଇ ଘର ଭିତରକୁ ଆସିଲା, ମୋ ସାମନାରେ ଥିବା ଛୋଟିଆ ଟୁଲ୍‌ଟି ଉପରେ ଥାଳିଆଟି ରଖିଦେଇ ମତେ ସସଂଭ୍ରମ ନମସ୍କାର କଲା- ମୁଁ କମଳିନୀକୁ ଲକ୍ଷ୍ୟ କରୁଥିଲି-ତନୁପାତଳୀ ଝିଅଟିଏ... ଉଜ୍ଜ୍ୱଳ ଶ୍ୟାମବର୍ଣ୍ଣ । ମୁହଁର ଗଢ଼ଣଟି ଭଲ । ଉଚ୍ଚତା ପାଞ୍ଚ ଫୁଟ୍ ତିନ୍ କି ସାଢ଼େ ତିନ୍, ଫିରୋଜା ରଙ୍ଗର ଶାଢ଼ି ବ୍ଲାଉଜ ପିନ୍ଧିଚି । ଅଣ୍ଟାରେ ପିନ୍ଧିଚି ଦକ୍ଷିଣୀ ସ୍ତ୍ରୀ ଲୋକଙ୍କ ଭଳି ଗୋଟିଏ ରୂପାପଟି । ବେକରେ ଚିକ । ମୁଣ୍ଡ ବାଳ ପାତାକରି କୁଣ୍ଡା ହେଇଚି । ବେଶଭୂଷା ଗୋଟିଏ ପଲ୍ଲୀ ଲଳନାର ଅନୁରୂପ । ମଧସ୍ଥି କମଳିନୀକୁ ମୋ ସାମନା ଚୌକିରେ ବସିବାକୁ କହିଲେ । ସେ ବସିଲା ପରେ ମଧସ୍ଥି ମତେ ଲକ୍ଷ୍ୟ କରି କହିଲେ- କିଛି ପଚାରିବ ବାପା ?

ମୁଁ ମୁଣ୍ଡ ହଲେଇ ନାହିଁ କଲି ମଧସ୍ଥିଙ୍କ ନିର୍ଦ୍ଦେଶରେ କମଳିନୀ ମତେ ନମସ୍କାର କରି ଭିତରକୁ ଚାଲିଗଲା । ମଧସ୍ଥି ମଧ କମଳିନୀ ପଛେ ପଛେ ଚାଲିଗଲେ- ଏଇ ସୁଯୋଗରେ ମୁଁ ବାଉଲ୍‌କୁ ଚାହିଁଲି- ସେ ମୋତେ ଚାହିଁଲା- ଉଭୟଙ୍କର ନୀରବ ସଙ୍କେତ ଭିତରେ ମତ ବିନିମୟ ହୋଇଗଲା...



Digitized by srujanika@gmail.com

ବହୁ ପ୍ରକାର ବ୍ୟଞ୍ଜନ ଦ୍ୱାରା ସେମାନେ ମୋର ଅତି ସସ୍ନେହ ସତ୍କାର କଲେ । ମଧ୍ୟସ୍ଥିଙ୍କ ସହିତ ଗପସପ କରି ଖାଉ ଖାଉ ପ୍ରାୟ ଅଧଘଣ୍ଟାଏ ଚାଳିଶ ମିନିଟ୍ ପରେ ମୁଁ ବାହାରକୁ ଆସି ମୁହଁ ଧୋଇଲାବେଳେ ଦେଖିଲି ବାଉଲ୍ ଭିତର ଅଗଣା ପିଣ୍ଡାର ଗୋଟିଏ କଣକୁ ଯାକିଯୁକି ହେଇ ବସିଚି । ତା' ପାଖ କାନ୍ଥରେ ଡେରା ହୋଇ ରଖାହେଇଚି ଘଷାମଜା ହେଇ ଚକ୍‌ଚକ୍ କରୁଥିବା ପିତ୍ତଳ ଥାଳି ଓ ଥାଳିଆ ଆଉ ତା ପାଖରେ ଉଗୁଡା ହୋଇ ରଖା ହୋଇଥିବା ଗୋଟିଏ ଚକ୍ ଚକ୍ ପିତ୍ତଳ ଗିନା । ମନେ ମନେ ଭାବିଲି କି ଚମତ୍କାର ମେଟାମର୍ଫୋସିସ୍ ! ବାଉଲ ଇଉ ଆର ଗ୍ରେଟ୍ ।

କିଛି ସମୟ ପରେ କନ୍ୟା ପିତା ମତେ ଡାକି ନେଇଗଲେ ତାଙ୍କର ଘର ଦ୍ୱାର ଓ ବାଡି ବଗିଚା ଦେଖେଇବାକୁ ।

କଟକ ଆଡକୁ ଯାଉଥିବା ସନ୍ଧ୍ୟା ପାଞ୍ଚଟା ପାସେଞ୍ଜର ଟ୍ରେନ୍‌ରେ ଆମେ ଚଢ଼ିଲୁଁ । ଟ୍ରେନ୍ ଚାଲିଲା ପରେ ଅନ୍ୟାନ୍ୟ ପାସେଞ୍ଜରଙ୍କ ଉପସ୍ଥିତିକୁ ଉପେକ୍ଷା କରି ମୁଁ ବାଉଲକୁ କୁଣ୍ଢେଇ ଧରି କହିଲି- କିସ୍ତି ମାତ୍ କରିଦେଲୁ ବାଉଲ୍ ।

ପାସେଞ୍ଜରମାନେ ଜଣେ ବାବୁ ଗୋଟିଏ ଚାକରକୁ କୋଳାଗ୍ରତ କରିବାର ଦୃଶ୍ୟ ଦେଖି ଆଶ୍ଚର୍ଯ୍ୟ ହେବା ସହ ଆହୁରି କେତେକ'ଣ ହୁଏତ ଭାବିଥିବେ । ଉଭୟେ ବସିପଡି ତାଙ୍କ କଥାବାର୍ତ୍ତାରେ ପରସ୍ପରକୁ 'ତୁ' 'ତା' ସମ୍ବୋଧନ କରିବା ଦେଖି ଏପରି ଏକ ଅଭିନବ ଦୃଶ୍ୟର ଅନ୍ତର୍ନିହିତ ଅର୍ଥ ଓ ତାତ୍ପର୍ଯ୍ୟ ଆବିଷ୍କାରରେ ଲାଗିପଡିଥିବେ ମନେ ମନେ ।

ଗଳାର ସ୍ୱର କମେଇ ବାଉଲ୍ କହିଲା- ବୁଝିଲୁ, ତୁ ତାଙ୍କ ବାଡିବଗିଚା ଦେଖିଯିବା ଅବସରରେ ତାଙ୍କ ଘରର ସାତ କି ଆଠଜଣ ସ୍ତ୍ରୀ ଲୋକ, ବୁଢ଼ୀ ପ୍ରୌଢ଼ା ଓ ଯୁବତୀ ମତେ ଆସି ଘେରିଗଲେ-ମୁଁ ହତବଡେଇ ଗଲି । ଜଣେ ପ୍ରୌଢ଼ା ମତେ ପଚାରିଲା-ହଇରେ ଦିଜ ଆମ ଝିଅ ତୋ ମନକୁ ପାଇଲାଟି ? କହିଲି-ଏକଥା ମୋତେ ପଚାରୁଚ କଅଣ କିଓ ମା' ସାନ୍ତାଣୀ-ମୁଁ ଭଲଟାକୁ ଭେଲ କହିବି ? ଗୋଟିଏ ଷୋଳ କି ସତର ବର୍ଷର ଗୋରା ଓ ଖୁବ୍ ସୁନ୍ଦର ବିଧବା ଝିଅ ପଚାରିଲା- ନାଇମ ସତ କହ, ଲୁଚାନା କିଛି । ଝିଅ ତୋର ପସନ୍ଦ ହେଲା ନା ନାଇଁ ? କହିଲି ମୁଗ୍ଧ ଦୃଷ୍ଟିରେ ସୁନ୍ଦରୀ ବିଧବା ତରୁଣୀଟି ଆଡେ ଚାହିଁ । ନାନୀ, କହିବି ଆଉ କ'ଣ ? ଝିଅଟି ଗୋଟିଏ ଚାଉଳରେ ଗଢ଼ାପେରା । ଆଖି କହ, ନାକ କହ, କୋଉଟାକୁ ଖୁଣୀ ହବନି... । ପ୍ରୌଢ଼ା ଜଣକ କହିଲେ...ସେଇ



Digitized by srujanika@gmail.com

କଥା ତମ ମା'ଙ୍କୁ ଯାଇ କହିବୁ ହେଲା ? ମୁଁ କହିଲି ଆହେ ମା, ମୁଁ ଆଇଚି କିଆଁ ବାବୁଙ୍କ ସାଥିରେ ? ମା' ମୋ କଥାକୁ ବିଶ୍ୱାସ ନଯାଇ ବାବୁଙ୍କ କଥାକୁ ବିଶ୍ୱାସ ଯିବେ ? ବଡ ହେଇଥିଲା ! କୁତ୍ରାପି ନୁହେଁ ।

ପ୍ରୌଢ଼ା ଦଶଟି ରୂପା ଟଙ୍କା ମୋ ହାତକୁ ବଢ଼େଇଲେ । କହିଲି ନା ନା ମା ସାନ୍ତାଣୀ-ମୁଁ ନେବିନି କେଭେ ନୁହେଁ । ପ୍ରୌଢ଼ା ମୋ ଡାହାଣ ହାତକୁ ଭିଡିନେଇ ମୋ ହାତ ପାପୁଲିରେ ଟଙ୍କାତକ ରଖିଦେଇ କହିଲେ- ଆରେ ନେମ ଦିଜ ଆମେ ତ ତତେ ଖୁସିରେ ଦେଉଚୁ.... ମନା କରନି ନେ- ବାଧ ହେଲି ନବାକୁ ।

ହଠାତ୍ ଗମ୍ଭୀର ହୋଇଯାଇ ବାଉଲ୍ କହିଲା- ବୁଝିଲୁ ପ୍ରଣବ ସେଇ ମୁହୂର୍ତ୍ତରେ ମୋ ମନଟା ଖରାପ ହେଇଗଲା । ସେମାନଙ୍କର ଆନ୍ତରିକତା ସ୍ନେହ ବୋଳା ଆତିଥ୍ୟ ସାମନାରେ ଆମର ଏଇ ଛଳନା, ଏଇ ଅଭିନୟ ପାଇଁ ଆମେ କେତେ ଛୋଟ ହୋଇଯାଇଚେ କହିଲୁ...

ମୁଁ ବାଉଲକୁ ଆଶ୍ୱାସନା ଦେଇ କହିଲି ଠିକ୍ ଏମିତି ଗୋଟାଏ ଉଁକି ମାରିଥିଲା ବାଉଲ୍- କିନ୍ତୁ ତୁତ ଶୁଣିଲୁନି-

ବାଉଲ ବିଷାଦମଖା ଗଳାରେ କହିଲା-ଭାଇ-ଏ ଟଙ୍କାଟା କେମିତି ଫେରେଇ ଦବା କହିଲୁ? କହିଲି ଉପାୟ ନାହିଁ- ଆମର ଏଇ ଅଭିନୟଟା ସେମାନଙ୍କ ପାଖରେ ଏକ ନିଛକ ସତ୍ୟର ରୂପ ନେଇସାରିଚି, ସେ ସତ୍ୟକୁ ଆଉ ମିଥ୍ୟା ବୋଲି କହି ସେମାନଙ୍କ ମନରେ ଆଘାତ ଦବା ଉଚିତ ହେବନି ।

କିଛି ଦିନ ପରେ କିନ୍ତୁ ଆମ ଛଳନା ଓ ଅଭିନୟ ପଦାରେ ପଡିଗଲା । ଯେଉଁ ଧୋବଧାଉଳିଆ ଲୋକଟି କଟକଠୁ ଗଡରନ୍‌ପୁର ଷ୍ଟେସନ ଯାଏଁ ଆମର ସହଯାତ୍ରୀ ଥିଲେ, ସେ ଆମର ରିହେସାଲ ଦେଖି ସବୁ ଠଉରେଇ ପାରିଥିଲେ । ଏପରିକି ଗଡରନ୍‌ପୁରର ବହୁ ଆଗରୁ ମ୍ୟାନେଜର ଥିବା ଏବଂ ପରେ ଯାଜପୁରରେ ଓକିଲାତି କରୁଥିବା ମୋ କକେଇଙ୍କର ଯେ ମୁଁ ନିଜ ପୁତୁରା ଏକଥା ମଧ୍ୟ ଜାଣିପାରି ଠିକ୍ ସମୟରେ କକେଇଙ୍କୁ ଯାଇ ରିପୋର୍ଟ କରିଥିଲେ । ପରେ ବିସ୍ତୃତ ଓ ଗଭୀର ଶୋଧାଗାଳି ଖାଇସାରିଲା ପରେ କକେଇ ସବୁଠୁ ବଡ ଦୁଃସମ୍ବାଦ ଦେଲେ ଯେ କନ୍ୟାପକ୍ଷ ମଧ୍ୟ ସେକଥା ଜାଣିପାରିଛନ୍ତି । କାରଣ କକେଇ ତାଙ୍କର ପାଠଚୁଆ ପୁତୁରାଙ୍କ ଏଇ ଅପକୀର୍ତ୍ତୀ ପାଇଁ ନିଜକୁ ଦୋଷୀ ମନେ କରି ତାଙ୍କର ପରିଚିତ କନ୍ୟା ପିତାଙ୍କଠାରୁ କ୍ଷମା ମାଗି ଆସିଛନ୍ତି ।

+ + +



Digitized by srujanika@gmail.com

ତେବେ ସେଇ କମଳିନୀ' କଅଣ ଚଇତନର ସ୍ତ୍ରୀ କମଳା... ? ଯଦି ନହେଇ ଥାନ୍ତି ? କିନ୍ତୁ ମୋର ଅନ୍ତର ଭିତରୁ ଯେପରି ବାଉଲ ଓରଫ ଦିଜ ଚିତ୍କାର କରି କହୁଚି ହଁ ଏ କମଳା ସେଇ କମଳିନୀ ଯା, ମୃତ୍ୟୁ ପୂର୍ବରୁ ତାକୁ କ୍ଷମା ମାଗି ଆ ।

ତହିଁ ଆରଦିନ ସକାଳେ ଯାଇ ଚଇତନର ଦାଣ୍ଡ ଦୁଆର କଲିଂବେଲ ଚିପିଲି । କବାଟ ଖୋଲିଲେ ନିଜେ କମଳାଦେବୀ । ଆଶ୍ଚର୍ଯ୍ୟ ହୋଇଯାଇ ମତେ ପଚାରିଲେ- ଏତେ ସକାଳୁ ଯେ ? କଥା କଣ ?

ହସି ହସି କହିଲି- ମତେ ବସିବାକୁ କହନ୍ତୁ ଆଉ ସେ ଚୁଟିଆ ଚଇତନଙ୍କୁ ଡାକନ୍ତୁ ।

କମଳାଦେବୀ ସେମିତି ହସି ହସି ଉତ୍ତର କଲେ- ମୁଁ ଆପଣଙ୍କୁ ବସିବାକୁ କହିବିନି ।

ବିସ୍ମିତ ହୋଇ ପଚାରିଲି କହିବେନି ?

--ନା-ଗଲା ରାତ୍ରିର ଅନ୍ଧକାର ଭିତରେ ସ୍ମୃତି ସମୁଦ୍ର ମନ୍ଥି ଯାହାକୁ ମନେ ପକେଇ ପାରିଛନ୍ତି ଆଉ ସକାଳୁ ଯାହା ଘରକୁ ଆସିଛନ୍ତି ସେ ମୁଁ ନୁହେଁ ।

କହିଲି- ଜାଣେ ସେ ଆପଣ ନୁହନ୍ତି, ସେ କମଳିନୀ ।

କମଳିନୀ ହସି କହିଲା- ଏଥର ଭିତରକୁ ଆସନ୍ତୁ ଆଉ ବସନ୍ତୁ- ଆଉ ଆପଣଙ୍କ ଚୁଟିଆ ଚଇତନଙ୍କ ଦେଖା ସାଙ୍ଗେ ସାଙ୍ଗେ ମିଳିବନି ସେ ପ୍ରାତଃ ଭ୍ରମଣରେ ବାହାରିଛନ୍ତି ଚର୍ବିତରଳେଇବା ଉଦ୍ଦେଶ୍ୟରେ, ଫେରୁ ଫେରୁ ଆଠଟା ।

ଡ୍ରଇଁ ରୁମରେ ବସି କହିଲି ଶୁଣନ୍ତୁ କମଳାଦେବୀ ।

କମଳନିନୀ ଧମକେଇ କହିଲା- ଅତି ବୁଢ଼ାହେଲେ ଏମିତି ହୁଏ, ଟିକକ ଆଗର କଥା ପର ମୁହୂର୍ତ୍ତରେ ଭୁଲି ହେଇଯାଏ । କହିଲି ପରା ଏଇଟା କମଳିନୀ ଘର । ମତେ ସେଇ ନାଁରେ ଡାକିଲେ ମୁଁ ଖୁସିହେବି ।

କହିଲି ସେଇ ନାଁରେ ଡାକିବାରେ କିଛି ଯଥାର୍ଥତା ଅଛି, ଦୀର୍ଘ ପଞ୍ଚାବନ ବର୍ଷ ପରେ ?

କମଳିନୀ କହିଲା- ଅଛି ।

କହିଲି ପଚାଶ ବର୍ଷ ତଳର ଯେଉଁ ତରୁଣ ସୁଲଭ ଚପଳତା କରି ମୁଁ ତମ ମନରେ ଆଘାତ ଦେଇଥିଲି ତା ପାଇଁ ମୁଁ ତମ ପାଖରୁ କ୍ଷମା ପ୍ରାର୍ଥନା କରିବାକୁ ସୁଯୋଗ ପାଇଛି ଆଜି ।

କମଳିନୀ କହିଲା କ୍ଷମା ମାଗିବାର କିଛି ନାହିଁ- ତାରୁଣ୍ୟରେ ପୁରୁଷ ସ୍ତ୍ରୀ ଉଭୟେ ଏମିତି ଧରଣର ଭୁଲ୍ କରିଥାନ୍ତି ।

କହିଲି ସତ କିନ୍ତୁ ତମକୁ କମଳିନୀ ବୋଲି ଡାକିବାରେ କି ତାତ୍ପର୍ଯ୍ୟ ଅଛି ଏ ବୟସରେ ?



Digitized by srujanika@gmail.com

କମଳିନୀ ସାମାନ୍ୟ ଗମ୍ଭୀର ଗଳାରେ କହିଲା ଆପଣ ଜଣେ ନାଁ କରା ସ୍ରଷ୍ଟା, ଯାର ତାତ୍ପର୍ଯ୍ୟ ବୁଝିପାରୁ ନାହାନ୍ତି । ମୋର ତାରୁଣ୍ୟର ପ୍ରଥମ ପାଦରେ ପ୍ରଥମ କନ୍ୟାଦେଖା ଘଟଣା ମୋ ମନରେ ଧ୍ୱନି ଛନ୍ଦ ଓ ସୌରଭର ଯେଉଁ ଏକ ଅପୂର୍ବ ଶିହରଣ ସୃଷ୍ଟି କଲା । ଅବସ୍ଥା ଓ ପରିବେଶ ଭିତରେ ତାକୁ କଅଣ ମନରୁ ପୋଛିଦେଇ ହୁଏ ? ପୋଛି ନପାରିବାଟା କଅଣ ଅନ୍ୟାୟ ?

କହିଲି -ନା, ଅନ୍ୟାୟ ନୁହେଁ ଚଇତନ ଏ ଘଟଣାଟା ଜାଣିଚି ତେବେ ?

କମଳିନୀ ହସିଦେଇ କହିଲା ଆରେ ଏ ଘଟଣାଟା ନଜାଣିବାରେ କଅଣ ଅଛି ? କାଲି ତାଙ୍କ କଥାରୁ ଠଉରେଇ ପାରିଲେନି ?

କହିଲି- ନା ।

କମଳିନୀ ଅତି ସ୍ୱପ୍ନ ବିଭୋର କଣ୍ଠରେ କହିଲା ଘଟଣାଟା କିନ୍ତୁ ପ୍ରଥମ କନ୍ୟା ଦେଖାର ଉଲ୍ଲାସ ଓ ଶିହରଣର ଅନୁଭୂତି ମୋର ଏକାନ୍ତ ନିଜସ୍ୱ ।

କମଳିନୀ ମୁହଁକୁ ଚାହିଁଲି-ମୁଗ୍ଧ ହେଲି ଦେଖିଲି ତାର ବୟସର ଛାପା ପଡିଥିବା ମୁହଁଟିରେ ନାରୀ ମନ ଓ ହୃଦୟର ଏକ ଶାଶ୍ୱତ ଦୀପ୍ତି ।

ପତ୍ରିକା : ଅନୁସନ୍ଧାନ

୧ମ ବାର୍ଷିକ ବିଶେଷାଙ୍କ - ୧୯୯୧





ବାମାଚରଣ ମିତ୍ର ଓ ବାଲ୍ୟବନ୍ଧୁ ସାହିତ୍ୟିକ ପ୍ରାଣବନ୍ଧୁ କର



Digitized by srujanika@gmail.com

# ବାମାବାବୁ

## ଗୋପୀନାଥ ମହାନ୍ତି

ସ୍ନେହୀ ବନ୍ଧୁ, ଖ୍ୟାତନାମା କ୍ଷୁଦ୍ରଗଳ୍ପ ଲେଖକ, ରମ୍ୟରଚନା ଓ ପ୍ରବନ୍ଧ ଲେଖକ ବାମାଚରଣ ମିତ୍ରଙ୍କ ପବିତ୍ର ସ୍ମୃତିକୁ ଶ୍ରଦ୍ଧା ଓ ପ୍ରଣତି ଜଣାଉଛି । ୧୯୭୫ ଫେବୃଆରୀ ୨୧ରୁ ସେ ଚାଲିଗଲେଣି । ଓଡ଼ିଆ ସାହିତ୍ୟରେ ତାଙ୍କ ସ୍ମୃତି ରହିଥିବ ସେହିପରି ସେହିମାନଙ୍କର ହୃଦୟରେ, ଯେଉଁମାନଙ୍କୁ ତାଙ୍କ ସ୍ନେହୀ, ସହାନୁଭୂତିଶୀଳ, ସରଳ, ନିରୀହ, କଳାପ୍ରେମୀ ବ୍ୟକ୍ତିତ୍ୱ ଆକୃଷ୍ଟ କରିଥିଲା ।

ବୟସରେ ସେ ମୋଠୁଁ ସାନ ଥିଲେ । କଟକରେ ଆମେ କଲେଜ୍ ଜୀବନବେଳେ ମଧ୍ୟ ସେ ମୋଠୁଁ କେତେ କ୍ଲାସ ତଳେ ପଢୁଥିଲେ । ସେତେବେଳେ ତାଙ୍କୁ ଏଠି ସେଠି ଦେଖିଛି, ଚଞ୍ଚଳ, ସକ୍ରିୟ, ଅନେକ ବନ୍ଧୁଙ୍କ ସହିତ ସେ ବୁଲୁଥାନ୍ତି, ପ୍ରକାର ପ୍ରକାର ସଭା ସମିତିରେ ତାଙ୍କ ସାଙ୍ଗ ଦଳରେ ବି ତାଙ୍କୁ ଦେଖିଥାଏ । ପଛେ ଜାଣିଲି ପହଁରା, କାତ ପେଲାରେ ବି ସେ ନାଁ କଲେ । ନିଜ ଖିଆଲରେ ନାନାପ୍ରକାର ଅଭିଜ୍ଞତା ସଂଗ୍ରହ କଲେ । ସେତେବେଳେ ଦେଖିଛି ଓ ପଛେ ଲକ୍ଷ୍ୟ କରିଛି, ସେ ଖାଲି ଶୁଣି ଦେଇ ବିଶ୍ୱାସ କରିବା ଲୋକ ନଥିଲେ, ଯେତେବେଳ



Digitized by srujanika@gmail.com

ଲାଗୁ ଯୁକ୍ତି କରୁଥିଲେ, ନିଜ ହୃଦ୍‌ବୋଧ ହେଲେ ତେବେ କାହା ମତ ଗ୍ରହଣ କରୁଥିଲେ । ସ୍ୱର୍ଗତଃ ଅଧ୍ୟାପକ ଲକ୍ଷ୍ମୀକାନ୍ତ ଚୌଧୁରୀ କେତେକ ବିଶିଷ୍ଟ ସଙ୍ଗୀତଜ୍ଞଙ୍କ ସାହାଯ୍ୟରେ ସେତେବେଳେ କଟକରେ ଉଚ୍ଚାଙ୍ଗ ସଙ୍ଗୀତ ଶିକ୍ଷା ଲାଗି ଉଦ୍ୟମ କଲେ ଓ ପରେ ସଙ୍ଗୀତ ବିଦ୍ୟାଳୟ ପ୍ରତିଷ୍ଠା କଲେ । ଅନେକ ସଙ୍ଗୀତପ୍ରେମୀ ଯୁବକ, କେହି ଶିଖିବାକୁ, କେହି କିଛି ସାହାଯ୍ୟ କରିବାକୁ, କେହି ସଙ୍ଗୀତ ଶୁଣିବାକୁ ସେ ମେଳକୁ ଆସୁଥିଲେ । ସେଠି ବି କେତେଥର ଦେଖିଥିଲି ବାମାବାବୁଙ୍କୁ । ପରେ ଦେଖିଲି, ଜୀବନର ଶେଷଦିନ ପର୍ଯ୍ୟନ୍ତ ଉଚ୍ଚାଙ୍ଗ ସଙ୍ଗୀତ ପ୍ରତି ତାଙ୍କର ଆନ୍ତରିକ ଶ୍ରଦ୍ଧା ଓ ଆଗ୍ରହ ଓ ସଙ୍ଗୀତ ବିଷୟରେ ତାଙ୍କର ଅସଧାରଣ ଜ୍ଞାନ ଅତୁଟ ରହିଥିଲା । ଭାରତର କେତେଜଣ ପ୍ରସିଦ୍ଧ ସଙ୍ଗୀତଜ୍ଞଙ୍କ ବିଷୟରେ କିଛି ଅନୁଭୂତି ରହିଥିବା ଗୋଟିଏ ବଙ୍ଗଳା ବହିକୁ ସେ ଓଡ଼ିଆରେ ଅନୁବାଦ କରିଛନ୍ତି ଓ ତାହା ପ୍ରକାଶିତ ହୋଇଛି ।

କିନ୍ତୁ ମୁଁ ୧୯୩୯ ଶେଷ ଆଡକୁ କଟକ ଛାଡିବା ପୂର୍ବରୁ ଶ୍ରୀ ବାମାଚରଣ ମିତ୍ରଙ୍କ କୌଣସି ଉଲ୍ଲେଖଯୋଗ୍ୟ ବିଶିଷ୍ଟତା ବିଷୟରେ ଅବହିତ ନଥିଲି । ୧୯୫୦ରେ ପୁଣି କଟକରେ ଦୁଇ ବର୍ଷ ରହିବାକୁ ସୁଯୋଗ ପଡିଥିଲା । ସେତେବେଳେ ଶ୍ରୀ ବାମାଚରଣ ମିତ୍ରଙ୍କର କିଛି କିଛି ଗଳ୍ପ 'ଝଙ୍କାର'ରେ ପ୍ରକାଶ ପାଇଥାଏ ବୋଲି ମନେ ପଡୁଛି । ପ୍ରଜାତନ୍ତ୍ରର ପ୍ରଥମ ବିଷୁବ ମିଳନ ଉତ୍ସବ ସେହି ବର୍ଷ ହେଲା । ଉଦୀୟମାନ ଆଗ୍ରହୀ ଲେଖକ ବାମାଚରଣଙ୍କ ସଙ୍ଗେ ସାହିତ୍ୟ-ଜଗତରେ ପରିଚୟ ହେଲା । ତାଙ୍କ ଲେଖାର କିପରି ଉତ୍କର୍ଷ ବଢ଼ିବ ସେଥିପାଇଁ ଉଦ୍ୟମ ଓ ଅଭ୍ୟାସ କରୁଥାନ୍ତି, ବହୁତ ବହି ପଢ଼ିଥାନ୍ତି, ଲେଖକ ଦେଖିଲେ ସାହିତ୍ୟ ଆଲୋଚନା କରୁଥାନ୍ତି । ସାହିତ୍ୟ ସୃଷ୍ଟି ପାଇଁ ତାଙ୍କର ଏ ଆବେଗ, ଅନୁଶୀଳନ, ଉଦ୍ୟମ ଆଜୀବନ ରହିଥିଲା । ସେହି ସମୟରେ 'ପ୍ରଜାତନ୍ତ୍ର' ଦ୍ୱାରା ଅନୁଷ୍ଠିତ ଗୋଟିଏ କ୍ଷୁଦ୍ରଗଳ୍ପ ପ୍ରତିଯୋଗିତାରେ ସେ ପୁରସ୍କାର ପାଇଥିଲେ । ୧୯୫୩ ବେଳକୁ ସେ ଜଣେ କ୍ଷୁଦ୍ରଗଳ୍ପ ଲେଖକ ବୋଲି ପ୍ରତିଷ୍ଠିତ ହୋଇ ସାରିଥିଲେ । ୧୯୫୬ରୁ ମୁଁ ଭୁବନେଶ୍ୱରରେ ରହିଲି । ତା'ପରେ ସେ ଆସି ଭୁବନେଶ୍ୱରରେ ରହିଲା ଉତ୍ତାରୁ ଓ ବିଶେଷତଃ ୧୯୬୨ ଠାରୁ ତାଙ୍କ ସହିତ ଦେଖା ସାକ୍ଷାତ୍, କଥାବାର୍ତ୍ତା ଓ ବନ୍ଧୁତା ବଢ଼ିଲା । ସେହି ସମୟରୁ ଆଗଠୁଁ ଆହୁରି ଅଧିକ ମୁଁ ତାଙ୍କ ବ୍ୟକ୍ତିତ୍ୱତା ସଂସ୍ପର୍ଶରେ ଆସିଥିଲି । ସେ ଜଣେ ସୁଷମ, ପ୍ରାଣବନ୍ତ, ସମସ୍ତିଙ୍କ ପ୍ରତି ହିତାକାଙ୍‌କ୍ଷୀ, ସମ୍ବେଦନଶୀଳ, ଅମାୟିକ ମଣିଷ । ସେ ନିଜକୁ ପଛକୁ ରଖୁଥିଲେ, ଆତ୍ମ-ପୌଢ଼ୀ



Digitized by srujanika@gmail.com

ଦେଖାଉ ନଥିଲେ, ଅପରକୁ ବୁଝିବାକୁ ଚେଷ୍ଟା କରୁଥିଲେ, ଅପରଠୁଁ ଗୁଣହିଁ ଖୋଜୁଥିଲେ, ତାଙ୍କ ଦୃଷ୍ଟିଭଙ୍ଗୀ ଉଦାର ଥିଲା । ସେ ସ୍ୱାର୍ଥ-ଯୁଦ୍ଧରେ ଦୂରେଇ ରହୁଥିଲେ, ନିଜକୁ ଛାତ୍ରଟିଏ ବୋଲି ମଣୁଥିଲେ, ସବୁଠୁଁ ସବୁଥିରେ ନୂଆ କିଛି ଦେଖିବାକୁ, ଶିଖିବାକୁ ଖୋଜୁଥିଲେ । ଅସଦ୍‌ଗୁଣ ଓ ଅନୈତିକତାକୁ ସେ ଘୃଣା କରୁଥିଲେ, ପ୍ରତିକୂଳ ଅବସ୍ଥା ଭିତରେ ସେ ନିଜର ସୁନୀତି ଗୁଡ଼ିକ ଅତୁଟ ରଖି ନିରୀହ ଆତ୍ମନିର୍ଭରଶୀଳ ଜୀବନ ବିତାଉ ଥିଲେ । ତାଙ୍କ ବିଚାର ନିର୍ଭୀକ ଓ ଚିନ୍ତାଶୀଳ ଥିଲା, ଦୃଷ୍ଟିଭଙ୍ଗୀ ଶାଣିତ ଥିଲା, ରୁଚିବୋଧ ମାର୍ଜିତ ଥିଲା, ଆଦୌ ଗତାନୁଗତିକ ବା ମାମୁଲି ନଥିଲା । ତାଙ୍କଠୁଁ ରସଗ୍ରାହିତ ଥିଲା । ସାହିତ୍ୟକୁ, ସଙ୍ଗୀତକୁ ସେ ମନୁଷ୍ୟର ଶ୍ରେଷ୍ଠତମ ଓ ସୂକ୍ଷ୍ମତମ ସ୍ମୃତିକୁ ଅବବୋଧର ପ୍ରକାଶ ବୋଲି ଭାବୁଥିଲେ । ସେ ଭାବୁଥିଲେ ଐଶ୍ୱରିକ ଦୟା କି ପ୍ରେରଣାରୁ କେଉଁ ମୁହୂର୍ତ୍ତରେ କେତେବେଳେ କାହାଦ୍ୱାରା ସମ୍ଭବ ହୋଇପାରେ, ସର୍ବଲଭ୍ୟ ନୁହେଁ କି ସବୁବେଳେ ସମ୍ଭବ ନୁହେଁ । ସେଥିପାଇଁ ନିଜଆଡୁ ଆନ୍ତରିକ ନିଷ୍ଠାପର ଉଦ୍ୟମ କରିପାରିବନାହିଁ ନିଜର ପୁରସ୍କାର, ଅନ୍ୟ ପ୍ରକାର ସାଫଲ୍ୟ ନୁହେଁ, ଏପରି ଥିଲା ତାଙ୍କ ବିଚାର । କିଛି କେତେବେଳେ ମନଖୋଲା ସାହିତ୍ୟ ଆଲୋଚନାରେ କାହା ସଙ୍ଗେ ଲାଗିଯିବାକୁ ତାଙ୍କୁ ଭାରି ଆନନ୍ଦ ଲାଗୁଥିଲା । ନିଜ ପାଇଁ ଲାଭକ୍ଷତି ବିଷୟରେ କି କିଏ କ'ଣ ତାଙ୍କୁ ଭାବିବ ସେ ବିଷୟରେ ସେ ଚିନ୍ତା କରୁନଥିଲେ । ସଂସାରରେ ନିଜ ସାଂସାରିକ କାର୍ଯ୍ୟ ଯଥାସାଧ୍ୟ କରି ଅନ୍ୟ ସମୟରେ ନିଜ ଖିଆଲରେ ନିଜ ସ୍ମୃତିରେ ଜୀବନର ନାନା ବିଚିତ୍ରତା ଖୋଜି, ନାନା ଅନୁଭୂତି ଗୋଟାଇ ଜୀବନକୁ ଓ ମଣିଷକୁ ଭଲପାଇ ନିଜ ଆଦର୍ଶରେ ବଞ୍ଚିବାକୁ ଯଥାସାଧ୍ୟ ଚେଷ୍ଟା କରି ସେ ଶେଷଯାକେ ଜୀବନ ବିତାଇ ରହିଗଲେ । ତାଙ୍କ ବ୍ୟକ୍ତିତ୍ୱ ତାଙ୍କ ରଚିତ ଲେଖାମାନଙ୍କରେ ସ୍ଥାନେ ସ୍ଥାନେ ଫୁଟି ଉଠିଛି ।

'ନର ଛଞ୍ଚାଣ', 'ଚନ୍ଦ୍ର ଓ ଚମ୍ପା' ଆଦି ତାଙ୍କର କେତୋଟି ଲେଖା ଇଂରାଜୀ ଲେଖକଙ୍କ ଲେଖାର ଛାୟାରେ ଲିଖିତ । ସେ କେତେଗୁଡ଼ିଏ ଚିନ୍ତାଶୀଳ ପ୍ରବନ୍ଧ ଲେଖିଥିଲେ, ତାଙ୍କ ମୃତ୍ୟୁ ପୂର୍ବରୁ ୧୯୭୪ରେ ପ୍ରକାଶିତ ସଂକଳନ 'ଜୀବନ ସାହିତ୍ୟ କଳା'ରେ ସେହିପରି ପ୍ରବନ୍ଧ ଗୁଡ଼ିଏ ଅଛି । ପତ୍ରପତ୍ରିକାମାନଙ୍କରେ ନାନା ବିଷୟରେ ତାଙ୍କର ଗୁଡ଼ିଏ 'ରମ୍ୟରଚନା' ପ୍ରକାଶିତ ହୋଇଥିଲା । ସେ ଗୁଡ଼ିକରେ ସ୍ଥାନେ ସ୍ଥାନେ ଚିତ୍ର, ସ୍ଥାନେ ସ୍ଥାନେ ଚିନ୍ତାଶୀଳ ବିଶ୍ଳେଷଣ, ସ୍ଥାନେ ସ୍ଥାନେ ସରସ ହାସ୍ୟ ମିଳେ । କଟକରେ ରାମନବମୀ ଯାତ୍ରାରେ ହନୁମାନ ତାଙ୍କ ସେହି ଚିତ୍ରମାନଙ୍କ ଭିତରୁ ଗୋଟିଏ ଅଭୁଲା ଚିତ୍ର । ତାଙ୍କର କେତେଗୁଡ଼ିଏ କ୍ଷୁଦ୍ରଗଳ୍ପ



Digitized by srujanika@gmail.com

ଚାରେଟି ସଂକଳନରେ ପ୍ରକାଶିତ ହୋଇଛି । ମୋର ଧାରଣା ହେଉଥିଲା ଏହି ସାହିତ୍ୟ ସାଧକଙ୍କର ଜୀବନର ଉତ୍ତର କାଳକୁ ତାଙ୍କ ପ୍ରବନ୍ଧ ଓ କ୍ଷୁଦ୍ରଗଳ୍ପରୁ ଆହୁରି ଉନ୍ନତତର ଉତ୍କର୍ଷ ବାରି ହୋଇପଡୁଥିଲା । ତା'ପରେ ସେ ଚାଲିଗଲେ । ତାଙ୍କ ତିରୋଧାନର ଚାରିବର୍ଷ ପରେ ୧୯୭୯ରେ ତାଙ୍କର ଗୋଟିଏ ଗଳ୍ପ ସଂକଳନ 'ମିତ୍ରକଳ୍ପ' ପ୍ରକାଶିତ ହୋଇଥିଲା ଓ ତାହାପରେ ୧୯୮୧ରେ ଆଉ ଗୋଟିଏ ସଂକଳନ 'ମିତ୍ରସ୍ୱଳ୍ପ' । ଏ ଯୋଡ଼ିକରେ ୪୫ଟି କ୍ଷୁଦ୍ରଗଳ୍ପ ଅଛି, ଏଥିରେ ଅଳ୍ପ କେତୋଟି ବିଷୟରେ ଏ ଆଲୋଚନାରେ କିଛି କୁହାଯାଇଛି ।

ଭାଷା ସରଳ, ଶବ୍ଦ ପ୍ରୟୋଗରେ ବାହୁଲ୍ୟ ନଥାଏ । କେତୋଟି ଗଳ୍ପରେ ବିଶେ ଲେଖୁ ଲେଖୁ କେଉଁ ବିଷୟରେ ଟିକିଏ ବେଶି କୁହାଗଲା, ସାଧାରଣତଃ ସେପରି ଘଟେନାହିଁ । ସ୍ଥାନେ ସ୍ଥାନେ ଏପରି ଗଳ୍ପ ଅଛି ଯେଉଁଠି ଅଳ୍ପ ବାକ୍ୟ ବ୍ୟବହାର କରି ଶକ୍ତିଶାଳୀ ପ୍ରଭାବ ପକାଯାଇ ପାରିଛି, ତାଙ୍କ ଭାଷାର ଅଭିବୃଦ୍ଧି ସେହି ଆଡ଼କୁ ମୋହି ଚାଲିଥିଲା । ପଢ଼ିଲେ ହିଁ ଜଣାଯାଏ, ନିଜ ଜୀବନରେ ଯେପରି, ଗଳ୍ପ ଲେଖାରେ ବି ସେପରି ଆଲୋଚନା ଓ ଯୁକ୍ତି ତାଙ୍କୁ ଆକୃଷ୍ଟ କରେ, ସେଥିରେ ସେ ମାତି ଉଠନ୍ତି, ସେତେବେଳେ ପ୍ରୟୋଗ କରାହୁଏ ପଢ଼ିଥିବା ନାନାଶାସ୍ତ୍ରର ଉକ୍ତି, ନାନା ମତ, କେତେବେଳେ କେଉଁ କବିତାର ଉଦ୍ଧୃତାଂଶ । ଲେଖୁ ଲେଖୁ ସ୍ଥାନେ ସ୍ଥାନେ ସେ ଆଲୋଚନାରେ ରତ ହୁଅନ୍ତି । ଗଳ୍ପ ଭିତରେ ସେ ଆଲୋଚନା କରନ୍ତି ନାନା ଲୋକଙ୍କୁ ଏକାଠି ଯୁକ୍ତି କରି, ପରସ୍ପରଙ୍କ ଜୀବନ ଅନୁଭୂତିକୁ କିଛି କହି, 'ବାଜେ ଗପସପ' ଭିତରୁ ବାହାରେ ତାତ୍ତ୍ୱିକ ଆଲୋଚନା । ଆଉ ବେଳେବେଳେ ଲେଖକ ମଝିରେ ମଝିରେ ନିଜ ମତାମତ ଦେଇ ଘଟଣାକୁ ବିଷୟବସ୍ତୁ କରି ତହିଁରୁ ସାଧାରଣଙ୍କୁ ଖାପିଲା ଭଳି ତାଙ୍କ ମତାମତ କାଢ଼ି କହୁଥାନ୍ତି, ଆଡେଇ ହୋଇ ରହନ୍ତି ନାହିଁ । ସ୍ଥାନେ ସ୍ଥାନେ ହସ, ଶ୍ଳେଷ ବାହାରୁଥାଏ । ଲାଗୁଥାଏ ହାଲୁକା । କିନ୍ତୁ କିଛି କହିବା ଭଳି ନଥିଲେ ସେ ଗଳ୍ପଟିଏ ଲେଖନ୍ତି ନାହିଁ, ପ୍ରତି ଗଳ୍ପରେ ତାଙ୍କର ବକ୍ତବ୍ୟ ନିଜସ୍ୱ ସ୍ୱାଧୀନ ମତହିଁ ସାରକଥା । ଅଳ୍ପ କେତେ ଗଳ୍ପ ଏଣୁ ତେଣୁ କହିଲା ପରି ଭାସିଲା ପରି ଆରମ୍ଭ ହୁଏ, ବେଳେ ବେଳେ ଏପରି ପ୍ରସଙ୍ଗଟିଏ ପକାଏ ପରେ ଗଳ୍ପର କାହାଣୀ ସହିତ ଯାହାର ସମ୍ପର୍କ ନ ମିଳିପାରେ, ତା'ପରେ ହଠାତ୍ ଆରମ୍ଭ ହୋଇଯାଏ କାହାଣୀ, ହସ କାନ୍ଦ, ଆଶା, ନିରାଶା, ଉପେକ୍ଷା ଭିତରେ ଗଡ଼ି ଚାଲେ । ଖାଲି ମନୋରଞ୍ଜନ ପାଇଁ ଗଳ୍ପ ଲେଖିବା ତାଙ୍କ ଉଦ୍ଦେଶ୍ୟ ନଥିଲା, ଯଦିଚ କେତେ ଗଳ୍ପ ତାହା ବି କରିଛି । ଗଳ୍ପ



Digitized by srujanika@gmail.com

ମାଧ୍ୟମରେ ସାମାଜିକ, ନୈତିକ, ରାଜନୈତିକ ଅବସ୍ଥାରେ ଯେଉଁଠି ଯାହା ତାଙ୍କୁ ଭୁଲ ବୋଲି ଲାଗୁଛି ସେ ବିଷୟରେ ଆଲୋଚନା କରି ତାଙ୍କ ମତ ସେ ପ୍ରକାଶ କରୁଥିଲେ, କେତେ ଗଳ୍ପରେ ଅଛି ତାତ୍ତ୍ୱିକ ପ୍ରଶ୍ନମାନଙ୍କ ବିଷୟରେ ଆଲୋଚନା । ସ୍ଥାନେ ସ୍ଥାନେ ଅଛି ବିଦ୍ରୂପାତ୍ମକ ଚିତ୍ର । କେଉଁଠି ଗଭୀର ସମ୍ବେଦନଶୀଳ କରୁଣ ଚରିତ୍ରଚିତ୍ର ।

ସାଧାରଣ ଲୋକଙ୍କ ଦୈନନ୍ଦିନ ଜୀବନରୁ ସେ ଗଳ୍ପ ପାଇଁ ଉପାଦାନ ସଂଗ୍ରହ କରିଥିଲେ । ସେମାନେ ଅଧିକାଂଶ ମଧ୍ୟବିତ୍ତ ଶ୍ରେଣୀର, ସହରର ବା ଗ୍ରାମର । କାହାଣୀ ମାନଙ୍କରେ ସମସାମୟିକ ସାମାଜିକ ଓ ରାଜନୈତିକ ଅବସ୍ଥାର ନାନା ଘଟନା ଓ ତାର ପ୍ରଭାବ ମଧ୍ୟ ପ୍ରତିଫଳିତ ହୋଇଛି । ସାଧାରଣତଃ ପ୍ରତି ଚରିତ୍ରର କୌଣସି ଗୋଟିଏ ବିଶିଷ୍ଟ ଦିଗ ବା ଗୁଣକୁ ଉଜ୍ଜ୍ୱଳ କରି ଫୁଟାଇବାକୁ ଚେଷ୍ଟା କରାଯାଇଛି । ସାଧାରଣ ଜୀବନରୁ ନିଆଗଲେ ବି କେତେ ଗୁଡିଏ ଚରିତ୍ର ଏପରି ଭାବେ ବିଛା ହୋଇ ଉପସ୍ଥାପିତ କରାଯାଇଛନ୍ତି ଯେ ସେମାନେ ସାଧାରଣ ପରି ଲାଗନ୍ତି ଓ କେତେ ଗୁଡିଏ ଗଳ୍ପରେ ଗୋଟିଏ ଚରିତ୍ରଙ୍କ ଚିତ୍ରଣ ହିଁ ପ୍ରଧାନ ହୋଇଛି । କାହାଣୀ ଗୁଡିକରେ ସମାଜ ଚିତ୍ର, ଦୈନନ୍ଦିନ ଘଟଣା ଆଦିର ଚିତ୍ର, ମନୁଷ୍ୟର ସ୍ୱଭାବ ଚିତ୍ରଣ ବାସ୍ତବତା ସହିତ ଖାପିଯାଏ । ପ୍ରକାର ପ୍ରକାର ଚରିତ୍ର ମୁହଁ ଦେଖାନ୍ତି, କେତେବେଳେ କାହା ସାଧାରଣ ରୂପ ଉହାଡରେ ଥିବା ମରମଭାବ ଚିନ୍ତା କି ଚେତନାର କେଉଁଅରାଳ ଉପରେ ଅନ୍ଧାରରେ ଟିକିଏ ଆଲୁଅ ପଡିଯାଏ । 'ମିତ୍ରକଳ୍ପ' ସଂକଳନର ଶେଷ ଗଳ୍ପ 'ପଘା'ର ଶେଷ ପୃଷ୍ଠାରେ ଗଳ୍ପର ଚରିତ୍ର ନରେନ୍ଦ୍ର 'ଲେଖାଟି ପଢ଼ି ଲୋକେ ମତେ ଯାହା ଭାବନ୍ତୁ ପଛେ, ବାରମ୍ବାର ନାନା ପ୍ରକାରର ଲୋକେ ଜାଣନ୍ତୁ, ମଣିଷର ପ୍ରକୃତ ଅବସ୍ଥା କ'ଣ ।' କେବଳ କ୍ଷୁଦ୍ରଗଳ୍ପରେ ନୁହେଁ, ରମ୍ୟ ରଚନାରେ, ପ୍ରବନ୍ଧରେ ଲେଖକ ବାମା ଚରଣ ମିତ୍ରଙ୍କର ମତ ଏହାହିଁ ଥିଲା ବୋଲି ମୋର ଧାରଣା । 'ମଣିଷର ଅବସ୍ଥା କଣ' ? ନିଜ ଦୃଷ୍ଟି ଓ ବିଚାରରୁ ସେ ବିଷୟରେ ଗଭୀର ଭାବରେ ଭାବି, କେତେ ପ୍ରତିଷ୍ଠିତ ମନକୁ ଆଲୋଚନା କରି ଓ କାର୍ଯ୍ୟ କ୍ଷେତ୍ରରେ ତହିଁର ଅନୁପଯୋଗିତା ଦେଖି ନିଜ ମତ ସେ ସ୍ପଷ୍ଟ ଭାବରେ କହି ଚାଲିଥିଲେ । ସାହିତ୍ୟ ସୃଷ୍ଟିକୁ ସେ ଗୁରୁଦାୟିତ୍ୱ ରୂପେ ଭାବି ତହିଁରେ ଅଗ୍ରସର ହେଉଥିଲେ । ପ୍ରତି ଗଳ୍ପରେ ତାଙ୍କ ଅକୃତ୍ରିମ ନିବିଷ୍ଟ ଆନ୍ତରିକତା ବାରି ହୋଇପଡେ ।

'ମିତ୍ରକଳ୍ପ'ର ପ୍ରଥମ ଗଳ୍ପ 'ମିମିଳ ସଭ୍ୟତା ଶିକ୍ଷା' । ଡିମାଇ ସାଢ଼େଚାରିପୃଷ୍ଠାର ଗଳ୍ପଟିଏ । ମିମ ଝିଅଟି ବିଷୟରେ ଯୋଡିଏ ସଂକଳନରେ ତିନୋଟି ଗଳ୍ପ ଅଛି ।



Digitized by srujanika@gmail.com

ଏ ପ୍ରଥମ ଗଳ୍ପରେ ମିମି ଗୋଟିଏ ଟିକି ପିଲା, ତା' ବାପା ଜୀବନବାବୁ କଚିରିରେ ମକଦ୍ଦମା ବିଚାର କରନ୍ତି । ବିଲାତ ଆମେରିକା ବୁଲିଛନ୍ତି । ସେ ଚାହାନ୍ତି 'କମ୍ ହିଅର' କହିଲେ ମିମି ଆସୁ, କିଛି ଦେଲେ ଥ୍ୟାଙ୍କ୍ୟୁ' କହୁ, 'ଗୁଡ୍ ମର୍ଣ୍ଣିଂ' 'ଗୁଡ୍ ନାଇଟ୍' କହିବା ଶିଖୁ, ଟେବୁଲରେ ବସି ଖାଇ ଶିଖୁ, ଟୁଥ୍‌ପେଷ୍ଟ ଘସୁ, ପୋଷାକ ପିନ୍ଧି ଶିଖୁ, ଏଇ ଟିକ ଦିନୁଁ, 'ଶୃଙ୍ଖଳା' ମାନି ଶିଖୁ । ସେ ଏସବୁ ନକରି ପାରିଲେ ଜୀବନ ବାବୁ ଧୈର୍ଯ୍ୟ ହରାନ୍ତି, ରାଗନ୍ତି, ପିଟନ୍ତି ନିରାଶ ହୁଅନ୍ତି । ମିମି ଏ ସବୁ ପାରେନାହିଁ ସେ ତାର ସ୍ୱଭାବ ଓ ବୟସ ଅନୁସାରେ ବ୍ୟବହାର ଦେଖାଏ, ଲେଖକଙ୍କ ଆଖିରେ ତାହାହିଁ ମଧୁର, ତାହାହିଁ ଯଥାର୍ଥ । ଜୀବନ ବାବୁଙ୍କ ଧାରଣା ଓ ପ୍ରୟାସ ଭୁଲ୍, ହାସ୍ୟାସ୍ପଦ । ସ୍ଥାନେ ସ୍ଥାନେ ମିମିର ଚିତ୍ର ମର୍ମସ୍ପର୍ଶୀ ହୋଇଛି । କିନ୍ତୁ କେବଳ ସେତିକି ଦେଖାଇ ଗଳ୍ପଟି ସାରିବା ଲେଖକଙ୍କ ଉଦ୍ଦେଶ୍ୟ ନଥିଲା; ପ୍ରାଧାନ୍ୟ ଥିଲା ତାଙ୍କ ମତକୁ କିପରି ଆହୁରି ସ୍ପଷ୍ଟ ଭାବେ ପ୍ରକାଶ କରିବେ ତାହା ଉପରେ ତେଣୁ ଭିତରକୁ ଆସିଲେ ଜୀବନ ବାବୁଙ୍କ ବନ୍ଧୁ ବିଜୟବାବୁ ଶୃଙ୍ଖଳା ବିଷୟରେ ଦୁଇ ବନ୍ଧୁ ଯୁକ୍ତି କଲେ, ବିଜୟବାବୁ ଲେଖକଙ୍କ ମତ କହି ହିଁ ଯୁକ୍ତି ବାଢୁଛନ୍ତି, 'ଆନୁଷ୍ଠାନିକ ଭାବରେ ବାହାରର ଶୃଙ୍ଖଳାରେ କିଛି ଲାଭ ନାହିଁ, ବରଂ ଘୋର କ୍ଷତି, ଗୀତାରେ ପଢ଼ିନାହୁଁ, କର୍ମେନ୍ଦ୍ରିୟକୁ ସଂଯମ କରି ଇନ୍ଦ୍ରିୟ ବିଷୟ ସବୁକୁ ଯିଏ ସର୍ବଦା ଭାଳୁଥାଏ ସେ ମିଥ୍ୟାଚାରୀ' । ଏ ଗଳ୍ପରେ ବିଦେଶୀ ଆଚାର ବ୍ୟବହାର ଅନୁକରଣକୁ ବି ବିଦ୍ରୁପ କରାଯାଇଛି ।

ଏ ସଂକଳନରେ 'ହୋଲି' ଗଳ୍ପଟିର ଦ୍ୱିତୀୟ ଅଧକ ଅସ୍ୱାଭାବିକ ଲାଗେ, ପ୍ରଥମ ଅଧକ ଚମତ୍କାର । ନଈ ଏପାରି ସେପାରି ଯୋଡିଏ ଗାଁ, ଗୋଟିଏ ହିନ୍ଦୁ ଗାଁ, ସେଠି ରାମ ପ୍ରଧାନ, ଆରଟି ମୁସଲମାନ ଗାଁ, ସେଠି ରହିମ୍ ଖାଁ, ଦିହେଁ ପିଲାଦିନୁଁ ବନ୍ଧୁ । ଦୁଇ ଗାଁ ଭିତରେ ଅକସ ଥାଉ ପଛେ । ହୋଲି ଦିନ ବୁଢ଼ା ରହିମ୍‌ର ଦାଢ଼ୀରେ ରାମ ପ୍ରଧାନ ନାତି ନଈ ବାଲିରେ ଅଜାକୁ ନାତିର ଥଟ୍ଟାହିସାବରେ ଅବିର ବୋଳିଦେଲା, ସେତିକିରେ ଦୁଇ ଗାଁ ଭିତରେ ମାଡ୍‌ପିଟ୍ ଲାଗିଗଲା, ରାମ ପ୍ରଧାନ ପୁଅ ଓ ରହିମ୍‌ର ପୁଅ ସେଇ ମାଡ୍‌ପିଟ୍ ଭିତରେ ପରସ୍ପରକୁ ହତ୍ୟା କଲେ । ଧର୍ମ ବିଦ୍ୱେଷର ନାନା ଦିଗ ଏ ଗଳ୍ପଟିରେ ଆଲୋଚନା କରାହୋଇଛି । ସବୁ ଧର୍ମର ସାରକଥା ଏକ, ଅନ୍ଧ ବୁଝାମଣା ଓ ଅବିଶ୍ୱାସରୁ କିପରି ହିଂସା ଉପୁଜେ ସେ କଥା କୁହାହୋଇଛି । ସବା ଉପରେ ବଡ କରି ଦେଖା ହୋଇଛି ଦୁଇ ଧର୍ମର ଯୋଡିଏ ମରିଷଙ୍କର ପରସ୍ପର ପ୍ରତି ସ୍ନେହକୁ, ସେମାନଙ୍କ ଉଦାରତାକୁ । ରାମ



Digitized by srujanika@gmail.com

ପ୍ରଧାନ ଓ ରହିମ୍ ଯୋଡିଏ ମନେ ରହିଲାଭଳି ଚରିତ୍ର । 'ଝଙ୍କାର' ପତ୍ରିକାରେ ପ୍ରକାଶ ପାଇଲା ପରେ ଗଳ୍ପଟି ଆଲୋଡନ ସୃଷ୍ଟି କରିଥିଲା । ଏହି ଗଳ୍ପର ଏକ ପୂରାନୁବୃତ୍ତି ଭଳି ଆଉ ଗୋଟିଏ ଗଳ୍ପ 'ଧର୍ମକ୍ଷେତ୍ରେ' ଏଥିରେ ରାମ ପ୍ରଧାନଙ୍କ ନାତି ଶାମ ଓ ରହିମଙ୍କ ନାତୁଣୀ ହସ୍‌ନୁ ପରସ୍ପରଙ୍କ ପ୍ରେମରେ ପଡୁଛନ୍ତି, ଲୁଚି ଲୁଚି ଭେଟାଭେଟି ହେଉଛନ୍ତି ଓ ଦୁଇ ଧର୍ମ ପ୍ରତି ଉଦାର ମନୋଭାବ ବ୍ୟକ୍ତ କରୁଛନ୍ତି । ଦୁଇ ଅଜାଙ୍କ ହାବୁଡେ ପଡୁଛନ୍ତି ଓ ରହିମ୍ କହୁଛନ୍ତି । ସଙ୍ଗାତଏ ଶାଲେ ସେକ୍‌ଙ୍କୁ ଫଗୁଣ ପୁନେଇକୁ ସାଦି କରାଦେଙ୍ଗେ ରାଜି ରାମ ପ୍ରଧାନ ରହିମର ହାତ ଧରି କହୁଛନ୍ତି । 'ରାଜି' ଖାଲି ପ୍ରେମ କାହାଣୀଟିଏ କହିବା କି ପ୍ରେମବିକାର ଯୋଗୁଁ ଗୋଟିଏ ମାନସିକ ରୋଗର ଚିତ୍ର ଦେବା କି ପ୍ରଣୟ ଓ ବିବାହ ଦ୍ୱାରା ହିନ୍ଦୁ ମୁସଲମାନ ସାଂପ୍ରଦାୟିକ ସମସ୍ୟା ସମାଧାନ କରିବା ଏ ଗଳ୍ପର ଉଦ୍ଦେଶ୍ୟ ନଥିଲା । ମନୁଷ୍ୟର ମୈତ୍ରୀ, ପ୍ରେମ ଜୀବନର ସବୁଠୁଁ ମୂଲ୍ୟବାନ, ସଂକୀର୍ଣ୍ଣ ମନୋଭାବ ଛାଡି ସବୁ ଧର୍ମକୁ ସମ୍ମାନ ଜଣାଇ ତାକୁ ବୁଝିବାକୁ ଓ ସହିବାକୁ ଚେଷ୍ଟା କରିବା ଉଚିତ୍, ଲେଖକଙ୍କ ଏଥିରେ ଏପରି ନାନା ବକ୍ତବ୍ୟ ଅଛି । 'ମାଦଳପାଞ୍ଜି' ଗଳ୍ପଟିରେ ଜଣେ ବିଚାରକଙ୍କ ଗୋଟିଏ ଦିନର ଅଭିଜ୍ଞତାରୁ କାଢ଼ି ନ୍ୟାୟ-ବିଚାର ବିଷୟରେ କିଛି ପ୍ରଶ୍ନ ଉଠାଯାଉଛି । ଯୋଡିଏ କନଷ୍ଟବଳ ଗୋଟିଏ ମୁଦାଲାକୁ କଚିରିକୁ ଆଣୁଛନ୍ତି । ସେ ଚୋରୀ କରିଛି ବୋଲି ବିଚାର ହେବ । କିନ୍ତୁ ବାଟରେ ଦୁଇ କନଷ୍ଟବଳ ରଗାରଗି ଉଘାଉଘି ହୋଇ ଯାହା କହୁଛନ୍ତି ଜଣା ପଡୁଛି ଦୁହେଁ ନାନା ଅସାଧୁତା କରି ସାରିଛନ୍ତି । ଜଣେ ଭୋକ ବିକଳରେ୍ ଗାଁ ପ୍ରଧାନ ଘରୁ ଚୋରି କରି ଧରାପଡିଛି, ହାକିମ ତାକୁ ଆଇନ୍ ଅନୁସାରେ ଯେତେ ସତର୍କ କରିଦେଉଥିଲେ ସୁଦ୍ଧା ସେ ଦୃଢ଼ ପ୍ରତିଜ୍ଞ, ସ୍ୱୀକାରୋକ୍ତି କରିବ ହଁ । ତେଣୁ ସେ ଦଣ୍ଡ ପାଇବା ନିଶ୍ଚିତ । ଆଉ ଜଣେ ଅନ୍ୟ ଲୋକର ପାଞ୍ଚଶହ ଟଙ୍କାର ଧାନ ଚୋରି କରିଛି, ଅଥଚ ସେ ଦୋଷ ସ୍ୱୀକାର କରୁନାହିଁ । ତେଣୁ ଗୁଡାଏ ସାକ୍ଷୀକି ଲଝାର ଓ ଜେରା ଚାଲିବ । ହୁଏତ ଓକିଲ ଲାଗିବେ ହୁଏତ ଦୋଷୀ ଜିତିପାରେ, କିଏ ଜାଣେ ? ହାକିମଟି ଆଇନ୍‌ର ନିକିତିରେ ତଉଲି ତଉଲି କଚିରିରେ ଦୋଷୀ ନିର୍ଦ୍ଦୋଷ ବାଛନ୍ତି, ଦୋଷୀକୁ ଦଣ୍ଡ ଦିଅନ୍ତି । ଘରେ ପାଞ୍ଚ ବର୍ଷର ପୁଅ ତାଙ୍କ କଲମ ଭାଙ୍ଗିଛି, ମାନିଲା, ସେ ସତ କହିଲା ବୋଲି ସେ ଗର୍ବିତ ହେଲେ, ତିନି ବର୍ଷର ଝିଅ ତୁଣ୍ଡରେ ଦୁଧ ସର ଲାଗିଛି, ସେ ମାନୁ ନାହିଁ, ସେଥିପାଇଁ ସେ ତାକୁ ଗେଲ କରୁଛନ୍ତି । ଏସବୁ ବକ୍ତବ୍ୟ ଉହାଡରେ ଲେଖକଙ୍କର ଆହୁରି ବୋଧହୁଏ ବକ୍ତବ୍ୟ ଯେ ଯେଉଁ ସ୍ନେହ,



Digitized by srujanika@gmail.com

ବୁଝାମଣା ଓ ଉଦାରଦୃଷ୍ଟିରେ ବାପମାରିଲା ଛୁଆଙ୍କ ଅପରାଧକୁ ଦେଖନ୍ତି, ସେହି ମନୁଷ୍ୟ ସମାଜରେ, ବିଶେଷତଃ ବନ୍ଧା ଆଇନାରେ ମନୁଷ୍ୟକୁ ସେପରି ଦେଖିବାକୁ ବ୍ୟବସ୍ଥା ନାହିଁ । 'ଉଦ୍‌ଭ୍ରାନ୍ତ' ଗଳ୍ପରେ ଲେଖକ ଦେଖାଇଛନ୍ତି, ଚରମସତ୍ୟ ମଣିଷକୁ ଅପହଞ୍ଚ । ସତ୍ୟ-ଅନୁସନ୍ଧିତ୍ସୁ ଗୌତମ (ବୁଦ୍ଧ)ଙ୍କ ମନରେ ନାନା ସନ୍ଦେହ ଓ ନାନା ପ୍ରଶ୍ନ ଉଠୁଛି, ଶେଷରେ ସେ ଯେତେବେଳେ ଭାବିଲେଣି ଓ କହିଲେଣି ଯେ ସେ ଚରମ ସତ୍ୟ ପାଇଛନ୍ତି, ବୁଦ୍ଧତ୍ୱ ପାଇଛନ୍ତି, ସେତେବେଳେ ବି ସେ ବିଷୟରେ ତାଙ୍କର ସନ୍ଦେହ ତୁଟି ନାହିଁ । ତାଙ୍କ ମନ କଥା ଆରୋପକରି ଲେଖକ ଯେପରିକି ତାଙ୍କ ତୁଣ୍ଡରେ ଉପସଂହାର କରିଛନ୍ତି 'କିନ୍ତୁ ସନ୍ନ୍ୟାସୀ କଣ ଭାବୁଛନ୍ତି ଦୁଃଖ ବା ସୁଖର ଅନୁଭୂତି ମନର ବିକାର ମାତ୍ର ଏବଂ ଚରମ ସତ୍ୟ ଦୃଷ୍ଟିରୁ ଦୁହେଁ ଏକହିଁ ନିୟମ ଦ୍ୱାରା ସୃଷ୍ଟ ଦୃହେଁ ଦୁହିଁଙ୍କ ଭିତରେ ମୌଳିକ ପାର୍ଥକ୍ୟ ନାହିଁ ?... କିନ୍ତୁ ସେ କଥା ପରେ । ପ୍ରଥମେ ସାମାଜିକ ମନୁଷ୍ୟର ସଂସ୍କାର ଆବଶ୍ୟକ । ଶେଷ ବାକ୍ୟଟି ଅତି ତାତ୍ପର୍ଯ୍ୟପୂର୍ଣ୍ଣ, ଆଗ କାମ ଆଗ । ଆଗ ସାମାଜିକ ମନୁଷ୍ୟର କଷ୍ଟ ନିବାରଣ । ଦନେଇ ତୁଉଣ' ଗଳ୍ପରେ ଯୋଡିଏ ପ୍ରଧାନ ଚରିତ୍ର । ଜଣେ କଥକ ବା ତା ଉହାଡରେ ଲେଖକ, ଆଉ ଜଣେ ଦନେଇ । କଥକ ଏଠି ଦ୍ରଷ୍ଟା, ଭାବୁକ କାହାଣୀଟି ଦନେଇ ବିଷୟରେ । ଦନେଇ ବ୍ରାହ୍ମଣ, ଗରିବ । କଷ୍ଟେ ମଷ୍ଟେ ମ୍ୟାଟ୍ରିକ୍ୟୁଲେସନ୍ ଯାକେ ପଢ଼ି ବେକାର ହୋଇ ବୁଲି ବୁଲି ଜୀବନ ବିତାଇଛି । କଥକ ଜାତିରେ କରୁଣ, ପିଲାଦିନୁଁ 'ପାଠପଢ଼ି ବଡ ହେବାକୁ' ଇଚ୍ଛା ଥିଲା, ଏମ୍‌ଏ ପାଶ୍ କଲା, ବଡ ଚାକିରି କଲା, ଧନୀ ଘରେ ବାହା ହେଲା । ଦନେଇ ଆଜୀବନ ଗୋଟାଏ ଦରିଦ୍ର, ବାରବୁଲା ହୋଇ ରହିଲା, ନିଜ ଖିଆଲରେ ଜୀବନ ବିତାଏ, ଯାହା ଯେତେବେଳେ ମିଳିଲେ ଉଡାଇ ଦିଏ, ସବୁଦିନ ଗରିବ । କିନ୍ତୁ ସେହି ଲୋକଟି ଭିତରେ ଦେଖାଇଛନ୍ତି, କେତେ ଗୁଡିଏ ବିଚିତ୍ର ଗୁଣ । ସେ ଗୋଟିଏ ସରଳ ନିର୍ବିକାର, ସ୍ନେହୀ, ନିରହଙ୍କାର ଲୋକ । ସେ ବେଳେବେଳେ ଯେଉଁ ଅବାନ୍ତର ପ୍ରଶ୍ନ ପଚାରେ ତା ଉହାଡରେ ଥାଏ କିଛି ଦାର୍ଶନିକ ପ୍ରଶ୍ନର ଉତ୍ତର । ସେ ବୁଲି ବୁଲି ଭାରତ ସାରା ନାନା ସ୍ଥାନ ଦେଖିଛି । ସେ ପାଣ ସାହିରେ ବୁଲି ନାନା ଅସଂଶ୍ଳିଷ୍ଟ ଅବାନ୍ତର ତତ୍ତ୍ୱ ବଖାଣୁଛି; କିନ୍ତୁ ତାର ଆନନ୍ଦ ଯେ ସେ ସେମାନଙ୍କ ସହିତ ଏକ ହୋଇ ପାରୁଛି । ଅପରର କୁତୁହଳ ମେଣ୍ଟାଇ ଅପରକୁ ଆନନ୍ଦ ଦେବା ପାଇଁ ସେ ନାନା କଥା କରିଥାଏ । କଥକର ସ୍ତ୍ରୀକୁ ସେ ଶିଖାଇ ଯାଇଛି ମାଛ ରାନ୍ଧିବାର ଗୋଟାଏ ନାହିଁ ନଥିବା ଉଦ୍ଭଟ ପ୍ରଣାଳୀ । କଥକର ମା' ଭକ୍ତି ପିପାସା ମେଣ୍ଟାଇବା



Digitized by srujanika@gmail.com

ପାଇଁ ସେ ମନରୁ ଫାନ୍ଦି ନିରର୍ଥକ ଶବ୍ଦ ଗୁଡ଼ିଏ କହି ମନ୍ତ୍ର ବୋଲିବାରେ ଅଭିନୟ କରି କାମ ଚଳାଇ ଦେଉଛି । ସଂସାର ଯାହାକୁ ମର୍ଯ୍ୟାଦା ଦିଏନାହିଁ, ସେ ସଂସାରୀ ମାପରେ ବାଜେ ଲୋକ, ସେପରି କାହାରି କାହାରି ଠାରେ କେଉଁଠି ବି କିଛି ସରସ ଲୋଭନୀୟ ଗୁଣ କି ବ୍ୟକ୍ତିତ୍ୱ ଲୁଚିଥାଏ, ବକ୍ତବ୍ୟ ଏଇଆ । 'ଲିଭ୍ତ୍' ଗଳ୍ପରେ ଖାଲି ଗୋଟିଏ ଗରିବ କିରାନିର ଓହ୍ଲଳ ବିକଳ ହନ୍ତସନ୍ତ ଜୀବନକୁ ଗୋଟିଏ ସାମୟିକ ଲୋଭର ଆକର୍ଷଣ ବିରୁଦ୍ଧରେ ତାର ବାରମ୍ବାର ନିଷ୍ଫଳ ପ୍ରତିରୋଧ ଉଦ୍ୟମକୁ ଚିତ୍ରଣ କରାଯାଇଛି ସେତିକି ନୁହେଁ, ତାର ନୈରାଶ୍ୟ, ଦୁର୍ବଳତା, ବେଳେବେଳେ ମିଥ୍ୟା ଓ ଛଳନାର ଭୋକକୁ ବର୍ଣ୍ଣନା କରିବା ସଙ୍ଗେ ସଙ୍ଗେ ଲେଖକ ଏପରି ଦେଖାଇବାକୁ ବି ଚେଷ୍ଟା କରନ୍ତି ଯେ ପ୍ରତିକୂଳ ଅବସ୍ଥାରେ ପଡି କିପରି ଭାବେ ସାଧାରଣ ମନୁଷ୍ୟ ନିଜ ଅବସ୍ଥା ସହିତ ସାଲିସ୍ କରେ, କିପରି ପଦେ ପଦେ ସେ ଆତ୍ମବିଶ୍ୱାସ ଓ ଆତ୍ମମର୍ଯ୍ୟାଦାକୁ ଅତୁଟ ରଖିବାକୁ ନିଜକୁ ଭୁଲାଇ ସାନ୍ତ୍ୱନା ଦିଏ ଓ କିପରି ତାର ହିତାହିତଜ୍ଞାନ ଥାଇ ସୁଦ୍ଧା ସେ ନିଜ ପ୍ରବୃତ୍ତିକୁ ଆକଟ ନପାରି ଭୁଲ ବାଟ ଧରେ । ଦୁଃଖୀ ଦରିଦ୍ରଙ୍କ ପ୍ରତି ଲେଖକଙ୍କର ସହାନୁଭୂତି ଓ ତାହା ସଙ୍ଗେ ସଙ୍ଗେ ସେମାନଙ୍କ ପ୍ରତି ଧନୀ ମାନଙ୍କ ଉଦାସୀନତା ଲେଖକଙ୍କର କେତେକ ଅନ୍ୟାନ୍ୟ ଗଳ୍ପ ପରି ଏଥିରେ ବି ଅଛି । ଦରିଦ୍ରଙ୍କ ପ୍ରତି ସହାନୁଭୂତି ଓ ସ୍ଥାନେ ସ୍ଥାନେ ସେମାନଙ୍କ ଉଦାରତା ସ୍ମୃତି ରତ୍ନାକର' ଗଳ୍ପରେ ଫୁଟି ଉଠିଛି । ବିନୟ ତା ଗାଁରେ ଦରିଦ୍ର ପୁରୋହିତଟିଏ ହେଇ ଜୀବନ ବିତାଉଛି । ତା ପିଲାଦିନର କେତେ ବନ୍ଧୁ ବଡଲୋକ ହେଲେଣି ତହିଁରୁ ଜଣେ ବାମନ, ସହରରେ ବଡ କର୍ମଚାରୀ । ତା ଜୀବନ ସ୍ୱାଚ୍ଛନ୍ଦ୍ୟ ଓ ଭୋଗ ବିଳାସମୟ ବହୁବର୍ଷ ପରେ ବିନୟ ଖାଲି ତାକୁ ଟିକିଏ ଦେଖିବାକୁ ଆସିଛି, ବାମନକୁ ତାହା ସୁଖ ଲାଗୁନାହିଁ, ତାକୁ ଦିପଦ କଥା କହି ବିଦାକରି ଦେଉଛି ଅଥଚ ବିନୟ ଫେରିଯାଇ ଅଧାପକ କରଙ୍କୁ କହିଛି ଯେ ବାମନ ତାକୁ ସନ୍ଧ୍ୟାବେଳେ ଖାଇବାକୁ ଡାକିଛି, ଜଣାଯାଏ ତାର ଅନ୍ୟାନ୍ୟ ଧନୀ ବାଲ୍ୟ ବନ୍ଧୁମାନେ ବି ତାକୁ ଉପଯୁକ୍ତ ଆଦର କରିନାହାନ୍ତି, କିନ୍ତୁ ଅନ୍ୟମାନଙ୍କ ଆଗରେ ସେ ସେକଥା ଲୁଚାଇ ଧାରଣା ଦେଇଛି ଯେପରି ସମସ୍ତେ ତାକୁ ଖାଇବାକୁ ଡାକିଛନ୍ତି । ସେ ମିଛ କହି ନିଜ ଆତ୍ମମର୍ଯ୍ୟାଦାର ମୁଖା ଠିକଣା ରଖିବା ସଙ୍ଗେ ସଙ୍ଗେ ତାର ବନ୍ଧୁମାନଙ୍କୁ ପ୍ରଶଂସାହିଁ କରିଛି ଓ ସେ ଖାଲି ନିଜ ସ୍ନେହ ଯୋଗୁଁ ସେମାନଙ୍କୁ ଦେଖିବାକୁ ଆସିଥିଲା । ନିଜେ ଦରିଦ୍ର ସତ, କିନ୍ତୁ କାହାଠୁଁ କିଛି ମାଗିବାକୁ ଆସି ନଥିଲା ।

'ମିତ୍ରକଳ୍ପ' ସଂକଳନରେ 'ମିମିର ସାହିତ୍ୟ ଶିକ୍ଷା' ଗଳ୍ପରେ ଜୀବନ ବାବୁ ପ୍ରଥମ ଗଳ୍ପର ଜୀବନ ବାବୁ ବୋଲି ଭାବିଲେ ଭୁଲ୍ ହେବ ଯଦିଚ । ଏଠିବି କୁହା



Digitized by srujanika@gmail.com

ହୋଇଛି ଯେ ସେ କଚିରିରେ କାମ କରନ୍ତି । ଜଣା ପଡୁଛି ଏଠି ସେ ଜଣେ କାର୍ଯ୍ୟଚାପରେ କ୍ଳାନ୍ତ କିରାଣୀ ଯାହାଙ୍କୁ 'ବଡବାବୁ' ଘରୁ ଡକାଇ ପଠାନ୍ତି । ଏଠି ମିମି ତାଙ୍କର ଏକମାତ୍ର ସନ୍ତାନ, ପଞ୍ଚମ ଶ୍ରେଣୀରେ ବର୍ଷେ ଫେଲ୍ ହେଲାଣି ଓ ଜୀବନ ବାବୁ ତାକୁ ଖେଳ ଛଡାଇ ମାଡ ଗାଳି ଦେଇ ସାହିତ୍ୟ ପଢ଼ାଉଛନ୍ତି, ସେ କିଛି ମନେ ରଖୁନାହିଁ, ଅଙ୍କ ପ୍ରଶ୍ନର ଶବ୍ଦ ମାନଙ୍କ ଅର୍ଥ ବୁଝିପାରୁନାହିଁ । ଏ ଗଳ୍ପଟି ଅନେକ ବାପାଙ୍କର ଏ ପ୍ରକାର ଉଦ୍ୟମର ଗୋଟିଏ ବ୍ୟଙ୍ଗଚିତ୍ର, କିନ୍ତୁ ଲେଖକଙ୍କର ପ୍ରଧାନ ବକ୍ତବ୍ୟ, ଗତାନୁଗତିକ ଶିକ୍ଷାଦାନ ପ୍ରଣାଳୀ ଭୁଲ୍, ନିରର୍ଥକ, ବାଳକ ବାଳିକାଙ୍କର ବୟସ, ସ୍ୱଭାବ, ଅଭିଜ୍ଞତା, ରୁଚି, ବୋଧଶକ୍ତି ସବୁକଥା ବିଚାରକୁ ନେଇ ପ୍ରକୃତରେ ଯେଉଁ ବାଟେ ସେମାନଙ୍କର ବିକାଶ ହୋଇ ପାରିବ ଓ ସେମାନେ କିଛି ଶିଖି ପାରିବେ ଶିକ୍ଷା ପ୍ରଣାଳୀ ସେପରି ହେବା ଉଚିତ୍ । 'ମହାପୁରୁଷ ବାଗ୍' ଏ ସଂକଳନରେ ଗୋଟିଏ ସ୍ମରଣୀୟ ଓ କରୁଣ କାହାଣୀ । ଏଥିରେ ଲେଖକ ଦେଖାଇଛନ୍ତି ଯେ ନେତାମାନେ ଯାହା କହନ୍ତି ତାକୁ ସତ ବୋଲି ମଣିଲେ ସାଧାରଣ ଲୋକ ହଟହଟାରେ ପଡେ, ଯେଉଁଠି ଧନୀ ଓ କ୍ଷମତାଶୀଳ ଲୋକେ ବିଳାସ ଓ ଉପଭୋଗ କରୁଥାନ୍ତି ଗରିବ ଲୋକ ସେଠି ମିଶିବାକୁ ଚେଷ୍ଟା କଲେ ଅପଦସ୍ତ ଓ ଶୋଷିତ ହୁଏ ଓ ସମାଜରେ ନିରୀହ ଲୋକ ବି ପ୍ରତାପୀ ଲୋକଙ୍କ ସ୍ୱାର୍ଥ ଓ ଲୋଭ ଆଗରେ ନିଃସହାୟ ଭାବରେ ବଳି ପଡେ, ନ୍ୟାୟ ପାଏ ନାହିଁ । ସେହିପରି ଅବସ୍ଥା ହୋଇଥିଲା ଗୋଟିଏ ମୋଚି ରାମା ରାଓଙ୍କର ଓ ତାଙ୍କର ସୁନ୍ଦରୀ ସ୍ତ୍ରୀଙ୍କର । 'ମାଦଳା ପାଞ୍ଜି' ଗଳ୍ପ ପରି 'ଅପରାଧୀ' ଗଳ୍ପଟି ବି ଜଣେ ବିଚାରକର ଗୋଟିଏ ଦିନର ଅନୁଭୂତି ସମ୍ପର୍କରେ, କିନ୍ତୁ ଏଠି ମୋକଦ୍ଦମା ବିଚାର ସହିତ ଅସଂଶ୍ଳିଷ୍ଟ କିଛି ଅନ୍ୟ ବିଷୟ ଅଛି । ମଫସଲରେ ଗୋଟିଏ ସଭା ଯେଉଁଠି ଜଣେ ସାଧାରଣ ଲୋକ ସୁନେଇ ପ୍ରଧାନ ନାରୀ ସ୍ୱାଧୀନତା ବିଷୟରେ ତାଙ୍କ ମତ ବିରୁଦ୍ଧରେ ମୁହଁ ଖୋଲି ଟାଣ ଟାଣ ଦିପଦ ସ୍ପଷ୍ଟ କଥା ଶୁଣାଇ ଦେଇଥିଲା । ଗରିବ ସ୍ତ୍ରୀଲୋକମାନେ ସେ ସଭାକୁ ଆସିବେ ନାହିଁ ବୋଲି ଲୋକେ କହିଥିଲେ ବୋଲି ଯେ ସେ ରାଗି ଯାଇଥିଲେ, ତାଙ୍କ ଅସହିଷ୍ଣୁତାକୁ ନିନ୍ଦା କରିଥିଲା । ସବୁନେଇ ପ୍ରଧାନ କହିଥିଲା ଯେ ମୁହଁରେ ଗଣତନ୍ତ୍ର ନାଁ ଧରି କାର୍ଯ୍ୟରେ ଏକଛତ୍ର ଶାସନ ଭଳି କଥା କହିବା ଦୋ ମୁହାଁ ନୀତି, ଏଥିରେ ଲୋକେ ବାଉଳା ହୁଅନ୍ତି ଓ ଅସାଧୁତା ବ୍ୟାପେ । ଲେଖକଙ୍କର ଏ ଗୋଟିଏ ସୁଚିନ୍ତିତ ମତ ସାଂପ୍ରତିକ ଅବସ୍ଥାର ସମାଲୋଚନା; କିନ୍ତୁ ସେଦିନ ତା'ପରେ ତାଙ୍କ ବିଚାରାଳୟରେ ଯେଉଁସବୁ ମକଦ୍ଦମା ପଡିଲା କି



Digitized by srujanika@gmail.com

ଫଇସଲା ହେଲା ତା' ସହିତ ଏ ଘଟଣାର ସମ୍ବନ୍ଧ ନାହିଁ । ବୋଧହୁଏ ତା ତାତ୍ପର୍ଯ୍ୟ ଖାଲି ଏତିକି ଥିଲା ଯେ ବିଚାର ଆରମ୍ଭ କଲାବେଳେ ସେ ବିରକ୍ତ ଥିଲେ ଓ ରାଗୁଥିଲେ, କିନ୍ତୁ ବିଚାରକର ମନ ଶାନ୍ତ ରହିବା ଉଚିତ୍ । ଏଥିରେ କ୍ରମାନ୍ୱୟରେ କେତେଗୁଡ଼ିଏ ଅସାମୀତ ଆସିଛନ୍ତି, କିନ୍ତୁ ନିଘା ପଡେ ଯୋଡ଼ିଏ ଘଟଣା ଉପରେ । ଆସାମୀ ବିଦେଇ ଦାସ ତା ଦୋଷ ସ୍ୱୀକାର କଲା, ଗୋଟିଏ ଚୋରି ମକଦ୍ଦମାରେ ତାର ଦଶମାସ ଜେଲରୁ ଚାରିମାସ ବିତିଥାଏ ସେ ଜେଲ୍‌ରୁ ଖସିପଳାଇଲା, ସେ କହିଲା ସ୍ତ୍ରୀ ମନେପଡିବାରୁ ସେ ପଳାଇଲା । ହାକିମ ଯେତେବେଳେ ତାକୁ କହିଲେ କେତେ ଦଣ୍ଡ ପାଇବ ତୁମେ ନିଜେ ବିଚାର କର, ସେ ନିଜ ତୁଣ୍ଡରେ କହିଲା 'ଏକବର୍ଷ' । ସେ ଦିନ କଚିରିପରେ ସେ ବିଚାରକ ଜେଲ୍‌କୁ ଯାଇ ସେମାନଙ୍କୁ ଦେଖିଲେ, ସେଠି ଯେତେବେଳେ କାନ୍ଦି କାନ୍ଦି ବିଦେଇ ଦାସ ତାଙ୍କୁ କହିଲା ମୋତେ ମୋର ବିଚାର ପାଇଁ କହିଲେ ! "ତାଙ୍କ ଆଖି ଛଳ ଛଳ ହୋଇଗଲା ଓ ସେ କହିଲେ "ମୋର ଦୋଷ ହୋଇଛି ବିଦେଇ !" ଘରକୁ ଫେରି ସେ ଭାବୁଥାନ୍ତି ଯେ ସବୁଠି ଈଶ୍ୱର, ସମସ୍ତେ ଭୁଲ୍, ତାଙ୍କ ମନରେ ସବୁ ଓଲଟା ପାଲଟା ହୋଇଯାଇଥାଏ । ଲେଖକ ନିଜେ ବହୁବର୍ଷ ମ୍ୟାଜିଷ୍ଟ୍ରେଟ୍ ଥିଲେ । ମକଦ୍ଦମା ବିଚାର ବିଷୟରେ ସେ ଯେଉଁ କେତୋଟି ଗଳ୍ପ ଲେଖିଛନ୍ତି ତହିଁରେ କଚିରି ପରିବେଶର ଓ ବିଚାରର ଚିତ୍ର, ନାନା ଲୋକଙ୍କ ଚରିତ୍ର ବର୍ଣ୍ଣନା କରିବା ସଙ୍ଗେ ସଙ୍ଗେ ସୂକ୍ଷ୍ମ ଭାବରେ କେତୋଟି ଅନ୍ୟ ପ୍ରଶ୍ନ ଉତ୍‌ଥାପନ କରିଛନ୍ତି । ପ୍ରକୃତରେ ଅପରାଧ କ'ଣ ? ବିଚାର କରିବାକୁ ଯୋଗ୍ୟ କିଏ ? ନାନା ପ୍ରଶ୍ନ ମନୁଷ୍ୟର ନିଜର ଜ୍ଞାନ ଓ ଶକ୍ତି ସୀମିତି ତାର ନିଜର ନାନା ଦୋଷଦୁର୍ବଳତା । ବିଚାରକର ମନରେ ବି ସଂଶୟ । ପୁଣି ସ୍ନେହ ସହାନୁଭୂତି, ମାନବିକତା ବିବେକିତା ଓ ଆରପାଖେ ଆଇନ୍, ଏମାନେ ପରସ୍ପର ସହିତ ସଂଘର୍ଷ ବି କରିଥାନ୍ତି । କେବଳ ଏ ଗଳ୍ପରେ ନୁହେଁ, ଅନ୍ୟତ୍ର ବି ବାରମ୍ବାର ଗୋଟିଏ ପ୍ରଶ୍ନ ତାଙ୍କ ମନକୁ ଆନ୍ଦୋଳିତ କରିଥାଏ, ଯେ ସତ୍ୟ କ'ଣ ? ଏ ବିଷୟରେ ନିଜ ଅନୁଭୂତି ଉପରେ ନିର୍ଭର କରି ନାନା ଚିନ୍ତା ଓ ନାନା ସଂଶୟ ତାଙ୍କ ମନକୁ ଆନ୍ଦୋଳିତ କରିଥାଏ, ମୀମାଂସା ସେ କିଛି ଦିଅନ୍ତି ନାହିଁ, ଦେବା ବି ସମ୍ଭବ ନୁହେଁ, ନିଜ ମନର ନାନା ଭାବକୁ ସେ ଘଟଣା, କଥୋପକଥନ, ଚରିତ୍ର ଚିତ୍ରଣ ବାଟେ ପ୍ରକାଶ କରିବାକୁ ଚେଷ୍ଟା କରିଥାନ୍ତି ।

'ମିତ୍ରକଳ୍ପ' ସଂକଳନର ଗୋଟିଏ ଗଳ୍ପ 'ଧଡିଭାଇ ସହିତ ଗୋଟିଏ ରାତ୍ରି' । ତାଙ୍କର ଅନ୍ୟାନ୍ୟ ଗଳ୍ପଠାରୁ ଏ ଗଳ୍ପଟି ବାରି ହୋଇପଡେ । ଯୋଡ଼ିଏ ଚରିତ୍ର,



Digitized by srujanika@gmail.com

ଜଣେ ଗଳ୍ପର କଥକ, ବ୍ୟାଖ୍ୟାନ ତାଙ୍କରି । ଆଉଗଟି ସ୍କୁଲଦିନୁଁ ତାଙ୍କ ସାଙ୍ଗ, ଶିବନାରାୟଣ, ଡାକନାମ ଧଡିଭାଇ, ସେ ଯେଉଁପରି ଭାବେ ଜୀବନ ବିତାଇଛି, ସାଧାରଣ ଦୃଷ୍ଟିରେ ଲାଗିବ ସେ ମୂଳରୁ ଏକ ପ୍ରକାର ବଗୁଲିଆ ହିଁ, ଯାହା ଧରାବନ୍ଧା ଚଳଣି ସେ ତା ବାହାରେ । ନାନା ଅଖାଡୁଆ ପରିସ୍ଥିତି ସୃଷ୍ଟି କରେ । ପ୍ରଖର ଉପସ୍ଥିତି ବୁଦ୍ଧି ଓ କାର୍ଯ୍ୟ ଦ୍ୱାରା ତହିଁରୁ ଉଧୁରେ, ପିଲାଦିନୁଁ ବଡ ହେବା ଯାକେ ନାନା ଘଟଣାରୁ ଜଣାପଡେ ସେ ଦୁଃସାହସ କାର୍ଯ କରିବାକୁ ଭଲପାଏ, ତାର ଭୟ ନଥାଏ, ଅପର ପ୍ରତି ତାର ଗଭୀର ସହାନୁଭୂତି ଥାଏ, ଅପରର କିଛି ଆଶା କି ଆବଶ୍ୟକ ମେଣ୍ଟାଏ, ନିଜପାଇଁ କିଛି ଲାଭ କି ପ୍ରତିଷ୍ଠା ଖୋଜେ ନାହିଁ । କଥକ ତା'ର ସାଙ୍ଗ ହୋଇ ନାନା ସମୟରେ ଯେଉଁ କେତେ ଗୁଡିଏ ବିଚିତ୍ର ଅଭିଜ୍ଞତା ପାଇଥିଲେ, ଅତି ଅଳ୍ପ କଥାରେ ଠିକେ ଠିକେ ସେଥିରୁ କେତେ ଗୁଡିଏ କୁହା ହୋଇଛି ଓ ସେହି ଉପାୟରେ ଧଡ଼ିଭାଇ ଚରିତ୍ର ଚିତ୍ରଣ କରାହୋଇଛି । କଥନ ସ୍କୁଲ ଦିନରେ ବିନା ପଇସାରେ ଥରେ ଯାଇ ସର୍କସ୍ ଦେଖିବା, ସେହିପରି ଥରେ ଯାଇ ସିନେମା ଦେଖିବା, କଥକର ବି.ଏ ପରୀକ୍ଷା ପୂର୍ବଦିନ ରାତିରେ ତାକୁ ଟାଣି ନେଇ ବେଶ୍ୟା ଗଳିରେ ପଶିବା ଓ ଗୋଟିଏ ଦରିଦ୍ର ଅସହାୟା କଠିନ......... ବେଶ୍ୟାକୁ ଡାକ୍ତରୀ ଔଷଧ ଆଣିଦେବା, ଗୋଟିଏ ଯୁବକ ତା ବାପା ପାଇଁ ଡାକ୍ତର ଡାକି ଯାଉ ଯାଉ ବାଟରେ ଗୋଟିଏ ବୁଢ଼ୀକୁ ସାଇକଲ ଧକ୍କା ଲଗାଇଛି ତାକୁ ଉଦ୍ଧାର କରିବା, ଅଧରାତିରେ ସଡକରେ ଗୋଟିଏ ଯୁବତୀକୁ ଗୁଣ୍ଡାମାନେ ଧର୍ଷଣ କରିବାକୁ ଉଦ୍ୟମ କରୁଛନ୍ତି, ନିଜେ ରକ୍ତାକ୍ତ ହୋଇ ତାକୁ ଉଦ୍ଧାର କରିବା, ରାତି ତିନିଟାବେଳେ ଗୋଟିଏ ଭିକାରୀ ମରି ପଡିଛି, ତାକୁ ବୋହି ଖାନ୍‌ନଗର ମଶାଣିକି ନେଇ ଦାହ କରିବା, ଘଟଣା ଗୁଡ଼ିକ ଏଇଆ । କେମିତି ମଡା ପୋଡାଯାଏ ସେ ବିଷୟରେ ଟିକିନିଖି ଧାରଣା ନଥିଲେ ଏଥିରେ ଥିବା ମଡା ପୋଡିବା ବର୍ଣ୍ଣନା ଲେଖିବା ସମ୍ଭବ ନୁହେଁ । ବାମାଚରଣ ମିତ୍ରଙ୍କର ଅନ୍ୟ କେତେକ ଗଳ୍ପରେ ମଧ ନାନା ଦୃଶ୍ୟ କିମ୍ବା ବିଭିନ୍ନ ଲୋକଙ୍କ ବିଚାରକୁ ଏକାଠି ସଜାଇ ଗଳ୍ପ ଗଢ଼ା ହୋଇଛି ।

'ଗୋଟିଏ ଇନ୍‌କୁଆରୀ' ଗଳ୍ପରେ ଜଣେ ତଦନ୍ତକାରୀ କର୍ମଚାରୀଙ୍କ ଅଭିଜ୍ଞତାରୁ ଗୋଟିଏ ଗାଁରେ ଲୋକଙ୍କର ଦଳାଦଳି ବିଷୟ ବର୍ଣ୍ଣନା କରାଯାଇଛି । ଯୋଜନା କାର୍ଯ୍ୟ ଆରମ୍ଭ ହେଲା ଦିନୁଁ ଗାଁରେ ତିନିଦଳ, ସେମାନେ ପରସ୍ପରକୁ ଦୋଷ ଦେଇ ନାନା ସ୍ଥାନକୁ ଦରଖାସ୍ତ ଦେଉଛନ୍ତି ଓ କଳି କରୁଛନ୍ତି, କାମ ହେଉନାହିଁ । କର୍ମଚାରୀ ତଦନ୍ତ କରି ଗଲାବେଳେ ତାଙ୍କୁ ମଝିରେ ରଖି ଦୁଇ ଦଳ କଜିଆ ଆରମ୍ଭ କଲେ,



Digitized by srujanika@gmail.com

ଠେଙ୍ଗା ବାଡି ଚାଲିଲା । ଗାଁ ମୁଣ୍ଡରେ ପର୍ବତ ତଳେ ଗୁଡିଏ ଠାକୁରାଣୀ ଅଲଗା ଅଲଗା ଅଛନ୍ତି, ସେମାନଙ୍କର ନାନା ପ୍ରତାପ, ବୁଢ଼ାଟିଏ ସେବା କରେ । ସେ ବୁଝିଛି ଯେ ଗାଁରେ ନାନା ଅନ୍ୟାୟ ଚାଲିଛି କିନ୍ତୁ ତାର ମତ ଯେ 'ମା' ମାନେ ଡାକୁଛନ୍ତି, କେହି ଶୁଣୁ ନାହାନ୍ତି, ଯେତେବେଳେ ଅନ୍ୟାୟ ଏକଦମ୍ ବ୍ୟାପିଯିବ ସେତେବେଳେ ସବୁ ଶେଷ ହେବ, ପୁଣି ଆରମ୍ଭ ହେବ' । ସାଂପ୍ରତିକ ସାମାଜିକ ଅବସ୍ଥା ବିଷୟରେ ସାଧାରଣ ଗ୍ରାମଲୋକ ସହିତ ସମ୍ଭବତଃ ତାହାହିଁ ବିହ୍ୱଳ ଦୁଃଖିତ ଲେଖକଙ୍କର ବିମତ ।

'କଟ ପନ୍ଥା' ଗଳ୍ପରେ ରେଳଯାତ୍ରାବେଳେ ଗୋଟିଏ ପ୍ରଥମ ଶ୍ରେଣୀ ଡବାରେ ନିଜ ନିଜ ସ୍ୱାର୍ଥ ଓ ଅହଂକାରରେ ମତ୍ତ ଦୁଇଜଣ ଯାତ୍ରୀଙ୍କ କଳି ମଧ୍ୟ ସାମ୍ପ୍ରତିକ ଅବସ୍ଥାର ଏକ ଦୃଶ୍ୟ, ସେ ଡବାରେ ସମସ୍ତିଙ୍କର ଯେ ନମସ୍ୟ ଅଥଚ ଆଉ ଯାହାଙ୍କୁ ସେମାନେ ଚିହ୍ନି ନପାରି ହେୟ ଜ୍ଞାନ କଲେ ତାଙ୍କ ସହନଶୀଳତା, ନମ୍ରତା, ତ୍ୟାଗ ଓ ସେବା ପୂର୍ଣ୍ଣ ବ୍ୟବହାର ହିଁ ସେମାନଙ୍କୁ ଲଜ୍ଜିତ କରିଛି । କିନ୍ତୁ ସେ ଜଣେ ଜ୍ଞାନୀ, ଆଦର୍ଶବାଦୀ ଓ ଅସାଧାରଣ ବ୍ୟକ୍ତି, ସମାଧାନ ସେହିମାନଙ୍କ ଆଚରଣହିଁ କରିପାରନ୍ତା । କିନ୍ତୁ ସେମାନେ କ୍ୱଚିତ୍ ମିଳନ୍ତି ।

ଗରିବ କିରାନିମାନଙ୍କ ଦୁଃଖକଷ୍ଟ ଘର କରଣା ବିଷୟରେ ବାମାଚରଣ ମିତ୍ରଙ୍କର କେତେ ଗୁଡିଏ ଗଳ୍ପ ଅଛି । ଏ ସଂକଳନରୁ ସେପରି ଯୋଡିଏ ଗଳ୍ପ ବିଷୟରେ ଉଲ୍ଲେଖ କରାଯାଇ ପାରେ । 'ନିମନ୍ତ୍ରଣ' ଗଳ୍ପରେ ବଡ ଭଉଣୀ ରେଣୁ ବିଭା ହୋଇଛି ଗୋଟିଏ ଗରିବ କିରାନି ରବୀନ୍ଦ୍ରକୁ, ସେମାନଙ୍କର ଭଲ ଲୁଗାପଟା ବି ନାହିଁ । ସାନଭଉଣୀ ମଲ୍ଲିକା ବଡ ଲୋକର ବୋହୂ । ତାର ବିବାହ ବାର୍ଷିକ ଉତ୍ସବକୁ ଯିବାକୁ ସେ ଅପାକୁ ଚିଠି ଲେଖିଲା । ରେଣୁ କଣ ପିନ୍ଧିବ ଚିନ୍ତିତା ହେଲା, ତା'ପରେ ପଡୋଶୀ ଦୁର୍ଲଭ ବାବୁଙ୍କ ଘରୁ ମାଗି ଆଣି ଦାମୀ ଶାଢ଼ୀ ଓ ଅଳଙ୍କାର ପିନ୍ଧି ସାନଭଉଣୀ ସଙ୍ଗେ ଭଉଣୀର କାରରେ ତା' ଘରକୁ ଗଲା, ତା'ର ଛୁଆଟିକୁ ଦୁର୍ଲଭ ବାବୁଙ୍କର ସ୍ତ୍ରୀ ତାକୁ ନେଇ ତା' ସାନଭଉଣୀ ଆଗରେ ତା' ମା'କୁ ଯାଚିଲା, କିନ୍ତୁ ମାର ଧନୀ ବେଶ ଦେଖି ଶିଶୁଟି ମାକୁ ଚିହ୍ନି ନପାରି କାନ୍ଦିଲା । ମଲ୍ଲିକା ଘରର ଗୋଟିଏ ଦାସୀ ସତକଥାଟି ପଦାରେ ପକାଇ ଦେଲା ଓ ରେଣୁ ଲଜ୍ଜିତ ହେଲା, ସେ ତା ନିଜର ଅଧା ମଇଳା ଶାଢ଼ୀ ଖଣ୍ଡିଏ ମଗାଇ ପିନ୍ଧିବାରୁ ପିଲାଟି ତାକୁ ଆଦରିଲା । କେହି କେହି କିପରି ବଡ ଲୋକଙ୍କ ସାମାଜିକ ଚଳଣି ସଙ୍ଗେ ପାଦ ପକାଇ ଚାଲିବାକୁ ଚେଷ୍ଟା କରି ଅପଦସ୍ତ ହୁଅନ୍ତି, ପାଖେ ନିଜ ଅଭାବ ଯୋଗୁଁ ହନ୍ତସନ୍ତ,



Digitized by srujanika@gmail.com

ଦାରିଦ୍ର୍ୟରୁ ଗୌଣମନୋବୃତ୍ତି, ତା'ପରେ ଲୋକ ଦେଖାଣିଆ ମୁଖାପିନ୍ଧା ତ ଉହାଡରେ କରୁଣ ମନୋଭାବ ଓ ଶିଶୁଟିର ବ୍ୟବହାର ବାଟେ ଲେଖକଙ୍କ ପ୍ରଚ୍ଛନ୍ନ ଉପଦେଶ ଯେ କିଏ କଣ ଭାବୁଛି ତେଣିକି ନଅନାଇ ଆପଣା ଅବସ୍ଥାକୁ ନଲୁଚାଇ ସ୍ୱାଭାବିକ ଓ ଆତ୍ମମର୍ଯ୍ୟାଦାଶୀଳ ହେବାହିଁ ବିଧେୟ, ଗଳ୍ପଟିର ସାରାଂଶ ଏହିପରି ।

ସେହିପରି ଜୀବନର ଭିନ୍ନ ପ୍ରକାଶ ଚିତ୍ର ଅଛି ଏ ସଂକଳନର 'ବହୁମୁଖୀ' ଗଳ୍ପରେ ଏଠି ନାୟକ ପରଶୁରାମ ବାବୁ ନିଜେ 'ବହୁମୁଖୀ' । ଗରିବ କିରାନିଟିଏ, ଘୋର ଅଭାବଗ୍ରସ୍ତ, ତାଙ୍କ ଜୀବନର ଦିନକର ନାନାଘଟଣା ଓ ତହିଁରେ ତାଙ୍କର ଭିନ୍ନ ଭିନ୍ନ ରୂପ । ସକାଳୁ ଉଠିଲାବେଳେ ସେ ଲାଗୁଛନ୍ତି ଜଣେ ପଣ୍ଡିତ ଓ ଦାର୍ଶନିକ ପରି, ସ୍ତ୍ରୀଙ୍କ ବିରକ୍ତି ସତ୍ତ୍ୱେ ସେ ସେବିଷୟରେ ତାଙ୍କୁ ଲେକ୍‌ଚର ଦେଉଛନ୍ତି । ଜଣେ ବନ୍ଧୁ 'ପର୍ଶୁ' ପହଞ୍ଚିଲେ, ସେତେବେଳେ ଯେପରି ରାଜନୀତି ଚିନ୍ତାରେ ପରଶୁରାମ ବୁଡି ରହିଛନ୍ତି । ତା'ପରେ ପରିବାବାଲା ତାଙ୍କୁ ଅପମାନ ଦେଉଛି, ତାଙ୍କ ଦାରିଦ୍ର୍ୟକୁ ଉଲଗୁଣା ଦେଇଛି, ସେ ନିରୁପାୟ, ନିଃସହାୟ, ସେ ଜଣେ ଗରିବ ଲୋକ । ଗୋଟିଏ କାଙ୍ଗାଲୁଣୀକୁ ଦେଖିଲେ, ସ୍ତ୍ରୀଙ୍କୁ ଲୁଚେଇ ତାକୁ ଆଠଣା ପଇସା ଦେଲେ, ସେତେବେଳେ ସେ ଜଣେ ମହାନୁଭବ ବ୍ୟକ୍ତି । ବଜାରକୁ ଗଲେ, ବଜାରରୁ ଫେରିଲେ ସ୍ତ୍ରୀଙ୍କଠୁଁ ତାଚ୍ଛଲ୍ୟ, ପିଲାଙ୍କୁ କଣ୍ଢେଇ ଦେଇ ପାରିନାହାନ୍ତି ମନରେ ଦୁଃଖ । ତୁଚ୍ଛା ଡାଲି ଭାତ ଖାଇ ଅଫିସ ଗଲେ, ଜଣେ ଦରିଦ୍ର, ଜଞ୍ଜାଳଗ୍ରସ୍ତ ମଣିଷ । ଅଫିସରେ ପହଞ୍ଚିଲେ, ଡେରି ହେଲା ବୋଲି ହାମିକଙ୍କଠୁଁ ଗାଳି, ଭୟ, ଅପମାନ, ହାକିମଙ୍କ ପାଖେ ଲାଙ୍ଗୁଡ ହଲାଇ ଦାନ୍ତ ନିକୁଟି ଫେରିଗଲେ, ଗରିବ ଅଧସ୍ତନ, ଦାନାପାଣି ପାଇଁ ସବୁ ସହିଯିବେ । ଅଫିସରେ ସହକର୍ମୀଙ୍କ ସଙ୍ଗେ କଥା ଭାଷା ବେଳେ ମିଛମୁଖା ପିନ୍ଧି ଅଭିନୟ କରୁଛନ୍ତି ଯେ ସେ ଧନପାଇଁ ଖୁସାମତ୍ କରିବାକୁ ଘୃଣ୍ୟ ମନେକରନ୍ତି, ବଡ ବଡ ଶାସ୍ତ୍ର ନୀତି କଥା କହିଛନ୍ତି । ଅଫିସ ଛୁଟି ହେଲା, କଣ୍ଢେଇ ଦୋକାନକୁ ଗଲେ, ପିଲା ଖେଳିବ ବୋଲି କଣ୍ଢେଇ ମଟରଟିଏ ଘରକୁ ଗଲା । ଜଣାଗଲା ଦୋକାନରେ ସେ ହୋଇଥିଲା ଗୋଟାଏ ନୀଚ ଧୂର୍ତ୍ତ ଭଦ୍ରବେଶୀ ଚୋର, ଯେମିତି ସମାଜରେ ଅନେକ । ସକାଳେ ତାର ଘରୋଇ ଜୀବନରୁ ଜଣାପଡୁଥିଲା ସେଠି ସେ ଅପମାନିତ ଅତ୍ୟାଚାରିତ ଅପାରଗ ମଣିଷଟିଏ, ଏବେ ଦୃଶ୍ୟଭିନେ । ପିଲାଏ ଭାରି ଖୁସି । ସ୍ତ୍ରୀ ନିଜ ବ୍ୟବହାର କଥା ଭାବି ହଠାତ୍ ଅନୁତପ୍ତା ହୋଇ ତାକୁ ଖୁବ୍ ଶ୍ରଦ୍ଧା ସ୍ନେହ ସେବା କରୁଛନ୍ତି, ଭଲ ଖାଇବାକୁ ରାନ୍ଧିଛନ୍ତି । ରାତିରେ ସେ ସ୍ତ୍ରୀ ସମ୍ଭୋଗରେ ସୁଖୀ ପୁରୁଷଟିଏ, ବା ସୁସ୍ଥ ଜନ୍ତୁଟିଏ ।



Digitized by srujanika@gmail.com

ସକାଳେ ଉଠି ତା ମନରେ ଲେଖକଙ୍କ ଦାର୍ଶନିକ ପ୍ରଶ୍ନ, ତୁଣ୍ଡରେ ଯେ ବୋଲୁଛି ସକାଳୁ ଉଠି 'ତବ ପ୍ରିୟାର୍ଥଂ ସଂସାର ଯାତ୍ରାଂ ଅନୁବର୍ତ୍ତୟିଷ୍ୟେ' ସେ କାହାପ୍ରୀତି ପାଇବା ପାଇଁ ? ଭଗବାନଙ୍କର ନା ଭାରିଜାର, ନା ଝୁଆଙ୍କର, ନା ସରକାରୀ ଚାକିରୀରେ ହାକିମଙ୍କର, ନା ଚୋରିହାରି ନ କରି ସାମାଜିକ ମନୁଷ୍ୟ ହିସାବରେ ମନୁଷ୍ୟ ମାନଙ୍କର ନା ନିଜର ଯାନ୍ତବ ପ୍ରବୃତ୍ତିର, ନା ଆଦର୍ଶର ? କାହାର ?

ସମସାମୟିକ ପରିସ୍ଥିତିରେ ସାଧାରଣ ମନୁଷ୍ୟର ମାନସିକ ଓ ବ୍ୟାବହାରିକ ଅବସ୍ଥାକୁ ସହାନୁଭୂତି ସହିତ ବାମାଚରଣ ଦେଖୁଥିଲେ । ସେ ବିଷୟରେ ଭାବୁଥିଲେ । ଶାସ୍ତ୍ରରେ ଥିବା ନାନା ସୁନୀତି ଓ ଆଦର୍ଶକୁ ସେ ନ ଜାଣିଛି ତାହା ନୁହେଁ । କିନ୍ତୁ ତାର ନାନା ପ୍ରବୃତ୍ତି ଅଛି, ନାନା ଆବଶ୍ୟକତା ଅଛି, ସେହି ଅନୁସାରେ ଚାଲି ଆବଶ୍ୟକ ମେଣ୍ଟାଇବାକୁ ଚେଷ୍ଟା କରି ସେ ଯେଉଁ ଅବସ୍ଥାରେ ଜୀବନ ବଞ୍ଚେ ତହିଁରେ ଶାସ୍ତ୍ରୀୟ ସୁନୀତି ଆଦର୍ଶଠୁଁ ସେ ନିଜକୁ ଦୂରେଇ ରଖେ, ସେ ନିଜେ ନିଜ ଅବସ୍ଥାର ଦାସ ହୋଇପଡିଛି । ବାମାଚରଣ ମିତ୍ର ସେହି ଦୟନୀୟ ସାଧାରଣ ମନୁଷ୍ୟର ଅବସ୍ଥାକୁ ବୁଝି ବୁଝାଇବାକୁ ଚେଷ୍ଟା କରୁଥିଲେ, ନାନା ସମୟରେ ନାନା ପରିସ୍ଥିତିରେ ତାର କ୍ଲିଷ୍ଟ ସଂଘର୍ଷମୟ ସ୍ଥିତିକୁ ଓ ଭିନ୍ନ ଭିନ୍ନ ବ୍ୟବହାରକୁ ରୂପ ଦେଉଥିଲେ ଓ ଜୀବନର ନାନା ଦିଗ ବିଷୟରେ କୁତହଳୀ ହୋଇ ଭାବୁଥିଲେ ।

ଯାହା ସେ ଲେଖିଗଲେ ଭବିଷ୍ୟତକୁ ସେହି ତାଙ୍କର ଉଜ୍ଜ୍ୱଳ ସ୍ମୃତି । ତାହାର ଭିତରେ ଛପି ରହିଗଲା ସମସ୍ତିଙ୍କ ପାଇଁ ତାଙ୍କର ମନ ଖୋଲା ଅନ୍ତର ଖୋଲା ସ୍ନେହ, ଆବେଗ, ହସ, ମନୁଷ୍ୟ ପ୍ରତି ଗଭୀର ସହାନୁଭୂତି, ଉନ୍ନତ ଚିନ୍ତା ପ୍ରତି, କଳା ସଙ୍ଗୀତ ସାହିତ୍ୟ ପ୍ରତି, ଓଡ଼ିଆ ସାହିତ୍ୟ ପ୍ରତି ଗଭୀର ଅନୁରକ୍ତି ଓ ତାଙ୍କର ନିଷ୍ଠାପର ଆନ୍ତରିକ ସାହିତ୍ୟ-ସାଧନା ।

ପତ୍ରିକା : 'ଇସ୍ତାହାର'

ସଂଖ୍ୟା ୩୭

ମାର୍ଚ୍ଚ ୧୯୮୭





Digitized by srujanika@gmail.com



# ଁ ବାମାଚରଣ ମିତ୍ର

## ଗୋପୀନାଥ ମହାନ୍ତି

ଓଡିଆ ସାହିତ୍ୟରେ ଜଣେ ପ୍ରତିଷ୍ଠିତ ଲେଖକ, ମୋ ପରି ଅନେକ ଲୋକଙ୍କର ଜଣେ ପ୍ରିୟ ବନ୍ଧୁ, ଜଣେ ନିଷ୍କାପର ସାହିତ୍ୟପ୍ରେମୀ । ସମାଜରେ ଜଣେ ଖାଣ୍ଟି ଲୋକ ଁ ବାମାଚରଣ ମିତ୍ର ହଠାତ୍ ଅକାଳରେ ଏ ସଂସାରରୁ ଚାଲିଗଲେ । ୧୯୧୫ ମସିହା ଡିସେମ୍ବର ୧୭ରେ ତାଙ୍କ ଜନ୍ମ । ସେ ଗଲେ ଫେବୃଆରି ୨, ୧୯୭୫ ଦିନ ସାଢ଼େ ବାରଟା ବେଳେ । ସେହି ମର୍ମନ୍ତୁଦ ଘଟଣାର ଧକ୍କା ଏବେ ବି ଭୁଲି ହେଉନାହିଁ । ଯେଉଁ ବାମାବାବୁଙ୍କୁ ଜାଣିଥିଲି ସଦେ, ଜୀବନପ୍ରେମୀ ଅତିଜୀବନ୍ତ ବୋଲି, ପ୍ରାୟ ଦୁଇବର୍ଷ ପର୍ଯ୍ୟନ୍ତ ମଝିରେ ମଝିରେ ଖୁବ୍ ବେମାର ହୋଇ ଅନ୍ୟ ବେଳେ ବି ଅସୁସ୍ଥ ଥାଇ ସେ ତଥାପି ରଖିଥିଲେ ଆନନ୍ଦ, ଉତ୍ସାହ, କଳା ପ୍ରତି ଗଭୀର ଆପ୍ରାଣ ଅନୁରକ୍ତି, ସେଦିନ ଖାଲି ଦେଖିଲି ତାଙ୍କ ମରଣରୀରକୁ ଓଃ କି ଶୋକାଚ୍ଛନ୍ନ କରୁଣ ପରିବେଶରେ । ବାମାଚରଣ ମିତ୍ର ଓ ମୃତ୍ୟୁ ଏକାଠି ଭାବିହୁଏନାହିଁ, କିନ୍ତୁ ଯୋଡିକଯାକ ସତ୍ୟ ।

ପ୍ରାୟ ତିରିଶ ବର୍ଷରୁ ବେଶି ହେବ, ସେ ଓଡିଆରେ ଲେଖୁଥିଲେ ତାଙ୍କର କ୍ଷୁଦ୍ର ଗଳ୍ପ, ପ୍ରବନ୍ଧ ଓ ରମ୍ୟରଚନା ଆଦି ବିଭିନ୍ନ ପତ୍ରିକାରେ ପ୍ରକାଶିତ ହେଉଥିଲା । ସେ



Digitized by srujanika@gmail.com

କେତୋଟି ଉପନ୍ୟାସ ଲେଖିଥିଲେ । ତାଙ୍କର ପ୍ରକାଶିତ ପୁସ୍ତକ ନର-ଛଞ୍ଚାଣ, ପାଷାଣର ପ୍ରାଣ, ଚନ୍ଦ୍ର ଓ ଚମ୍ପା, ବଟ ମହାପୁରୁଷ, ସ୍ୱପ୍ନ-ସିଦ୍ଧି, ଅସୀମ, ଏଣୁଣ୍ଠ ତେଣୁଣ୍ଠ । ଅପ୍ରକାଶିତ ପାଣ୍ଡୁଲିପି ବି କିଛି ଅଛି । ମୁଁ ଜାଣେ, ସେ ଗୋଟିଏ ବଙ୍ଗଳା ପୁସ୍ତକ ଅନୁବାଦ କରିଥିଲେ, ନିଜେ ସଙ୍ଗୀତପ୍ରେମୀ, ତେଣୁ ସେ ପୁସ୍ତକଟିକୁ ଖୁବ୍ ଭଲପାଉଥିଲେ । ଓସ୍ତାଦ ଅମୀର ଖାଁ ପ୍ରଭୃତି କେତେ ଜଣ ଭାରତ ପ୍ରସିଦ୍ଧ ସଙ୍ଗୀତଜ୍ଞ ଜୀବନୀ ବିଷୟରେ ନାନା ସ୍ମୃତି ଓ ସେମାନଙ୍କର ସଙ୍ଗୀତର ବିଶିଷ୍ଟତା ବିଷୟରେ ସେ ପୁସ୍ତକଟି । ଆଉ ମୁଁ ଜାଣିଛି, ସେ ଖଣ୍ଡିଏ ଚମତ୍କାର ଉପନ୍ୟାସ ଆରମ୍ଭ କରିଥିଲେ । ହିନ୍ଦୁ ମୁସ୍‌ଲିମ୍ ନାୟକ ନାୟିକାନେଇ ଗାଁ ଜୀବନର ଜୀଅନ୍ତା ଚିତ୍ର ଥାଇ ସେ ବହିଟି । ଆରମ୍ଭରୁ କେତେ ଅଂଶ ଗଳ୍ପ ହୋଇ ଛପାହୋଇଥିଲା । ନିରବଚ୍ଛିନ୍ନ ଅଧ୍ୟାବସାୟ ବଳରେ ସେ ତାଙ୍କ କୃତିକୁ ଆହୁରି ଆହୁରି ଉନ୍ନତ କରିବାକୁ ଯତ୍ନ କରୁଥିଲେ । ଓଡ଼ିଆ କ୍ଷୁଦ୍ର ଗଳ୍ପ ଲେଖକ ହିସାବରେ ସେ ସୁପ୍ରତିଷ୍ଠିତ । ତାଙ୍କର କେତେକ ପ୍ରବନ୍ଧ ଓ ରମ୍ୟରଚନା ଚିତ୍ତାକର୍ଷକ ହୋଇଥିଲା । ଓଡ଼ିଆ ସାହିତ୍ୟକୁ ଯାହା ଯାହା ତାଙ୍କର ଅବଦାନ ସେ ବିଷୟରେ ବିଶଦ ଆଲୋଚନା ହେବ । ଏଠି ମୁଁ ସ୍ମରଣ କରୁଛି ତାଙ୍କର ଅଭୁଲା ବ୍ୟକ୍ତିତ୍ୱକୁ, ଯାହା ଆଜି ଇତିହାସ, ସ୍ମୃତି, ଆଉ ମିଳିବନାହିଁ ।

କଟକ ତେଲେଙ୍ଗା ବଜାରରେ ସନସାଇନ ଫିଲ୍‌ଡ ପାଖେ ତାଙ୍କ ଘର, ତାଙ୍କର ମୋର ଆଗ କଲେଜରେ ଦେଖା, ରେଭେନ୍‌ସା କଲେଜରେ ସେ ମୋର ସହପାଠୀ ନଥିଲେ । ମୋଠୁଁ ତଳ ଶ୍ରେଣୀରେ ପଢୁଥିଲେ । ତାଙ୍କର ବହୁତ ବନ୍ଧୁ ହୋହା, ବନ୍ଧୁମେଳିଆ ସ୍ନେହ, ଶରଧାର ଲୋକ । କଲେଜରେ ହକି ଖେଳୁଥିଲେ । ନଈ ପହଁରାରେ ପ୍ରସିଦ୍ଧ ଥିଲେ । ସଭାସମିତି ଉଦ୍‌ଯୋଗ, ଆୟୋଜକ, ସଙ୍ଗୀତ ସମା(ଜ), ନଈକୂଳେ ବନ୍ଧୁମେଳ, ନାନା ସ୍ଥାନରେ ସେ ଦେଖାପଡୁଥିଲେ । ଆମେ ପରସ୍ପରକୁ ଚିହ୍ନିଥିଲୁ । ଅଲଗା ଅଲଗା କକ୍ଷରେ ଅଲଗା ଅଲଗା ସ୍ଥାନରେ ଜୀବନ ବିତେଇଲା ପରେ ପୁଣି ନୂଆ ଭୂମିକାରେ ତାଙ୍କ ସଙ୍ଗେ ପରିଚୟ ହେଲା, ସେତେବେଳେ ସେ ସାହିତ୍ୟିକ ବାମାଚରଣ ମିତ୍ର । ଲେଖିବାକୁ ଭାରି ଉତ୍ସାହ, ସାହିତ୍ୟ ଆଲୋଚନା କରିବାକୁ ଭାରି ଭଲପାଆନ୍ତି, ନିଜମାନଙ୍କୁ ମୁଁ ପଣ ନ ଦେଖାଇ କୁତୂହଳୀ ହୋଇ ଜାଣିବାକୁ ଲୋଡନ୍ତି, ଲେଖକମାନଙ୍କୁ ବଡ ଶ୍ରଦ୍ଧା, ସବୁବେଳେ ସ୍ନେହୀ ଅମାୟିକ । କିଏ କେଉଁଠି ଥାଉ ମଝିରେ ମଝିରେ ଦେଖାହୁଏ । ତା'ପରେ ୧୯୬୫ରୁ ସେ ଆସି ଭୁବନେଶ୍ୱରରେ ରହିଲେ, ମୁଁ ତା ଆଗରୁ ଥାଏ,



Digitized by srujanika@gmail.com

ସେ ମୋ ପାଖକୁ ଆସନ୍ତି, ଆମ ଘରେ ତାଙ୍କର ଚିହ୍ନା ସମସ୍ତେ ତାଙ୍କୁ ଭଲପାଆନ୍ତି । ମୁଁ ତାଙ୍କ ଘରକୁ ଯାଏ, ସେଠି ସ୍ନେହ ଆଦର ପାଏ, କେତେଥର କେତେ ଗପ କେତେ ହସଖୁସି ତାଙ୍କ ସଙ୍ଗେ ହୋଇଛି । ଆମେ ପରସ୍ପରକୁ ଶ୍ରଦ୍ଧା କରିଛୁ, ଭଲ ପାଇଛୁ । ସେହି ବାମାବାବୁ ଚାଲିଗଲେ ।

ଗୋରା ଡେଙ୍ଗା ମଣିଷ, ଦମ୍ଫିଲା ଛାଞ୍ଚ, ମୋଟା ନୁହନ୍ତି, ମୁହଁକୁ ଚାହିଁଲେ ଲାଗିବ, ସ୍ପଷ୍ଟ, ସରଳ, ସିଧା ଆପଣା ନୀତିରେ ଦୃଢ଼, ଯାହା ଆସୁ, ନିଡରୁଆ, ତୁନିତାନି ସହିବାକୁ ରାଜି । ସ୍ୱଭାବ ବି ସେହିପରି ଥିଲା । ଜଣେ ଶାନ୍ତ ସଂଯତ ମାର୍ଜିତ, ଭଦ୍ର ଭଲ ମଣିଷ, ସମସ୍ତିଙ୍କ ପ୍ରତି ସହାନୁଭୂତି, ସମସ୍ତିଙ୍କର ମଙ୍ଗଳ ଖୋଜନ୍ତି । ସମସ୍ତଙ୍କର ବନ୍ଧୁ । ଦେଖାହେଲା ମାତ୍ରେ ମୁହଁରେ ସବୁବେଳେ ହସଟିଏ ଲାଗିଥାଏ । ସ୍ୱଭାବରୁ ବାରିହୋଇପଡେ ଅକୃତ୍ରିମତା, ନିରୀହତା ଓ ଆନ୍ତରିକତା । ସେ କାହାକୁ କଷ୍ଟ ଦେବାକୁ ଚାହୁଁ ନଥିଲେ । କାହା ଉପରେ ଭାର ଦେବାକୁ ଲୋଡୁ ନଥିଲେ । କାହାଠୁ କିଛି ସୁବିଧା ଖୋଜୁ ନଥିଲେ । ତାଙ୍କ ନିଜ ସମସ୍ୟା ନିଜଠି ଛପି ରହୁଥିଲା । ନିଜ ବୋଝ ନିଜେ ସମ୍ଭାଳିବା ହିଁ ତାଙ୍କ ସ୍ୱଭାବ । ସେ ତାଙ୍କ ନିଜର କୌଣସି ଗୁଣର ପ୍ରଚାର ଲୋଡୁ ନଥିଲେ । କେହି କହିଲେ ଲଜିତ, କୁଣ୍ଠିତ ହେଉଥିଲେ, ସବୁବେଳେ ନମ୍ର, ବିନୟୀ । କିନ୍ତୁ ବିଚାର କଥା ପଡିଲେ ସେ ଥିଲେ ସ୍ପଷ୍ଟବାଦୀ ଯାହା ଭାବୁଥିଲେ ତାହା ହିଁ ମତ ଦେଉଥିଲେ । ସେ ସଚ୍ଚୋଟ, ନିଷ୍ପାପର ମଣିଷ । ସେ ଜାଣିଥିଲେ କର୍ତ୍ତବ୍ୟ, ସ୍ନେହ ଓ ବନ୍ଧୁତା, ଆନନ୍ଦ, ଗୋଳମାଳ, ଅପରିଚ୍ଛନ୍ନତା, ନିଷ୍ଠୁରତା ଓ ସ୍ୱାର୍ଥାନ୍ଧତାଠୁଁ ଦୂରରେ ଥିଲେ । ତାଙ୍କ ନିଜଠୁଁ ଥାଏ ଧୈର୍ଯ୍ୟ, କୁତୂହଳ, ମାର୍ଜିତ ରୁଚି, ପର ପ୍ରତି ସ୍ନେହ ଓ ସହାନୁଭୂତି, ତେଣୁ ତାଙ୍କ ସଙ୍ଗେ କଥାଭାଷା ହେବା ସବୁବେଳେ ଆନନ୍ଦ ଦେଉଥିଲା । ସେ ସାହିତ୍ୟ ଦର୍ଶନ, ଅର୍ଥନୀତି ଆଦି ପଢୁଥିଲେ ଆହୁରି ଆହୁରି ପଢ଼ିବାକୁ ଆଗ୍ରହୀ ଥିଲେ । ଯାହା ପଢୁଥିଲେ ତାକୁ ନିଠେଇ ନିଠେଇ ପଢୁଥିଲେ । ସେ ବିଷୟରେ ଭାବୁଥିଲେ ଓ ଅନ୍ୟମାନଙ୍କ ସଙ୍ଗେ ଆଲୋଚନା କରୁଥିଲେ । କଥାଭାଷା ବେଳେ ସେ ଯେତେବେଳେ କୌଣସି ଲେଖା ବିଷୟରେ କି ସାହିତ୍ୟ ବା ଦର୍ଶନର କୌଣସି ବିଷୟରେ ମତାମତ ଦିଅନ୍ତି, ଜଣାପଡେ ଯେ ତାଙ୍କର ମନ୍ତବ୍ୟ ସୁଚିନ୍ତିତ ଓ ସେ ଜଣେ ଉଚ୍ଚକୋଟୀର ରସଗ୍ରାହୀ । ସଙ୍ଗୀତ ବିଷୟରେ ହେଉ କି ସାହିତ୍ୟ ବିଷୟରେ ହେଉ, ସେ ଉତ୍ସାହରେ ମଜି ଯାଉଥିଲେ । ଆପଣା ଭାବରେ ବୁଡି ଆଉ ସବୁ ଭୁଲିଯାଇପାରୁଥିଲେ । ସେ ଜୀବନକୁ ଉପଭୋଗ କରୁଥିଲେ । କଳାବିତ୍‌ର ଆନନ୍ଦ ଛଡା ସେଥିରେ ତାଙ୍କର



Digitized by srujanika@gmail.com

ଅନ୍ୟ ସ୍ୱାର୍ଥ ନଥିଲା । ସେ ଭାରତୀୟ ପ୍ରାଚୀନ ସଂସ୍କୃତିର ମହତ୍ତ୍ୱକୁ ସମ୍ମାନ କରୁଥିଲେ, ଉନ୍ନତ ମୂଲ୍ୟବୋଧ ଉପରେ ଗୁରୁତ୍ୱ ଦେଉଥିଲେ । ଉନ୍ନତ ଚିନ୍ତାରେ ଓ ଅଧ୍ୟୟନରେ ସେ ଜୀବନ ବିତାଉଥିଲେ । କାହାଠି କିଛି ଭଲ ଗୁଣ ଦେଖିଲେ ସେ ମନ ଖୋଲି ପ୍ରଶଂସା କରନ୍ତି । କାହା ଛିଦ୍ର ଖୋଜନ୍ତିନାହିଁ । ପରର ଦୋଷ ବିଷୟରେ ସେ ଉଦାର, ନିଜର କାଳେ ତ୍ରୁଟି ହେଉଥିବ ସେଥିପାଇଁ ସଚେତ ଓ ଜାଗ୍ରତ। ନିଜ ବଡେଇ କରିବା ତ ଦୂରର କଥା, ନିଜ କଥା ପଡିଲେ ସେ କହନ୍ତି, "କ'ଣ ବା ମୋ ଦେଇ ହୋଇପାରିଲା । ସେ କ'ଣ ସହଜ କାମ" ।

ନିଜ ବିଷୟରେ ଚୁପ୍‌ଚାପ୍ ସେହି ସରଳ ନିରାଡମ୍ୱର ନିରହଙ୍କାର ବ୍ୟକ୍ତିଙ୍କଠିଁ ବିଶିଷ୍ଟ ଆକର୍ଷଣ ଥିଲା ଓ ତାଙ୍କଠି ଥିଲା ଗହୀର ହୋଇ ନାନା ପ୍ରଶଂସନୀୟ ଗୁଣ । ମୁଁ ଜାଣେ ସେ ହିନ୍ଦୁ ଦର୍ଶନ ପଢ଼ିଥିଲେ, ଶାସ୍ତ୍ରପୁରାଣ ଓ ଧର୍ମତତ୍ତ୍ୱ ବିଷୟରେ ନାନା ଗ୍ରନ୍ଥ ପଢ଼ିଥିଲେ । ତାଙ୍କଠି ଅଟଳ ଈଶ୍ୱର ବିଶ୍ୱାସ ଥିଲା । ପ୍ରାୟ ତିନିବର୍ଷ ତଳେ, ଦିନେ ଦିବ୍ୟଦୃଷ୍ଟି ଓ ଈଶ୍ୱର-ଦର୍ଶନ କଥା ପଡିଥିଲା । ହଠାତ୍ ସେ କାନ୍ଦି ପକାଇଲେ ଓ କହିଲେ, "ମୁଁ ହତଭାଗା, ମୋ ଜନ୍ମ ବିଫଳ, ମୋ ଦ୍ୱାରା କେବେ କୌଣସି ଦିବ୍ୟଦର୍ଶନ ହୋଇପାରିଲାନାହିଁ" । ସେ ବିଚାର, ଯୁକ୍ତି ଓ ତର୍କ କଥା କହନ୍ତି । ବେଳେ ବେଳେ ତୀକ୍ଷ୍ଣ ବୌଦ୍ଧିକ ଦୃଷ୍ଟିଭଙ୍ଗୀ ପ୍ରକାଶ କରନ୍ତି, କିନ୍ତୁ ମୁଁ ଭାବିଲି ଯେ ତା ଉହାଡରେ ଥିଲା ଗୋଟିଏ ସାଧନା ମନୋଭାବ, ସେ ଆଧ୍ୟାତ୍ମିକତାରେ ବିଶ୍ୱାସ କରୁଥିଲେ, ନିଜ ବାଗରେ ସେ ଦିଗରେ ସାଧନା କରୁଥିଲେ, ତାଙ୍କର ଦୃଢ଼ ବିଶ୍ୱାସ ଥିଲା ଯେ ଈଶ୍ୱରଙ୍କର ଦୟା ହେଲେ ସାଧନା ସଫଳ ହୁଏ, ଈଶ୍ୱର-ଦର୍ଶନ ହୁଏ । ସେଭଳି ଆନ୍ତରିକ ବିଶ୍ୱାସ ଓ ଉଦ୍ୟମ ନଥିଲେ ସେ ହଠାତ୍ ସେଦିନ କାନ୍ଦି ନଥାନ୍ତେ ।

ଆଉ ଥରେ, ପ୍ରାୟ ବର୍ଷେ ତଳେ, ସେତେବେଳେ ସେ ଅସୁସ୍ଥ ହୋଇ ଖଟରେ ପଡିଥାନ୍ତି, କେତେଜଣ ଭାରତ ପ୍ରସିଦ୍ଧ ସଙ୍ଗୀତଜ୍ଞଙ୍କ କିଛି ସଙ୍ଗୀତର ଟେପ୍ ରେକର୍ଡ ନେଇ ମୁଁ ତାଙ୍କୁ ଶୁଣାଇଥିଲି । ସେ ସଙ୍ଗୀତ ଶୁଣୁ ଶୁଣୁ ଆନନ୍ଦରେ ଅଧୀର ହୋଇ ବସିପଡିଲେ, ତାଙ୍କୁ ସଙ୍ଗୀତର ନିଶା ଲାଗିଗଲା, ସଙ୍ଗୀତ ଉପଭୋଗ କଲାବେଳେ ତାଙ୍କ ମୁହଁ ଆଖିରେ ଯେଉଁ ଠାଣୀ ଫୁଟିଲା ତା ବର୍ଣ୍ଣନା କରିହେବନାହିଁ । ସେତେବେଳେ ସେ କାନ୍ଦିଥିଲେ ଭାବାବେଶରେ । ଭାବାବେଶରେ କାନ୍ଦିବା ମଣିଷ ଆଧୁନିକ ଶିକ୍ଷିତ ବ୍ୟକ୍ତିଙ୍କ ଭିତରେ କ୍ୱଚିତ ଦିଶନ୍ତି । ସେହି ରୋଗଶଯ୍ୟାରେ ବସି ସେ ପ୍ରତ୍ୟେକ ସଙ୍ଗୀତର ଶୈଳୀ ଓ ଉତ୍କର୍ଷ ବିଷୟରେ ବିଶ୍ଳେଷଣାତ୍ମକ ମନ୍ତବ୍ୟ ଦେଇଥିଲେ । ସେ ବିଷୟରେ ବି ତାଙ୍କର ପାଣ୍ଡିତ୍ୟ ଥିଲା । ଲାଗୁଥାଏ ସେ ସେହି



Digitized by srujanika@gmail.com

ପ୍ରତ୍ୟେକ ଓସ୍ତାଦଙ୍କୁ ଘନିଷ୍ଠ ଭାବେ ଜାଣନ୍ତି, କିଏ କାହାଠୁ କେଉଁଥିରେ ଭିନେ, ପରମ୍ପରାରୁ କ'ଣ ନେଇଛନ୍ତି ଓ ନିଜେ କିପରି ମୌଳିକତା ଓ ଦକ୍ଷତା ପାଇପାରିଛନ୍ତି ସେ ଜାଣନ୍ତି ।

ପ୍ରାୟ ଦୁଇବର୍ଷ ତଳେ, ଭୁବନେଶ୍ୱରରେ ଆମ ଘରେ ଆଉ କେହି କେହି ସାହିତ୍ୟିକ ବନ୍ଧୁ ବସିଥିଲେ, ଦିନେ ସଞ୍ଜବୁଡେ ସେ ଆସି ହଠାତ୍ ଭାଙ୍ଗିପଡିଲା ପରି ହୋଇ କହିଲେ, "ମୁଁ ଆଉ ବଞ୍ଚିବିନାହିଁ" । ସମସ୍ତେ ତାଙ୍କୁ ମନବଳ ଦେବାକୁ ଚେଷ୍ଟା କଲୁ । କେତେ ଦିନ ଭଲ ଥିଲେ । ତା ଉତ୍ତାରୁ ଡାକ୍ତରଖାନା ଗଲେ । ପୁଣି ଟିକିଏ ଭଲ ହେଲେ, ପୁଣି ଅସୁସ୍ଥ ହେଲେ । ଦୁର୍ବଳ ହୋଇଯାଇଥିଲେ କିନ୍ତୁ ମଝିରେ ମଝିରେ ଯା'ଆସ କରୁଥାନ୍ତି । ପ୍ରାୟ ଛ'ମାସ ତଳେ ସେ ଓ ମୁଁ ଓ ଅନ୍ୟାନ୍ୟ କେତେଜଣ ସାହିତ୍ୟିକ ବନ୍ଧୁ ଏକାଠି ହୋଇ ଫଟୋଟିଏ ନିଆଗଲା। ଚାରିମାସ ତଳେ ବି ସେ ବୁଲୁଥିଲେ, ଆମ ଘରକୁ ଆସିଥିଲେ । ତା'ପରେ ଦେଖିଲା ବେଳକୁ ସେ ବିଛଣାରେ । ଅସୁସ୍ଥ ଥାଇ ବି ସେ ତାଙ୍କର ପ୍ରାଣଠୁଁ ବଳି ପ୍ରିୟ ସାହିତ୍ୟକୁ ଛାଡି ନଥିଲେ, ପଢୁଥିଲେ, ଲେଖୁଥିଲେ, ସେଥିପାଇଁ ବହୁତ ପରିଶ୍ରମ କରୁଥିଲେ, ବିଚାର ପାଣ୍ଡିତ୍ୟ ଓ ପାକଳ ଅଭିଜ୍ଞତା ଲଗାଇ ଆଗଠୁଁ ବଳି ବଳି ଲେଖିଲାଭଳି କେତୋଟି ପ୍ରବନ୍ଧ ଲେଖିଥିଲେ । "ଯେତେବେଳଯାଏଁ ପାରିବି ମୋ ସାଧନାରେ ଲାଗିଥିବି" । ବୋଧହୁଏ ଏହା ଥିଲା ତାଙ୍କ ପଣ । ତା'ପରେ ଫୁଲ ଫୁଟି ଝଡିପଡିଲା ପରି କେତେ ଛୁଣୁକା ସେ ତୁନିତାନି ଚାଲିଗଲେ ।

ସେ ହସୁଥିଲେ, ହସାଉଥିଲେ, ଭିତରେ ଗମ୍ଭୀର ଭାବୁକତା, ବାହାରେ ସହଜ, ହାଲୁକା କେତେଥର କହନ୍ତି, "ସଂସାରରେ ଆଉ କ'ଣ ଅଛି ? ଏଇ ସ୍ନେହ ଟିକକତ" ରହିଗଲା ସେହି ସ୍ମୃତି, ମନେପକାଇ ଶୋକ କରିବାକୁ ପ୍ରଣତି ଜଣାଇବାକୁ ।

ରବିବାର 'ପ୍ରଜାତନ୍ତ୍ର',
ସାହିତ୍ୟ ବିଭାଗ, ୧୦-୩-୧୯୭୫





Digitized by srujanika@gmail.com

# ବିଶିଷ୍ଟତା : ବାମାଚରଣ ମିତ୍ର
# (୧୯୧୫-୧୯୭୫)

ଜ୍ୟୋତିରିନ୍ଦ୍ରମୋହନ ଜୋଆରର୍ଦ୍ଦାର

ବାମା ଓ ମୁଁ ସାଙ୍ଗ ହୋଇ କାଠଯୋଡି ନଈ ବଢ଼ିରେ ପହଁରୁଥିଲୁ । ସେ ଅନେକଦିନ ତଳର କଥା । ସେତେବେଳେ ଆମ ଦୁହିଁଙ୍କର ଟୋକା ବୟସ । କାଠଯୋଡି ନଈବନ୍ଧରେ ଗୋଟିଏ ବଡ ବୁରୁଜ ଅଛି, ତାକୁ ବଡ ବୁରୁଜ ବୋଲି କହନ୍ତି । ବଢ଼ି ପାଣିର ସୁଅ ସେଥିରେ ଧକ୍କାଖାଇ ପ୍ରାୟ ହାତେ ଗହୀରର ଗୋଟିଏ ଗୋଟିଏ ବଡ ଭଉଁରୀ ସୃଷ୍ଟିକରେ ଓ ତା ସଙ୍ଗେ ସଙ୍ଗେ କେତେ ଗୁଡିଏ ଛୋଟ ଛୋଟ ଭଉଁରୀ ଓ 'ମଳମଳା' ମଧ୍ୟ ସୃଷ୍ଟି କରିଥାଏ ।  । ମଳମଳା ଓ ଭଉଁରୀ ଭିତରେ ଫରକ ହେଲା ତାହା ଭଉଁରୀ ପରି ପାଣି ଭିତରକୁ ଟାଣି ନନେଇ, ସେଥିରେ ପଡିଥିବା ଜିନିଷଟିକୁ ପାଣି ଭିତରୁ ଉପରକୁ ଉଠାଇ ଆଣେ । କିନ୍ତୁ ମଳମଳାରେ ପଡିଥିବା ଲୋକ ସାଙ୍ଗେ ସାଙ୍ଗେ ଜୋରରେ ପହଁରି ପଳାଇ ନ ଆସିଲେ ତା ଧାରରେ ପଡି ଆଉଥରେ ବୁଡ଼ନ ଖାଇବାକୁ ପଡେ । ଭଉଁରୀରେ ପଡିଲେ ଠିକ୍ ଓଲଟାଟା ହୁଏ । ମଝିକୁ ନଯାଇ ତା ସଙ୍ଗେ ସଙ୍ଗେ କଡରେ ତିନିଚାରି ଥର ବୁଲି ପଳାଇ ଆସିବାକୁ ପଡେ । ଆମେ ଦୁହେଁ କାଠଯୋଡି



Digitized by srujanika@gmail.com

ବଢ଼ିର ଏଇ ଭଉଁରୀ ଆଉ ମଳମଳାରେ ପହଁରିବା ଅଭ୍ୟାସ କରିଥିଲୁ । ଲୋକେ ଦେଖି ଡରି ଯା'ନ୍ତି, କାବ ହୁଅନ୍ତି, ଆମେ ଆତ୍ମପ୍ରସାଦ ଲାଭ କରୁ । କେବେ କେମିତି ତା ଭିତରେ ପଡି ପାଣିରେ ବୁଡି ନ ଯାଇଚୁ ତାହା ନୁହେଁ କିନ୍ତୁ ଦମ୍ଭଧରି ଦମ୍‌ରଖି କିଛି ସମୟ ପରେ ଭଉଁରୀ ନା ମଳମଳି ଭାଙ୍ଗିଦେଇ ପୁଣି ଭାସିଉଠୁ । କିନ୍ତୁ ଦେଖଣାହାରୀଙ୍କୁ ଜାଣିବାକୁ ଦେଉନା ଯେ ଆମେ ବିପଦଗ୍ରସ୍ତ ହୋଇଥିଲୁ । ଘାଟ ପାହାଚ ପାଖକୁ ଫେରିଆସି ଅତି ନିଶ୍ଚିନ୍ତାଭବେ ମାତ୍ର ମାର୍ଚ୍ଚନା କରିବା ଆରମ୍ଭ କରିଦେଉ-ମାନେ ଆମର ଧଇଁସଇଁ ଅଣନିଶ୍ୱାସ ଅବସ୍ଥାଟାକୁ ଲୁଚାଇ ଗୁମର ବଜାଏ ରଖୁ । ବଢ଼ି ନଥିଲାବେଳେ ବି ଶୁଖିଲା ନଈରେ ବଡ ବୁରୁଜ ପାଖରେ ଗୋଟିଏ ବଡ ଗଣ୍ଡଥାଏ, ତାର ଗଭୀର ଜଳରେ କେତେଗୁଡିଏ କଇଁଚ ବି ଥାନ୍ତି । ସେତେବେଳେ ସେଇଠି ପହଁରିଚାଲେ, ଅନ୍ୟ ଟୋକାମାନେ ବି ଆମ ସହିତ ଯୋଗ ଦିଅନ୍ତି । ସେଇଠି କେବେ କେମିତି ବୁଡି ଯାଇଥିବା ଲୋକଙ୍କୁ ତ ଉଠାଇଛୁ । ଥରେ ଗୋଟିଏ ମୃତଦେହକୁ ମଧ ପାଣିରୁ ଛାଣି ବାହାର କରିଥିଲୁ ।

ବଡ ବଢ଼ିବେଳେ ଆମେ ଥରେ ପହଁରିବାକୁ ଯାଇ ପାର ହୋଇଥିଲୁ । ଆମେ ତିନିଜଣ ମାବତ୍ୟ ମୁଁ ଓ ଗୁଣ୍ଡା ଖ୍ୟାତିସମ୍ପନ୍ନ ଫଜଲରେ ବୋଲି ଜଣେ । ପୁରାନାମ ସୟେଦ ଅହମ୍ମଦ, ବାଲୁକବାଜରରେ ତାଙ୍କର ଗୋଟିଏ ଚେରମୂଳ ଦୋକାନ ଥାଏ । ନଈରେ ସେତେବେଳେ କୋଡିଏ ଫୁଟ ପାଣି । ଆମ ସାଙ୍ଗରେ ଗୋଟିଏ କାଠୁଆ ଡଙ୍ଗା ବି ନେଇଥିଲୁ । କାରଣ ଶୁଣିଥିଲୁ ଅଳ୍ପଦିନ ପୂର୍ବେ ସାଥିରେ ନାଆ ନଦେଇ ନଈପାର ହୋଇଥିବା ଦୁଇଟା ଟୋକାଙ୍କୁ ପନ୍ଦର ଟଙ୍କା ଲେଖାଁଏ ଜୋରିମନା ହୋଇଥିଲା (attempted suicide) ଅପରାଧରେ । ସୁଅ ତୋଡ ପ୍ରବଳ ଥାଏ । ତେଣୁ ଆମେ ତିନିହେଁ ବହୁତ ଉପରକୁ ଯାଇ ତଗରପଡା ହଡହଡିଆ ଘାଟରେ ପାଣିରେ ପଡିଲୁ । କାରଣ ଯେମିତି ହେଉ ଆମକୁ ରେଲପୋଲ ଏ ପଟୁ ଆରକୂଳରେ ଲାଗିବାକୁ ପଡିବ । ନଚେତ କ୍ଳାନ୍ତ ଅବସ୍ଥାରେ ରେଲପୋଲ ପାହିଆ ପାଖରେ ଭଉଁରୀରେ ପଡି ପାଣି ପିଇ ଯିବାର ଆଶଙ୍କା ଥିଲା ।

ବାମା ସବୁବେଳେ ତରବରିଆ-ଅଧୈର୍ଯ୍ୟ । ବରଫ ଦିଆ ଥଣ୍ଡା ସରବତ ହେଉ ବା ପ୍ରାୟ ଫୁଟିଲା ଗରମ ଚାହା ହେଉ ତାକୁ ଏକ ନିଃଶ୍ୱାସରେ ପିଇବାଲୋକ ସେ । ସେ ଶୀଘ୍ର ଶୀଘ୍ର ଆଗେଇ ଚାଲିଲା, ମୁଁ ଟିକିଏ ଧୀରେ ଦମ୍ ରଖି ପହଁରୁଥାଏ । ଫନେଇ ସହଜରେ ଧୀର ପହଁରାଳି । ସେ ପଛକୁ ପଡିଯାଇଥାଏ, ତେଣୁ ନାଆ ଥାଏ ତା'ରି ପାଖରେ । ଉପରୁ ନଈ ଯେତେ ଚଉଡା ଦିଶେ ପାଣିକୁ ଓହ୍ଲାଇ



Digitized by srujanika@gmail.com

ପଡିଲେ ତାର ତିନିଗୁଣା ମାଲୁମ ପଡେ । ଯାହାହେଉ କେତେବେଳେ ପରେ ମନେ ହେଲା ଯେମିତି ଆର କୂଳରେ ଗଛଗୁଡା ଏବେ ଟିକିଏ ବଡ ବଡ ଦିଶୁଛଇ । ମଝି ନଈ ପାର ହୋଇ ଆସିଛି ବୋଧହୁଏ । ବାମା ଅନେକ ଆଗରେ; ବୋଧହୁଏ ଆରକୂଳ ପାଖାପାଖି ହୋଇ ଗଲାଣି । ଏଣେ ଫନେଇ ବି ଅନେଇ ପଛରେ । ମୁଁ ମଝି ନଈରେ ଏକା; ହଠାତ୍ ଗୋଡରେ କଣ ଗୋଟାଏ ବାଜିଲାରେ ବାବା । କିମ୍ଭିର । ନା ଖଣ୍ଡେ ବୁଡନ୍ତା ବଡ କାଠଗଣ୍ଡି, ପାଣି ପିଇ ପିଇ ଭାରି ହୋଇଯାଇଛି । କିନ୍ତୁ ଏତେଣ ରେଲପୋଲ ପାଖେଇ ଆସିଲାଣି । ହେଇ ବାମାଯାଇ କୂଳରେ ଲାଗିଲାଣି- ଆମକୁ ଅନାଇ ଅପେକ୍ଷା କରୁଚି । ଯାହାହେଉ ଆଉ କେତେ ସମୟ ଭିତରେ ମୁଁ ଓ ଫନେଇ ଜଣକ ପରେ ଜଣେ ଯାଇ କୂଳରେ ଲାଗିଲୁ ।

କିଛି ସମୟ ଦମ୍ ମାରିବା ପରେ ଆମେ ରେଲପୋଲ ବାଟେ ଚାଲି ଚାଲି ଆସି ଏପଟେ ଖାନ୍ ନଗରଠି ପହଞ୍ଚିଲୁ । ଆମକୁ ଦେଖିବାପାଇଁ ଦଳେ ଲୋକ ରୁଣ୍ଡ ହୋଇ ଯାଇଥାଆନ୍ତି । ତା ଭିତରୁ ବାମାର ବାପା ଅଧୀର ଭାବେ ହଠାତ୍ ବାହାରିପଡି ପୁଅକୁ କିଛି ବିଧା ଚାପୁଡା ପୁରସ୍କାର ଦେଇଦେଲେ ।

ଘରେ ବାମାକୁ 'ବାୟା' ବା 'ବାଉଲ୍' (ଓଡ଼ିଆ ବାଉଳାର ବଙ୍ଗଳା ପ୍ରତିଶବ୍ଦ) ବୋଲି ଡକା ଯାଉଥିଲା । କାରଣ ସେ ପିଲାଟି ଦିନରୁ ଥିଲା ସମସ୍ତଙ୍କ ଠାରୁ ଅଲଗା, ଅନ୍ୟମନସ୍କ ଉଦାସୀନ ଭଳି । କିନ୍ତୁ ପ୍ରକୃତ କଥା, ପରବର୍ତ୍ତୀ ଜୀବନରେ ବାମାର ନିଜ ଜମାନବନ୍ଦୀରୁ ଜଣା ପଡିଛି : କେଉଁ ଦେବତା କେଜାଣି ଆଜନ୍ମ ତା ଅନ୍ତରରେ ଥାଇ ତାକୁ ସବୁ କଥା ବିଚାର କରିବା ପାଇଁ ପ୍ରବର୍ତ୍ତାଉଥିଲେ । ଏହି ସଂସାରର କୌଣସି ବିଷୟରେ କିଛି ନ ଜାଣି ଏମିତି ବିଚାରମଗ୍ନ ହେବା ଫଳରେ ହିଁ ତାକୁ ବାୟା ବା ବାଉଲ ପ୍ରଭୃତି ନାମ ମିଳିଥିଲା । ସେ ଯେତେବେଳେ ଆଇନ ପାସ୍ କରି ଓକିଲାତି ଆରମ୍ଭ କଲା ତାର ସାଙ୍ଗମାନେ ସମସ୍ତେ ହସିଥିଲେ । ଅବଶ୍ୟ ତାକୁ ବେଶିଦିନ ଓକିଲାତି କରିବାକୁ ପଡିନଥିଲା । ଅଳ୍ପ ଦିନ ଭିତରେ ସଚିବାଳୟରେ ଲିଗାଲ ଆସିଷ୍ଟାଣ୍ଟ୍ ପଦବୀରେ ନିଯୁକ୍ତି ପାଇ ସେ ଓକିଲାତି ଛାଡି ଦେଇଥିଲେ । ତେବେ ସେ ସବୁ ତ ଅନେକ ପରର କଥା । ନଈ ପାରି ହେବାବେଳେକୁ ଆମ ମାନଙ୍କର ନିହାତି ତରୁଣ ବୟସ । ଜଣାପଡେ ପିତା କୃଷ୍ଣପ୍ରସାଦ ବାବୁଙ୍କ ସୂକ୍ଷ୍ମ ବୋଧ ଶକ୍ତି ଥିଲା । ତେଣୁ ତିନିପୁଅଙ୍କ ଭିତରେ ତାଙ୍କର ସେଇ ବାୟା ଉପରେ ଆଶା ଥିଲା ବେଶୀ । ସେ ନଈ ପହଁରିବା ଦ୍ୱାରା ତାଙ୍କର ସେହି ଆଶାକୁ ବିପଦଗ୍ରସ୍ତ କରାଇବା ଫଳରେ ବାପାଙ୍କର ଏକାବେଳକେ ଧୈର୍ଯ୍ୟଚ୍ୟୁତି ଘଟିଥିଲା ।



Digitized by srujanika@gmail.com

ପିଲାଦିନର ବିଚାରମନ୍ତ ବାୟା ପରବର୍ତ୍ତୀ ଜୀବନରେ ବିଚାରବନ୍ତ 'ବାମା' ହିସାବରେ ବିଖ୍ୟାତ ହୋଇଛି । ସେହି ବାୟା ନିରାସକ୍ତ ବାଉଲ ହିସାବରେ ଯାହାକିଛି ବିଚାର କରିଚି ବିଚାରାଳୟରେ ଜଣେ ଟ୍ରାଇଁ ମାଜିଷ୍ଟ୍ରେଟ ଆସନରେ ଥାଇ ହେଉ କିମ୍ବା ଉପନ୍ୟାସ ପ୍ରବନ୍ଧ ରଚନାରେ ହେଉ ତା ଭିତରେ ଚିନ୍ତା ରାଇଜର ଅନେକ ମଣିମୁକ୍ତା ରହିଯାଇଛି ଏବଂ ସେ ସମସ୍ତ ମଧ୍ୟରେ ଅନ୍ୟତମ ଶ୍ରେଷ୍ଠ ମଣି ବୋଧହୁଏ । ତାର ଦୀର୍ଘ ପ୍ରବନ୍ଧ 'ଜୀବନ, ସାହିତ୍ୟ ଓ କଳା' । ତାର ଜୀବଦ୍ଦଶାରେ ପ୍ରବନ୍ଧଟି କେବଳ ମାସିକ ପତ୍ରିକା 'ଝଙ୍କାର'ରେ ଧାରାବାହିକ ଭାବେ ପ୍ରକାଶିତ ହୋଇଥିଲା । ପୁସ୍ତକ ଆକାରରେ ପ୍ରକାଶିତ ହେଲା ତାର ମୃତ୍ୟୁର ପରବର୍ଷ ପହିଲା ଜାନୁଆରୀ ୧୯୭୬ରେ । ତେଣୁ ତାର ପ୍ରୟାଣରେ ତାକୁ ସ୍ମରଣକରି ଯେଉଁସବୁ ରଚନା ପ୍ରକାଶିତ ହୋଇଥିଲା ସେଥିରେ କେଉଁଠି କେମିତି 'ଜୀବନ ସାହିତ୍ୟ ଓ କଳା'ର ଉଲ୍ଲେଖ ମାତ୍ର ଅଛି, ଆଲୋଚନା ନାହିଁ । ସେହି ପ୍ରବନ୍ଧଟି ବହି ଆକାରରେ ବାହାରିବା ପୂର୍ବରୁ ବାମାର ଜୀବନଦଶାରେ ହିଁ ମୁଁ କେନ୍ଦ୍ର ସାହିତ୍ୟ ଆକାଡେମିର ମୁଖପତ୍ର 'ଇଣ୍ଡିଆନ ଲିଟାରେଚାର' ଜୁଲାଇ ଡିସେମ୍ବର ୧୯୭୩ ସଂଖ୍ୟାରେ କିଛି ଆଲୋଚନା କରିଥିଲି । ତାହା ମଧ୍ୟ ଛାପା ଦୋଷରୁ ଠାଏ ଠାଏ ପୁରାପୁରି ଦୁର୍ବୋଧ ହୋଇ ଯାଇଥିଲା ।

ବାମାବାବୁଙ୍କ ପାଠକମାନେ ପ୍ରାୟ ଜାଣି ନଥିବେ ଯେ କନ୍ୟାନ୍ ଡଏଙ୍କ ଶାର୍ଲକ ହୋମସ୍ ଢ଼ଙ୍ଗରେ ଡିକେକ୍‌ଟିଭ ଗଳ୍ପକୁ ହିଁ ଉପଜୀବୀ କରି ସାହିତ୍ୟ କ୍ଷେତ୍ରରେ ତାଙ୍କର ପ୍ରଥମ ପ୍ରବେଶ । ବାମାବାବୁଙ୍କର ଏହି ସାହିତ୍ୟକୃତୀ ବିଷୟରେ ନ ଜାଣିବାର କାରଣ ଅନ୍ୟ କିଛି ନୁହେଁ, ତାଙ୍କର ଦୁଇଟି ଡିଟେକ୍‌ଟିଭ ଗଳ୍ପ ବହିର ପ୍ରଥମ ସଂସ୍କରଣର ସବୁ ବହି ବିକ୍ରି ହୋଇଯିବା ପରେ ଆଉ ଛାପା ହୋଇନଥିଲା । ବହି ଯୋଡ଼ିକର ନାମ 'କୀର୍ତ୍ତିର୍ଯସ୍ୟ' (କଟକ ଟ୍ରେଡ଼ିଂ କମ୍ପାନୀ ୧୯୫୦) ମନର ଛଞ୍ଚାଣ' (ୟୁନାଇଟେଡ୍ ବୁକ୍ ହାଉସ୍ ୧୯୫୧) । ପ୍ରଥମଟିରେ ଛଅଟି ଓ ଦ୍ୱିତୀୟରେ ଚାରୋଟି ମୋଟ ଦଶଟି ଏହି ପ୍ରକାର ଗଳ୍ପ ସେ ଲେଖିଥିଲେ । ତାଙ୍କ 'ଶାର୍ଲକ ହେମସ୍'ଙ୍କ ନାମ ଗୋବର୍ଦ୍ଧନବାବୁ– ଗୋବର୍ଦ୍ଧନ ମିଶ୍ର, ଏବଂ 'ୱାଟସନ୍' ହେଉଛନ୍ତି ସୁବୋଧ ଚନ୍ଦ୍ର ମହାନ୍ତି ମେଡିକାଲ କଲେଜଛାତ୍ର । ଏହାର ପ୍ରାୟ ଦୁଇ ଦଶନ୍ଧି ପୂର୍ବେ ଆମ୍ଭମାନଙ୍କର କିଶୋର ବୟସରେ ଆମେ ବିଖ୍ୟାତ ବଙ୍ଗଳା ଲେଖକ ଶରବିନ୍ଦୁ ବନ୍ଦୋପାଧ୍ୟାୟଙ୍କର ଏଇ ଶାର୍ଲକହୋମସ୍ ଢ଼ଙ୍ଗର ଅପୂର୍ବ ଗଳ୍ପମାନ ପଢ଼ି ଚମତ୍କୃତ ହେଉଥିଲୁ । ପରବର୍ତ୍ତୀ କାଳର ଓଡ଼ିଆ ଲେଖକ ବାମାବାବୁଙ୍କ ଭଳି



Digitized by srujanika@gmail.com

ଶରବିନ୍ଦୁ ମଧ୍ୟ ଆଇନ ସ୍ନାତକ ଥିଲେ ଓ ଅଳ୍ପ ଦିନ ପାଇଁ କଚେରିକୁ ଯାତାୟାତ କରିଥିଲେ । ସେ ଡିଟେକ୍‌ଟିଭ୍ ଗଳ୍ପ ବ୍ୟତୀତ ଅନ୍ୟ ଧରଣର ଅନେକ ଗଳ୍ପକୁ ମଧ୍ୟ ଲେଖିଥିଲେ । ବାମାବାବୁ ମଧ୍ୟ ସେହିପରି ଲେଖିଥିଲେ କିନ୍ତୁ ଯାହାହେଉ ଶାର୍ଲକ ହୋମସ୍‌ଙ୍କ ଗଳ୍ପ ଭଳି ଗଳ୍ପ ବଙ୍ଗଳା ଓ ଓଡ଼ିଆ ବ୍ୟତୀତ ଅନ୍ୟ କୌଣସି ଭାରତୀୟ ଭାଷାରେ ଲେଖା ଯାଇଛି କି ନା ମୁଁ ଜାଣେନାହିଁ । ଏବେ ଅବଶ୍ୟ ଶରବିନ୍ଦୁଙ୍କ ଡିଟେକ୍‌ଟିଭ ବୋମକେଶ ବକ୍ସୀ ଓ ତାଙ୍କ ୱାଟସନ ଅଜିତ ବନ୍ଦୋପାଧ୍ୟୟଙ୍କୁ ପୁସ୍ତକ ବାହାରେ ସାନପର୍ଦ୍ଦାରେ ମଧ୍ୟ ଦେଖିବାକୁ ମିଳୁଚି । ଶରବିନ୍ଦୁ ଏହିପରି ସାନବଡ ମିଶାଇ ବହୁ ଗଳ୍ପ ଓ ଉପନ୍ୟାସ ଲେଖିଥିବା ସ୍ଥଳେ ବାମାବାବୁ କେବଳ ଦଶଟି ଗଳ୍ପ ଲେଖିଥିଲେ ମଧ୍ୟ ଓଡ଼ିଆରେ ଡିଟେକ୍‌ଟିଭ ଗଳ୍ପ ଲେଖକ ହିସାବରେ ଏକ ଅନନ୍ୟପୂର୍ବ ବିଶିଷ୍ଟତା ଅର୍ଜନ କରିଥିଲେ । କୀର୍ତ୍ତୀର୍ଯ୍ୟସ୍ୟ ବହିର ଜ୍ୟାକେଟରେ ଲେଖାଥିଲା 'ଅପରାଧର ତଦନ୍ତ ନା ମଣିଷର ସୁଖ ଦୁଃଖର ତତ୍ତ୍ୱାନୁସନ୍ଧାନ ? ଗୋବର୍ଦ୍ଧନବାବୁଙ୍କ ସୂକ୍ଷ୍ମ ଦୃଷ୍ଟିରେ ଧରାପଡିଚି ଗୋଟିକୁ ଛାଡଇ ଅନ୍ୟଟି ସମ୍ଭବ ନୁହେଁ । ଏହାହିଁ ତାଙ୍କର କୀର୍ତ୍ତି । ଯେପରି ଅପୂର୍ବ ତାଙ୍କ ଅପରାଧ ରହସ୍ୟ ଭେଦର କୌଶଳ ସେହିପରି ଗଭୀର ତାଙ୍କ ମଣିଷ ପ୍ରତି ଦରଦ । ଆଉ ଗୋଟିଏ କୀର୍ତ୍ତି ଗୋବର୍ଦ୍ଧନବାବୁଙ୍କ ସୃଷ୍ଟି । ସେ କୀର୍ତ୍ତି ଗ୍ରନ୍ଥକାରର' ଗ୍ରନ୍ଥକାର ଅବଶ୍ୟ ନିଜେ ନିଜର ଗୁଣ କୀର୍ତ୍ତନ କରି ନାହାନ୍ତି । ଜ୍ୟାକେଟ ଲେଖକ ଥିଲି ମୁଁ-ଧରି ନିଆ ଯାଇପାରେ ପ୍ରକାଶନଙ୍କ ତରଫରୁ ।

ବାମାଚରଣ ଗୋଟିଏ ଅସାଧାରଣ ବୈଶିଷ୍ଟ୍ୟର ଅଧିକାରୀ ଥିଲେ; ସେ କ୍ଷଣକ ମଧ୍ୟରେ କୌଣସି ବିଷୟର ମର୍ମସ୍ଥଳକୁ ପହଞ୍ଚି ଯାଇ ପାରୁଥିଲେ । ବିଷୟର ସମସ୍ତ ଜଟିଳତାର ଅନ୍ତରାଳରେ ଥିବା ତାର ସ୍ୱରୂପଟିକୁ ଦେଖି ପାରୁଥିଲେ । ଫଳରେ ସେ ବିଷୟଟିକୁ ଶ୍ରୋତା ବା ପାଠକଙ୍କ ଆଗରେ ସରଳ ରୂପରେ ପରିବେଷଣ କରି ପାରୁଥିଲେ- କିନ୍ତୁ ଅତି ସରଳୀକରଣ ପ୍ରତି ସାବଧାନ ହୋଇ ତାହା ସେ କରୁଥିଲେ । ଜଟିଳ ବା ଅତି ବିତର୍କିତ ବିଷୟର ଏପରି ଅପ୍ରତ୍ୟାଶିତ ସରଳରୂପ ଦେଖି ପାଠକମାନେ ବିସ୍ମିତ ହେଉଥିଲେ । ମନେ କରନ୍ତୁ ଆର୍ଟ ବା କଳା । ଚିନ୍ତାରାଜ୍ୟର ଅଧରା ପ୍ରଜାପତି ହୋଇ ରହିଚି ଏହି ପ୍ରଶ୍ନଟି : କଳା କଣ ? କାହାକୁ ଆର୍ଟ କୁହାଯିବ ? ବହୁ ମନୀଷି ଏହା ଉପରେ ବହୁକଥା କହି ଦେଇଛନ୍ତି- ପ୍ରଶ୍ନ ଅପେକ୍ଷା ଉତ୍ତରଟି ଜଟିଳତାର ହୋଇ ପଡିଚି । ବାମାଚରଣ ଅତିସହଜରେ କହିଦେଲେ 'ତତ୍ତ୍ୱକୁ ଲୀଳାରେ ପ୍ରକାଶ କରିବା ହିଁ କଳା' । ଲୀଳା ଅର୍ଥ ଏଠି ବୁଝିବାକୁ ହେବ



Digitized by srujanika@gmail.com

ତତ୍ତ୍ୱ ସହିତ ଦୈନନ୍ଦିନ ଜଗତ-ସଂସାର ଓ ବିଶେଷକରି ତାର ମନୁଷ୍ୟ ସହ ସମ୍ପର୍କ ଓ ତତ୍ ଜନିତ କ୍ରିୟାକଳାପ । ଅବତାର ପୁରୁଷ ବା ମହାଜନଙ୍କ ଲୀଳା ଯାହା ଏହା ବି ସେଇଆ, କେବଳ ଅବତାର ସ୍ଥଳେ ତତ୍ତ୍ୱ । ମାତ୍ର କଳା କହିଲେ କେବଳ ସାହିତ୍ୟ ବା ଚିତ୍ରକଳା କିମ୍ବା ଭାସ୍କର୍ଯ୍ୟ ଭାବିବା ଦରକାର ନାହିଁ, କଳା ସବୁଥିରେ ସବୁଠାରେ ଅଛି । ବାମାଚରଣଙ୍କ ଉଦାହରଣ : ତତ୍ତ୍ୱ କହୁଚି ଦୁଇଟି ହାଇଡ୍ରୋଜେନ ପରମାଣୁ ଓ ଗୋଟିଏ ଅକ୍ସିଜେନ୍ ପରମାଣୁ ମିଳନରେ ଗୋଟିଏ ଜଳ ଅଣୁର ସୃଷ୍ଟି ହୋଇଥାଏ । ଲାବରୋଟାରି ଯଥୋପଯୁକ୍ତ ଯନ୍ତ୍ରପାତି ଦ୍ୱାରା କୃତ୍ରିମ ଭାବରେ ଏହି ମିଳନ ଘଟାଇ ଏହି ତତ୍ତ୍ୱକୁ ଇନ୍ଦ୍ରିୟଗୋଚର ତାର କୌତୂହଳକୁ ତୃପ୍ତ କରିବା ହେଉଚି କଳା । ଲାବରୋଟାରିରେ ଯାହାସବୁ ଘଟିଗଲା ତାହା ଲୀଳା । ସେହିପରି ଆମ ଜୀବନରେ କୌଣସି ସମସ୍ୟା ବା ତତ୍ତ୍ୱକୁ ଘେନି ଗଳ୍ପ, ଉପନ୍ୟାସ ବା କାବ୍ୟରେ ଲୀଳା କରାଇ ସାହିତ୍ୟ ସୃଷ୍ଟି କରିଯାଇଥାଏ । ଯେପରି ଫ୍ରଏଡ୍‌ଙ୍କ ତତ୍ତ୍ୱକୁ ଆଧାର କରି ଲେଖା ହୋଇଥିବା ଗଳ୍ପ ଉପନ୍ୟାସାଦି ।

ବାମାଚରଣଙ୍କ ଉପରୋକ୍ତ ବହି ଅଥବା ତାଙ୍କର ରମ୍ୟରଚନା ପୁସ୍ତକ 'ଏଣୁଷ୍ଟ ତେଣୁଷ୍ଟ'ରେ ଦେଖିବାକୁ ମିଳେ ତାଙ୍କର ପଢ଼ାପଢ଼ି ଓ ବିଚାରର ବିସ୍ମୟକର ପରିସର; ଆଇନଷ୍ଟାଇନ୍‌ଙ୍କ ଠାରୁ ବାର୍ଟରାଣ୍ଡ ରସେଲ, ପଦାର୍ଥ ବିଜ୍ଞାନୀ ଶ୍ରୋଏଡିଙ୍ଗାରଙ୍କ ଠାରୁ ଭଗବଦ୍ ଗୀତା, କାର୍ଲମାର୍କ୍ସଙ୍କ ଠାରୁ ଭୀମଭୋଇ ନହେଲେ ଚାର୍ଲି ଚ୍ୟାପଲିନ୍ ।

ଏଭଳି ଚିନ୍ତାଶୀଳ ବ୍ୟକ୍ତି କଣ ଲୋକଙ୍କ ଠାରୁ ଦୂରରେ ରହୁଥିଲେ ? ତା ହୋଇଥିଲେ ବିଭିନ୍ନ କ୍ଷେତ୍ରରେ ଆନନ୍ଦର ସାଥୀ ଥିଲା କିଏ ?– ବ୍ରିଜ୍ ଖେଳିବା, ଚେସ୍ ଖେଳିବାରେ, ହକି ଖେଳ ନଈ ପହଁରାରେ ସଙ୍ଗୀତ ଶୁଣିବା, ପାଲା ଦେଖିବା ବା ସାହିତ୍ୟ ରସ ଆସ୍ୱାଦନ କରିବାରେ ?

ଏପରି ଅନେକ ଗୁଡିଏ କ୍ଷେତ୍ରରେ ତାଙ୍କର ପ୍ରିୟସାଥୀ ଥିଲେ ଆମଠାରୁ ପାଞ୍ଚ ଛଅ ବର୍ଷ ବଡ । ଆମ ସମସ୍ତଙ୍କର 'ଧଡ଼ିଦା', ଅସିତବରଣ ଘୋଷ । ସେ ବି ଆଜି ଆଉ ଆମ ଗହଣରେ ନାହାନ୍ତି । ଦୁଇବର୍ଷ ତଳେ ୧୯୯୭ରେ ସତାଅଶି ବର୍ଷ ବୟସରେ ଦିବଂଗତ ହୋଇଛନ୍ତି । ବହୁକାଳ ପ୍ରୟାତ ଖ୍ୟାତିନାମା ଓଡ଼ିଆ ନାଟ୍ୟକାର ଅଶ୍ୱିନୀ କୁମାର ଘୋଷଙ୍କ ସବା ସାନଭାଇ ଅସିତବରଣ ମଧ୍ୟ ଥିଲେ ଜଣେ କୁଶଳୀ ମଞ୍ଚାଭିନେତା । ଯଦିଚ ସେ କ୍ୱଚିତ ମଞ୍ଚରେ ଅବତୀର୍ଣ୍ଣ ହେବା ଦେଖାଯାଇଛି । ଅତି ଧୀର ସ୍ଥିର ଭଦ୍ରଲୋକ ଓ ଅତି କୁଶଳୀ ବ୍ରିଜ ଓ ଚେସ୍



Digitized by srujanika@gmail.com

ଖେଳାଳୀ ଥିଲେ ସେ । କିନ୍ତୁ ଯେଉଁଥିପାଇଁ ଆମେ ତାଙ୍କର ଗୁଣମୁଗ୍ଧ ଥିଲୁ ତାହାଥିଲା ତାଙ୍କର ଏକ ଆଶ୍ଚର୍ଯ୍ୟ ପ୍ରକାରର ଭାଣ୍ଡାମି ଯାହାକୁ ହଠାତ୍ ଭାଣ୍ଡାମି ବୋଲି ଜାଣିହେବ ନାହିଁ, ସମ୍ପୂର୍ଣ୍ଣ ଓ ସର୍ବମତେ ନିର୍ଦ୍ଦୋଷ । ଯାହାଙ୍କ ସହିତ ସେ ତାଙ୍କର ଏହି ସୂକ୍ଷ୍ମ ଚାରୁକଳା ପର୍ଯ୍ୟାୟର ବୈହାସିକତା କରୁଥିଲେ ସେ ଘଣାକ୍ଷରେ ଜାଣି ପାରୁଥିଲେ କିନ୍ତୁ ଉପସ୍ଥିତ କଳା-ଉପଭୋକ୍ତାମାନଙ୍କୁ ଅତି କଷ୍ଟେ ହାସ୍ୟ ସମ୍ବରଣ କରିବାକୁ ପଡୁଥିଲା । ଅବଶ୍ୟ ଏହି ଉପଭୋକ୍ତା ବାଛିବାରେ ପୁଣି ଧଡିବାବୁଙ୍କୁ ଯଥେଷ୍ଟ-ସାବଧାନ ହେବାକୁ ପଡୁଥିଲା ।

ବାମାଚରଣଙ୍କର 'ଧଡ଼ିଭାଇ ସହିତ ଗୋଟିଏ ରାତ୍ରି' ଶୀର୍ଷକ ଗଳ୍ପରେ ଏଇ ଧଡ଼ିଦା'ଙ୍କୁ ଦେଖିବାକୁ ମିଳେ, ତାଙ୍କ ଚରିତ୍ର ଗଭୀରତର ଦିଗର ସନ୍ଧାନ ମଧ୍ୟ ମିଳେ । 'ଜୀବନ ସାହିତ୍ୟ ଓ କଳା'ରେ ବାମାଚରଣ ଦର୍ଶାଇଛନ୍ତି ଯେ ନୈତିକତା ନହେଲେ ପାଶବିକତା ବା ଆସୁରିକତା ଠାରୁ ଉଦ୍ଧାର ମିଳେନାହିଁ । ଏକଥା ଅତି ସତ୍ୟ ହୋଇଥିବାବେଳେ ପୁଣି ନୈତିକତା ଓ ଆଧ୍ୟାତ୍ମିକତା ଏକା କଥା ନୁହେଁ । ଗୋଟିଏ ଆମକୁ ପାପରୁ ସାବଧାନ ରଖେ, ଅନ୍ୟଟି ଆନନ୍ଦର ସନ୍ଧାନ ଦିଏ । ଗୋଟିଏ ରସ ବିବର୍ଜିତ ଆରଟି ସକଳ ରସର ନିଧାନ । ଗୋଟିଏ ଆମକୁ ସମାଜ ସହିତ ସମ୍ପର୍କକୁ ଠିକ୍ ରଖିବାରେ ସାହାଯ୍ୟ କରେ, ଆରଟି ଆମକୁ ଅନନ୍ତ ସହିତ ମିଶିଯିବା ପାଇଁ ପ୍ରେମର ଆକର୍ଷଣରେ ଘେନିନେଇଯାଏ । ଜଣେ ଖୁବ୍ ନୈତିକ ହୋଇ ମଧ୍ୟ ଆଧ୍ୟାତ୍ମିକ ନ ହୋଇପାରେ । 'ଧଡ଼ିଭାଇ ସହିତ ଗୋଟିଏ ରାତ୍ରି' ଗଳ୍ପରେ, ରାତିରେ ଗଳ୍ପ କଥକଙ୍କୁ ସାଙ୍ଗରେ ଧରି ଧଡ଼ିଭାଇ ଯେତେବେଳେ ଡାକ୍ତର ଦୋକାନରୁ ଔଷଧନେଇ ଗୋଟିଏ ଅନ୍ଧାରୁଆ ଗଳି ଆଡେ ଚାଲିଛି କଥକ ନୀତିବାନ, ତେଣୁ ଗଣିକାଳୟ ଥିବା ଅନ୍ଧାରୁଆ ଗଳି ଆଡେ ଯିବା ପାଇଁ ଭୟ । ପାପର ଭୟ ତେଣୁ ପାପର ଅନୁଷଙ୍ଗକୁ ମଧ୍ୟ ଭୟ । କିନ୍ତୁ ଧଡ଼ିଭାଇ, ସେଠାକୁ ଯାଇ ଦ୍ୱାର ପାପର ସ୍ୱଚ୍ଛନ୍ଦରେ ଡାକିଲା ମାଳତୀ ମାଳତୀ । ମାଳତୀର କଠିନ ଓ କଦର୍ଯ୍ୟ ରୋଗରେ କେହି ଦେଖିବାକୁ ନାହାନ୍ତି; ତେଣୁ ଧଡିଭାଇ ନିଜ ଉପରେ ତାକୁ ଆରୋଗ୍ୟ କରିବା ଭାର ନେଇଛି । ଏଇଠି ଧଡ଼ିଭାଇ ଆଧ୍ୟାତ୍ମିକ ସ୍ତରକୁ ଉଠିଯାଇଛି; ତେଣୁ ତାର ପାପକୁ ବା ପାପର ଅନୁଷଙ୍ଗକୁ ଭୟ ନାହିଁ ।

ଆମେ ଜାଣୁ ବା ଜାଣିଥିଲୁ, କାରଣ ଆମ୍ଭମାନଙ୍କ ମଧ୍ୟରୁ ଏବେ କେବଳ ମୁଁ ହିଁ ବଞ୍ଚିଛି- ଆମେ ଜାଣୁ ବାସ୍ତବ ଜୀବନରେ ଧଡ଼ିଭାଇ-ଅର୍ଥାତ୍ 'ଧଡ଼ିଦା' ଆହୁରି ଗଭୀର ଓ ମହତ୍ ନିର୍ଭୀକତାର ପରିଚୟ ଦେଇଥିଲେ । ପ୍ରକୃତ ଆଧ୍ୟାତ୍ମିକତାର ପ୍ରକାଶ ଏହିପରି



Digitized by srujanika@gmail.com

ବାମାର ଜୀବନରେ ମଧ୍ୟ ଦେଖା ଯାଇଥିଲା- ଅବଶ୍ୟ ସେ ଗୋଟାଏ ସମ୍ପୂର୍ଣ୍ଣ ଭିନ୍ନ କ୍ଷେତ୍ରରେ । ୧୯୫୬ର ସୀମା ଆନ୍ଦୋଳନ ସମୟରେ କଟକରେ ତାହା ଭୟଙ୍କର ଆକାର ଧରିଥିବାବେଳେ, ପୋଲିସ ସୁପରିନ୍‌ଟେଣ୍ଡେଣ୍ଟ ବାରମ୍ବାର କହିବା ସତ୍ତ୍ୱେ ଗୁଳି ଚଳାଇବା ପାଇଁ ଆଦେଶ ନ ଦେଇ ବାମା ପ୍ରାଣ ଭୟକୁ ତୁଚ୍ଛ କରି ଉତ୍‌କ୍ଷିପ୍ତ ଜନତାର ନେତାମାନଙ୍କର ସମ୍ମୁଖୀନ ହୋଇଥିଲା ଓ ସେମାନଙ୍କୁ ଶାନ୍ତ କରିପାରିଥିଲା ।

ଏହି ଆଧ୍ୟାତ୍ମିକତାକୁ ପୁଣି ସେ କହୁଥିଲା ପ୍ରେମ । ସେହି ପ୍ରେମର ପ୍ରତୀକ ବା ସମନାର ଗୁଣି ବାମାଠାରେ ଆଉ ତା ଧଡ଼ିଭାଇ- ଧଡ଼ିଦା ଠାରେ ଥିଲେ ସେଇ ମୂରଲୀଧର ଶ୍ୟାମ । ଯାହାଙ୍କ ଆକୁଳ ବଂଶୀଧ୍ୱନୀ ସେମାନଙ୍କୁ ଜୀବନରେ ବାରମ୍ବାର ବ୍ୟାକୁଳ କରୁଥିଲା ।

ସୁଲେଖିକା ମୈତ୍ରୀଶୁକ୍ଳ (ଫକୀର ମୋହନଙ୍କ ପୌତ୍ରୀ) ତାଙ୍କର 'ସନ୍ୟାସୀ ବାମାଚରଣ ମିତ୍ର' ଶୀର୍ଷକ ଲେଖାରେ (ମୂଳ ବଙ୍ଗଳାରୁ ଅନୁଦିତ, 'ସପ୍ତାହାନ୍ତ ପ୍ରଜାତନ୍ତ୍ର' ତା ୨-୭-୮୮ରିଖ) ତାଙ୍କର ହତାଶା ବ୍ୟକ୍ତ କରିଛନ୍ତି "ଅତିପୁରାତନ ଚିର ନୂତନ ମାନବ ଜୀବନର ସୁନ୍ଦରତାରେ ଶ୍ରେଷ୍ଠ ଅନୁଭୂତି ନାରୀର ପ୍ରେମ (ବାମାଚରଣଙ୍କର) ଚିତ୍ତାକାଶକୁ କେବେ ଆଲୋଡ଼ିତ କରିନାହିଁ ।'-ଏ କଥା ଜାଣି ବାମା ବାବୁ ତାଙ୍କୁ କହିଥିଲା ତାର ସାହିତ୍ୟରେ ନାରୀର ସ୍ଥାନ ନାହିଁ । 'ହାୟ ଦୁର୍ଭାଗ୍ୟ, ଏହି ଆକାଙ୍‌କ୍ଷିତ ଶ୍ରେଷ୍ଠ ସୁପୁରୁଷର ହୃଦୟ ସ୍ପର୍ଶର ଅନୁଭୂତି ହେଲାନାହିଁ କୌଣସି ନାରୀର" । ମୈତ୍ରୀ ପୁନଶ୍ଚ ପ୍ରଶ୍ନ କରିଥିଲେ ସେପରି ମୁହୂର୍ତ୍ତ କଣ ବାମାଚରଣଙ୍କ ଜୀବନରେ କେବେ ହେଲେ ଆସିନାହିଁ । ଉତ୍ତର ପାଇଥିଲେ, ଥରେ ମାତ୍ର ଜୀବନରେ ସେଭଳି ମୁହୂର୍ତ୍ତ ଆସିଥିଲା, କିନ୍ତୁ ଆପଣା ମନୋଭାବ ପ୍ରକାଶ କରିବରେ ଦ୍ୱିଧା ଏବଂ ଅନ୍ୟ କେଉଁ ଜଣଙ୍କ ଠାରେ ସେପରି ଦ୍ୱିଧାର ଅଭାବ ଯୋଗୁଁ ସେ ମୁହୂର୍ତ୍ତଟି ବୃଥା ହୋଇଯାଇଥିଲା । ସେଇ ତାଙ୍କର ପ୍ରଥମ ଓ ଶେଷ ପ୍ରଣୟ ଚେଷ୍ଟା । "ସେ ଥରେ କହିଥିଲେ ସ୍ୱାମୀ ହୋଇ ସେ ଯେତେବେଳେ ସ୍ତ୍ରୀର ଏକନିଷ୍ଠ ପ୍ରେମ ଆଶା କରନ୍ତି, ତାଙ୍କର ମଧ୍ୟ ସ୍ତ୍ରୀଙ୍କ ପ୍ରତି ଏକ ନିଷ୍ଠ ହେବା ନ୍ୟାୟତଃ ପ୍ରତ୍ୟଶିତ । ସୁତରାଂ ବିପଥକୁ ଯାଇ ନାରୀର ପ୍ରେମ ତାଙ୍କର କାମ୍ୟ ନୁହେଁ । ରୋମାନ୍ସର ବିପୁଳ ପୁଲକର ଚାପ୍‌ଟର କ୍ଲୋଜଡ୍' ।

ବାମାଚରଣଙ୍କ ସାହିତ୍ୟରେ ନାରୀର ସ୍ଥାନ ନାହିଁ ଏକଥା ସେ ନିଜେ ମୈତ୍ରୀ ଶୁକ୍ଳଙ୍କୁ କେବେ କହିଥିଲେ ତାହା ମୈତ୍ରୀଙ୍କ ଲେଖାରୁ ଜଣାପଡେନାହିଁ, କିନ୍ତୁ ତାହା ୧୯୬୮ ମସିହା ପୂର୍ବରୁ ନିଶ୍ଚୟ ହୋଇଥିବ କାରଣ ସେହି ୧୯୬୮



Digitized by srujanika@gmail.com

ମସିହାରେ ପ୍ରକାଶିତ ହୋଇଥିଲା ବାମାଚରଣଙ୍କ ଏକମାତ୍ର ଉପନ୍ୟାସ 'ଚନ୍ଦ୍ର ଓ ଚମ୍ପା', ଯେଉଁଥିରେ କି ଦେଖିବାକୁ ମିଳେ ନାରୀ ପ୍ରେମର ଉତ୍କୃଷ୍ଟ ପ୍ରତିଛବି । ସେ ପୁଣି ଗୋଟିଏ ନୁହେଁ ଦୁଇଟି । ବିନୀତାର ତୀକ୍ଷ୍ଣ-ଆସ୍ୱାଦନ ସୁତୀବ୍ର ସୁରାପରି ସର୍ବଗ୍ରାସୀ ପ୍ରେମ-ମହାକାଞ୍ଚନ ପ୍ରତି, ଏବଂ ଚମ୍ପାର ସ୍ଥିର ଭାସ୍କର କଲ୍ୟାଣମୟ ପ୍ରେମ-ଚନ୍ଦ୍ର ଲାଗି । ଏହି ଦୁଇ ପ୍ରକାର ପ୍ରେମ ଚିତ୍ରକ ଲେଖକଙ୍କର ପ୍ରତ୍ୟକ୍ଷ ଅଥବା ପରୋକ୍ଷ ଅନୁଭୂତିରୁ ସମ୍ଭବ ହୋଇଛି ତାହା ମୁଁ କହିପାରିବି ନାହିଁ, ହେଲେ, କେବଳ ଏତିକି କହିପାରେ ଯେ ପ୍ରକୃତ ସ୍ରଷ୍ଟା ଭଳି ତାଙ୍କର କ୍ଷମତା ଥିଲା ଅପରର ପିଣ୍ଡରେ ଆପଣାର ଆତ୍ମାକୁ ଚାଳନା କରିବା ପାଇଁ । ତାଙ୍କର ସମସ୍ତ ଜୀବନ ସାଧନା ମଧ୍ୟ ଏ ଦିଗରେ ତାଙ୍କୁ ବାଟ କଢ଼ାଇଥିବ-ପରର ଦୁଃଖକୁ ନିଜର ଦୁଃଖ ଓ ଯାହାକି ଆହୁରି ଢ଼େର କଷ୍ଟ-ପରେ ସୁଖ ସୌଭାଗ୍ୟକୁ ନିଜର ସୁଖ ସୌଭାଗ୍ୟ ବୋଲି ମଣିବା ।

ପତ୍ରିକା : 'ଅମୃତାୟନ'
ମାର୍ଚ୍ଚ - ୨୦୦୦





ସନ୍ତରଣ ପ୍ରତିଯୋଗିତା ପୂର୍ବରୁ- ବାମାଚରଣ ମିତ୍ର, ଜ୍ୟୋତିରିନ୍ଦ୍ରମୋହନ ଜୋଆରର୍ଦ୍ଦାର ଓ ଅନ୍ୟମାନେ (କଟକ ମୁନିସପାଲିଟି ଟ୍ୟାଙ୍କ୍ ୧୯୩୬)



Digitized by srujanika@gmail.com

# 'ବାଉଲ୍'

## ଜ୍ୟୋତିରିନ୍ଦ୍ରମୋହନ ଜୋଆରର୍ଦ୍ଦାର

'ବାଉଲ୍' 'ବାୟା'- ଏ ସବୁ ମୋର ସାଙ୍ଗ ସ୍ୱର୍ଗୀୟ ବାମାଚରଣଙ୍କ ପିଲାଦିନର ନାଆଁ । ପ୍ରଥମଟି ଓଡ଼ିଆ 'ବାଉଳା'ର ବଙ୍ଗଳା ରୂପ । 'ବାଉଲ୍' ନାଁଟି ମୋତେ ଭଲ ଲାଗୁଥିଲା, ମୁଁ ତାକୁ ସେଇ ନାଁରେ ଡାକିଥିଲି ।

ବାଉଲ୍ ବା ବାୟା ତାର ଏ ସବୁ ନାଆଁକୁ ସାର୍ଥକ କରି ପରବର୍ତ୍ତୀ ଜୀବନରେ ହେଲା ଅନନ୍ୟ ସାଧାରଣ ମୌଳିକତା ସମ୍ପନ୍ନ ଲେଖକ ଓ ଚିନ୍ତକ । କିନ୍ତୁ ସେ ସବୁକୁ ପଛରେ ପକାଇ ମୋର ମନେପଡେ ତାର ବନ୍ଧୁତା କଥା, କାରଣ ଏପରି ହିତୈଷୀ ବନ୍ଧୁ ମନୁଷ୍ୟକୁ ମିଳିବା କଷ୍ଟ, ଏମିତି ସ୍ନେହଶରଧା ମଧ୍ୟ ବିରଳ । ବିପଦ ବେଳେ ସବୁଦିନେ ଆସି ସେ ଠିଆ ହୋଇଛି ପାଖରେ, ସାହସ ଦେଇଛି, ଦମ୍ଭ ଦେଇଛି, ସୁପରାମର୍ଶ ଦେଇଛି, ସବୁମନ୍ତେ ମୋର ଚିନ୍ତାଭାର ଲାଘବ କରିବା ପାଇଁ ଚେଷ୍ଟା କରିଛି । ସୁସମୟରେ ପୁଣି ମୋର କାର୍ଯ୍ୟରେ, ମୋର ଚିନ୍ତାରେ ଉତ୍ସାହ ଯୋଗାଇଛି, ସାହାଯ୍ୟ କରିଛି । ମୋର ନିଜର କୌଣସି ଚିନ୍ତା ବା ପ୍ରଚେଷ୍ଟାରେ ଯେତେବେଳେ ମୁଁ ଆପଣାଠେଇଁ ଯଥେଷ୍ଟ ପ୍ରତ୍ୟୟ ଅନୁଭବ କରି



Digitized by srujanika@gmail.com

ପାରିନାହିଁ ସେତେବେଳେ ପୁଣି ତାରି କଥାରେ, ଉତ୍ସାହ ବାକ୍ୟରେ ସେ ପ୍ରତ୍ୟୟ ଲାଭ କରିପାରିଛି ।

ତାର ଉତ୍ସାହଦାନ କରି ପ୍ରକାର ତା ଟିକିଏ ବୁଝି ହେବ ଯଦି କହେ ଯେ ଆମ 'ଖେତୁଦା' (ସଙ୍ଗୀତାଚାର୍ଯ୍ୟ ଶ୍ରୀଯୁକ୍ତ କ୍ଷିତୀଶ ଚନ୍ଦ୍ର ମୈତ୍ର) ଯେ କି ଜୀବନରେ କେବେ ହେଲେ ଓଡ଼ିଆ ଅକ୍ଷର ଲେଖି ଶିଖି ନଥିଲେ (ଯଦିଚ ଓଡ଼ିଆରେ ସଙ୍ଗୀତ ବିଷୟରେ ଚମତ୍କାର ଚିତ୍ତାକର୍ଷକ ବକ୍ତୃତାମାନ ଦେଇଛନ୍ତି ବିଭିନ୍ନ ସଭାମାନଙ୍କରେ) ସେ କେବଳ 'ବାମା'ର ଉତ୍ସାହ ବାକ୍ୟରେଇ ଉତ୍ସାହିତ ହୋଇ ଲେଖି ପକାଇଲେ ବଙ୍ଗଳା ଅକ୍ଷରରେ ତାଙ୍କର ପ୍ରଥମ ଓଡ଼ିଆ ରଚନା– 'ରୋମନ୍ଥନ' ଶୀର୍ଷକ ମନୋହର ସ୍ମୃତି କଥାଟିଏ। ତାଙ୍କର ଜଣୈକା ସଙ୍ଗୀତ ଛାତ୍ରୀ ତାକୁ ଓଡ଼ିଆ ଅକ୍ଷରରେ ଲେଖି ଦେଲେ ଏବଂ ତା ପ୍ରକାଶିତ ହୋଇଗଲା 'ମାନସ' ମାସିକ ପତ୍ରିକାରେ । ସେତେବେଳେ ସେ ପ୍ରାୟ ସତୁରୀ ଛୁଇଁଲେଣି। ଆମେ ସବୁ ଆଶ୍ଚର୍ଯ୍ୟ ହେଲୁ, କିନ୍ତୁ ସବୁଠାରୁ ଆଶ୍ଚର୍ଯ୍ୟ ହେଲେ ସେ ନିଜେ । ଏବଂ ଏହାର ଅଳ୍ପଦିନ ପରେ 'ବାମା' ସବୁ ବନ୍ଧନ କଟାଇ ଦେଇ ଚାଲିଗଲା । ଖେତୁଦା ବଡ ଦୁଃଖରେ କହିଲେ– 'ଖାଲି ମୋ ଲେଖା ଛପାରେ ଦେଖିବ ବୋଲି କଣ ସେ କେତୁଟା ଦିନ ଅପେକ୍ଷା କରି ରହିଥିଲା।'

ସାହସିକ କାର୍ଯ୍ୟରେ ମଧ୍ୟ ସେହିପରି ଉତ୍ସାହ ଦିଏ ବାଉଲ୍ । ନିଜେ ସେ ଉତ୍ସାହ କେବେହେଁ ପାଇନାହିଁ । ତାର ବାପା ଅତିଶୟ ସ୍ନେହବଶତଃ ଥିଲେ ଅତିଶୟ କଠୋର । ନଈବଢ଼ି ବେଳେ ପହଁରି କାଠଯୋଡି ପାରି ହୋଇଥିଲୁ, ଆମେ ତାଙ୍କୁ ଲୁଚାଇ । ସେ କହିବା ମତେ ସେ ନିଜେ ବି ଏ ସବୁରେ ଟିକିଏ ପଛୁଆ । କହେ, ଏରୋପ୍ଲେନରେ ବସିବାକୁ କୋଆଡେ ତାକୁ ଡର ଲାଗେ, ଆରାମରେ ବସି ପାରେନା। ଅଥଚ ଗଭୀର ଜଳରେ କାହାକୁ ଆବୁକାବୁ ହେବାର ଦେଖିଲେ ସ୍ୱଚ୍ଛନ୍ଦେ ପାଣିକି ଡେଇଁପଡେ ତାକୁ ରକ୍ଷା କରିବାକୁ । ଏମିତି କେତେ ଜୀବନ ସେ ରକ୍ଷା କରିଛି । ଏଥିରେ ସବୁଠାରୁ ଉଲ୍ଲେଖନୀୟ ବନ୍ୟାସ୍ଫୀତ ମହାନଦୀରେ ବହୁଦୂରରେ ଅସହାୟ ଭାବରେ ଭାସି ଯାଉଥିବା ଗୋଟିଏ ଷଣ୍ଢକୁ ଉଦ୍ଧାର । ଏକାକୀ ପହଁରି ଯାଇ ତାକୁ ଭିଡି ଭିଡି ସେ କୂଳକୁ ନେଇ ଆସିଥିଲା ସୁଅ ତୋଡରେ ଟାଣି ହୋଇ ଜୋବରା ଆନିକଟ୍‌ର ବିକ୍ଷୁବ୍‌ଧ ଘୂର୍ଣ୍ଣିପାକ ମଧରେ ଯାଇ ପଡିବାର ମହା ବିପଜ୍ଜନକ ସମ୍ଭାବନାକୁ ଉପେକ୍ଷା କରି।

ତାର ଆଉ ଗୋଟିଏ ସାହସିକ କାର୍ଯ୍ୟ– ୧୯୪୧ ସାଲରେ ରାମଗଡ କଂଗ୍ରେସ ଅଧିବେଶନ ଦେଖିବା ଲାଗି କଟକରୁ ଏକାକୀ ସାଇକେଲରେ ରାମଗଡ ଗମନ ।



Digitized by srujanika@gmail.com

ତାର ସେଇ ଭ୍ରମଣକୁ ଟିକିଏ ଟିକିଏ ବର୍ଣ୍ଣନାରୁ ଆମେ ଅନୁଭବ କରିଥିଲୁ ଆମ ଭାରତବର୍ଷ ପ୍ରକୃତରେ କି ବୈଚିତ୍ର୍ୟମୟ ଦେଶ, ବାସ୍ତବିକ ଏହି ବିଶାଳ ଦେଶର କେତେ ସାମାନ୍ୟ ଅବା ଆମେ ଜାଣୁ ବା ଜାଣି ପାରୁ ।

ପରବର୍ତ୍ତୀ ଜୀବନରେ ଯେତେବେଳେ ମୋର ବଡ ପୁଅ ସାଇକେଲ୍‌ରେ କଲିକତା ଯିବାକୁ ବାହାରିଲା ସେତେବେଳକୁ ପିତାର ସନ୍ତାନବାତ୍ସଲ୍ୟ ବାଉଲକୁ ଆଶ୍ରା କଲାଣି, ତଥାପି ସେ ତାର ବଡପୁଅ ଚନ୍ଦ୍ରମୌଳିକୁ ଉତ୍ସାହ ଦେଲା ମୋ ପୁଅ ସାଙ୍ଗରେ ଯିବା ଲାଗି- ସ୍ତ୍ରୀର ପ୍ରବଳ ଆପତ୍ତି ଓ ନିଜର ଆନ୍ତରିକ ଶଙ୍କା ସତ୍ତ୍ୱେ । ଦୁହେଁ ସାଇକଲରେ କଲିକତା ଗଲେ ଯଦିଚ ନିରାପଦରେ ନୁହେଁ ।

ତାର ଏଇ ଗୋଟିଏମାତ୍ର ଗୁଣ ବିଷୟରେ କହି ବସିଲେ ବି ସରିବ ନାହିଁ । ତ୍ରିଂଶ ବର୍ଷ କି ଆହୁରି ତଳର କଥା- ମୋ ସ୍ତ୍ରୀର ଇଚ୍ଛା ହେଲା ଓଡ଼ିଆରେ ଖଣ୍ଡେ ବହି ଲେଖନ୍ତେ ସିଲେଇ ବିଷୟରେ । ବାଉଲ୍ ତତ୍କ୍ଷଣାତ୍ କହିଲା- ଆପଣ ଲେଖନ୍ତୁ ନା ବଙ୍ଗଳାରେ, ମୁଁ ତାକୁ ଓଡ଼ିଆ କରି ଦେବି । ମୋର ସ୍ତ୍ରୀ ଲେଖିଲେ । ବଙ୍ଗଳାରେ ମଧ୍ୟ ତାଙ୍କ ପକ୍ଷେ ଲେଖିବା କଷ୍ଟ । ସିଲେଇରେ ଯଥେଷ୍ଟ ଜ୍ଞାନ ଥିଲେ କଣ ହେବ, କୌଣସି ବିଷୟକୁ ସରଳ ଓ ସୁନିବଦ୍ଧ ଭାବରେ ଲେଖିବା ବହୁ ଅଭ୍ୟାସ ସାପେକ୍ଷ । ସେ ଯାହା ଲେଖିଲେ ବାଉଲ୍ ବହୁ ପରିଶ୍ରମ କରି ତାକୁ ସ୍ପଷ୍ଟ ଓ ସୁଷ୍ଠୁ ରୂପ ଦେଲା । ପ୍ରକାଶିତ ହେଲା ଓଡ଼ିଆରେ 'ସହଜ ସିଲେଇ ଶିକ୍ଷା' ବହି ଖଣ୍ଡକ । ଏହି ଶ୍ରମଦାନରେ ବାଉଲ୍‌ର ଏକମାତ୍ର ପ୍ରେରଣା ଥିଲା ବନ୍ଧୁବତ୍ସଳତା, ଏକମାତ୍ର ସ୍ୱାର୍ଥ ଥିଲା ସ୍ନେହସଞ୍ଚୟ ।

ଏହିପରି ଗୁଣଗ୍ରାହୀ ଥିଲା ସେ । ଆଉ ଏକ ଦୃଷ୍ଟାନ୍ତ : କଲିକତାର ଜଣେ ପ୍ରକୃତ ଭଲ 'ଚେସ୍' ଶତରଞ୍ଜ ଖେଳାଳୀ ଦାରୁଣ ଅର୍ଥାଭାବ ସତ୍ତ୍ୱେ ସୁଦୂର ମାନ୍ଦ୍ରାଜକୁ ଯାଇଥିଲେ ଗୋଟିଏ ଶତରଞ୍ଜ ପ୍ରତିଯୋଗିତାରେ ଖେଳିବା ପାଇଁ । ସେଠାରୁ ଫେରିବା ବେଳେ ବିନା ଟିକେଟରେ ଭ୍ରମଣ ଅପରାଧରେ ତାଙ୍କୁ ଜୋରିମାନା, ଅନାଦାୟରେ କେଇ ଦିନର ଜେଲ୍ ହେଲା । ପୂର୍ବେ ସେ କେବେ ଆମ ଓଡ଼ିଶା ରାଜ୍ୟ ଶତରଞ୍ଜ ପ୍ରତିଯୋଗରେ ଖେଳିବା ପାଇଁ ଭୁବନେଶ୍ୱର ଆସିଥିଲେ, ତେଣୁ ଆମେ ଭୁବନେଶ୍ୱର ଶତରଞ୍ଜ ପ୍ରେମୀମାନେ ତାଙ୍କର ଗୁଣମୁଗ୍ଧ ଥିଲୁ । ତାଙ୍କ କାରାଦଣ୍ଡ ଖବର ପାଇ ଭେଦାକରି ତାଙ୍କର ଜୋରିମାନା ଟଙ୍କା ଉଠାଇବାରେ ସଚେଷ୍ଟ ହେଲୁ । କଥା ପ୍ରସଙ୍ଗରେ ବାଉଲ୍ ମୋ ପାଖରୁ ଏ କଥା ଜାଣି ପାରିଲା- ତାର ବି ସେତେବେଳେ କାର୍ଯ୍ୟସ୍ଥଳ ଭୁବନେଶ୍ୱର । ଆମ ଶତରଞ୍ଜ ସଂସ୍ଥା ସହିତ



Digitized by srujanika@gmail.com

ଅବଶ୍ୟ ତାର କୌଣସି ସମ୍ପର୍କ ନଥାଏ । କିନ୍ତୁ ଶିଳ୍ପୀର ଦୁଃଖ ବୁଝିଲା, ଉପରେ ପଡି ଜିଦ୍ କରି ସେ ମଧ ଚାନ୍ଦା ଦେଲା ।

ଦୂରେସ୍ଥିତ ସମ୍ପୂର୍ଣ୍ଣ ଅପରିଚିତ ଲୋକ ପ୍ରତି ଏ ଆତ୍ମୀୟତା ସେ କାହିଁକି ଅନୁଭବ କଲା ସେ କଥା କଣ କହିବି ? ହୋଇପାରେ ଶିଳ୍ପୀ ପ୍ରତି ଶିଳ୍ପୀର ଆତ୍ମୀୟତାବୋଧ । କଟକର ଜଣେ ମୁସଲ୍‌ମାନ୍ କ୍ଲାରିଓନେଟ୍ ଶିଳ୍ପୀ-ଅର୍ଥାଭାବରୁ ଯେ ବେଣ୍ଡ୍-ବାଜା ଦଳରେ କ୍ଲାରିଓନେଟ୍ ବଜାଉଥିଲେ- କେତେକ ତାଙ୍କୁ 'ମାସ୍‌ଟାର୍ ବୋଲି ଡାକୁଥିଲେ- ତାଙ୍କ ପ୍ରତି ବାଉଲ୍‌ର ଠିକ୍ ଏପରି ଆତ୍ମୀୟତା ବୋଧ ଆମେ ଦେଖିଛୁଁ ।

ପୁଣି ମନେପଡେ ବୈଷ୍ଣବ ପାଣିଙ୍କୁ ଗଣକବି ବୋଲି ସମାଦର ମିଳିବାର ବହୁ ପୂର୍ବରୁ ବାଉଲ୍ ତାଙ୍କୁ ଉଚ୍ଚ କୋଟୀର ଶିଳ୍ପୀ ବୋଲି ଅନ୍ତରର ସମ୍ମାନ ଦେଇଥିଲା । ଦିନେ ଗୋଟିଏ ଜଳଖିଆ ଦୋକାନରେ ବସି ସେ କେତେକଙ୍କ ଆଗରେ ପୂର୍ଣ୍ଣପ୍ରାଣରେ ବୈଷ୍ଣବ ପାଣିଙ୍କର ପ୍ରଶଂସା ଗାଉଥାଏ । ଯୋଗକୁ ପାଣି ସ୍ୱୟଂ ସେହି ଦୋକାନରେ ବସି ଚାହା ପିଉଥାନ୍ତି ବାଉଲର ତହିଁକି ନଜର ନଥାଏ । ଭକ୍ତର ଅକୁଣ୍ଠିତ ପ୍ରଶଂସା କଣ ଶୁଣି ଶିଳ୍ପୀ ସାନନ୍ଦେ ଆତ୍ମପ୍ରକାଶ କଲେ ଓ ତାଙ୍କର ଯାତ୍ରାବହି ଗୁଡିକର ଗୋଟିଏ ସେଟ୍ ବାଉଲ୍‌କୁ ଉପହାର ଦେଲେ ।

ଏଇ ଆତ୍ମୀୟତାବୋଧର ପରିଧି କ୍ରମାନ୍ୱୟରେ ବଢ଼ାଇ ଚାଲିବା ବାଉଲ୍‌ର ଜୀବନ-ସାଧନା ଥିଲାପରା । ନିଜ କୁଟୁମ୍ବ, ବନ୍ଧୁବାନ୍ଧବ, ସାଙ୍ଗ ସୁଖ, ଜାତି ଓ ଧର୍ମର ଗଣ୍ଡି ପାରିହୋଇ ସମଗ୍ର ମାନବଜାତି ଆଡକୁ ଏହା ବ୍ୟାପି ଚାଲିଥାଏ, ଏପରିକି ପଶୁପକ୍ଷୀଙ୍କ ଆଡକୁ ମଧ । ଅନ୍ତରରେ ଏହାରି ବୀଜ ପ୍ରଥମ ଯୌବନରେ ତାକୁ ପ୍ରଣୋଦିତ କରିଥିବା ନଈବଢ଼ିରେ ଭାସି ଯାଉଥିବା ଷଣ୍ଢଟି ଲାଗି ନିଜ ଜୀବନକୁ ବିପନ୍ନ କରିବା ପାଇଁ । ଆହୁରି କେତେ ଘଟଣା ମନେ ପଡେ, କିନ୍ତୁ ଏତେକଥା କହି ହେବନାହିଁ । ପରିଶେଷରେ ସମଗ୍ର ବିଶ୍ୱ ସୃଷ୍ଟି ସହିତ ନିଜର ଅଭେଦ ଅନୁଭବ କରିବା ହିଁ ହେଉଛି ମନୁଷ୍ୟର ଚରମ ଲକ୍ଷ୍ୟ ବୋଲି କହୁଥିଲା ସେ। ଏହାହିଁ ସେ କହୁଥିଲା ଆଧ୍ୟାତ୍ମିକତା- ପୂଜା-ଅର୍ଚ୍ଚନାକୁ ନୁହେଁ, ଶାସ୍ତ୍ରପାଠ ପୁରାଣପାଠକୁ ନୁହେଁ । ଏ ସବୁକୁ ସେ ଅବଜ୍ଞା କରୁନଥିଲା; ଗୀତା, ଭାଗବତ, ବେଦ ମଧ ସେ ଗଭୀରଭାବରେ ଅଧ୍ୟୟନ କରିଥିଲା- କୋରାନ୍ ଓ ବାଇବେଲ୍ ମଧ । କିନ୍ତୁ ସେ କହେ ଏହି ଅଧ୍ୟୟନ ଶୁଷ୍କ ପାଣ୍ଡିତ୍ୟରେ ପର୍ଯ୍ୟବେସିତ ହୁଏ, ତାହା ଅବଗତ ମାତ୍ର ଦିନ, ଜ୍ଞାନ ଦିଏନାହିଁ । ବାଉଲ୍ ନ ହେଲେ ବାୟା ନ ହେଲେ ଏଭଳି କଥା ଆଉ କିଏ କହିବ ! ଆଇନ୍-ଷ୍ଟାଇନ୍‌ଙ୍କ ସୂତ୍ରଟି $E = mc^2$



Digitized by srujanika@gmail.com

ସୂତ୍ରଟି ସମଗ୍ର ବିଶ୍ୱସୃଷ୍ଟିକୁ ଗୋଟିଏ ସୂତ୍ରରେ ବାନ୍ଧିବାଲାଗି ଏକ ବିରାଟ ମହତ୍ ପ୍ରୟାସ, ତେଣୁ ଆଇନ୍‌ଷ୍ଟାଇନ୍‌ଙ୍କୁ ଦ୍ରଷ୍ଟା ଋଷି ବୋଲି ସେ ଜ୍ଞାନ କରୁଥିଲା । $E = mc^2$ ତାକୁ ଏକ ଗଭୀର ମନ ବୋଲି ଜଣାଯାଉଥିଲା । କାର୍ଲମାର୍କସ୍, ବାରଟାଣ୍ଡ୍ ରାସେଲ ଏମାନେ ନିଜକୁ ନିଜେ ନାସ୍ତିକ ବୋଲାଇଲେ ମଧ୍ୟ ବାଉଲ କହେ ସେମାନେ ତ ପରମ ଆସ୍ତିକ, ତାଙ୍କ କର୍ଯ୍ୟଦ୍ୱାରା ବିଶ୍ୱରେ ମହତ୍ ପ୍ରେମର ଅସ୍ତିତ୍ୱକୁ ବରାବର ସ୍ୱୀକାର କରି ଆସିଛନ୍ତି, ସେଇମାନେଇ ତ ଋଷି, ସମଗ୍ର ମାନବଜାତି ଲାଗି ଥିଲା ସେମାନଙ୍କ ଚିନ୍ତା (Concern), ଏବଂ ସେ ଚିନ୍ତାଲାଗି ସେମାନେ ଦୁଃଖ ବରଣ କରିଛନ୍ତି । ସେହିପରି ଚାର୍ଲି ଚାପଲିନ୍‌ଙ୍କୁ ମଧ୍ୟ ସେ ଋଷି ମଣୁଥିଲା, ତାଙ୍କର ଫିଲିମ୍‌ଗୁଡିକର କରୁଣ ହସ ମଧ୍ୟ ଦେଇ ନାନା ଦୋଷଦୁର୍ବଳତା ପୂର୍ଣ୍ଣ ସାଧାରଣ ମଣିଷ ପ୍ରତି ତାଙ୍କର ଯେଉଁ ଗଭୀର ସମବେଦନା ପ୍ରକାଶ ପାଇଥାଏ ତାହାରି ଲାଗି ।

ମାନବ ଆତ୍ମା ଅନ୍ତହୀନ ବ୍ୟାପ୍ତି ପଥର ପଥିକ ଏହି ବିଶ୍ୱାସଟି ଥିଲା ତାର ଧର୍ମ, ଏହି ଥିଲା ତାର ସାଧନା । ଏଇଥିରୁ ଜାତ ତାର ସହଜ ସମାନତା ମନୋଭାବ କୌଣସି 'ପଲ୍‌ଟିକାଲ୍ ଆଇଡିଓଲଜି'ରୁ ନୁହେଁ । କେବେ ସେ ମୋର ଓ ଅନ୍ୟାନ୍ୟ ସାଙ୍ଗମାନଙ୍କ ସହକର୍ମୀ ଥିଲା, କେବେ ପୁଣି ସେ ଆମର ଉପରବାଲା ଅଫିସର ଥିଲା । ତାର ଏଇଭାବ ଭିତରେ ସେସବୁ କେଉଁଆଡେ ହଜି ଯାଇଛି । ମନେଅଛି କେବଳ ତାର ତଳୁଆ କର୍ମୀ, ଯେ କେହି ହେଲେ ତାର କୌଣସି ଭୁଲ ଦେଖାଇ ଦେଲେ ସେ କିପରି କୃତକୃତ୍ୟ ହୋଇ ତାକୁ ଧନ୍ୟବାଦ ଦେଉଥିଲା । ପ୍ରକୃତ ଉଚ୍ଚ ଭାବହିଁ ଏମିତି ସମାନତା ଆଡକୁ ବୋହିଯାଏ ପରା । ପରଦୁଃଖରେ ଏଇଥିପାଇଁ ସେ ଦୁଃଖୀ ହେଉଥିଲା ଏବଂ ଆହୁରି ବଡ କଥା-ପର ସୌଭାଗ୍ୟରେ ସେ ଆନନ୍ଦିତ ହେଉଥିଲା ।

ନା, କଥାଗୁଡାକ କ୍ରମେ ଅବିଶ୍ୱାସ ପର୍ଯ୍ୟାୟକୁ ଯାଇ ପହଞ୍ଚିଲାଣି । କିନ୍ତୁ ଏଇଆ ତ ସେ ଥିଲା । ତାର ମୁସଲମାନ ବନ୍ଧୁମାନେ ଈଦ୍ ଦିନରେ, ଖ୍ରୀଷ୍ଟିଆନମାନେ ବଡଦିନରେ, ତାକୁ ଅନାଇ ବସିଥାଆନ୍ତି । ଆମକୁ ସେ କହେ- କଅଣ କରିବି ଭାଇ, ମୁଁ ଖାଇବାକୁ ବଡ ଭଲପାଏ । ଏଣେ ମୁରଲୀଧର ଶ୍ୟାମ କୃଷ୍ଣ ନାମରେ ତା ଆଖିରୁ ପ୍ରାୟ ଲୁହ ଗଡିଯାଏ- ଶ୍ରୀ ଚୈତନ୍ୟଙ୍କ ସାଥୀରେ ଆସିଥିବା ବୈଷ୍ଣବକୁଳରେ ତାର ଜନ୍ମ- ଯଦିଚ ମଠକୁ ଯାଇ ସଂକୀର୍ତ୍ତନ-ମାଳପୁଅରେ ଭାଗ ବସାଇବାରେ ତାକୁ କେହି କେବେ ଦେଖିନାହାନ୍ତି । ଅବଶ୍ୟ ପ୍ରେତୋଦ୍ଦିଷ୍ଟ



Digitized by srujanika@gmail.com

ଘୃତାନ୍ନରେ ଭାଗବସାଇବାରେ ତାର ଆପତ୍ତିନଥିଲା । ଏଥିରେ ଏକମାତ୍ର ସାଥୀ ଓ ସାକ୍ଷୀ ଆଶୁବାବୁ ବର୍ତ୍ତମାନ ପରଲୋକରେ ।

ବାଉଲାର ଏଇ ଧର୍ମ, ଏଇ ଏକାତ୍ମବୋଧର ସାଧନା ତାକୁ ଦେଇଥିଲା ଆଶ୍ଚର୍ଯ୍ୟ ଉତ୍ସାହ । States Reorganisation Commission ରିପୋର୍ଟ ବେଳର ଆନ୍ଦୋଳନ ଯେତେବେଳେ ଭୟଙ୍କର ଆକାର ଧରିଥାଏ ସେଇ ସମୟରେ ଯେଉଁ ତିନିଜଣ ରାଜପୁରୁଷଙ୍କ ଉପରେ କଟକସହିତ ଅଞ୍ଚଳର ବିଭିନ୍ନ ଅଂଶର ଶାନ୍ତିରକ୍ଷା ଦାୟିତ୍ୱ ନ୍ୟସ୍ତ ହୋଇଥାଏ ତାଙ୍କ ମଧ୍ୟରେ ବାଉଲା ଥିଲା ଅନ୍ୟତମ- କାରଣ ପୂର୍ବରେ ଥରେ ସାମ୍ପ୍ରଦାୟିକ ଗଣ୍ଡଗୋଳବେଳେ ସେ ଏହିପରି ଦାୟିତ୍ୱ ଦକ୍ଷତାର ସହିତ ତୁଲାଇଥିଲା ଶେଷକୁ ତାର ନିଜର ଓ ଅନ୍ୟାନ୍ୟ ପଦସ୍ଥ କର୍ମଚାରୀଙ୍କ ଜୀବନସଂଶୟ ଉପସ୍ଥିତ ହେଲା । ପୁଲିସ ବଡସାହେବ ଅଧୀରଭାବରେ ତାକୁ ବାରମ୍ବାର କହୁଥାନ୍ତି ଗୁଳି ଚଳାଇବା ଆଦେଶ ଦେବାକୁ । କିନ୍ତୁ ଆପଣା ରକ୍ଷଣ ଅପେକ୍ଷା ସେ ଜନତାର ମଙ୍ଗଳକୁ ବଡ ବୋଲି ମଣିଲା । ଯେଉଁ ବାମାଚରଣ ମିତ୍ର କେବେ କେଉଁ ସଭାସମିତିରେ ବକ୍ତୃତାକରି ପାରେନାହିଁ, ପରବର୍ତ୍ତୀ ଜୀବନରେ ବି କୌଣସି ସାହିତ୍ୟସଭାର ସଭାପତି ହେବାକୁ ମଙ୍ଗିନାହିଁ, ସେ ଉତ୍‌କ୍ଷିପ୍ତ ଜନତାର ନେତାମାନଙ୍କ ସମ୍ମୁଖୀନ ହେଲା । ସାର୍ବିକ ମଙ୍ଗଳ ଚିନ୍ତା ତାକୁ କି ଶକ୍ତି ଯୋଗାଇ ଦେଲା କେଜାଣି, ଜନତା ନେତାମାନେ ତାର ଯୁକ୍ତିରେ ଶାନ୍ତ ପଡିଲେ ।

ଯୀଶୁ ବିବେକାନନ୍ଦ ରବୀନ୍ଦ୍ର ନାଥଙ୍କ ଛବି ସହିତ ବାଉଲ୍ ଘର ବାରଣ୍ଡାରେ ଟଙ୍ଗା ହୋଇଥାଏ ଚାର୍ଲିଚାପଲିନ୍‌ଙ୍କ ଛବି । ହଠାତ୍ ଶୋଇବା ଘର ଭିତରୁ ବାହାରି ଆସି ଏଇ ସବୁ ଛବି ଆଗରେ ତଳେ ଶୋଇପଡ଼ି ଶେଷ ନିଶ୍ୱାସ ପକାଇଥିଲା ବାଉଲ୍ । ଏହା ଯେପରି ତାର ସମସ୍ତ ଜୀବନ-ସାଧନାର ପ୍ରତୀକ ।

ପତ୍ରିକା : 'ଇସ୍ତାହାର'
ମାର୍ଚ୍ଚ ୧୯୮୭





Digitized by srujanika@gmail.com

# କୀର୍ତ୍ତିଯସ୍ୟ : ବାମାଚରଣ ସ୍ମୃତିରେ

## ମହାପାତ୍ର ନୀଳମଣି ସାହୁ

୧୯୭୫ ମସିହା ଫେବୃୟାରୀ ମାସ ଏକୋଇଶ ତାରିଖ । ସେଦିନ ମୁଁ ଭୁବନେଶ୍ୱରରେ ଥିଲି । ଲୋକ ସମ୍ପର୍କ ବିଭାଗରେ ସଂପାଦକ ରୂପେ ଯୋଗ ଦେବାକୁ ମୁଁ ପ୍ରସ୍ତୁତ ହେଉଥାଏ । ଦିନ ବାରଟା ବେଳେ ସେ ଶେଷ ନିଃଶ୍ୱାସ ତ୍ୟାଗ କରିବା ବେଳେ ମୁଁ ମୋର ଜଣେ ବନ୍ଧୁଙ୍କ ଘରେ ମଧ୍ୟାହ୍ନ ଭୋଜନ କରୁଥିଲି । ଏତେ ପାଖରେ ଥାଇ ମଧ୍ୟ ମୁଁ ତାଙ୍କ ଶେଷ ବେଳରେ ପହଞ୍ଚି ପାରିଲି ନାହିଁ । ଏହାଠାରୁ ବଳି ଦୁର୍ଭାଗ୍ୟର ବିଷୟ ମୋ ପକ୍ଷରେ ଆଉ କଣ ଥାଇପାରେ ? ସେ ମରୁଥିଲାବେଳେ ମୁଁ ମୋର ବନ୍ଧୁ ଘରେ ମାଛଭାତ ଖାଉଥିଲି । ଏଭଳି କଣ ହୁଏ ? ଏଭଳି କଣ ଘଟେ ? ଘଟିବାର କଥା କି ? ତାଙ୍କପ୍ରତି ଶ୍ରଦ୍ଧା ଓ ଭକ୍ତିରେ କଣ ମୋର କିଛି କପଟତା ଥିଲା ? ମୋ ପ୍ରତି କଣ ତାଙ୍କର କମ୍ ସ୍ନେହଥିଲା ? କେତେଥର ସେ କହିଛନ୍ତି- ପାଞ୍ଚ ବର୍ଷଧରି ତ ସେ ଶଯ୍ୟାଶାୟୀ ହୋଇ ପଡିଥିଲେ- କେତେବାର ମୋତେ- ନୀଳମଣି ! ମୋର ମଲାବେଳେ ଯେପରି ତୁମେ ମୋ ପାଖରେ ଓଡ଼ିଆ ଭାଗବତ ପଢ଼ିବ । ତାଙ୍କ ସ୍ତ୍ରୀଙ୍କୁ ମଧ୍ୟ ବାରମ୍ବାର ତିଆରି କରି



Digitized by srujanika@gmail.com

କହିଛନ୍ତି-ଦେଖ ! ସମୟ ନିକଟ ହେବାର ଜାଣିଲେ- ନୀଳମଣିକୁ ତୁରନ୍ତ ଡକାଇ ଦେବ, ସେ ଜଗନ୍ନାଥ ଦାସଙ୍କ ଭାଗବତ ପଢ଼ିବ । ମୁଁ ସେହି କୃଷ୍ଣ ଚରିତ ଶୁଣିଶୁଣି ଯେପରି ମରିବି ।'

ମାତ୍ର ଭାଗ୍ୟର କି କ୍ରୁର ବିଡମ୍ବନା ! ସେ ମରୁଥିଲାବେଳେ ମୁଁ ଏଣେ ମାଛ ଭାତ ଖାଉଛି !

ମରିବା ଲାଗି ସେ ବହୁ ଦିନରୁ ପ୍ରସ୍ତୁତ ହୋଇ ଯାଇଥିଲେ । ତେଣୁ ମୃତ୍ୟୁ ସଙ୍ଗେ ସେ ଲଢୁ ନଥିଲେ ଆଦୌ । ତାଙ୍କର ମରଣଭୟ ମଧ୍ୟ ନଥିଲା । ସେ କହୁଥିଲେ- ସେଥିପାଇଁ ଡରନାହିଁ ହେ । ନୀଳମଣି ! ମୋର ଖାଲି ଅଶାଙ୍କା- ଯଦି ମରଣ କାଳେ ମୋର ଶ୍ରୀକୃଷ୍ଣ ସ୍ମରଣ ନ ହେବ !

ମୁଁ କହେ- ନିଶ୍ଚୟ ହେବ ବାମା ଭାଇ ! ତୁମେ କୃଷ୍ଣ ଚେତନାରେ ରହି ଆଖି ବୁଜିବ ।

୧୯୪୮ ମସିହାଠାରୁ ତାଙ୍କ ସାଙ୍ଗେ ମୋର ସମ୍ପର୍କ । ସେ ମୋଠାରୁ ଦଶବର୍ଷ ବୟସରେ ବଡ ହେବେ । ମାତ୍ର ସେ ଲେଖା ଲେଖି ଆରମ୍ଭ କରିଥିଲେ ଆମରି ସାଙ୍ଗରେ । ଶ୍ରୀ ଅଖିଳ ପଟ୍ଟନାୟକ, ଶ୍ରୀ ସୁରେନ୍ଦ୍ର ମହାନ୍ତି, ଶ୍ରୀ ରାଜକିଶୋର ମହାନ୍ତି, ଶ୍ରୀ ଅଚ୍ୟୁତାନନ୍ଦ ପତି- ଏମାନେ ସମସ୍ତେ ଆଗରୁ ଗଳ୍ପ ଲେଖୁଥିଲେ ମଧ୍ୟ - ରବିବାର ପ୍ରଜାତନ୍ତ୍ର ଓ ଝଙ୍କାର ଭିତରେ ଇ ସମସ୍ତେ ପ୍ରତିଷ୍ଠା ଲାଭ କଲେ । ବାମାବାବୁଙ୍କର ପ୍ରଥମ ଗଳ୍ପ 'ମହାଯୁଦ୍ଧ' ହିଁ ବାଜିମାତ୍ କରିଥିଲା- ଏକ ଗଳ୍ପ ପ୍ରତିଯୋଗୀତାରେ ପ୍ରଥମ ସ୍ଥାନ ଅଧିକାର କରି ।

ପ୍ରଥମରୁ ସେ ଖୁନଖରାରୀ ଓ ରହସ୍ୟ, ରୋମାଞ୍ଚ ଗଳ୍ପ ଲେଖୁଥିଲେ । ଆର୍‌ଥର୍ କନାନ୍ ଡୋୟାଲ୍ ଥବଲେ ତାଙ୍କର ଆଦର୍ଶ । "କୀର୍ତ୍ତିର୍ଯସ୍ୟ" ଓ "ନର ଛଞ୍ଚାଣ" ବୋଲି ଦୁଇଖଣ୍ଡି ମନସ୍ତତ୍ତ୍ୱ ମୂଳକ ରହସ୍ୟ ରୋମାଞ୍ଚ ଗଳ୍ପ ବହି ଲେଖି ପ୍ରଥମେ ସେ ଲେଖକ ହିସାବରେ ପରିଚିତ ହୋଇଥିଲେ । ସେ ଭାବୁଥିଲେ- ତାଙ୍କର ବନ୍ଧୁ ୰ଆଶୁତୋଷ ରାୟଙ୍କ ପରି ସେ କେବଳ ରହସ୍ୟ ରୋମାଞ୍ଚ ବହି ଲେଖିବେ । ମାତ୍ର ତାଙ୍କ ଭିତରେ ଯେ ଜଣେ ମହାନ୍ ମାନବବାଦୀ ଲେଖକ ନିଜକୁ ପ୍ରକାଶ କରିବା ଲାଗି ବ୍ୟାକୁଳ ଭାବରେ ଅପେକ୍ଷା କରିଥିଲା ତାହା ହୁଏତ ତାଙ୍କୁ ଜଣା ନଥିଲା । ପୂର୍ବୋକ୍ତ "ମହାଯୁଦ୍ଧ" ଗଳ୍ପ ହିଁ ତାଙ୍କ ଉପରେ ପ୍ରଭୂତ ଖ୍ୟାତି ଓ ପ୍ରଶଂସାବାଦ ଅଜାଡି ଦେଇଥିଲା । ପ୍ରଖ୍ୟାତ ଗାଳ୍ପିକ ଗୋପୀନାଥ ମହାନ୍ତି, ସୁରେନ୍ଦ୍ର



Digitized by srujanika@gmail.com

ମହାନ୍ତି, ପ୍ରାଣବନ୍ଧୁ କର ଓ ଆମ୍ଭେମାନେ ତାଙ୍କର ଜାଜ୍ଜ୍ୱଲ୍ୟମାନ ପ୍ରତିଭାକୁ ସ୍ୱାଗତ ଜଣାଇଥିଲୁ ।

ତା'ପରେ ସେ ବହୁ ଗଳ୍ପ ଲେଖିଥିଲେ । ଦୀର୍ଘ ପଚିଶିବର୍ଷ ଧରି ସେ ଝଙ୍କାର, ଆସନ୍ତା କାଲି, ନବରବି, ସମାବେଶ ଓ ମାନସ ଆଦି ପତ୍ରପତ୍ରିକାର ଅତି ଜନପ୍ରିୟ ଗାଳ୍ପିକ ଭାବେ ସୁପ୍ରତିଷ୍ଠିତ । ତାଙ୍କର "ଚନ୍ଦ୍ର ଓ ଚମ୍ପା" ଖଣ୍ଡିଏ ଐତିହାସିକ ଉପନ୍ୟାସ । କାଟାଲିନାର ଛାୟାରେ ଲିଖିତ ହେଲେ ବି ଏହା ବୌଦ୍ଧ ଯୁଗୀୟ ଓଡ଼ିଶାର ଐତିହାସିକ, ସାମାଜିକ ଓ ଆଧ୍ୟାତ୍ମିକ ପୃଷ୍ଠଭୂମିରେ ଆଧାରିତ କ୍ଷେତ୍ରରେ ଏକ ସ୍ୱତନ୍ତ୍ର ମର୍ଯ୍ୟାଦାର ଅଧିକାରୀ ହୋଇପାରିଛି । "ଚନ୍ଦ୍ର ଓ ଚମ୍ପା" ଉପନ୍ୟାସରେ ଐତିହାସିକ ତଥ୍ୟ ଅପେକ୍ଷା ମନୁଷ୍ୟର ଆଧ୍ୟାତ୍ମ୍ୟ ଜୀବନର ଜିଜ୍ଞାସାବାଦ ଉପରେ ସେ ଅଧିକ ଗୁରୁତ୍ୱ ଦେଇଛନ୍ତି ।

ଶତାଧିକ କ୍ଷୁଦ୍ର ବୃହତ୍ ଗଳ୍ପ ସେ ଲେଖିଛନ୍ତି । "ସ୍ୱପ୍ନସିଦ୍ଧ" "ଅସୀମ", ମହାପୁରୁଷବାଗ", "ବଟ ମହାପୁରୁଷ" ଆଦି ଗଳ୍ପ ସଂକଳନ ସଙ୍ଗେ ଓଡ଼ିଶାର ପାଠକ ପାଠିକା ଖୁବ୍ ପରିଚିତ । ତାଙ୍କର କେତେକ ଗଳ୍ପ ବିଭିନ୍ନ ଭାରତୀୟ ଭାଷା ଓ ବିଦେଶୀ ଭାଷାରେ ମଧ୍ୟ ଅନୁବାଦିତ ହୋଇ ଉତ୍କଳୋତର ପାଠକ ପାଠିକାମାନଙ୍କ ଦ୍ୱାରା ଆଦୃତ ହୋଇଛି । ଏବେବି ତାଙ୍କର ବହୁ ଗଳ୍ପ ପୁସ୍ତକ ଆକାରରେ ପ୍ରକାଶ ପାଇବାର ଅପେକ୍ଷାରେ ରହିଛି । ଏତଦ୍‌ବ୍ୟତୀତ ସେ କେତେକ ଉପାଦେୟ ପୁସ୍ତକ ଅନୁବାଦ ମଧ୍ୟ କରିଛନ୍ତି । ତାଙ୍କର ସବୁଠାରୁ ମହନୀୟ କୀର୍ତ୍ତି ହେଲା ତାଙ୍କର ପ୍ରବନ୍ଧ ବା ରମ୍ୟ ରଚନା ଗୁଡ଼ିକ । ଝଙ୍କାରରେ କ୍ରମାନ୍ୱୟରେ ପ୍ରକାଶିତ ସାହିତ୍ୟ, ସମାଜ ଓ ସଂସ୍କୃତି ଉପରେ ପ୍ରବନ୍ଧ ଓ ରମ୍ୟରଚନା ଗୁଡ଼ିକ ଓଡ଼ିଆ ସାହିତ୍ୟ ଭଣ୍ଡାରରେ ଅମୂଲ୍ୟରତ୍ନ ହୋଇ ରହିବ । ନିକଟରେ ତାଙ୍କର "ଏଣୁଷ୍ଠ ତେଣୁଷ୍ଠ" ଏବଂ "ଜୀବନ-ସାହିତ୍ୟ ଓ କଳା" ନାମରେ ଦୁଇଟି ଗଭୀର ତତ୍ତ୍ୱ ସମ୍ବଳିତ ରମ୍ୟରଚନା ଗ୍ରନ୍ଥ ପ୍ରକାଶ ପାଇଛି ।

ବାମାବାବୁଙ୍କ ଗଳ୍ପ ଶୈଳୀ ଓ ପ୍ରବନ୍ଧ ଶୈଳୀ ପ୍ରାୟ ଏକା । ପାଠକ ସଙ୍ଗେ ସେ ଗୋଟିଏ ପ୍ଲାଟଫର୍ମ ଉପରେ ଠିଆ ହୋଇ କଥାବାର୍ତ୍ତା କରନ୍ତି । ବାକ୍ୟ ପ୍ରୟୋଗରେ ସେମିତି କିଛି ସୁଧୀଜନ ସୁଲଭ ଅଳଙ୍କରଣ ନାହିଁ- ସଚେତନ ଭାବେ ଆର୍ଟରକ୍ଷାର ପ୍ରଚେଷ୍ଟାନାହିଁ । ବରଂ କିଞ୍ଚିତ୍ ବିଦଗ୍‌ଧ ପ୍ରଗଲଭତା ଅଛି । ଗୋଟିଏ କଥା କହୁ କହୁ ପ୍ରସଙ୍ଗ କ୍ରମେ ଅନ୍ୟ ପ୍ରସଙ୍ଗ ଆଡକୁ ମାଡି ଯିବାର କଥକ-ପ୍ରବଣତା ରହିଛି । କିନ୍ତୁ କଥା ଭିତରେ ତାଙ୍କର ଏପରି ଏକ ଆତ୍ମିକତା ଫୁଟିଉଠେ, ଏପରି ଏକ



Digitized by srujanika@gmail.com

ଆନ୍ତରିକତାର ରାଗିଣୀ ବାଜି ଉଠେ ଯେ ପାଠକ ଆଗ୍ରହର ସହିତ ପଢ଼ିଚାଲେ । ପଢ଼ିଚାଲେନି ତ ବରଂ ଶୁଣିଚାଲେ । ତଥ୍ୟ ଓ ତତ୍ତ୍ୱ ବ୍ୟାଖ୍ୟାନରେ ତ ଖୁବ୍ ସମୃଦ୍ଧ (କାରଣ-ବାମାଚରଣ ଥିଲେ ଅଗାଧ ପଣ୍ଡିତ ବ୍ୟକ୍ତି । ବେଦଠାରୁ ଟଏନବୀ ଯାଏ ଓ କାମ୍ୟୁ, ସାର୍ତ୍ତେଙ୍କଠାରୁ ଶ୍ରୀ ଅରବିନ୍ଦ ଯାଏ କ୍ଲାସିକାଲ ସଙ୍ଗୀତଠାରୁ ଖେଳ ଓ ସିନେମା ଜଗତ ଯାଏ ତାଙ୍କର ଜ୍ଞାନର ସୀମା ପ୍ରସାରିତ ଥିଲା) । ତାଙ୍କ ଲେଖାର ଅନ୍ୟତମ ବିଭବ ହେଲା ତାଙ୍କର ରସଜ୍ଞାନ-ବା Sense of humour, ବୁଦ୍ଧି ବୃତ୍ତି ଓ ହୃଦୟବୃତ୍ତିର ସାଧୁ ସମନ୍ୱୟନ ଘଟିଲେ ଏହି ରସଜ୍ଞାନ ବା Sense of humour ଆସେ ନାହିଁ । ବିଶ୍ୱର ସର୍ବଶ୍ରେଷ୍ଠ ହାସ୍ୟରସ ସ୍ରଷ୍ଟା ନାଟ୍ୟକାର ଓ ଅଭିନେତା ଚାର୍ଲିଚାପ୍ଲିନଙ୍କୁ ସେ ଖୁବ୍ ସମ୍ମାନ କରୁଥିଲେ । ସେହିପରି ଡନ୍ କୁଇକ୍ ସୋଟ୍ ମହାକାବ୍ୟିକ ଉପନ୍ୟାସର ଲେଖକ ସର୍‌ଭାନ୍‌ଟିସଙ୍କୁ ମଧ୍ୟ ସେ ବିଶ୍ୱସାହିତ୍ୟର ଅମର ସ୍ରଷ୍ଟାମାନଙ୍କ ମଧ୍ୟରେ ଖୁବ୍ ବେଶୀ ସ୍ଥାନ ଦେଉଥିଲେ । ହାସ୍ୟରସର ଚପଳ ଉଦ୍‌ବେଳନର ଅନ୍ତରାଳରେ କାରୁଣ୍ୟବୋଧର ପ୍ରଚ୍ଛନ୍ନ ଗଭୀରତା ନଥିଲେ, ସେପରି ଲେଖାକୁ ସେ ପସନ୍ଦ କରୁନଥିଲେ । ବଙ୍ଗୀୟ ଔପନ୍ୟାସିକ ଶରତ ଚନ୍ଦ୍ରଙ୍କୁ ସେ ମନେ କରୁଥିଲେ ଲଘୁ ଭାବପ୍ରବଣ ରସସ୍ରଷ୍ଟା । ମାତ୍ର ବନଫୁଲ ଓ ତାରା ଶଙ୍କର ଏବଂ ସେ ଯୁଗର ବଙ୍କିମଚନ୍ଦ୍ରଙ୍କ ପ୍ରତି ତାଙ୍କର ଖୁବ୍ ଆକର୍ଷଣ ଥିଲା । ଭାରତର ରବୀନ୍ଦ୍ର ନାଥ ଓ ପ୍ରେମଚନ୍ଦ୍ର ଏବଂ ଆନ୍ତର୍ଜାତିକ କ୍ଷେତ୍ରରେ ଟଲଷ୍ଟୟ ଓ ଡଷ୍ଟାଭସ୍କିଙ୍କ ପ୍ରତି ତାଙ୍କ ଅନ୍ତରର ଗଭୀର ସମ୍ମାନ ଥିଲା । ମାତ୍ର ଗର୍କୀଙ୍କ ବିଷୟରେ ସେ ସେତେଦୂର ପ୍ରଶଂସମାନ ନଥିଲେ । ଭାରତବର୍ଷର ବୀରପୁରୁଷମାନଙ୍କ ମଧ୍ୟରେ ସେ ସ୍ୱାମୀ ବିବେକାନନ୍ଦ, ଶ୍ରୀ ରାମକୃଷ୍ଣ, ଶ୍ରୀ ଅରବିନ୍ଦ ଓ ଗାନ୍ଧିଜୀଙ୍କ ଜୀବନାଦର୍ଶକୁ ସର୍ବଶ୍ରେଷ୍ଠ ବୋଲି ଗ୍ରହଣ କରିଥିଲେ ବି ସମାଜ ଗଠନ ବିଷୟରେ ବା ସାମାଜିକ ଦର୍ଶନର ପ୍ରୟୋଗ କ୍ଷେତ୍ରରେ କାର୍ଲମାର୍କସ ଓ ଲେନିନ୍‌ଙ୍କ ଭାବ ଓ କର୍ମପନ୍ଥାକୁ ଶ୍ରେୟସ୍କର ବୋଲି ମନେ କରୁଥିଲେ ।

ବ୍ୟକ୍ତିଗତ ଜୀବନରେ ସେ ଭାବ ପ୍ରବଣତା ବିରୋଧରେ ନିଜେ ଉତ୍‌କ୍ଷିପ୍ତ ଭାବ ପ୍ରବଣ ହୋଇ ଉଠୁଥିଲେ । କୌଣସି ସାମାଜିକ ସମସ୍ୟା ଅଥବା ନୈତିକ ସମସ୍ୟା ଉପସ୍ଥିତ ହେଲେ, ସେ ବିଷୟଟିକୁ ଅତି ଯୁକ୍ତିଯୁକ୍ତ ଧାରାରେ ଚିନ୍ତା କରି ମୀମାଂସାରେ ପହଞ୍ଚିବାକୁ ପସନ୍ଦ କରୁଥିଲେ । କିନ୍ତୁ ଏପରି କେତେକ ବ୍ୟକ୍ତିଗତ ଓ ଅନ୍ତରଙ୍ଗ ବିଷୟ ରହିଛି- ଯାହାକୁ କି ଗୀତାରେ ଗୁହ୍ୟତମ ବୋଲି କୁହାଯାଇଛି- ସେ ସବୁଥିରେ ସେ ବୌଦ୍ଧିକ ବିଚାର ପଦ୍ଧତିକୁ ଗ୍ରହଣ କରୁନଥିଲେ । ସେହି



Digitized by srujanika@gmail.com

ରହସ୍ୟମୟ ଅନୁଭୂତି ଗୁଡିକ ପ୍ରତି ତାଙ୍କର ଥିଲା କବି-ସୁଲଭ ଆବେଗ ଗଭୀର ଭାବ-ପ୍ରବଣତା । ଶ୍ରୀକୃଷ୍ଣ ଥିଲେ ତାଙ୍କ ଅନ୍ତର ସିଂହାସନରେ ନିତ୍ୟ ଆରାଧିତ ଓ ପୂଜିତ ପୁରୁଷୋତ୍ତମ ଭଗବାନ । ଶ୍ରୀକୃଷ୍ଣଙ୍କ ସମ୍ବନ୍ଧରେ ତାଙ୍କ ହୃଦୟ ଏପରି ଆବେଗ ପରିପୂର୍ଣ୍ଣ ଥିଲା ଯେ, ମାର୍କସ୍‌ଙ୍କ ଧାରାରେ ଡାଇଲେକ୍‌ଟିକାଲ ସୂତ୍ରରେ ସମାଜ ତତ୍ତ୍ୱ ଉପରେ ଆଲୋଚନା କରୁ କରୁ ଯଦି କେହି ଶ୍ରୀକୃଷ୍ଣଙ୍କ ନାମ ଉଚ୍ଚାରଣ କରେ, ତେବେ ସେ ସଙ୍ଗେ ସଙ୍ଗେ ସମସ୍ତ ବିଷୟ ଭୁଲିଯାଇ "ହା କୃଷ୍ଣ" "ହା କୃଷ୍ଣ" ବୋଲି କାନ୍ଦିଉଠନ୍ତି । ଭିତରେ ଭିତରେ ସେ ଥିଲେ ପରମ ବୈଷ୍ଣବ ଓ ରାଧା ଭାବର ସାଧକ ।  ଆଧୁନିକ ଅର୍ଥରେ ବାମାଚରଣ ଥିଲେ ଜଣେ କ୍ରୋଧୀ କବି (Angry Poet) । ମନୁଷ୍ୟର ଏକାକିତ୍ୱ ନିଃସଙ୍ଗତା ଓ ଆପଣା ପ୍ରକୃତିର ଓ ବହିଃ ପ୍ରକୃତିର ନିଗୁଢ ବନ୍ଧନ ଭିତରୁ ମୁକ୍ତି ନ ପାଇବା ଜନିତ ବ୍ୟର୍ଥତା-ବୋଧର ଗ୍ଲାନିରେ ସେ ଖୁବ୍ ପୀଡିତ ଥିଲେ ଏବଂ ଏହି ପୀଡା ହିଁ ତାଙ୍କୁ ସବୁବେଳେ ଉତ୍‌କ୍ଷିପ୍ତ, ଉତ୍ତେଜିତ ଓ ରୁଦ୍ଧ କରି ରଖୁଥିଲା, ସେ ନିଜେ ପରମ ଆସ୍ତିକ ଥିଲେ ବି, କଥା କଥାକେ ଭଗବାନଙ୍କ ନାମ ଉଚ୍ଚାରଣ କରୁଥିବା ବ୍ୟକ୍ତିମାନଙ୍କ ପ୍ରତି ଭାରି ବିରକ୍ତ ହୋଇଯାଉଥିଲେ । ମୃତ୍ୟୁର ଅଳ୍ପ ସମୟ ପୂର୍ବ ପର୍ଯ୍ୟନ୍ତ ସେ ବାରମ୍ବାର ଗୋଟିଏ କଥା ହିଁ ମୋତେ ଦେଖିଲେ ପଚାରୁଥିଲେ, "ମରିଯିବି ତ ଚଞ୍ଚଳ, ଆଉ ବେଶିଦିନ ନୁହେଁ- କିନ୍ତୁ ମୃତ୍ୟୁ ବେଳକୁ ମୁଁ କୃଷ୍ଣ ଚେତନାରେ ରହି ପାରିବି ତ ? ତୁମେ କିନ୍ତୁ ସେତେବେଳେ ଯେପରି ହେଲେ ମୋ କାନରେ ଜଗନ୍ନାଥ ଦାସଙ୍କ ଦଶମସ୍କନ୍ଧ ଭାଗବତ ପଢ଼ି ଶୁଣାଇବ ।" ଏ ଆଶା ତାଙ୍କର ପୂରଣ ହୋଇପାରି ନଥିଲା । ମୃତ୍ୟୁ ବେଳକୁ ତାଙ୍କ ପାଖରେ କେହି ନଥିଲେ । ଅଥଚ କ୍ଷଣକପୂର୍ବରୁ ସମସ୍ତେ ଥିଲେ ଏବଂ କ୍ଷଣକ ପରେ ସମସ୍ତେ ଆସିଲେ । ସାମାନ୍ୟ କାଶିବା ପରେ ସେ ପିକଦାନୀଟି ଧରି ତହିଁରେ ଛେପ କାଢୁକାଢୁ ହଠାତ୍ ଅଣ ନିଃଶ୍ୱାସୀ ହୋଇଗଲେ । ତାପରେ ତାଙ୍କ ନାକରୁ ଏବଂ ପାଟିରୁ ରକ୍ତ ବୋହି ପଡିଲା, ଦମ୍ ବନ୍ଦ ହୋଇଗଲା, ଛାତି ଫାଟିଗଲା । ସେ "ମା" "ମା" ବୋଲି ଚିତ୍କାର କରୁ କରୁ ବସିବାଠାରୁ ଭୁଇଁରେ ଟଳି ପଡିଲେ । .... ତିନି ଚାରି ଘଣ୍ଟାପରେ ଅତି ସାମାନ୍ୟ ଏକ ନିରାଡମ୍ବର ଶବଯାତ୍ରାରେ ତାଙ୍କର ମର ଦେହ ଶ୍ମଶାନକୁ ବୁହାହୋଇଗଲା । ତାଙ୍କର ଅସଂଖ୍ୟ ବନ୍ଧୁ, ବନ୍ଧୁ କୁଟୁମ୍ବ ପରିଜନ ଏବଂ ଅସଂଖ୍ୟ ପାଠକ ଓ ସାହିତ୍ୟିକ ସେଦିନ ଭୁବନେଶ୍ୱର ଓ କଟକରେ ଉପସ୍ଥିତ ଥିଲେ, ତାଙ୍କ ଶବଯାତ୍ରାରେ ଏବଂ ଶେଷ ଦର୍ଶନବେଳେ ଉପସ୍ଥିତ ଥିଲେ- ତାଙ୍କର କତିପୟ କୁଟୁମ୍ବଙ୍କ ସହିତ ସାହିତ୍ୟିକ ବନ୍ଧୁ



Digitized by srujanika@gmail.com

ଗୋପୀନାଥ ମହାନ୍ତି, ଅଖିଳ ପଟ୍ଟନାୟକ, ବୀଣାପାଣି ମହାନ୍ତି, ରାଜକିଶୋର ମହାନ୍ତି ଓ ଶାନ୍ତନୁ କୁମାର ଆଚାର୍ଯ୍ୟଙ୍କ ପତ୍ନୀ ନିରୂପମା ଆଚାର୍ଯ୍ୟ ।

ନିଜର ଆଭ୍ୟନ୍ତରୀଣ ଜୀବନ ମଧ୍ୟରେ ସେ ଥିଲେ ଏକ ନିଃସଙ୍ଗ ବ୍ୟକ୍ତି । ଏକ ପ୍ରକାର ବୈରାଗୀ ବୈଷ୍ଣବ । ଉଚ୍ଚାକାଂକ୍ଷା ଶୂନ୍ୟ, କାମନା ଅଭିଳାଷ ଶୂନ୍ୟ ନିର୍ଲିପ୍ତ ଉଦାସ-ଅଥଚ କୃଷ୍ଣ ପ୍ରେମରେ ସେ ଥିଲେ ରସ-ଜର୍ଜରିତ । ଗୋଟିଏ ରାତ୍ରିର ଘଟଣା କହେ- ୧୯୬୮ ମସିହା ହୋଇପାରେ । ସେ କେବେହେଲେ ସାହିତ୍ୟରେ ରୀତିବାଦୀମାନଙ୍କୁ ପସନ୍ଦ କରନ୍ତି ନାହିଁ । ଉପେନ୍ଦ୍ର ଭଞ୍ଜଙ୍କ ଉପରେ ତାଙ୍କର ଘୋର ବିତୃଷ୍ଣା ଥିଲା । ମୁଁ କିନ୍ତୁ ତାଙ୍କୁ ଭଞ୍ଜଙ୍କର ବୈଦେହୀଶ ବିଳାସ ଶୁଣାଇ ଶୁଣାଇ କାବ୍ୟ ଆସ୍ୱାଦନରେ ରୀତିବାଦର ବୈଶିଷ୍ଟ୍ୟ ବୁଝାଉଥାଏ । ରାତି ୧୨ଟା ପରେ ଜହ୍ନ ରାତିରେ ଆମେ ଦୁହେଁ ପ୍ରାୟଶଃ କିଛି ସମୟ ପାଇଁ ରାସ୍ତାରେ ରାସ୍ତାରେ ଘୂରୁ । ସେଦିନ ଚମତ୍କାର ଜହ୍ନ ରାତି ଥିଲା, ସୁଲୁ ସୁଲୁ ଦକ୍ଷିଣା ପବନ ବହୁଥିଲା, ରାଜଧାନୀର ରାସ୍ତାକଡରେ କୃଷ୍ଣଚୂଡା ଗଛମାନଙ୍କରେ ଫୁଲ ଫୁଟିବା ଆରମ୍ଭ ହୋଇଯାଇଥିଲା । ସେ ତାଙ୍କର ନୀତି ଦିନର ଅଭ୍ୟସ୍ତ ଛୋଟିଆ ଗାମୁଛାଟି ପିନ୍ଧି ମୋ ସଙ୍ଗେ ବାହାରିଲେ, ମୋ ଘରଠାରୁ ଭୁବନେଶ୍ୱର ଷ୍ଟେସନ ପର୍ଯ୍ୟନ୍ତ । କିଛି ବାଟ ଯାଇଛୁ- ମୁଁ ବୈଦେହୀଶ ବିଳାସର କେତେକ ପଦ ପାଲାବାଲାଙ୍କ ରୀତିରେ ଗାଇ ତାଙ୍କୁ ବୁଝାଉଥାଏ । ସେଦିନ ସେହି ପ୍ରସଙ୍ଗ ଥିଲା । ଦଣ୍ଡକାରଣ୍ୟରେ ବ୍ରହ୍ମବାଦୀ ମୁନିମାନେ କିପରି ଭଗବାନ ପୁରୁଷୋତ୍ତମ ରାମଚନ୍ଦ୍ରଙ୍କର ଦିବ୍ୟ ରୂପ ସନ୍ଦର୍ଶନ ଜନିତ ବିଭ୍ରମରେ ନିଜକୁ ନାରୀ ମନେକରି ରାମଚନ୍ଦ୍ରଙ୍କୁ ପତି ରୂପେ ବରଣ କରିବାର ଦିବ୍ୟ ନିଶାରେ ବିଭୋଳିତ ହୋଇ "ବିଭ୍ରମ ଉପୁଜିଗଲା ମାନସ- ବୋଇଲେ ସଖାଙ୍କୁ ସଖୀ ଗୋ ଆସ" ବେଣୀ ଏ ଭାବି ଜଟା ଲମ୍ୱାଇ- ବିବିଧ କୁସୁମ ମଣ୍ଡିଲେ ନେଇ । ମୁଁ ଦୁଇଟି ସମ୍ପୂର୍ଣ୍ଣ ପଦ ଗାଇବା ସଙ୍ଗେ ସଙ୍ଗେ ବାମାବାବୁ ମୋତେ କୁଣ୍ଢାଇ ଧରି ହାଉ ହାଉ କରି କାନ୍ଦି ଉଠିଲେ ଏବଂ ରାସ୍ତାର ଧୂଳି ଉପରେ ଗଡିଗଲେ । ତାଙ୍କର ଭାବଦ୍ୱାରା ସଂକ୍ରମିତ ହୋଇ ମୁଁ ମଧ୍ୟ ଆଉ ନିଜକୁ ସମ୍ଭାଳି ପାରି ନଥିଲି । ସେ ରାତି, ସେ ମୁହୂର୍ତ୍ତ, ସେହି ଉପଲବ୍ଧି ଏବଂ ସେହି ସାଧୁସଙ୍ଗ ମୋ ଜୀବନରେ ଏକ ଅମୂଲ୍ୟ ସ୍ମୃତି ହୋଇ ରହିଛି ।

ସେ ନିଜେ ସଂସାରୀ ନ ଥିଲେ । ଆର୍ଥିକ ସ୍ୱଚ୍ଛଳତା ତାଙ୍କର ଆଦୌ ନଥିଲା । କିନ୍ତୁ ଏକ ବିରାଟ ପରିବାର ତାଙ୍କୁ ସର୍ବଦା ଘେରି ରହିଥିଲା । ତାଙ୍କର ଯାହା କିଛି ଉପାର୍ଜନ ସବୁ ତାଙ୍କର ପୁତୁରା, ଝିଆରୀ, ଭାଇ, ଭଉଣୀଙ୍କ ପାଇଁ ମୂଳରୁ ଖର୍ଚ୍ଚ



Digitized by srujanika@gmail.com

ହୋଇ ଯାଇଥିଲା । ବହୁ ଡେରିରେ ତାଙ୍କର ପିଲାମାନେ ଜନ୍ମ ହୋଇଥିଲେ । ବଡ ଝିଅଟି ବିଭା ହୋଇଯାଇଥିଲା । ମାତ୍ର ଆଉ ଚାରୋଟି ପିଲା ଏ ପର୍ଯ୍ୟନ୍ତ ସ୍କୁଲ କଲେଜରେ ପଢୁଛନ୍ତି । କିନ୍ତୁ ଘରେ ଚିନ୍ତା ତାଙ୍କର କେବେ ନଥିଲା । ସେ ପୃଥିବୀର ମନୁଷ୍ୟ ଜାତିର ଦୁଃଖ ଦୁର୍ଦ୍ଦଶା କଥାରେ ବେଶୀ ବିଚଳିତ ହେଉଥିଲେ । ତାଙ୍କର ସଂସାରର ସମସ୍ତ ଦାୟିତ୍ୱ ମୂଳରୁ ଶେଷ ପର୍ଯ୍ୟନ୍ତ ତାଙ୍କର ଅନୁପମା ପତ୍ନୀ ଶ୍ରୀମତୀ ପ୍ରତିଭା ମିତ୍ରଙ୍କ ଉପରେ ପଡିଥିଲା ଓ ବର୍ତ୍ତମାନ ମଧ ପଡିଛି । ଶ୍ରୀମତୀ ମିତ୍ର ଅଦ୍‌ଭୁତ ନାରୀ । ତାଙ୍କୁ ଦେଖିଲେ ମନେ ହେବ ସେ ସେତିକି ସ୍ୱୟଂ ଧରିତ୍ରୀ ଦେବୀ ! ଧୈର୍ଯ୍ୟ, ବିନୟ, ସହିଷ୍ଣୁତା, ଅକଳ୍ପନୀୟ ପରିଶ୍ରମ ଓ ଶ୍ରୀମନ୍ତ ଆତ୍ମମର୍ଯ୍ୟାଦାସଂପନ୍ନା ଏହି ମହିଳାଙ୍କୁ ଦେଖିଲେ ଏବଂ ଜାଣିଲେ ସମଗ୍ର ନାରୀ ସମାଜ ପ୍ରତି ଯେ କୌଣସି ପୁରୁଷର ମଥା କୃତଜ୍ଞତାର ଓ ସସମ୍ମାନରେ ନିଶ୍ଚୟ ନଇଁଯିବ ।

ବାମାବାବୁଙ୍କର ବହୁ ଗଳ୍ପରେ ତାଙ୍କର ପାରିବାରିକ ଜୀବନର ଉପଲବ୍‌ଧିମାନ ପ୍ରକାଶ ପାଇଛି । "ଧରିତ୍ରୀ ଓ ଧରିତ୍ରୀ" "ଲଡୁ", "ପଞ୍ଚମୁଖ" ଓ ଏହିଭଳି ବହୁ ଗଳ୍ପରୁ ଆମେ ତାଙ୍କର ପାରିବାରିକ ହୃଦୟର ପରିଚୟ ପାଇବା । ମାତ୍ର ସେ ଥିଲେ "ସଂସାରରେ ଥାଇ ମୁଁ ସଦା ଉଦାସୀନ- ଉଦାସୀନ ପ୍ରାୟେ କଟାଇଲି ଦିନ", ଭଳି ବ୍ୟକ୍ତି । ତାଙ୍କର ଲେଖାରେ ମନୁଷ୍ୟର ପ୍ରକୃତି ସମ୍ବନ୍ଧେ ବହୁ ତଥ୍ୟ ଅଛି- ମାତ୍ର ବାହାରର ପ୍ରକୃତି ତାଙ୍କ ଗଳ୍ପ ମଧ୍ୟରେ କେଉଁଠାରେ ହେଲେ ଆଲୋଚିତ ହୋଇନାହିଁ । ମୁଁ ତାଙ୍କୁ ଏଥିଲାଗି ବହୁବାର ଦୋଷ ଦେଇଛି । ମୁଁ କହେ- ବଡ ଭାଇ ! ତୁମେ ଗୋଟିଏ ପ୍ରକୃତି ଛଡା ଲେଖକ । ଆମ ଚାରିପଟେ ଏତେ ସୁନ୍ଦର ଆକାଶ, ନଈ, ନାଳ, ଗଛ, ପଡିଆ, ପାହାଡ, ଫୁଲ, ଚନ୍ଦ୍ର ଆଉ ତାରା ଅଥଚ ତୁମର ନାୟକ ନାୟିକାମାନଙ୍କ ଆଖିରେ ସେ ସବୁ ପଡେନା କେମିତି କେଜାଣି ? ବାମାବାବୁ ମୋର ଅଭିଯୋଗ ଓ ଭର୍ତ୍ସନାକୁ ହସି ହସି ସହିଯାନ୍ତି । କହନ୍ତି ଆମେ ସମସ୍ତେ ତ ପ୍ରକୃତି । ମୁଁ ସେହି ପରମ ପୁରୁଷଙ୍କର ଉପାସକ । ମୁଁ ତୁମମାନଙ୍କ ଭଳି ପ୍ରକୃତିର ପୂଜାରୀ ନୁହେଁ" ।

କିନ୍ତୁ ତା'ହେଲେ ବି ବହୁବାର ତାଙ୍କୁ ମୋର ବଗିଚାରେ ବିଭିନ୍ନ ପ୍ରକାର କାକ୍‌ଟସ ଓ ଫୁଲ ଇତ୍ୟାଦିକୁ ଦେଖି ମୁଗ୍‌ଧ ଓ ବିସ୍ମିତ ହେବାର ଦେଖି ଆଶ୍ଚର୍ଯ୍ୟ ହୋଇଛି । ସେ ନିଜେ ବଗିଚା କରିବାରେ ଆଗ୍ରହୀ ନଥିଲେ । କିମ୍ବା କୌଣସି ଜୀବଜନ୍ତୁ ପୋଷିବାର ପକ୍ଷପାତୀ ନଥିଲେ । ସେ କହୁଥିଲେ- ଗଛଲତା, ଜୀବଜନ୍ତୁ



Digitized by srujanika@gmail.com

ଇତ୍ୟାଦିଙ୍କ ସଙ୍ଗେ ଲାଗ ନାହିଁ । ସେମାନଙ୍କୁ ମୁକ୍ତଭାବେ ତାଙ୍କ ରାଜ୍ୟରେ ବଢ଼ିବାକୁ ଦିଅ । ଥରେ ଶ୍ରୀମତୀ ମିତ୍ର ଗୋଟିଏ ଗାଈ ରଖିଥିଲେ ବାମାବାବୁଙ୍କ ସ୍ୱାସ୍ଥ୍ୟ ଲାଗି । ସେ ଗାଈ ପିଛା ଶ୍ରୀମତୀ ମିତ୍ର ଯେଉଁ ପରିଶ୍ରମ କରୁଥିଲେ ମୁଁ ଜାଣେ । ବାମାବାବୁ ବାଧ ହୋଇ ଦୁଧ ପିଉଥିଲେ । ମାତ୍ର ସବୁଦିନେ ସେ ଗାଈ ଓ ଶ୍ରୀମତୀ ମିତ୍ରଙ୍କ ବିରୋଧରେ ମୋ ପାଖରେ ଆସି ଗୁହାରୀ କରୁଥିଲେ ।

ଏତେ ଜୀବନ୍ତ ମଣିଷ, ଏତେ ବନ୍ଧୁଷ ମଣିଷ, ଏଭଳି ସତ୍ୟସନ୍ଧ, କାରୁଣିକ ହୃଦୟ, ହାସ୍ୟ ପରିହାସ ନିପୁଣ, ଭଗବତ୍ ପରାୟଣ ବିପ୍ଳବୀ ଆତ୍ମା ମୁଁ ତାଙ୍କଛଡା ଆଉ ଦ୍ୱିତୀୟ ଦେଖିନାହିଁ । କ୍ଳାସିକାଲ୍ ସଙ୍ଗୀତ ଓ କ୍ରୀଡା ବିବରଣୀ ଶୁଣିବା ଲାଗି ସେ ରେଡିଓକୁ ଆବୋରି ଧରି ବସୁଥିଲେ । ତାଙ୍କ ଭଳି ଗଭୀର ଜୀବନ-ଅନୁରାଗୀ, ଅଥଚ ନିର୍ଲିପ୍ତ ନିସ୍ପୃହ ଉଦାସୀ ଆତ୍ମା ମୁଁ ଆଉ ଦ୍ୱିତୀୟ ଦେଖିନାହିଁ ।

ତାଙ୍କ ଶୋଇବା ଘରେ ସେ ପରମ ପୁରୁଷ ରାମକୃଷ୍ଣ, ସ୍ୱାମୀ ବିବେକାନନ୍ଦ, ଗାନ୍ଧିଜୀ, ଶ୍ରୀକୃଷ୍ଣ ଓ ଦୁର୍ଗାଙ୍କ ଫଟୋ ଚିତ୍ର ଆଦି ସଙ୍ଗେ ଚାର୍ଲି ଚାପ୍‌ଲିନ୍‌ଙ୍କର ଗୋଟିଏ ଫଟୋ ମଧ୍ୟ ଟାଙ୍ଗି ରଖିଥିଲେ । ସରଭାଣ୍ଟିସ୍‌ଙ୍କ ଡନ୍‌କୁଇକ୍‌ସୋଟ୍ ଚରିତ୍ର ଓ ଚାର୍ଲିଚାପ୍‌ଲିନ୍ ସ୍ୱୟଂ-ତାଙ୍କ କାବ୍ୟିକ ଆତ୍ମାର ଘନିଷ୍ଠ ବାନ୍ଧବ ଥିଲେ । ଓଡ଼ିଶାର ଗଣକବି ବୈଷ୍ଣବ ପାଣିଙ୍କୁ ମଧ୍ୟ ସେ ଖୁବ୍ ଭଲ ପାଉଥିଲେ ।

ମୃତ୍ୟୁ ପୂର୍ବରୁ ସେ ଗୋଟିଏ ସର୍ତ୍ତ କହିଯାଇଥିଲେ- ଦେଖ ! ସମସ୍ତଙ୍କୁ କହି ଦେଉଛି- ମୋର ଶବଯାତ୍ରା ଚୁପ୍‌ଚାପ୍ କରାଇ ନେବ । ମୋ ସ୍ତ୍ରୀଙ୍କ ହାତରୁ ଚୂଡ଼ୀ କାଢ଼ିବ ନାହିଁ । ଆଉ ବ୍ରାହ୍ମଣଙ୍କୁ ନ ଖୁଆଇ କୁଷ୍ଠରୋଗୀମାନଙ୍କୁ ପେଟ ଭରି, ମନ ଭରି ଖୁଆଇବ । ମାତ୍ର ମଲାବେଳକୁ ବାମାବାବୁ କାହାକୁ କିଛି ନ ଜଣାଇ ଚାଲିଗଲେ । ଛଖଣ୍ଡି କାଠ ଉପରେ ଚୁପ୍‌ଚାପ୍ ଶୋଇଯାଇ ମଶାଣୀକୁ ବୁହା ହୋଇଗଲେ । ସେଠି ପୋଡା ହେଲେ । ପାଉଁଶ ହୋଇଗଲେ ।

ମାତ୍ର ଲାଗୁନାହିଁ- ପ୍ରକୃତରେ ଲାଗୁନାହିଁ । ସେ ନାହାନ୍ତି ବୋଲି ଜମା ଲାଗୁନାହିଁ । ସେ ଲୋକଟିକୁ ଆଉ ଦେଖୁନାହିଁ । ଆଉ ମଧ୍ୟ ଶରୀରରେ ଦେଖି ହେବନାହିଁ । କିନ୍ତୁ- ସତେକି ସେ ଜୀବନ୍ତ ଅଛନ୍ତି । ଜୀବନ୍ତ ରହିଛନ୍ତି- ତାଙ୍କର ଗଳ୍ପ ଆଉ ତାଙ୍କର ପ୍ରବନ୍ଧ ଭିତରେ । ନିଜର ଅନ୍ତରକୁ, ନିଜର ଜୀବନକୁ ସେ ଆନ୍ତରିକ ଭାବେ ତାଙ୍କର ବକ୍ତବ୍ୟ ଗୁଡିକ ଭିତରେ ଢ଼ାଳି ଦେଇଛନ୍ତି । ସେ ବକ୍ତବ୍ୟ ସବୁ ଚିରଦିନ ଜୀବନ୍ତ ରହିବ ଓଡ଼ିଆ ସାହିତ୍ୟରେ । ମଣିଷ ଚାଲିଗଲା ପରେ ଯାଇ ତାର ଭାବଧାରା ସବୁ ଅଧିକ ଜୀବନ୍ତ ହୋଇ ଉଠନ୍ତି ।



Digitized by srujanika@gmail.com

ମୃତ୍ୟୁର କିଛିମାସ ପୂର୍ବରୁ ଶ୍ରୀଯୁକ୍ତ ଗୋପୀନାଥ ମହାନ୍ତିଙ୍କ ସହିତ ମୁଁ, ଶ୍ରୀକୃଷ୍ଣ ପ୍ରସାଦ ମିଶ୍ର ଓ ଶ୍ରୀ ଶାନ୍ତନୁ ଆଚାର୍ଯ୍ୟ, ବାମାଭାଇଙ୍କୁ ସଙ୍ଗରେ ଧରି ଗୋଟିଏ ଫଟୋ ତୋଳିଥିଲୁ । ତାହାହିଁ ତାଙ୍କର ଆମ ସଙ୍ଗେ ଶେଷ ସଂଯୋଗ ।

କିନ୍ତୁ ମୋ ହୃଦୟରେ ତାଙ୍କର ସ୍ମୃତି ଚିରଦିନ ଜାଗ୍ରତ ରହିଥିବ- ପ୍ରୋଜ୍ଜ୍ୱଳ ହୋଇ ରହିଥିବ ଏବଂ ସ୍ୱାଧୀନତା ପରି ସାହିତ୍ୟିକ ଗୋଷ୍ଠୀ ତାଙ୍କୁ ଆଉ କେବେ ଭୁଲି ପାରିବେ ନାହିଁ ।

ପତ୍ରିକା- "ମାନସ"

ଫେବୃଆରୀ ୧୯୭୬





Digitized by srujanika@gmail.com

# ସ୍ୱର୍ଗତ ବାମାଚରଣ ମିତ୍ର

## ଏକ ବିଷାଦ ମଧୁର ସ୍ମୃତିଚାରଣ

ମହାପାତ୍ର ନୀଳମଣି ସାହୁ

ବୋଧହୁଏ ୧୯୫୦ ମସିହାର କଥା । ପ୍ରଜାତନ୍ତ୍ର ପ୍ରଚାର ସମିତି ଓ 'ଝଙ୍କାର' ପ୍ରକାଶନ ସହିତ ମୁଁ ସେତେବେଳେ ସଂପୃକ୍ତ ଥାଏ । ସେତିକିବେଳେ ଏହି ସଂସ୍ଥା ତରଫରୁ ଗୋଟିଏ କ୍ଷୁଦ୍ର ଗଳ୍ପ ପ୍ରତିଯୋଗିତା ହୋଇଥିଲା । ସେତେବେଳେ ପ୍ରଜାତନ୍ତ୍ର ଓ ଝଙ୍କାର ପୃଷ୍ଠାରେ ଉଦୀୟମାନ ଯୁବଗାଳ୍ପିକ ହିସାବରେ ସୁରେନ୍ଦ୍ର ମହାନ୍ତି, ଅଖିଳ ପଟ୍ଟନାୟକ, ବସନ୍ତ କୁମାରୀ ପଟ୍ଟନାୟକ, କମଳ ମିଶ୍ର, ରାଜକିଶୋର ମହାନ୍ତି, ଅଚ୍ୟୁତାନନ୍ଦ ପତି, ସୁନୀଲ ମିଶ୍ର ଓ ମୁଁ ନିଜେ କିଛି କିଛି ପ୍ରତିଷ୍ଠା ଅର୍ଜନ କରୁଥାଉ । ସେତେବେଳେ ସେହି ଗଳ୍ପ ପ୍ରତିଯୋଗିତାରେ ଫଳାଫଳ ଯେବେ ପ୍ରକାଶ ପାଇଲା ଆମେ ଆଶ୍ଚର୍ଯ୍ୟ ହୋଇଗଲୁ । ପ୍ରଥମ ହୋଇଥିଲେ ବାମାଚରଣ ମିତ୍ର । ତାଙ୍କର 'ମହାଯୁଦ୍ଧ' ଗଳ୍ପଟି ଉତ୍କୃଷ୍ଟ ଗଳ୍ପ ରୂପେ ବିବେଚିତ ହୋଇ ପୁରସ୍କାର ପାଇଥିଲା । କିନ୍ତୁ କିଏ ଏହି ବାବାଚରଣ ମିତ୍ର ? ତାଙ୍କ ଲେଖାପଢ଼ି ନଥିଲୁ କି ନାମ ମଧ୍ୟ ଶୁଣି ନଥିଲୁ । ପରେ ଜାଣିଲୁ ଯେ, ସେ 'କୀର୍ତ୍ତିଯଶ୍ୟ' 'ନରଛଞ୍ଚାଣ' ପ୍ରଭୃତି କେତେକ ଅପରାଧ ମୂଳକ ଗଳ୍ପ ଲେଖିଛନ୍ତି ଏବଂ ସେଗୁଡିକ ବିଖ୍ୟାତ ମନସ୍ତାତ୍ତ୍ୱିକ ଡିଟେକ୍‌ଟିଭ୍ କଥାକାର କନୋନ୍ ଡଏଲ୍‌ଙ୍କ ଲେଖା ଦ୍ୱାରା ବେଶ୍ ପ୍ରଭାବିତ ।



Digitized by srujanika@gmail.com

ବୋଧହୁଏ, ସେହିବର୍ଷ ବିଷୁବ ମିଳନରେ ତାଙ୍କୁ ପ୍ରଥମ କରି ଦେଖିଲି । ଏବଂ ଦେଖିଲାମାତ୍ରେ କିଣି ହୋଇଗଲି । ଧଳା ପଞ୍ଜାବୀ ଓ ଧୋତିରେ ଶ୍ୟାମଳ ବର୍ଣ୍ଣର ଡେଙ୍ଗା ମଣିଷଟିଏ । ସୁ, ସବଳ, ସତେଜ, ସୁନ୍ଦର ମୁହଁରେ ପ୍ରାଣବନ୍ତ ଆତ୍ମୀୟତାର ହସ । ଆଖିର ଚାହାଣୀ ଆହୁରି ମତାଣିଆ- ଅନ୍ୟକୁ ବଶୀଭୂତ କଲାଭଳି । ସେ କନକସେଣ୍ଟ ଲଗାଇ ଥାନ୍ତି । (ଶେଷ ପର୍ଯ୍ୟନ୍ତ ସେ ସେହି ସେଣ୍ଟଟି ବ୍ୟବହାର କରୁଥିଲେ । ଏବଂ ସେହି ସେଣ୍ଟଟି ତାଙ୍କୁ ଭଲ ମାନୁଥାଏ) । ଦେହର ଭଙ୍ଗୀରେ ସିଧା ସଳଖ ପଣ ପ୍ରକାଶ ପାଉଥାଏ ଯେମିତି, ସେମିତି ମଧ୍ୟ ଫୁଟି ଉଠୁଥାଏ ତାଙ୍କ ଭିତରର ବିନୟଭାବ, କୃତକୃତ୍ୟ ଭାବ ଓ ସୌହାର୍ଦ୍ଦ୍ୟ ଲାଗି ଆକୁଳ ଆଗ୍ରହ । ଦୁହେଁ ଦୁହିଁଙ୍କ ମୁହଁକୁ ଚାହିଁ ଦେଲାମାତ୍ରେ ସ୍ୱତଃ ହସି ପକାଇଲୁ ଓ କିଞ୍ଚିତ୍ ଲାଜେଇ ମଧ୍ୟ ଗଲୁ । ବାସ୍ ସେତିକିରେ ହୋଇଗଲା । କିଣାବିକା ହୋଇଗଲା । ଦୁହେଁ ଜାକ 'କଡାକରେ କିଣିନେଲୁ କଳାମାଣିକ= କଡାକରେ ବିକିଦେଲୁ କଳାମାଣିକ' । ବାସ୍- ସେହି ମାହେନ୍ଦ୍ର ମୁହୂର୍ତ୍ତରୁ ଆମେ ପରସ୍ପରକୁ ପରମ ଆତ୍ମୀୟତାରେ ବାନ୍ଧି ରଖିଥିଲୁ ୧୯୭୫ ମସିହା ଫେବୃଆରୀ ୨୧ ତାରିଖ ପର୍ଯ୍ୟନ୍ତ । ସେହିଦିନ ସେ ଏ ଧରାଧାମରୁ ଚିରଦିନ ଲାଗି ବିଦାୟ ନେଇଗଲେ ।ସେହିଦିନ ଓଡ଼ିଶାର ସାରସ୍ୱତ କାନନରେ ନିତ୍ୟକୂଜନରତ ଅସଂଖ୍ୟ ବିହଙ୍ଗ ବିହଙ୍ଗିନୀମାନଙ୍କ ଭିତରୁ ସ୍ୱର୍ଗୀୟ ବିହଙ୍ଗଟିଏ ଏ ଧରାଧାମର ମାୟା ତୁଟାଇ ସ୍ୱର୍ଗର ନନ୍ଦନକାନନକୁ କୁହୁ-ମୁଖରିତ କରିବା ଲାଗି ଉଡି ଚାଲିଗଲା ।

୧୯୫୦ ରୁ ୧୯୭୫ ମସିହା ଏହି ଦୀର୍ଘ ପଚିଶିବର୍ଷ କାଳ ତାଙ୍କ ସଙ୍ଗେ ମୋର ସାରସ୍ୱତ ସମ୍ବନ୍ଧ ଖୁବ୍ ଘନିଷ୍ଠ ହୋଇ ରହିଥିଲା । ସେ ଥିଲେ ମୋ ଠାରୁ ଦଶବର୍ଷ ବୟସରେ ବଡ । ମୁଁ ତାଙ୍କ ବୟସର ଓ ମୋ ବୟସର ବହୁ ସାହିତ୍ୟିକଙ୍କ ସହିତ ଘନିଷ୍ଠଭାବେ ସମ୍ପର୍କିତ ରହି ଆସିଛି । ମାତ୍ର ତାଙ୍କ ମୋ ଭିତରେ ଯେଉଁ ସମ୍ପର୍କ ଥିଲା ଏବଂ ସେ ଯେପରି ମୋର ବ୍ୟକ୍ତିତ୍ୱ ଉପରେ ପ୍ରଭାବ ବିସ୍ତାର କରିଥିଲେ, ଆଉ କେହି ବା କାହା ସଙ୍ଗେ ମୋର ସେହିପରି ଭାବେ ସେତେ ଦୂର ହୋଇନାହିଁ । ମୁଁ ତାଙ୍କୁ 'ବଡଭାଇ' ବୋଲି ଡାକୁଥିଲି ଓ ସେ ମତେ ପ୍ରଥମ ଦେଖାରୁ ମୋ ନାମ ଧରି ଡାକି ଆସୁଥିଲେ । ବହୁବର୍ଷ ପର୍ଯ୍ୟନ୍ତ ଆମ୍ଭେମାନେ ପରସ୍ପର ଠାରୁ ଦୂରରେ ରହି ଜୀବନ ଓ ଜୀବିକା ନିର୍ବାହ କରୁଥିଲୁ । ସେ ରହୁଥିଲେ ନୀଳଗିରିରେ ତ, ମୁଁ ପାରଳାଖେମୁଣ୍ଡିରେ । ସେ ରହୁଥିଲେ କେନ୍ଦ୍ରାପଡାରେ ତ, ମୁଁ ରହୁଥିଲି ବାରିପଦାରେ । ଏହା ସତ୍ତ୍ୱେବି ଆମେ ପରସ୍ପରକୁ ଚିଠି ଲେଖୁଥିଲୁ ।



Digitized by srujanika@gmail.com

ସେହି ଚିଠିରେ ସାହିତ୍ୟ, ସମାଜ ଓ ମଣିଷ ଜୀବନର ନାନା ବିଭାଗ ଓ ନିୟତି ଉପରେ ଆମର ଚାଲୁଥିଲା ରୀତିମତ ସି....ସିଅମ୍ । ମଧ୍ୟେ ମଧ୍ୟେ ଯେତେବେଳେ ଦେଖାହୁଏ; (ପ୍ରାୟତଃ କଟକରେ ବିଷୁବ ବିଳନ ବେଳେ) ସେତେବେଳେ ପରସ୍ପରକୁ କୁଣ୍ଢାଇ ଧରି ନିବିଡଭାବେ ଦୁହେଁ ଦୁହିଁଙ୍କୁ ପାଉଥିଲୁ । ଏବଂ ଘଣ୍ଟା ଘଣ୍ଟା ଧରି କେହି କାହାକୁ ଛାଡୁ ନଥିଲୁ । ୧୯୬୫ ମସିହାରେ ମୁଁ ଯେତେବେଳେ ଭୁବନେଶ୍ୱର ବକ୍‌ସି ଜଗବନ୍ଧୁ କଲେଜକୁ ବଦଳି ହୋଇ ଆସିଲି ସେତେବେଳକୁ ସେ ସେକ୍ରେଟାରିଏଟ୍‌ରେ ଅଣ୍ଡର ସେକ୍ରେଟାରୀ ଥାଆନ୍ତି । ଦୈବାତ୍ ତାଙ୍କରି ଘର ପଛପଟେ ମୋତେ ଘରଟିଏ ମିଳିଗଲା । ସକାଳେ ସଞ୍ଜେ ଦୁହେଁ ଦୁହିଁଙ୍କ ଘରକୁ ଯାଉଥିଲୁ ବାଡି କବାଟ ବାଟେ । ଏହି ବାଡିକବାଟ ବାଟେ ପରସ୍ପରକୁ ଭେଟିବା ସମ୍ପର୍କରେ ସେ ରସିକତା କରି କହନ୍ତି- କାମ ବାଲାଏ ସଦର ଦରଜା ବାଟେ ଘରେ ପଶନ୍ତି । କିନ୍ତୁ ପ୍ରେମ ବାଲାଏ ଏଇ ବାଡିକବାଟ ବାଟେ ଯିବାଆସିବା କରିଥାନ୍ତି ।

୧୯୬୫ ରୁ ୧୯୭୫ ମସିହା ପର୍ଯ୍ୟନ୍ତ ଆମ ଦୁହିଁଙ୍କ ଭିତରେ ଯୋଉ ସମ୍ପର୍କ ସ୍ଥାପିତ ହୋଇଥିଲା- ଏବଂ ତାହା ଯୋଉ ପର୍ଯ୍ୟାୟକୁ ଯାଇଥିଲା- ତାହା ମୁଁ ଏମିତି କହିପାରିବି ନାହିଁ । ସେହି ସମ୍ପର୍କ ଆଉ ସାହିତ୍ୟର ଗଣ୍ଡି ଭିତରେ ଆବଦ୍ଧ ନଥିଲା । ତାହା ଜୀବନର ବହୁ କ୍ଷେତ୍ରକୁ ବ୍ୟାପି ଯାଇଥିଲା-- ଅବଶ୍ୟ ସାହିତ୍ୟକୁ ସାଙ୍ଗରେ ଧରି । ଜୀବନ ସର୍ବଦା ସାହିତ୍ୟ ଠାରୁ ଦୂରେଇ ଯାଏ । କିନ୍ତୁ ଜୀବନର କୋଉ ଦୂରତାକୁ ଛୁଇଁବା ଲାଗି ଭଲା ସାହିତ୍ୟ ପ୍ରାଣମୂର୍ଚ୍ଛା ଦଉଡୁ ନଥାଏ ? ଆମେ ଦି'ଜଣ ସତକୁ ସତ ଭାଇ ହୋଇଗଲୁ । ଗୋଟିଏ ମାଆପେଟର ଭାଇ ଭଳି । ଉତ୍କଳଭାରତୀ ଦେବୀ ସାରଳା ତ ଆମର ମାଆ । ଆମର ସାହିତ୍ୟିକ ଚେତନା ପୁରା ଆଧାତ୍ମିକ ହୋଇଗଲା । ବାମାଚରଣ ଥିଲେ ମୂଳତଃ ଜଣେ ଆଧାତ୍ମିକ ବ୍ୟକ୍ତିତ୍ୱ । ବୈଷ୍ଣବ-ଭାବରେ ତାଙ୍କର ହୃଦୟ ଥିଲା ପରିପୂର୍ଣ୍ଣ । ବେଳେବେଳେ, କୌଣସି ଏକ ଭାବବିହ୍ୱଳ ଘନିଭୂତ ମୁହୂର୍ତ୍ତରେ ହଠାତ୍ 'କୃଷ୍ଣ କୃଷ୍ଣ' ବୋଲି ଚିତ୍କାର କରି ସେ କୋହକାନ୍ଦଣାରେ ଫାଟି ପଡୁଥିଲେ । ହା କୃଷ୍ଣ, ହା କୃଷ୍ଣ କହି କହି ସେ ରାସ୍ତାର ଧୂଳିରେ ଗଡି ଯାଉଥିଲେ । ଜଗନ୍ନାଥ ଦାସଙ୍କ ଭାଗବତରୁ କେତେକ ପଦ ମୋ କଣ୍ଠରୁ ଶୁଣିବାମାତ୍ରେ ସେ କମ୍ପି ଉଠୁଥିଲେ । ଥରେ ମୁଁ ତାଙ୍କ ଆଗରେ ବିଦଗ୍ଧ ଚିନ୍ତାମଣିରୁ କିଛି ଗାଉଥିଲି- ମୋ ପାଟିରୁ ଯେମିତି 'ବନେ କି ଶୋଭା ଦେଖିଲାଇଁ ତ ଗୋମିତ । ସେ ତ ମଦନ ସାମନ୍ତ ସତ ଗୋ ମିତ ।' ପଦଟି ବାହାରିଛି- ସେ



Digitized by srujanika@gmail.com

ତତ୍‌କ୍ଷଣାତ୍ ଭୋ’ କିନା କାନ୍ଦିଉଠି ଖଟ ଉପରେ ଗଡି ପଡିଲେ । ଆଉ ଥରେ ସେମିତି- ରାତି ବାରଟାରେ ଜହ୍ନ ପଡିଥାଏ ମୋ ବଗିଚାରେ- ଠିଆଠିଆ ଗପ କରୁଥାଉଁ- ମୁଁ ‘ବୈଦେହୀଶ ବିଳାସ’ରୁ ଗାଇଲି ‘ବିଧାତା ଆମକୁ କରନ୍ତା ନାରୀ,- ବର ହୁଅନ୍ତେ ଏ କୋଦଣ୍ଡଧାରୀ’ ଏତିକି ଶୁଣି ସେ ସେହି ବଗିଚାରେ ତଳେ ଗଡିଗଲେ ଓ ଢ଼େର ବେଳଯାଏ କାନ୍ଦିଲେ ।’ ଏହି ଭାବ-ତନ୍ମୟ ଅବସ୍ଥାରୁ- ଏହି କୋହ ଗଦ୍‌ଗଦ୍ ଅବସ୍ଥାରୁ ତାଙ୍କୁ ଉଦ୍ଧାର କରିବା ମୋ ପାଇଁ କଷ୍ଟକର ଥିଲା । ଯେ କୌଣସି ସୂକ୍ଷ୍ମ ଭାବଟିଏ ବା ଅନୁଭୂତିଟିଏ ତାଙ୍କ ଆଗରେ ପ୍ରକାଶ ପାଇଗଲେ ସେ ତରଳି ଯାଉଥିଲେ । କିନ୍ତୁ ଆଶ୍ଚର୍ଯ୍ୟ କଥା; ଅନ୍ୟ ଜଣେ ସେପରି ଭାବପ୍ରବଣ ହେବାର ଉପକ୍ରମ ହେଲେ ସେ ବିରକ୍ତ ହୋଇ କହୁଥିଲେ ‘ଆରେ ଯାଃ ! ଏ ସବୁ ତୁଚ୍ଛା ଭାବାବେଗ ସ୍ନାୟବିକ ବ୍ୟାପାର । ମୁଁ ନିଜେ ବି ଏମିତି ଭୋଗେ । କିନ୍ତୁ ଏଥିରୁ ଉଦ୍ଧାର ନପାଇଲେ ରକ୍ଷା ନାହିଁ । ଅସଲ ଜିନିଷ ମିଳିବନାହିଁ । ପ୍ରଥମେ ନିଜକୁ ରାସ୍‌ନାଲ୍ (ବିଚାରବନ୍ତ, ବିବେକୀ) ହେବାକୁ ପଡିବ । ତା’ପରେ ଯେତେ କାନ୍ଦୁଚ କାନ୍ଦ । ଏ ସବୁ ବ୍ୟାପାରରେ ସ୍ୱାମୀ ବିବେକାନନ୍ଦ ତାଙ୍କର ଆଦର୍ଶ ଥିଲେ ।

ସେ ନିଜେ ଥିଲେ ଜଣେ ଖୁବ୍ ପଣ୍ଡିତ ବ୍ୟକ୍ତି । ତାଙ୍କ ଜ୍ଞାନର ପରିସର ଯେପରି ବ୍ୟାପକ ଥିଲା, ସେହିପରି ଥିଲା ଗଭୀର । ସବୁ ପ୍ରକାର ଜ୍ଞାନର ସେ ଅଧିକାରୀ ଥିଲେ । କ୍ରିକେଟ୍ ଖେଳର ତଥ୍ୟ ଠାରୁ ଦ୍ୱନ୍ଦ୍ୱାତ୍ମକ ଜଡବାଦ ପର୍ଯ୍ୟନ୍ତ- କ୍ଲାସିକାଲ ମ୍ୟୁଜିକ୍‌ଠାରୁ ଟୟନଦୀଙ୍କ ଇତିହାସ ପର୍ଯ୍ୟନ୍ତ- ସର୍‌ହେନ୍‌ଟିସ୍‌ଙ୍କ ‘ଡନ କୁଇକ୍‌ସେଟ୍’ ଠାରୁ ଆରମ୍ଭ କରି ଶ୍ରୀ ଅରବିନ୍ଦଙ୍କ ‘ଲାଇଫ୍ ଡିଭାଇନ’ ପର୍ଯ୍ୟନ୍ତ ସବୁଥିରେ ସେ ସମାନ ଆଗ୍ରହ ସହ ପ୍ରବେଶ କରିଥିଲେ । ତାଙ୍କ ସହିତ ଯେଉଁମାନେ କଥାବାର୍ତ୍ତା କରିଛନ୍ତି, ସେମାନେ ତାଙ୍କର ଜ୍ଞାନ ଓ ଅଭିଜ୍ଞତା, ଅନୁଭୂତିର ପରିସର ଓ ଗଭୀରତା କଳନା କରିଛନ୍ତି । ୧୯୬୫ ମସିହା ଠାରୁ ୧୯୭୦ ପର୍ଯ୍ୟନ୍ତ ଭୁବନେଶ୍ୱରରେ ଆଧୁନିକ ଓଡିଶାର ବୟୋଜ୍ୟେ ବରେଣ୍ୟ ସାହିତ୍ୟିକ ଶ୍ରୀଯୁକ୍ତ ଗୋପୀନାଥ ମହାନ୍ତିଙ୍କୁ କେନ୍ଦ୍ରକରି ଗୋଟିଏ ସମୁଜ୍ଜ୍ୱଳ ସାହିତ୍ୟିକ ବଳୟ ସୃଷ୍ଟି ହୋଇଥିଲା । ସେହି ବଳୟ ଭିତରେ ଥିଲେ ଶାନ୍ତନୁ ଆଚାର୍ଯ୍ୟ, କୃଷ୍ଣ ପ୍ରସାଦ ମିଶ୍ର, ସ୍ୱର୍ଗତ ଅଖିଳ ମୋହନ ପଟ୍ଟନାୟକ, ବେଣୁଧର ରାଉତ, ହରିହର ଦାଶ, ରାଜକିଶୋର ମହାନ୍ତି ପ୍ରମୁଖ କବି ଲେଖକ ବୃନ୍ଦ । ବାହାରେ ଥିଲେ ବି ଚନ୍ଦ୍ରଶେଖର ରଥ ମଧ୍ୟେ ମଧ୍ୟେ ସେହି ବଳୟ ଭିତରକୁ ଆସୁଥାନ୍ତି । ଏହି ବଳୟ ଭିତରେ ବାମାଚରଣ ଥିଲେ ଆମର



Digitized by srujanika@gmail.com

ଅଗ୍ରଗଣ୍ୟ । କି ଦିନ, କି ରାତି, କି ସକାଳ, କି ସଂଧ୍ୟା, ସାହିତ୍ୟ ଓ ଜୀବନକୁ ନେଇ ଆଲୋଚନା ଆରମ୍ଭ ହୋଇଗଲେ ସୂର୍ଯ୍ୟାସ୍ତ ବା ସୂର୍ଯ୍ୟୋଦୟ ଉପରେ କାହାର ଆଉ ନିଘା ରହୁନଥିଲା ।

ଯୌବନରେ ବାମାଚରଣ ଥିଲେ ଜଣେ ନାମଜାଦା ଖେଳୁଆଡ । ଜଣେ ପ୍ରଥମ ଶ୍ରେଣୀର ସନ୍ତରଣକାରୀ ହିସାବରେ ତାଙ୍କର ବେଶ୍ ସୁନାମ ଥିଲା । ବନ୍ୟାକୂଳିତ କାଠଯୋଡିକୁ ସନ୍ତରଣ କରି ସେ ଏ କୂଳ ସେ କୂଳ ହେଉଥିଲେ । ଏହି ସବୁ ଦୁଃସାହସିକ ଖେଳୁଆଡ୍ ଗୁଣ ଯୋଗୁଁ ସେ ଓଡ଼ିଶାର ବିଖ୍ୟାତ ନେତା ବିଜୁ ପଟ୍ଟନାୟକଙ୍କର ବାଲ୍ୟବନ୍ଧୁ ହେବାର ସୁଯୋଗ ପାଇଥିଲେ । କିନ୍ତୁ ପ୍ରାୟ ପଚାଶବର୍ଷ ବୟସ କ୍ରମରେ ପାଦଦେଲା ବେଳକୁ ତାଙ୍କ ସ୍ୱାସ୍ଥ୍ୟ ହଠାତ୍ ଭାଙ୍ଗି ପଡିଲା । ସେହି ଭଗ୍ନ ସ୍ୱାସ୍ଥ୍ୟରେ, ଏପରିକି ଶଯ୍ୟାଲଗ୍ନ ଅବସ୍ଥାରେ ବିଶେଷ ସାତ ଆଠ ବର୍ଷ ସେ ବହୁତ ପଢ଼ିଥିଲେ ଓ ବହୁ ମୂଲ୍ୟବାନ ଲେଖା ଲେଖି କରି ଚାଲିଥିଲେ ।

ବ୍ୟକ୍ତିଗତ ଜୀବନରେ ସେ ଥିଲେ ଖୁବ୍ ଧର୍ମପ୍ରାଣ । ସେ ଥିଲେ ଜଣେ ଧର୍ମ ନିରପେକ୍ଷ ଧାର୍ମିକ । କିନ୍ତୁ ଧର୍ମାଚରଣର ଗଡ୍ଡାଳିକା ପ୍ରବାହ, କ୍ରିୟାକାଣ୍ଡ ସର୍ବପ୍ରତା ଓ କୁସଂସ୍କାର ଗ୍ରସ୍ତ ବିଶ୍ୱାସ ଉପରେ ଖୁବ୍ ବିରକ୍ତି ପ୍ରକାଶ କରୁଥିଲେ । ସେ କହୁଥିଲେ ସମାଜ ପ୍ରଥମେ ସବୁ ମଣିଷକୁ ଖାଇପିଇ ରହିବାର ସୁଯୋଗ ଦେଉ । ତାର ଜ୍ଞାନ, ବୁଦ୍ଧି, ବିବେକର ବିକାଶ ପାଇଁ ସୁଯୋଗ ଦେଉ । ମଣିଷକୁ ପ୍ରଥମେ ଅର୍ଥନୈତିକ, ନୈତିକ ଓ ମନସ୍ତାତ୍ତ୍ୱିକ ସ୍ୱାସ୍ଥ୍ୟ ଓ ସ୍ୱାଧୀନତା ପାଇଁ ରାଷ୍ଟ୍ର ସୁଯୋଗ ସୁବିଧା ଦେଉ । ତା'ପରେ ଯାଇ ଧର୍ମ ବା ଆଧ୍ୟାତ୍ମିକତାର ପ୍ରଶ୍ନ ଉଠିବ । ସେ ଚାହୁଁଥିଲେ- ପ୍ରଥମେ ଆଗ ଯେ କୌଣସି ଉପାୟରେ ଲୋକଙ୍କର ଦୁଃଖଦୁର୍ଦ୍ଦଶା ଦୂର ହେଉ । ଏଥିପାଇଁ କମ୍ୟୁନିଜିମ୍ ବା କାର୍ମସ ଲେନିନଙ୍କ ସାମ୍ୟବାଦ ଆସିବ ତ ଆସୁ । କିଛିଦିନ ପାଇଁ ଭଗବାନ୍, ଗଡ୍, ଆଲ୍ଲା ଓ ତେତିଶିକୋଟି ଦେବାଦେବୀଙ୍କୁ ଅନ୍ତର୍ହିତ କରାଯିବ ତ କରାଯାଉ । ଏ କଥା କହିଲା ବେଳେ ସେ ଉତ୍ତ୍ୟକ୍ତ ଉତ୍ତେଜିତ ହୋଇ ଉଠୁଥିଲେ । ତା'ହେଲେ ବି, ଶେଷ ପର୍ଯ୍ୟନ୍ତ ଭିତରେ ଭିତରେ ସେ ସମ୍ପୂର୍ଣ୍ଣ ଗାନ୍ଧିବାଦୀ ଥିଲେ । ଅହିଂସା ଓ ବ୍ୟକ୍ତିଗତ ସ୍ୱାଧୀନତା ଉପରେ ପ୍ରତିଷ୍ଠିତ ଗଣତାନ୍ତ୍ରିକ ସମାଜବାଦ ଉପରେ ଗଭୀର ଆସ୍ଥା ରଖିଥିଲେ ।

କେରା ବଙ୍ଗାଳୀ ଥିଲେ ବି ସେ ନିଜକୁ ଖାଣ୍ଟି ଓଡ଼ିଆ ବୋଲି ଭାବୁଥିଲେ । ଓଡ଼ିଶାର କଳା, ସାହିତ୍ୟ, ସଂସ୍କୃତି ଓ ଜୀବନ ଚର୍ଯ୍ୟା ସଙ୍ଗେ ନିଜକୁ ସମ୍ପୂର୍ଣ୍ଣ ମିଶାଇ



Digitized by srujanika@gmail.com

ଦେଇଥିଲେ । ସେ ବଙ୍ଗାଳୀମାନଙ୍କର ଉଚ୍ଚ ମନ୍ୟତା, ସଂକୀର୍ଣ୍ଣତା ଓ ମାତ୍ରାତିରିକ୍ତ ଆବେଗ ଧର୍ମିତାକୁ ଖୁବ୍ ସମାଲୋଚନା କରୁଥିଲେ । ସେ କହୁଥିଲେ ଯେ, ଜନ୍ମ ଜନ୍ମ ଧରି ସେ ଏହି ପୂଣ୍ୟଭୂମି ଭାରତବର୍ଷରେ ଜନ୍ମଗ୍ରହଣ କରି ଆସିଛନ୍ତି । ଏବଂ ଏହି ଉତ୍କଳ ଖଣ୍ଡାରେ ହିଁ ସେ ବାରମ୍ବାର ଜନ୍ମିଛନ୍ତି । ମୋ ତୁଣ୍ଡରୁ ବଙ୍ଗ ସାହିତ୍ୟର ପ୍ରଶଂସା ଶୁଣିଲେ ସେ ମତେ ଥଟ୍ଟା କରି ଭର୍ତ୍ସନା କରୁଥିଲେ- 'ବୁଝିଲ ନୀଳମଣି ! ତୁମେ ପୂର୍ବ ଜନ୍ମରେ ବଙ୍ଗାଳୀ ଥିଲ । ମୁଁ କିନ୍ତୁ ଜନ୍ମେ ଜନ୍ମେ ଏହି ଓଡ଼ିଶାରେ ହିଁ ଭୂମିଷ୍ଠ ହୋଇଛି ।' ସତକଥା ଅବଶ୍ୟ, ତାଙ୍କ ଭିତରେ ସାରଳା ଦାସ, ଅଭିମନ୍ୟୁ, ଭୀମଭୋଇ, ଜଗନ୍ନାଥ ଦାସ, ପଞ୍ଚସଖା, ବୈଷ୍ଣବ ପାଣି ପ୍ରଭୃତିଙ୍କ ଚେତନା ଭରି ରହିଥିଲା । ସର୍ବୋପରି ଶ୍ରୀ ଜଗନ୍ନାଥ ଥିଲେ ତାଙ୍କର ଇଷ୍ଟ ଦେବତା ।

ବାମାଚରଣ ଥିଲେ ଯଥାର୍ଥରେ ଜଣେ ଭାବୁକ, ବିଜ୍ଞ, ରସିକ, ଅଙ୍ଗୀବାତବନ୍ଧ, ଦାୟିତ୍ୱବାନ୍ ଓ ମୌଳିକ ବ୍ୟକ୍ତିତ୍ୱ ସମ୍ପନ୍ନ ସାହିତ୍ୟିକ । ତାଙ୍କର କଥାବାର୍ତ୍ତା, ଚାଲିଚଳନ ଓ ଜୀବନଚର୍ଯ୍ୟାରେ ଯେମିତି ଶୁଦ୍ଧତା ପ୍ରକାଶ ପାଉଥିଲା, ସେମିତି ମଧ୍ୟ ବିଦଗଧା ପ୍ରକଟିତ ହେଉଥିଲା । ସେ ନିଜେ ଯେପରି ଥିଲେ, ତାଙ୍କ ସାହିତ୍ୟ ମଧ୍ୟ ଥିଲା ଅବିକଳ ସେହିପରି । ତାଙ୍କର ସାହିତ୍ୟ ତାଙ୍କ ଜୀବନ ଠାରୁ ପୃଥକ ନଥିଲା । ସେ ଥିଲେ ମୁଖ୍ୟତଃ ଜଣେ କଥାଶିଳ୍ପୀ । କିନ୍ତୁ ଜଣେ ପ୍ରଜ୍ଞା-ଗର୍ଭିତ ଚିନ୍ତାଶୀଳ ପ୍ରବନ୍ଧକାରଭାବେ ମଧ୍ୟ ସେ ସୁପ୍ରତିଷ୍ଠିତ । ସେହି ପ୍ରବନ୍ଧ ଗୁଡ଼ିକରୁ ତାଙ୍କର ଅଗାଧ ଜ୍ଞାନର ଗରିମା ତ ଜଣାପଡେ- କିନ୍ତୁ ଆହୁରି ସ୍ପଷ୍ଟଭାବେ ଜଣାପଡେ- ସେ କେଡେ ସୂକ୍ଷ୍ମଭାବରେ ଆମର ସାମାଜିକ, ସାଂସ୍କୃତିକ ଓ ନୈତିକ ସମସ୍ୟା ଗୁଡ଼ିକୁ ବୁଝିଛନ୍ତି ଏବଂ କେତେ ଗଭୀରଭାବରେ ସେଗୁଡ଼ିକୁ ବିଶ୍ଳେଷଣ କରିଛନ୍ତି- ପୁଣି କେତେ ଆନ୍ତରିକତା ସହିତ ସେହି ସମସ୍ୟା ଗୁଡ଼ିକର ଦାୟିତ୍ୱ ନିଜ ମୁଣ୍ଡ ଉପରକୁ ନେଇ ତାଙ୍କ ନିଜ ବାଟରେ ସେଗୁଡ଼ିକର ସମାଧାନର ବାଟ ବତାଇଛନ୍ତି । ପ୍ରବନ୍ଧ ଓ ରମ୍ୟରଚନାରେ ସେ ଖୁବ୍ ସରଳ ଓ ନିଷ୍କପଟ ଭାଷା ଶୈଳୀ ବ୍ୟବହାର କରିଛନ୍ତି । କିନ୍ତୁ ସେହି ଭାଷାଶୈଳୀ ତାଙ୍କ ଅନ୍ତରର ସହଜ ବିଶ୍ୱାସ ଭିତରୁ ସ୍ୱତଃ ଉଦ୍‌ଭୁତ ହୋଇଛି । ଏହି ସରଳ ଭାଷା ଶୈଳୀର ଅନ୍ୟତମ ବିଶେଷ ଦୃଟି ହେଲା- ତାଙ୍କର ନିଷ୍କପଟ ରସିକତା ଓ ପ୍ରାଣୋଚ୍ଛଳ ହାସ ପରିହାସ ମୟତା- ଯାହା ସୂଚାଇ ଦିଏ ସେ, ଲେଖକର ବ୍ୟକ୍ତିଗତ କୃତି ବା ମନସ୍ତତ୍ତ୍ୱରେ କୋଉଠି କିଛି ବକ୍ରତା ବା ନ୍ୟୁବ୍‌ଜତା ନଥିଲା । ଏବଂ ଚେତନାରେ ଥିଲା ଏକ ସମତା-ବୋଧ ଏବଂ ସଜୀବତା ଓ ଶୁଦ୍ଧ ଉଜ୍ଜ୍ୱଳ ପ୍ରାଣମୟତା ।



Digitized by srujanika@gmail.com

ବ୍ୟକ୍ତିଗତ ଜୀବନରେ ସେ ସମସ୍ତଙ୍କୁ ହସହସ ମୁହଁରେ ସମ୍ଭାଷଣ ଜଣାଉଥିଲେ ତାଙ୍କର ବିନମ୍ରତା, ସମ୍ଭ୍ରମଭାବ, ଭଦ୍ରପଣିଆ ଓ ମର୍ଯ୍ୟାଦାବୋଧ ଥିଲା ଏ ଯୁଗରେ ସତକୁ ସତ ବିସ୍ମୟକର । ତାଙ୍କ ଭିତରେ କୌଣସି ପ୍ରକାର ଆତ୍ମ-କୈନ୍ଦ୍ରିକ କାମନା ବାସନାର ଅସ୍ଥିରତା ନଥିଲା- ପ୍ରତିଦ୍ୱନ୍ଦିତାମୟ ଉଚ୍ଚାକାଂକ୍ଷା ମଧ୍ୟ ନଥିଲା । ତାଙ୍କର ହୃଦୟ ଥିଲା ସହଜରେ ଫୁଟି ଉଠିଥିବା ଓ ନୀରବରେ ସୌରଭ ବିଛୁରୁଥିବା ସୁନ୍ଦର ସୁବାସିତ ଫୁଲଟିଏ ଭଳି । ସମଗ୍ର ସୃଷ୍ଟିପ୍ରତି ତାଙ୍କ ହୃଦୟ ଥିଲା ସ୍ନେହ ସୌହାର୍ଦ୍ଦ୍ୟ ଓ ଶୁଭେଚ୍ଛାରେ ପରିପୂର୍ଣ୍ଣ ।

ଏ ସବୁ ସତ୍ତ୍ୱେ ବି, ସେ ଥିଲେ ଖୁବ୍ ନିର୍ଭିକ । ଆପଣାର ବିଶ୍ୱାସରେ ଅଟଳ । କିନ୍ତୁ ବିବେକ ବିଚାର କ୍ଷେତ୍ରରେ ତାଙ୍କର ନମନୀୟତା ଲକ୍ଷ୍ୟ କରିବାର କଥା । ଜଣେ ନିଷ୍ଠାପର ଓ ସଚ୍ଚା ସାହିତ୍ୟିକ ଭାବେ ଆମେ ତାଙ୍କୁ ଖୁବ୍ ସମ୍ମାନ କରୁଥିଲୁ । ଖୁବ୍ ସମୀହ କରୁଥିଲୁ । କିନ୍ତୁ ସେ ନିଜର ସାହିତ୍ୟକୃତିକୁ ଯତ୍‌ସାମାନ୍ୟ ବୋଲି ମନେ କରୁଥିଲେ । ତାଙ୍କ ଲେଖାର ପ୍ରଶଂସା ଶୁଣିଲେ, ସେ ଅଡେଇ ଯାଇ ଅନ୍ୟପ୍ରସଙ୍ଗ ପକାଉଥିଲେ । ବହୁବାର ମୁଁ ତାଙ୍କ ତୁଣ୍ଡରୁ ଶୁଣିଛି- "ନୀଳମଣି ଯୋଉ ତୁଣ୍ଡରେ ବ୍ୟାସ, ବାଲ୍ମୀକି, ରବୀନ୍ଦ୍ର ନାଥ, ଜଗନ୍ନାଥଦାସଙ୍କ ଲେଖାର ପ୍ରଶଂସା କରୁଛ, ସେହି ତୁଣ୍ଡରେ ପୁଣି ବାମା ମିତ୍ର ଲେଖାର ପ୍ରଶଂସା କେମିତି ଗାଉଛ ? ତୁମକୁ ମାଡି ପଡୁନାହିଁ ?" ମୁଁ ତାଙ୍କୁ କହେ- ଦେଖ ବଡଭାଇ ! ତୁମ କଥା କାହିଁକି ପଡିଛି- କେହି ମଧ୍ୟ ବ୍ୟାସ ବାଲ୍ମୀକି ପ୍ରଭୃତିଙ୍କ ସମାନ ହୋଇ ପାରିବେ ନାହିଁ- ମୁଁ ଜାଣେ । କିନ୍ତୁ ମୋର ମନେ ହୁଏ ତୁମଭଳି ଲେଖକ କବିମାନେ ସେହିମାନଙ୍କ ବଂଶଧର । ସେହି ମାନଙ୍କ ରକ୍ତ ଓ ଚେତନା ତୁମମାନଙ୍କର ଭିତରେ ବହୁଛି" । ସେ ବିରକ୍ତ ହୋଇ କହନ୍ତି- "ଚୁପ୍ କର" ।

ମାତ୍ର ମୁଁ ଚୁପ୍ ହୁଏନା । ମୁଁ ତାଙ୍କର ଲେଖାକୁ ଖୁବ୍ ଭଲପାଏ । ତାଙ୍କ ଲେଖା ପଢ଼ିବାକୁ ମୋର ଖୁବ୍ ଆଗ୍ରହ । ତାଙ୍କ ଲେଖାର ଭାବ, ରସ, ଆଉ ଭାଷା ଶୈଳୀକୁ ମୁଁ ଭାରୀ ସରାଗରେ ଉପଭୋଗ କରେ । ମୋ ମତରେ ବାମାମିତ୍ର ଆମ କଥା ସାହିତ୍ୟରେ ଏକ ସ୍ୱତନ୍ତ୍ର ସ୍ଥାନ ଅଧିକାର କରିଛନ୍ତି । ସେ କାହାକୁ ଅନୁକରଣ କରିନାହାଁନ୍ତି । ଦେଶୀ କି ବିଦେଶୀ କୋଉ ଲେଖକର ଲେଖା ଦ୍ୱାରା ପ୍ରଭାବିତ ହୋଇନାହାଁନ୍ତି । ଆଜିକାଲିର କାମ୍ୟୁ, ସାର୍ତ୍ରେ, କାଫ୍‌କା ମାର୍କା ଲେଖା ସେ ଲେଖି ନାହାନ୍ତି । ଯଦିଓ ମୁଁ ଜଣେ- ସେ ଏମାନଙ୍କର ଲେଖା ଖୁବ୍ ମନଯୋଗ ଦେଇ ପଢ଼ିଛନ୍ତି । ବୁଝିଛନ୍ତି ମଧ- ଏବଂ ଖୁବ୍ ଗଭୀର ଭାବେ ଆମ ସହିତ ସେ ସବୁ



Digitized by srujanika@gmail.com

ନେଇ ଆଳାପ ଆଲୋଚନା କରିଛନ୍ତି । ଗିବେଇ, ଆଁଘାଣ୍ଟ, ଅଲିନିଏସନ୍, ଲେନ୍‌ଲିନେସ୍, ବିଙ୍ଗ୍, ନଥିଙ୍ଗନେସ୍, ନସିଆ, ଆଉଟ୍‌ସାଇଡରନେସ୍ ଇତ୍ୟାଦି ବିଷୟରେ ତାଙ୍କର ବିଚକ୍ଷଣ ବୁଝାମଣା ଥିଲା । ସେମିତି ମଧ୍ୟ ବିଚକ୍ଷଣ ବୁଝାମଣା ଥିଲା ତାଙ୍କର ଶ୍ରୀମଦ୍ ଭଗବତ ଉପରେ, ଗୀତା ଉପରେ ଓ ଡ୍ୟାସ୍ କ୍ୟାପିଟାଲ୍ ଉପରେ । ସେହିପରି ମଧ୍ୟ ବୁଝାମଣା ଥିଲା ତାଙ୍କର ବୌଦ୍ଧ, ସାଂଖ୍ୟ, ନ୍ୟାୟ, ମୀମାଂସାଦି ଦର୍ଶନ ଉପରେ- ଆଉ କାଣ୍ଟ, ହେଗେଲ୍ ଆଉ ସୋପେନ୍ ଆୱାରଙ୍କ ଉପରେ । କିନ୍ତୁ ତାଙ୍କର ଶିଳ୍ପୀ-ସତ୍ତାଟି ଥିଲା ଏକ ସ୍ୱତନ୍ତ୍ର, ସହଜ, ସ୍ୱାଭାବିକ, ସର୍ବଗ୍ରହଣକ୍ଷମ ଓ ସର୍ବପରି ପାକକ୍ଷମ ସୃଜନଶୀଳ ସତ୍ତା ।

ତାଙ୍କ ଗଳ୍ପ ଗୁଡ଼ିକର ବିଷୟବସ୍ତୁ ଖୁବ୍ ସାଧାରଣ । ବେଳେବେଳେ ଖୁବ୍ ପରିଚିତ- ଆମ ଗୃହସ୍ଥଳିରେ ନିତିପ୍ରତି ଘଟୁଥିବା ନଗଣ୍ୟ ଘଟଣାଟିଏ । ବେଳେବେଳେ ତାଙ୍କ ଗଳ୍ପର ନାୟକ ନାୟିକା ହୁଏତ ସେ ନିଜେ ବା ତାଙ୍କର ପତ୍ନୀ । ଅଥବା ଗଳ୍ପର ଚରିତ୍ର ଗୁଡ଼ିକ ତାଙ୍କ ନିଜର ପୁଅ ଝିଅ ବା ବିଲେଇଟିଏ କି କୁକୁରଟିଏ କି କୁକୁଡ଼ାଟିଏ କି ଗୁଣ୍ଡୁଚୀମୂଷାଟିଏ ଅଥବା ମୂଷାଟିଏ ବା ଏଣ୍ଡୁଅଟିଏ । କିନ୍ତୁ ସେହି ନଗନ୍ୟ ସାଧାରଣ ଭିତରୁ ସେ ଆବିଷ୍କାର କରନ୍ତି ଅସାଧାରଣ ନୈତିକ ଉପଲବ୍ଧିଟିଏ ବା ହାର୍ଦ୍ଦିକ ଅନୁଭୂତିଟିଏ ଅଥବା ନିଗୂଢ଼ ଅର୍ଥଟିଏ ବା ବୌଦ୍ଧିକ ବ୍ୟଞ୍ଜନାଟିଏ । ସେ ଗଳ୍ପଟିଏ ବନେଇ ଚୁନେଇ ଲେଖନ୍ତି ନାହିଁ । କୋଉ ଅନ୍ତରଙ୍ଗ ବନ୍ଧୁ ଆଗରେ ବାସ୍ତବ ଅଭିଜ୍ଞତାଟିଏ କହିଲା ଭଳି କହନ୍ତି । ଲେଖନ୍ତି ନାହିଁ କି ବୟାନ କରନ୍ତି ନାହିଁ । ବରଂ ବଖାଣନ୍ତି । ଲେଖୁ ଲେଖୁ ଏଣେ ତେଣେ ବି ସ୍ୱଚ୍ଛନ୍ଦରେ ମାଡ଼ିଯାନ୍ତି । କେବେ କେବେ ଯୁକ୍ତିତର୍କ ବିଚାର ବିମର୍ଶ ବିଶ୍ଳେଷଣ ଭିତରକୁ ବି ପଶିଯାନ୍ତି । ଫଳରେ ତାଙ୍କ ଗଳ୍ପଟି ବେଳେବେଳେ ରମ୍ୟରଚନା ପାଲଟିଯାଏ ଓ ରମ୍ୟରଚନାଟିଏ ବି ସେମିତି ଗଳ୍ପ ପାଲଟି ଯାଏ । କିନ୍ତୁ ସେ ଯାହା ଲେଖନ୍ତୁ ସବୁ କିଛି ସାହିତ୍ୟଭଳିଆ ଉପଭୋଗ୍ୟ ହୁଏ । ସେଥିରୁ ଭାବ, ଭାଷା, ରସ, ଧ୍ୱନି, ବ୍ୟଞ୍ଜନା ସବୁକିଛି ଛାଆଁକୁ ଛାଆଁ ବାହାରି ଆସେ । ତାଙ୍କର "ବଟ ମହାପୁରୁଷ" ଗଳ୍ପଟି ହେଉ ବା "କୁକୁଡ଼ା ଚାଷ" ଗଳ୍ପଟି ହେଉ- "ଧରିତ୍ରୀ ଓ ଧରିତ୍ରୀ" ଗଳ୍ପଟି ହେଉ- ଅଥବା "ସ୍ୱପ୍ନସିଦ୍ଧ" ଗଳ୍ପଟି ହେଉ କି "ମିମିର ସାହିତ୍ୟ ଶିକ୍ଷା" ଗଳ୍ପଟି ହେଉ- ଯୋଉ ଗଳ୍ପଟି ଆପଣ ମନେ ପକାନ୍ତୁ- (ସେ ତ ବହୁ ଗଳ୍ପ ଲେଖିଛନ୍ତି) । ସବୁ ଗଳ୍ପରେ ଆପଣ ବାମାମିତ୍ରଙ୍କ ଅନ୍ତରଙ୍ଗ ଗଭୀର ସ୍ୱରଟି ଶୁଣିବେ । ତାଙ୍କ ପ୍ରାଣ, ମନର ସ୍ପର୍ଶ ବି ପାଇବେ । ତାଙ୍କର ପବିତ୍ର ପ୍ରୀତିସ୍ନିଗ୍ଧ ଶୁଭେଚ୍ଛା ପ୍ରଣୋଦିତ ଅନ୍ତରର



Digitized by srujanika@gmail.com

ଧୂପ ଦୀପର ସୌରଭ ଆଘ୍ରାଣ କରିବେ । ତାଙ୍କ ଗଳ୍ପ ଗୁଡିକ ପଢ଼ିଲାବେଳେ, ମୋର ଏବେ ବି ମନେ ହୁଏ ସତେକି ସେ ମୋ ପାଖରେ ଘସି ହୋଇ ବସିଛନ୍ତି । ଏବଂ ତାଙ୍କ ଲେଖା ଭିତରେ ମୋତେ ପ୍ରାପ୍ତ ହେଉଛନ୍ତି । ସବୁ ଗଳ୍ପରେ ସେ ମାନବିକତାର ଜୟଗାନ କରିଛନ୍ତି । ମଣିଷର ଛୋଟିଆ ପଣକୁ ଭୂମାର ଉତ୍ସଙ୍ଗ ଭିତରେ ମୁକ୍ତି ଦେଇଛନ୍ତି । କ୍ଷମାଶୀଳ ଉଦାରମନ ନେଇ ସେ ମଣିଷକୁ ଦେଖିଛନ୍ତି । ତାଙ୍କ ମଣିଷମାନେ ଜାତି, ଧର୍ମ, ବର୍ଣ୍ଣ ଓ ଯେ କୌଣସି ଶ୍ରେଣୀ ବା ବର୍ଗର ଊର୍ଦ୍ଧ୍ୱରେ । ସେମାନେ ଏଇ ବାସ୍ତବ ଜଗତରେ ରକ୍ତମାଂସର ମଣିଷ କିନ୍ତୁ ସେମାନେ ସମସ୍ତେ ଭାବରସରେ ଜୁବୁଜୁବୁ ।

ବାମାଚରଣ ନର ନାରୀର ପ୍ରଣୟବ୍ୟାପରକୁ ନେଇ ବେଶୀ କିଛି ଲେଖି ନାହାନ୍ତି । ତାଙ୍କ ଲେଖା ଭିତରେ ବାହ୍ୟ ପ୍ରକୃତିର ସୌନ୍ଦର୍ଯ୍ୟ ବର୍ଣ୍ଣନା କୋଉଠି ନାହିଁ । ସେ ରୋମାଣ୍ଟିସିଜିମ୍‌ରେ ବିଶ୍ୱାସ କରନ୍ତି ନାହିଁ । ବରଂ ସେ ଜଣେ ଆଣ୍ଟିରୋମାଣ୍ଟିକ୍ ଲେଖକ । ସେ କହନ୍ତି- ସେ ତାଙ୍କ ପତ୍ନୀ ଶ୍ରୀମତୀ ପ୍ରତିଭା ମିତ୍ରଙ୍କ ବ୍ୟତୀତ ଜୀବନରେ ଅନ୍ୟ ନାରୀ ସଙ୍ଗେ କେବେ ସୁରତ୍ ବା ଭାବଦୋସ୍ତି କରିନାହାନ୍ତି । ତା'ଛଡା ସ୍ତ୍ରୀ ଲୋକଙ୍କୁ ସେ ଖୁବ୍ ଭୟ କରୁଥିଲେ ଏବଂ ସେମାନଙ୍କ ସଂସର୍ଗକୁ କିଛି କିଛି ସନ୍ଦେହ କରୁଥିଲେ । ସେ ଥିଲେ ବ୍ୟକ୍ତିଗତ ଜୀବନରେ ଖୁବ୍ ନୀତିବାଦୀ । ନୀତି, ନ୍ୟାୟ ଓ ସତ୍ୟ ବୋଲି ସେ ଯାହା ବୁଝିଥିଲେ, ସେଥିରେ ସେ ଫାନାଟିକ୍‌ଭାବେ ଲାଗି ରହୁଥିଲେ । ବ୍ୟକ୍ତିଗତ ଜୀବନଚର୍ଯ୍ୟାରେ ସେ ନୀତିକୁ ଖୁବ୍ ସ୍ଥାନ ଦେଇଥିଲେ । ମାତ୍ର ମୋର ଜୋର୍ ଥିଲା ବେଶୀ "ରୁଚି" ଉପରେ । ସେ କହୁଥିଲେ- "ସୁନୀତି" । ମୁଁ କହୁଥିଲି- "ସୁରୁଚି" । ସେ ମୋ କଥା ମାନୁ ନଥିଲେ । କିନ୍ତୁ ତାଙ୍କର ମୋ ବ୍ୟକ୍ତିତ୍ୱ ଉପରେ ଖୁବ୍ ଆସ୍ଥା ଥିଲା । ମାତ୍ର ମୋର ଚରିତ୍ର ଉପରେ ବିଶ୍ୱାସ ନଥିଲା । ସେ ମୋତେ କୁଟୀଳ ବୁଦ୍ଧି ଓ ମାୟାବୀ ବୋଲି ସ୍ନେହବୋଳା କଣ୍ଠରେ ଥଟ୍ଟା କରୁଥିଲେ । ସେ ମୋର ଅନ୍ୟ ବନ୍ଧୁମାନଙ୍କ ଆଗରେ ଓ ବହୁବେଳେ ମୋ ମୁହେଁ ମୁହେଁ କହୁଥିଲେ ଯେ, ଅସଲରେ ମୁଁ ଜଣେ ରାଜନୀତି ବାଲା ଓ ସାହିତ୍ୟ ଭିତରକୁ ଜବରଦସ୍ତି ପଶି ଆସିଛି । ମୋର ବହୁକାର୍ଯ୍ୟକୁ ସେ ସମର୍ଥନ କରନ୍ତି ନାହିଁ । କିନ୍ତୁ ତା'ସତ୍ତ୍ୱେ ବି, ସେ ମୋତେ ଦେଖିଲାକ୍ଷଣି ତରଳିଯାନ୍ତି । ତାଙ୍କ ଆଖି ଉଜ୍ଜ୍ୱଳ ଦିଶେ ଓ ମୁହଁ ଖୁବ୍ ଜୀବନ୍ତ ଦେଖାଯାଏ । କହନ୍ତି- ତୁମକୁ ଦେଖିଲେ ମୋ ଦେହରେ ପ୍ରାଣ ପଶିଯାଏ । ମୋର ହତାଶା ଓ ବିଷାଦ କଟିଯାଏ । ପ୍ରତ୍ୟୟ ଆସିଯାଏ ।



Digitized by srujanika@gmail.com

ତାଙ୍କ ଉପରେ ଦିନେ ଦିନେ କପଟ ଅଭିମାନ କରି ମୁଁ କହେ- ଗୋଟେ କୁଟୀଳବୁଦ୍ଧି ମାୟାବୀ ଚରିତ୍ରହୀନ ଲୋକ ସଙ୍ଗେ ତୁମ ଭଳି ଶୁଦ୍ଧବୁଦ୍ଧ ଧାର୍ମିକ ଲୋକର ସମ୍ପର୍କ ଗୋଟେ କଣ ? ଏତେକ ଶୁଣି ସେ ମୋତେ ଧରି ପକାଇ ସେଇ ବଶ୍ୟକାରୀ ଦୃଷ୍ଟିରେ ଚାହିଁ ଓ ମତାଣିଆ ହସ ହସି କହନ୍ତି- "ସେଇତ ! ସେଇତ ! ମାୟାବୀ ମାନଙ୍କର ମାୟା ! ତୁମ ମାୟା କାଟିବା ସହଜ ନୁହେଁ । ତବ ମାୟା ଦୂରତ୍ୟୟା ।

ବାମାଚରଣ ନିଜେ ବାରମ୍ବାର ନିଜ ଉପରେ ଆକ୍ଷେପକରି କହନ୍ତି- 'ମୋର ଭାଷାଜ୍ଞାନ ନାହିଁ- ମୋର ରଚନାଶୈଳୀ କଳାତ୍ମକ ନୁହେଁ- ରସାପ୍ଳୁତ ନୁହେଁ ଯେମିତି ସୁରର (ସୁରେନ୍ଦ୍ର ମହାନ୍ତି) ଯେମିତି ପ୍ରାଣର (ପ୍ରାଣବନ୍ଧୁ କର) ଯେମିତି କିଶୋରୀର (କିଶୋରୀ ଚରଣ) । ଏହାଶୁଣି ମୁଁ ପ୍ରତିବାଦ କରି କହେ "ନିଜକୁ କ୍ଷୁଦ୍ର କରିବାରେ ଗୋଟେ ବିକୃତ ଆମୋଦ ଅଛି । ତୁମେ ସେଇ ବିକୃତ ଆନନ୍ଦ ଉପଭୋଗ କର । ତୁମର ଭାଷା ଓ ଚେତନାଶୈଳି ତୁମର ସ୍ୱତନ୍ତ୍ର ତାହା ଅପୂର୍ବ । ସୁରେନ୍ଦ୍ର, ପ୍ରାଣବନ୍ଧୁ, କିଶୋରୀ ଚରଣ ଏମାନେ ସମସ୍ତେ ଓଡ଼ିଆଗଦ୍ଯ ସାହିତ୍ୟରେ ଅନନ୍ୟ ସିଦ୍ଧିର ଅଧିକାରୀ । ସେମାନଙ୍କର ଭାଷାଶୈଳୀ ସ୍ୱତନ୍ତ୍ର ଓ ବିଶେଷ ବିଶେଷ ଗୁଣରେ ବିଶିଷ୍ଟ ନିଶ୍ଚୟ । କିନ୍ତୁ ତୁମ ଭାଷ-ଶୈଳୀରେ ଯେଉଁ ସାରଲ୍ୟ, ଯୋଉ ସାବଲୀଳତା, ଯୋଉ ଅକପଟତା, ଯୋଉ ଘରୋଇ ପଣ, ଯୋଉ ଅନ୍ତରଙ୍ଗତା, ଯୋଉ ସଂଚାରୀଭାବ, ଯୋଉ ପ୍ରସାଦ ଗୁଣ, ଯୋଉ ସ୍ୱଭାବୋକ୍ତି, ଯୋଉ କାନ୍ତାସମ୍ମିତ ବିଚାର ବିମର୍ଶର ମାଧୁର୍ଯ୍ୟ, ଯୋଉ ସଜୀବ ହାସ ପରିହାସ ପରାୟଣତା ତାହା ତୁମ ସମକାଳୀନ କୋଉ ଲେଖକର ତୁମପରି ଏତେ ପରିପୂର୍ଣ୍ଣ ଭାବେ ରହିଛି କୁହତ ଦେଖି ? ବୃଥାଟାରେ ନିଜକୁ ନିନ୍ଦାକରି ଆତ୍ମଗ୍ଳାନୀ ବା ଆତ୍ମ କରୁଣାର ବିକୃତ ଆମୋଦ ପାଅ କାହିଁ କି ?

ମୋ କଡାକଥା ଶୁଣି ସେ ଚୁପ୍ ହୋଇଯାନ୍ତି । ମାତ୍ର ତାଙ୍କ ସମ୍ବନ୍ଧେ ମୋ ମନ୍ତବ୍ୟକୁ ସେ ଶେଷ ପର୍ଯ୍ୟନ୍ତ ବିଶ୍ୱାସ କରୁନଥିଲେ । ତା' ମୁଁ ଜାଣେ । କିନ୍ତୁ ମୋ ଉପରେ ତାଙ୍କର ସ୍ନେହ, ଆସ୍ଥା ଓ ବିଶ୍ୱାସ ଶେଷ ପର୍ଯ୍ୟନ୍ତ ଅକ୍ଷୁର୍ଣ୍ଣ ରହିଥିଲା । ଆଉ ମୁଁ ତ ତାଙ୍କୁ ୧୯୭୫ ମସିହା ପର୍ଯ୍ୟନ୍ତ ମୋ ଜୀବନର ଶ୍ରେଷ୍ଠ ବିବେକ ରକ୍ଷକ ବନ୍ଧୁ ବା ବଡ଼ଭାଇ ବୋଲି ମାନି ଆସିଥିଲି ।

ବାମାଚରଣ ମିତ୍ର ପ୍ରଶାସନିକ ବିଭାଗର ଉଚ୍ଚ ପଦବୀରେ କାମକରି ଆସିଥିଲେ । ଏସ୍.ଡି.ଓ ହୋଇଥିଲେ । କିନ୍ତୁ ଶେଷ ଜୀବନ ପର୍ଯ୍ୟନ୍ତ ସେ ନିର୍ବନ୍ଧ ଜୀବନ



Digitized by srujanika@gmail.com

ବିତାଉଥିଲେ । ଆପଣା ପାଇଁ ଘର ଖଣ୍ଡିଏ କରିପାରି ନଥିଲେ । ତାଙ୍କର ଲକ୍ଷ୍ମୀ ପ୍ରତିମା ପତ୍ନୀ ସମ୍ମାନନୀୟା ଶ୍ରୀମତୀ ପ୍ରତିଭାମୟୀ ମିତ୍ର ହିଁ ତାଙ୍କର ବୃହତ୍ ସଂସାରକୁ ଓ ନା'ବାଳକ ପରିବାରକୁ ଆଜି ପର୍ଯ୍ୟନ୍ତ ବହୁ କଷ୍ଟରେ ଚଳାଇ ଆଣିଛନ୍ତି । ସେଭଳି ଉଚ୍ଚକୋଟିର ମହିଳା ଆମେ ଦେଖିବାରେ ଖୁବ୍ ବିରଳ । ଧରିତ୍ରୀ ଭଳି ସେ ତାଙ୍କର ଆଡପ ଗଳା ସାହିତ୍ୟିକ ସ୍ୱାମୀ ଓ ତାଙ୍କର ସଂସାରଟିକୁ ଲାଳନପାଳନ କରି ଆସିଛନ୍ତି । ନୀରବ, ଭଦ୍ର ଆଉ ଅଭିଜାତ ମନ ଓ ମାତୃସୁଲଭ ହୃଦୟବତ୍ତା ଲାଗି ତାଙ୍କ ପାଖେ ଆମର ମଥା ସ୍ୱତଃ ନତ ହୋଇଯାଏ ।

ଓଡିଆ ସାହିତ୍ୟରେ ବାମାଚରଣ ମିତ୍ର ନାମ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ରହିବ । ତାଙ୍କର ଗଳ୍ପ ଉପନ୍ୟାସ ଓ ରମ୍ୟରଚନା ଗୁଡିକ ଓଡ଼ିଆ ସାହିତ୍ୟ ଭଣ୍ଡାରରେ ଅମୂଲ୍ୟ ରତ୍ନରୂପେ ଚିରଦିନ ପାଇଁ ଶୋଭାପାଇବ । କିନ୍ତୁ ପରିତାପର କଥା ଯେ ତାଙ୍କ ମୃତ୍ୟୁର ଗୋଟିଏ ଦଶନ୍ଧି ବିତି ଯାଇଥିଲେ ବି, ଆଜି ପର୍ଯ୍ୟନ୍ତ ତାଙ୍କ ଲେଖା ଗୁଡ଼ିକ ଉପରେ ଯେତିକି ଯେପରି ଆଲୋଚନା ହେବା ଉଚିତ, ତାହା ହୋଇନାହିଁ । ଡକ୍ଟର ନିତ୍ୟାନନ୍ଦ ଶତପଥୀ ବାମାଚରଣଙ୍କ ଉଦ୍ଦେଶ୍ୟରେ ତାଙ୍କ "ଇସ୍ତାହାର" ପତ୍ରିକାଟିର ଏକ ସ୍ୱତନ୍ତ୍ର ସଂଖ୍ୟା ପ୍ରକାଶ କରୁଥିବାରୁ ସେ ନିଶ୍ଚୟ ଆମ୍ଭମାନଙ୍କର ଧନ୍ୟବାଦାର୍ହଃ ।

ପତ୍ରିକା- 'ଇସ୍ତାହାର' ସଂଖ୍ୟା ୩୭
ମାର୍ଚ୍ଚ ୧୯୮୭





Digitized by srujanika@gmail.com

# ଶେଷ ମୁହୂର୍ତ୍ତର ଅବ୍ୟବହିତ ପୂର୍ବରୁ

## ଶ୍ରୀ ଅମରେଶ୍ୱର ମିଶ୍ର

ମୁଁ କାନ୍ଦୁଥିଲି । ସ୍ୱତଃ ଆଖିରୁ ମୋର ଗଡି ପଡୁଥିଲା ଧାରାଶ୍ରାବଣ । ଚେଷ୍ଟା କରି ମଧ୍ୟ ମୁଁ କୋହ ସମ୍ଭାଳି ପାରୁନଥିଲି । ହୁଏତ ମୁଁ ଏତେ ଜୋରରେ କାନ୍ଦି ନଥାନ୍ତି । କିନ୍ତୁ...କିନ୍ତୁ ମୋ ଚାରି ପାଖରେ ସମସ୍ତେ କାନ୍ଦୁଥିଲେ । ବୋଉ ବେଶି ଜୋରରେ କାନ୍ଦୁଥିଲା । ଜେଜେ ମା' ତ ମୁଣ୍ଡ ବାଡେଇ ଭୂଇଁରେ ଲୋଟି ଯାଉଥିଲା । ମୁଁ ତାକୁ ଚାହିଁ ପାରୁନଥିଲି । କାଚଗୁଡା ସେ ତଳେ ବାଡେଇ ବାଡେଇ ଭାଙ୍ଗି ଦେଉଥିଲା ଆଉ ଜୋରରେ ବାହୁନି ଉଠୁଥିଲା । ବୋଉ ତାକୁ ବୁଝେଇବାର ବିଫଳ ଚେଷ୍ଟାକରି ବେଶି ବେଶି କାନ୍ଦୁଥିଲା । ନନା ସମ୍ପୂର୍ଣ୍ଣ ନୀରବ ଥିଲେ । ସତେ ଯେମିତି ସେ ପଥର ହୋଇ ଯାଇଛନ୍ତି । ହେଲେ ଧୀର ଗମ୍ଭୀର ଆଖିରୁ ତାଙ୍କର ଲୁହ ସବୁ ଅଜାଡି ହୋଇ ପଡୁଥିଲା । ଜେଜେ ବାବା ଆଉ ନାହାନ୍ତି । ସବୁ ସରିଯାଇଛି । ଆମ ସମସ୍ତଙ୍କୁ ଛାଡି ସେ ଆରପୁରକୁ ଚାଲି ଯାଇଛନ୍ତି । ଶେଷରେ ମୁଁ କଇଁ କଇଁ ହୋଇ କାନ୍ଦି ଉଠିଲି... ନିଦ ମୋର ହଠାତ୍ ଭାଙ୍ଗିଗଲା ।



Digitized by srujanika@gmail.com

ଏ ଥିଲା ମୋର ଏକ ଦୁଃସ୍ୱପ୍ନ । ସମୟ ଦେଖିଲି । ଭୋର ସାଢ଼େ ଚାରିଟା । ମନଟା ବହୁତ ଖରାପ ଲାଗିଲା । କଥାରେ ଅଛି "ପାହାନ୍ତି ସ୍ୱପ୍ନ ସତ ହୁଏ" । ମୁଁ ତ କଡ ମାଡି ଶୋଇଥିଲି । ଛାତିରେ ବି ହାତ ରଖି ନଥିଲି । ରାତିରେ ଭଲ ନିଦ ହୋଇଥିଲା । ମୋତେ 'ଏକ' ବା 'ଦୁଇ' କିଛି ଲାଗୁ ନଥିଲା । ମୁଁ ସମ୍ପୂର୍ଣ୍ଣ ସୁସ୍ଥ ଥିଲି । ତେବେ...ସ୍ୱପ୍ନ କଣ ସତ ହେବ ? ମୁଁ କିଛି ଆଉ ଭାବି ପାରିଲିନି । ଯା ମଧ୍ୟରେ ନନାଙ୍କଠୁ କିଛି ଚିଠି ପାଇନଥିଲି । କିଛିଦିନ ତଳେ ବୋଉ ଲେଖିଥିଲା ଜେଜେ ବାପାଙ୍କୁ ସାମାନ୍ୟ ଜ୍ୱର ହୋଇଥିଲା ବୋଲି । ମନ ମୋର ପାପ ଛୁଇଁଲା । ମନକୁ ବୁଝେଇବାକୁ ଚେଷ୍ଟା କଲି । ଆଦି ଶଙ୍କରଙ୍କର 'ମୋହ ମୁଦ୍‌ଗର' ମନେ ପଡିଲା । "କାତବ କାନ୍ତାଃ...ସଂସାରରେ କିଏ କାହାର ? ସବୁ ଅଳିକ । ମିଛ ମାୟା ଏ ସଂସାର । କଣ ଏ ଜୀବନ ? ଆଜି ଅଛି ହୁଏତ କାଲିକୁ ନଥିବ । ଭଗବାନଙ୍କର ସୃଷ୍ଟି ବଡ ବିଚିତ୍ର ମଣିଷ ପୁଣି ତାଙ୍କର ଶ୍ରେଷ୍ଠତମ କୃତୀ । ହସ ଲାଗେ । କାହିଁକି ତାହାଲେ ଏତେ ଅଳ୍ପ ସମୟରେ ମଣିଷ ମରିଯାଏ ? ଭଗବାନ କଣ ତାଙ୍କ ଶ୍ରେଷ୍ଠ ଜୀବକୁ ବେଶିଦିନ ବଞ୍ଚେଇ ରଖିବାକୁ ଚାହାନ୍ତିନି ? ମଣିଷ ମଲାପରେ ଯାଏ କୁଆଡେ ? ପୁଣି ମୋର ମୁଣ୍ଡ ଖରାପ ହୋଇଗଲା । ... ଆରେ ମୁଁ ଏତେ ଭାବୁଚି କଣ ? ଜନ୍ମ ହେଲେ ତ ମୃତ୍ୟୁ ନିଶ୍ଚିତ । ତା ପରେ ମଣିଷ କଣ ସତରେ ମରେ ? ଦେହଟା ହୁଏତ ମରିଯାଏ । ମାଟି ଦେହ ମାଟିରେ ମିଶିଯାଏ । ହେଲେ ଆତ୍ମା ? ଆତ୍ମା ତ ଅମର । ତାର ମୃତ୍ୟୁ ନାହିଁ । ତାର କେବଳ ଦେହାନ୍ତର ଘଟେ । ଗୀତାରେ ଭଗବାନ କୃଷ୍ଣ ସେଥିପାଇଁ ପରା କହିଛନ୍ତି-

"ବାସାଂସୀ ଜୀର୍ଣ୍ଣାନି ଯଥା ବିହାୟ
ନବାନି ଗୃହ୍ଣାତି ନରୋଽପରାଣି ।
ତଥା ଶରୀରାଣି ବିହାୟ ଜୀର୍ଣ୍ଣା-
ନ୍ୟନ୍ୟାନି ସଂଯାତି ନବାନି ଦେହୀ ।"

କାହିଁକି ବା ମଣିଷ ବଞ୍ଚିବ । ଦୁଃଖଦ ଅଶ୍ଳୀଳ ଜୀବନରେ ସୁଖ କାହିଁ ? ପ୍ରକୃତ 'ଆନନ୍ଦ'କୁ ଖୋଜୁଚି କିଏ ? ସମସ୍ତେ ତ ପାର୍ଥିବ ସୁଖ ପଛରେ ଧାଇଁ ଥାଆନ୍ତି । ଧନ, ଯୌବନ-ମତ୍ତ ମନୁଷ୍ୟ ନିଜ ସୃଷ୍ଟିକର୍ତ୍ତା ଭଗବାନଙ୍କୁ ତ ଭୁଲିଯାଏ । ଲୋଭ, ପରଶ୍ରୀ କାତରତା, ଈର୍ଷା, ରାଗ, ଦ୍ୱେଷ, ଗର୍ବ ଆଉ ଅସହିଷ୍ଣୁତା ଇତ୍ୟେତ ମଣିଷର ସାଧାରଣ ପ୍ରକୃତି । ତେବେ ଏମିତି ଗୋଟେ ମଣିଷ ବଞ୍ଚି ଲାଭ କଣ ? ମରିଯାଉ । ମରିଯାଉ ସେ ମଣିଷ । ... ସତରେ କଣ ମୋ ଜେଜେ ବାପା ଆଉ ନାହାନ୍ତି + + +



Digitized by srujanika@gmail.com

ସେଦିନ ଥିଲା ଶୁକ୍ରବାର । ମାଘମାସ ଶୁକ୍ଳପକ୍ଷ ଦଶମୀ । ୧୯୭୫ ଫେବୃଆରୀ ମାସର ୨୧ ତାରିଖ । ବହୁତ ବେଳୁ ଖରାପଡି ଯାଇଥିଲା । ଆନ୍ଦୋଳିତ ମନନେଇ ସକାଳର ନିତ୍ୟକର୍ମ ଶେଷ କଲି । କିଛି ପଢ଼ାପଢ଼ି କରିବାକୁ ଚେଷ୍ଟା କଲି । କେଉଁଥିରେ ମନ ଲାଗୁନଥାଏ । ବେଶି ପଢ଼ିପାରିଲିନି । ସକାଳ ସାଢ଼େ ଦଶଟା ବାଜିଥାଏ । ବାହରି ପଡିଲି ମଉସା (ସ୍ୱର୍ଗତ ବାମାଚରଣ ମିତ୍ର)ଙ୍କ ଘର ଆଡେ । ବହୁତ ଦିନହେଲା ଯାଇନଥାଏ । ଦୁଇମାସ ତଳେ ଯାଇଥିଲି । କଥା ପ୍ରସଙ୍ଗରେ ମୋ ନନା ତାଙ୍କୁ ବାୟୋକେମିକ୍ ମେଡିସିନ୍ ଖାଇବାକୁ ଦେବାକୁ ଚାହାନ୍ତି ବୋଲି ମୁଁ ସେତେବେଳେ ତାଙ୍କୁ କହିଥିଲି । ସେ ଖୁସିରେ ରାଜି ହୋଇଥିଲେ । କିନ୍ତୁ ଦୁଇମାସ ଭିତରେ ମୁଁ ତାଙ୍କ ପାଖକୁ ଔଷଧ ନେଇ ଯାଇପାରି ନଥିଲି । ମୋର ଦାୟୀତ୍ୱହୀନତା ହିଁ ଏହାର କାରଣ । ନନାଙ୍କୁ ମୁଁ ଚିଠି ଦେଇପାରି ନଥିଲି ଔଷଧର ନାଁ ଗୁଡାକ ଜାଣିବା ପାଇଁ । ସବୁଥର ଭୁଲିଯାଏ । ଦୁଇଦିନ ତଳେ ଔଷଧର ନାଁ ଗୁଡାକ ନନା ଚିଠିରେ ଜଣେଇଥିଲେ । ମୁଁ ମୋର ଜଣେ ଅଧ୍ୟାପକ ବନ୍ଧୁଙ୍କୁ ସାଙ୍ଗରେ ନେଇ ପୂର୍ବଦିନ ରାତିରେ ଔଷଧଗୁଡିକ କିଣି ଆଣିଥିଲି । ତାକୁ ଧରି ମୁଁ ତାଙ୍କ ଘର ଆଡେ ଆଗେଇଲି ।

ହଠାତ୍ କାହିଁକି ମନଟା ଗୋଳେଇ ଘାଣ୍ଟି ହେଲା । ପାହାନ୍ତି ପହରର ସେଇ ଦୁଃସ୍ୱପ୍ନ କଥା ମନେ ପଡିଲା । ଶିଣିଥିଲି "ଦୁଃସ୍ୱପ୍ନ ନିଜକୁ ଦେଖିଲେ ପରକୁ ହୁଏ" । ତେବେ ମଉସାଙ୍କର କିଛି କ୍ଷତି ହୋଇନିତ ? ତାଙ୍କ ଘରକୁ ଯିବାକୁ ମତେ କେମିତି ଭୟ ଲାଗିଲା । ମନକୁ ବୁଝେଇଲି । ମୁଁ ତ ତାଙ୍କୁ କେବେ ପର ଭାବେନି । ଆମ ଘରେ ସେ ତ ନିଜର । ତେବେ ତାଙ୍କର କାହିଁକି କ୍ଷତି ହେବ ? ଅଦୃଶ୍ୟ ଶକ୍ତି ଉଦ୍ଦେଶ୍ୟରେ ହାତ ଉଠେଇଲି । "ମଉସା... ଭଲରେ ଥାଆନ୍ତୁ" ।

କେତେବେଳେ ଯେ ମୁଁ ତାଙ୍କ ନଅ ନମ୍ବର ଫ୍ଲାଟ୍ କ୍ୱାର୍ଟର (ଭଡାଘର)ରେ ପହଞ୍ଚି ଯାଇଚି ମୋର ଖିଆଲ ନାହିଁ । ମଉସା ଘର ବାରଣ୍ଡାରେ ଗୋଟିଏ ଆର୍ମଚେୟାରରେ ବସିଥିଲେ । ସେଇଠି ସେ ଅନେକ ସମୟ ବସନ୍ତି । ଭଗବାନଙ୍କୁ ଅଶେଷ ଧନ୍ୟବାଦ ଜଣାଇଲି । ଯାହାହେଉ ମଉସା ଭଲ ଅଛନ୍ତି । ମାଉସୀ ରୋଷେଇ କାମରେ ବ୍ୟସ୍ତଥିଲେ । ମଉସା ଓ ମାଉସୀ ମତେ ଦେଖି ବହୁତ ଖୁସି ହେଲେ । ପାଖରେ ଥିବା ଖଟ ଉପରେ ବସି ମୁଁ ମେଡିସିନ୍‌ତକ ରଖିଦେଲି । ଚାରୋଟି ମେଡିସିନ୍ । ମଉସା ପଚାରିଲେ "ଏସବୁ କଣ ? ଏତେଗୁଡାଏ ଔଷଧ କଣ ହେବ ?" କହିଲି "ନନା ପରା ପଠାଇଛନ୍ତି । ଏସବୁ ଆପଣଙ୍କୁ ଖାଇବାକୁ



Digitized by srujanika@gmail.com

ହେବ" । କେତେ ଅନୁପାତ ଏବଂ କେତେ କେତେ ଘଣ୍ଟା ଅନ୍ତରରେ ଖାଇବାକୁ ହେବ ମୁଁ ତାଙ୍କୁ ସବୁ ବୁଝାଇଦେଲି । ସେ ନିଜେ ଗୋଟିଏ କାଗଜରେ ସବୁ ଲେଖି ରଖିଲେ ଏବଂ ପ୍ରତି ଔଷଧ ଶିଶି ଉପରେ 'ନମ୍ବର' ଲେଖିଦେଲେ କାହାପରେ କାହାକୁ ଖାଇବାକୁ ହେବ ଜାଣିବା ପାଇଁ । ମାଉସୀଙ୍କୁ ଡାକି ସବୁ ଦେଖାଇ ଦେଲେ । ସକାଳୁ ଦାନ୍ତ ଘସିବା ପରେ ରାତିରେ ଶୋଇବା ପର୍ଯ୍ୟନ୍ତ ଔଷଧ ଗୁଡିକ ଖାଇବାକୁ ପଡିବ । ମନେ ପକାଇ ଖାଇବାକୁ ଦେବା ଭାର ମାଉସୀଙ୍କର ।

ପ୍ରାୟେ ଘଣ୍ଟାଏ କାଳ ମଉସା ମୋ ସହ କଥାବାର୍ତ୍ତା କଲେ । ସେତେବେଳକୁ ତାଙ୍କୁ ଦୁଇଥର ଜ୍ୱର ହୋଇ ଛାଡିଯାଇଥାଏ । ବହୁତ ଦୁର୍ବଳ ଅନୁଭବ କରୁଥିଲେ । ମଝିରେ ମଝିରେ କାଶ ହେଉଥିଲା । ଯଥେଷ୍ଟ ଶୁଖି ଯାଇଥିଲେ ମଧ୍ୟ । ଗୋରା ଦେହ ତାଙ୍କର କଳା ଦେଖାଯାଉଥିଲା । ଧୀରେ ଧୀରେ କଥା କହୁଥିଲେ । କାଶର ପ୍ରକୋପ ତାଙ୍କୁ ଜୋରରେ କଥା କୁହାଇ ଦେଉନଥିଲା । କାଶର ଲହରରେ ଛାତିକୁ ଚାପିଧରି କିଛି ସମୟ ଚୁପ୍ ହୋଇ ବସି ଯାଉଥିଲେ । କହିଲେ "ବାବା ! ବହୁତଦିନ କଷ୍ଟ ପାଇଲିଣି । ଆଉ ମୋତେ ସହି ପାରୁନି । କାଶଟା ହେଲେ ଟିକେ ବନ୍ଦ ହୋଇଯାଆନ୍ତା । ଏଇଟା ମତେ ବେଶି କଷ୍ଟ ଦେଉଚି । କେତେଦିନ ଯେ ଆଉ ଘାଣ୍ଟି ହେବି ଭଗବାନ ଜାଣନ୍ତି । ଏକା ନିଃଶ୍ୱାସରେ ଭରା ନଈ ପହଁରି ଯାଉଥିଲି । ଆଜି ସାମାନ୍ୟ ଚଲାବୁଲା ବି କରିପାରୁନି । ଦୁଇ ତିନି ମିନିଟ୍ ଚାଲିଲେ ହାଲିଆ ହୋଇପଡୁଚି । କେତେ ବସି ରହିବି କହିଲୁ ? କିଛି ଭଲ ଲାଗୁନି । ରୋଗଟା ତ ଆଉ ଭଲ ହେଉନି । ଭଗବାନ ଶୀଘ୍ର ନେଇ ଯାଆନ୍ତେ କି ! ଜ୍ଞାତସାରରେ କାହାର କ୍ଷତି କରିନି ବାପା । କେବେ ଅନ୍ୟାୟ କରିଥିବାର ବି ମନେ ପଡୁନି । ତେବେ କାହିଁକି ମୁଁ ଏତେ କଷ୍ଟ ପାଉଚି ? କଣ ବା ମୋର ଜୀବନରେ ଉନ୍ନତି ହେଲା ? ବିଚାର ବିଭାଗ ଛାଡି ଆସିଲି ଶାସନ ବିଭାଗକୁ । ହେଲେ ଜାଣିଶୁଣି ଅନ୍ୟାୟ ଭାବରେ ମୋତେ ଏଠି ଜୁନିଅର କରିଦେଲେ । ଅଣ୍ଡର ସେକ୍ରେଟାରୀ ହୋଇ ଅବସର ନେଲି । ଜୁଡିସିଆରିରେ ଥିଲେ ଅନ୍ତତଃ ଜିଲ୍ଲାଜଜ୍ ହୋଇଥାଆନ୍ତି । ଈଶ୍ୱରଙ୍କର ଯାହା ବରାଦ । କାହାକୁ ନା କାହିଁକି ଦୋଷ ଦେବି । ବିଧିର ବିଡମ୍ବନାକୁ କିଏ ଦୂରେଇ ପାରିବ ?" ମଉସାଙ୍କର ଏଇ କଥା ଦୁଇପଦ ମୋତେ ବେଶ୍ ବାଧୁଥିଲା । ଭାବୁଥିଲି-ସଂସାରରେ ଭଲ ଲୋକହିଁ ବେଶି ଦୁଃଖ ପାଆନ୍ତି । ସତ୍ ମାର୍ଗ... ଆଗେଇଥିବା ଲୋକର ଉନ୍ନତି କମ୍ ହୁଏ । ଭଗବାନ ତାକୁ ବେଶି କଷ୍ଟଦିଅନ୍ତି । ପଣ୍ଡିତମାନଙ୍କ ମତରେ ଏହା ଭଗବାନଙ୍କର



Digitized by srujanika@gmail.com

ପରୀକ୍ଷା । ଧର୍ମ ଡଙ୍ଗା ବନ୍ଧୁ ବାଧାବିଘ୍ନ ଦେଇ ଭାସିଚାଲେ । ହେଲେ କେବେ ବୁଡିଯାଏନି । ସେପରି ଆତ୍ମାର ସଦ୍‌ଗତି ହୁଏ । ହଠାତ୍ ମଉସା କହିଲେ "ଏତେ ଗୁଡାଏ ଔଷଧ ମୁଁ କଣ ଖାଇପାରିବି । କାହିଁକି ଏଗୁଡା ଆଣିଲୁ ? ମୁଁ ଖାଇ ପାରିବିନି" । କହିଲି, "ଆପଣ ମୋତେ ବ୍ୟସ୍ତ ହୁଅନ୍ତୁନି । ମାଉସୀ ମନେ ପକାଇ ଖୋଇଦେବେ" । ମଉସା କହିଲେ "ହଉ ଖାଇବି । ହରିବାବୁ (ମୋ ନନା) ଦେଇଚନ୍ତି ଭଲମନରେ । ମୁଁ ନିଶ୍ଚୟ ଖାଇବି" । ମାଉସୀ କହିଲେ "ଦେଖାଯାଉ । ଏତେତ ଔଷଧ ଖାଇଲଣି । କେଉଁଥିରେ ତ ଭଲ ହେଲାନି । ତାଙ୍କ ଔଷଧରେ ଭଗବାନଙ୍କ ଦୟାଥିଲେ ନିଶ୍ଚୟ ଭଲ ହୋଇଯିବ" । ଆଉ କିଛି ସମୟ ଆମେ କଥାବାର୍ତ୍ତା ହେଲୁ । ସାହିତ୍ୟ ଓ ସଙ୍ଗୀତ ଚର୍ଚ୍ଚା ମଧ୍ୟ ହେଲା । ସାହିତ୍ୟ ବାସ୍ତବଧର୍ମୀ ଓ ଯୁଗୋପଯୋଗୀ ହେବା ଉଚିତ ବୋଲି ମଉସା ମତ ଦେଇଥିଲେ । ତାଙ୍କର ସମସ୍ତ ଲେଖା ଯେ ମୋତେ ଭଲ ଲାଗେ ଏକଥା ମୁଁ ଜଣାଇଥିଲି । ସେ ବହୁତ ଖୁସି ହୋଇଥିଲେ । ରାଗ ସଙ୍ଗୀତକୁ ମଉସା ବହୁତ ପସନ୍ଦ କରୁଥିଲେ । କେତେକ କଳାକାର ସଙ୍ଗୀତର ନୀବିଡ ସମ୍ପର୍କ ବିଷୟରେ ସେ କହୁଥିଲେ । ସେତିକିବେଳେ ମାଉସୀ କହିଲେ "ଏବେଠୁ ଔଷଧ ଖାଇବା ଆରମ୍ଭ କରୁନ ?" ସେ ମନା କଲେ । ଆରଦିନ ସକାଳୁ ଆରମ୍ଭ କରିବା ତାଙ୍କର ଇଚ୍ଛାଥିଲା । ମୁଁ ମଧ୍ୟ ମଉସାଙ୍କୁ ସମର୍ଥନ କଲି । ପରେ ପରେ ମୁଁ ଉଠିବାକୁ ଚାହିଁଲି । ମଉସା ମଧ୍ୟ ଟିକିଏ ଶୋଇବାକୁ ଇଚ୍ଛା କଲେ । ମତେ କହିଲେ "ହରିବାବୁ ବଡ ଧାର୍ମିକ ଲୋକ । ଭଗବାନଙ୍କ ପାଖରେ ତାଙ୍କ ଚିତ୍ତଦୃଢ଼ । ମୋର ଭଗବତ୍ ବିଶ୍ୱାସ ଅଛି । ହେଲେ ଏତେଟା ଦୃଢ଼ ଭକ୍ତି ଆସୁନି । ନନାଙ୍କୁ କହିବୁ ମୋ ପାଇଁ ଟିକିଏ ଭଗବାନଙ୍କୁ ଡାକିବେ । ଅନେକ ଦିନରୁ ମୁଁ ତାଙ୍କୁ ଦେଖିନାହିଁ । କେବେ ଯଦି ଭୁବନେଶ୍ୱର ଆସନ୍ତି ତେବେ ମୋ ପାଖକୁ ଆଣିବୁ । ତାଙ୍କପରି ବନ୍ଧୁ ମୁଁ ଆଉ ପାଇବିନି" ।

ମୁଁ ଫେରି ଆସିଲି । ସେତେବେଳକୁ ସାଢ଼େ ଏଗାରଟା ଉପରେ ହୋଇଥିଲା । ଏ ଥିଲା ଶୁକ୍ରବାରର ଘଟଣା । ଶନିବାର ଦିନ ଯାଇ ରବିବାର ଆସିଲା । ମୁଁ କିଛି ଜାଣି ନଥାଏ । ରବିବାରର ଓଡ଼ିଆ କାଗଜ ଆସିନଥାଏ । ସେତେବେଳକୁ ଦିନ ନଅଟା ବାଜିଯାଏ । ମୁଁ 'ମାନସ' ପତ୍ରିକା ପଢ଼ିସାରି 'ନବରବି' ପଢ଼ି ବସିଥିଲି । ମୋର ଅଧ୍ୟାପକ ବନ୍ଧୁ ଆଶୁବାବୁ ଆସି ପହଞ୍ଚିଲେ । ମୋ ଟେବୁଲ ଉପରେ କେତୋଟି ବାୟୋକେମିକ୍ ମେଡିସିନ୍ ଦେଖି କହିଲେ- "ଅମର ବାବୁ ! ଆପଣ ଅଯଥା ଔଷଧ ଗୁଡା କିଣିଲେ । ବାମାବାବୁ ତ ସେତକ ପାଇପାରିଲେନି" ।



Digitized by srujanika@gmail.com

ପ୍ରଥମେ ମୁଁ କିଛି ବୁଝି ପାରିଲିନି । ପଚାରିଲି "ଆପଣ କଣ କହୁଚନ୍ତି" ସେ କହିଲେ "ବାମାବାବୁ ଆଉ ନାହାନ୍ତି । ଆପଣ କଣ ଖବର କାଗଜ ପଢ଼ିନାହାନ୍ତି ?" ମୁଁ ହତବାକ୍ ହୋଇଗଲି । ପନ୍ଦର ମିନିଟ୍ ପର୍ଯ୍ୟନ୍ତ ଏକଥା ବିଶ୍ୱାସ ମଧ୍ୟ କରିପାରୁନଥାଏ । ମନେ ମନେ ମୁଁ କାନ୍ଦୁଥିଲି ବୋଧେ । ଆଶୁବାବୁ ମୋତେ ବୁଝେଇବାକୁ ଲାଗିଲେ । ସେଦିନ ତିନିଟା ଯାଏ ମୁଁ କିଛି ଖାଇ ପାରିଲିନି ।

ମଉସାଙ୍କ ପରି ଜଣେ ଲୋକ ପାଇବା କଷ୍ଟକର । ମୁଁ ତାଙ୍କୁ ଜାଣିଥିଲି ୧୯୬୧ ମସିହାରୁ । ସେତେବେଳେ ମୋ ନନା କେନ୍ଦ୍ରାପଡାରେ ପ୍ରଥମଶ୍ରେଣୀ ଜୁଡିସିଆଲ ମାଜିଷ୍ଟ୍ରେଟ୍ ଥାଆନ୍ତି । ମଉସା କେନ୍ଦ୍ରାପଡା ସବ୍‌ଡ଼ିଭିଜନାଲ୍ ମାଜିଷ୍ଟ୍ରେଟ୍ ହୋଇ ଆସିଲେ । ତାଙ୍କ ବଡଝିଅ ସଂଘମିତ୍ରା ନବମ ଶ୍ରେଣୀରେ ନାମ ଲେଖାଇ ମୋର କ୍ଲାସମେଟ୍ ହେଲା । ମଉସା ଓ ନନା ବହୁ ଆଗରୁ ବନ୍ଧୁ ଥିଲେ । ଏକା ସ୍ଥାନରେ ଏକା ବିଭାଗରେ ପରସ୍ପରକୁ ଦୁହେଁ ପାଇ ଯଥେଷ୍ଟ ଖୁସି ହୋଇଥିଲେ । ଦୁହେଁ ଚିନ୍ତାଧାରାରେ ଏବଂ କାର୍ଯ୍ୟକଳାପରେ ଏକା ପ୍ରାୟେ ଥିଲେ । ସେଦିନୁ ମୁଁ ମଉସାଙ୍କୁ ଦେଖିଚି । ସେ ଥିଲେ ଏକାଧାରରେ ସରଳ ଓ ନିରାଡମ୍ବର । ନ୍ୟାୟବାନ୍ ଏବଂ ସଚ୍ଚୋଟ ଅଫିସର । ତାଙ୍କର ସେତେବେଳର ଚେହେରା ମୋର ଏବେ ବି ମନେଅଛି । ବେଶ୍ ଡେଙ୍ଗା । ମୋଟା ନୁହନ୍ତି ବି ପତଳା ନୁହନ୍ତି । ବେଶ୍ ସୁନ୍ଦର ସ୍ୱାସ୍ଥ୍ୟ । ଗୋରା ତକ୍ ତକ୍ ନ ହେଲେ ବି ବେଶ୍ ସଫା । କଚେରୀ କାମ ସାରି ପ୍ରାୟେ ସବୁଦିନ ସନ୍ଧ୍ୟାବେଳେ ଆମଘରକୁ ଚାଲିଚାଲି ଆସିଯାଆନ୍ତି । ସୁପର ପାଇନ୍ ଧୋତି ଓ ସଫେଦ୍ ପଞ୍ଜାବୀ ସାଙ୍ଗକୁ ଶୁଭ୍ର ରୁମାଲ୍ ଛାତି ପକେଟରେ ଥାଏ । ବେଶ୍ ମାନୁଥିଲା ତାଙ୍କୁ । ଆଇନ୍, ଧର୍ମ ଓ ସାହିତ୍ୟ ଚର୍ଚ୍ଚା ଅନେକ ସମୟଯାଏ ଚାଲେ । ଏସବୁ ଚର୍ଚ୍ଚା କଲାବେଳେ ସେ ଦୁନିଆଁର ଆଉ ସବୁ କଥା ଭୁଲିଯାଉଥିଲେ । ରାତି ବେଶି ହେଲେ କଥା ଭୁଲିଯାଉଥିଲେ । ରାତି ବେଶି ହେଲେ ଫେରିଯାଆନ୍ତି । ଗର୍ବ ବା ଅହଙ୍କାର ବୋଲି ତାଙ୍କ ପାଖରେ କିଛି ନଥିଲା । ସମସ୍ତଙ୍କ ପ୍ରତି ବ୍ୟବହାର ଥିଲା ଅମାୟିକ । ସେ ଜଣେ ଥିଲେ ମଣିଷପରି ମଣିଷ । ଅବସର ସମୟରେ ପ୍ରବନ୍ଧ, ଗଳ୍ପ ଓ ରମ୍ୟ ରଚନା ଲେଖି ସମୟ କାଟୁଥିଲେ । ଆଗରୁ ଯେ ଲେଖୁନଥିଲେ ଏପରି ନୁହେଁ । ତାଙ୍କ ଲେଖା ସାଧାରଣ ଓ ଅସାଧାରଣଙ୍କ ପାଖରେ ଉଚ୍ଚ ପ୍ରଶଂସିତ ହୋଇ ଆସିଚି । ପାଠକ ସମାଜ ସେ ବିଷୟରେ ଭଲ ଭାବରେ ଅବିହିତ । ମୋର ଏ ବିଷୟରେ ବିଶେଷ କିଛି ଲେଖିବାର ନାହିଁ ।



Digitized by srujanika@gmail.com

ସେଦିନ ଏ ମର୍ମନ୍ତୁଦ ସମ୍ବାଦ ପାଇ ମୁଁ ତାଙ୍କ ଘର ଆଡେ ଯାଇନଥିଲି । କାରଣ ମୁଁ ଜାଣିଥିଲି ମାଉସୀ ମତେ ଦେଖିଲେ ବେଶି ବେଶି କାନ୍ଦିବେ । କଣ ବା ମୁଁ ତାଙ୍କୁ ଆଶ୍ୱାସନା ଦେଇପାରି ଥାଆନ୍ତି । 'ଦଶ' ଦିନ ସକାଳୁ ମୁଁ ତାଙ୍କ ଘରକୁ ଯାଇଥିଲି । ଲୁଗା, ଚଦର ସବୁ ଧୋବା ଘରେ ପଡୁଥିଲା । ବନ୍ଧୁବାନ୍ଧବ ସବୁ ଆସି ଯାଇଥିଲେ । ପୁରୋହିତ ବସି ମାଉସୀଙ୍କୁ ବରାଦ୍ ଦେଉଥିଲେ କଣ କଣ ବଜାର ସଉଦା ହେବ । ଦେଖିଲି ମାଉସୀଙ୍କ ଦେହରେ ଜୀବନ ନଥିଲା । ଏଇ ଦଶଦିନ ଭିତରେ ସେ ଯେମିତି ସମ୍ପୂର୍ଣ୍ଣ ବୁଢ଼ୀ ହୋଇ ଯାଇଥିଲେ । କହିଲେ "ଏତେ କାମ କରୁଥିଲି, ହେଲେ ମଲାବେଳେ ମୁଁ ତାଙ୍କ ପାଖରେ ରହି ପାରିଲିନି । କିଛି ବି ସେବା କରି ପାରିଲିନି । ତାଙ୍କ ମୁହଁରୁ ଶେଷ କଥା ଦୁଇପଦ ଶୁଣି ପାରିଲିନି । ମତେ କହିଲେ ଯାଅ ଟିକେ ଖିର ନେଇ ଆସିବ । ମୁଁ ପିଇବି । ମୁଁ ତାଙ୍କୁ ଏକୁଟିଆ ଛାଡି ଯିବାକୁ ମଙ୍ଗୁନଥିଲି । କହିଲେ ଯାଅ । ମୁଁ ତ ସବୁବେଳେ ଏକା । ମୋ ପାଇଁ ବ୍ୟସ୍ତ ହେଉଚ କାହିଁକି ?" ମାଉସୀ କାନ୍ଦିଲେ । ପନ୍ଦର ମିନିଟ୍ ପରେ ଖିର ନେଇ ଫେରିଲାବେଳକୁ ମଉସା ଆଉ ନଥିଲେ । ସବୁଦିନପାଇଁ ମୋତେ ଛାଡିଯାଇଥିଲେ । ଆଉ କେହି ବି ପାଖରେ ନଥିଲେ । ମାଉସୀଙ୍କ ମୁହଁରୁ ଶୁଣିଲି ବାହାର ଲୋକମାନଙ୍କ ମଧ୍ୟରେ ମୁଁ ହେଉଚି ପ୍ରଥମ ଓ ଶେଷ ଲୋକ ଯେ କି ଶେଷ ମୁହୂର୍ତ୍ତର ଅବ୍ୟବହିତ ପୂର୍ବରୁ ତାଙ୍କ ପାଖରେ ଥିଲି । ମାଉସୀ କହିଲେ "ପୁଅ ! ସେ ଔଷଧ ଗୁଡା ତୁମେ ନେଇଯାଅ । ସେତ ମୋଟେ ଖାଇନାହାନ୍ତି । କଣ ହେବ ସେଗୁଡା ? ବହୁତ ଦୁଃଖ ଲାଗିଲା ମୋତେ । କେତେ ଆଶାରେ ମୁଁ ନେଇଥିଲି ଔଷଧ ଗୁଡା । ତାଙ୍କ କାମରେ ମୋଟେ ଲାଗିଲାନି । ଦୁଇମାସ ତଳେ ମୁଁ ଯଦି ଔଷଧ ଆଣିପାରି ଥାଆନ୍ତି ତେବେ କିଛିଟା ଉପକାର ତ ତାଙ୍କୁ କରିଥାଆନ୍ତା । ବିଧିର ବିଧାନ ଅନ୍ୟପ୍ରକାର । କିଏ ଜାଣିଥିଲା ପର ମୁହୂର୍ତ୍ତରେ ସେ ସଂସାର ତ୍ୟାଗ କରିବେ ବୋଲି । କହିଲେ "ମାଉସୀ ଔଷଧ ଥାଉ । ସ୍ମୃତି ସ୍ୱରୂପ ଆଲମିରା ଭିତରେ ଥୁଆହୋଇ ରହୁ" । କେଉଁ ଖୁସିରେ ମୁଁ ତାକୁ ଫେରାଇ ଆଣିଥାଆନ୍ତି ?

ମଉସାଙ୍କ ବିୟୋଗରେ ଓଡ଼ିଆ ସାହିତ୍ୟ ତଥା ମଣିଷ ସମାଜରୁ ଏକ ଉଜ୍ଜ୍ୱଳ ତାରକାର ଅକାଳ ବିଲୋପ ଘଟିଲା । ସେ ସ୍ଥାନ ସବୁଦିନ ପାଇଁ ଅପୂର୍ଣ୍ଣ ରହିବ । ଶେଷ ପର୍ଯ୍ୟନ୍ତ ମଧ୍ୟ ସେ ଲେଖା ଲେଖିରୁ ଅବ୍ୟାହତ ନେଇନଥିଲେ । ଡ. କୃଷ୍ଣ ପ୍ରସାଦ ମିଶ୍ର ଯଥାର୍ଥରେ କହିଚନ୍ତି "ଅଣ୍ଡରସେକ୍ରେଟାରୀ ରୂପେ କାର୍ଯ୍ୟ କରୁଥିବାବେଳେ ଅବସର ନେବାପରେ କୌଣସି ଉପଯୁକ୍ତ ସରକାରୀ, ଅର୍ଦ୍ଧ



Digitized by srujanika@gmail.com

ସରକାରୀ ବା ଘରୋଇ କାର୍ଯ୍ୟରେ ସେ ନିଯୁକ୍ତି ପାଇଥିଲେ ହୁଏତ ତାଙ୍କର ଏପରି ଅକାଳ ମୃତ୍ୟୁ ହୋଇନଥାନ୍ତା । ଅବସର ଗ୍ରହଣପରେ ଏକାନ୍ତରେ, ଅଭାବ ଓ ତାଙ୍କ ଫୁସ୍‌ଫୁସ୍‌ର ବ୍ୟାଧି ତାଙ୍କୁ ସନ୍ତତ ଝୁଣିବାକୁ ଲାଗିଲେ ଓ ମହାମହିମ ଗିରିଶୃଙ୍ଗ ପାଣି ପବନର ଅତ୍ୟାଚାର ସହିବା ପରି ସେ ସବୁ ଉପେକ୍ଷା, ଅବଜ୍ଞା ଓ ଅଭାବକୁ ସହିଯାଇ ଲେଖାଲେଖି ଅବ୍ୟାହତ ରଖିଥିଲେ" । (ସମ୍ପାଦକୀୟ- ମାନସ ମାର୍ଚ୍ଚ ୧୯୭୫) ।

ଆଜି ତାଙ୍କର ପ୍ରଥମ ଶ୍ରାଦ୍ଧବାର୍ଷିକ ଉତ୍ସବ ଅବସରରେ ଈଶ୍ୱରଙ୍କ ପାଖରେ ଏତିକି ପ୍ରାର୍ଥନା ଯେ ତାଙ୍କ ଅମର ଆତ୍ମାର ଆଶୀର୍ବାଦରେ ତାଙ୍କ ଶୋକ ସନ୍ତପ୍ତ ପରିବାରର ସର୍ବବିଧ ଉନ୍ନତି ଘଟୁ ।

ପତ୍ରିକା - 'ମାନସ'
ଫେବୃଆରୀ ୧୯୭୬





Digitized by srujanika@gmail.com

# ଆଉ ସେ ସକାଳ ନାହିଁ

ଶ୍ରୀ ରାଜକିଶୋର ମହାନ୍ତି

ଓଃ କି ଭୀଷଣ କୁହୁଡି । ମୁହଁକୁ ମୁହଁ ଦିଶୁ ନଥାଏ । ବରକୋଳିଆ ଟୋପାପରି ଟପ ଟପ ହୋଇ ଝରି ପଡୁଥାଏ କାକର ଟୋପାମାନ । ଏଥିରେ ଏମିତି କୁହୁଡିଆ ସକାଳଟାରେ ଆଉ ଯିବି କି ନାହିଁ ଭାବି ହେଉଥାଏ ବିଛଣାଟାରେ ଖାଲି ଏପଟ ସେପଟ ହୋଇ ।

ଠିକ୍ ଏତିକିବେଳେ କବାଟ ଠକ୍ ଠକ୍ ଶବ୍ଦ ଶୁଣାଗଲା । ଆରେ- ଏତେ ବଡି ଭୋର୍‌ରୁ, ପୁଣି ଏମିତିକା ଶୀତୁଆ, କୁହୁଡିଆ ପାଗଟାରେ । ଭାବିବାକୁ ଆଉ ସମୟ ନନେଇ ପୁଣି ଜୋରରେ କବାଟ ବାଡିଆ ସଂଗେ ଏଥର ଡାକ ଆସିଲା - ହୋ ରାନୁବାବୁ, କଣ ଏତେ ବେଳଯାଏ ଉଠି ନାହା ନା କଣ ? ଆରେ ଉଠ ଉଠ । ପାଟି ବାରି ଧଡ ପଡ ହୋଇ କବାଟ ଖୋଲିଦେଲି । ହଁ ବାମାବାବୁ-ବଡଭାଇ । ମୋତେ କିଛି କହିବାକୁ ନ ଦେଇ ସେମିତି ତରତର କଣ୍ଠରେ ସେ କହିଲେ - ଆଉ ବସୁଛ କାହିଁକି ମ ? ଉଠ, ଉଠ ସାର୍ଟଟା ଖାଲି ଦେହରେ ଗଳେଇ ପକାଇ ବାହରି ପଡନା ।



Digitized by srujanika@gmail.com

ମୁଁ କହିଲି - କଣ ଆପଣ ଏକା ? ଆଉ ନୀଳମଣିବାବୁ (ମହାପାତ୍ର ଶ୍ରୀ ନୀଳମଣି ସାହୁ) ? ବଡଭାଇ ଟିକିଏ ହସିଦେଲେ । ନୀଳମଣି ବାବୁ ତାଙ୍କୁ ଡାକୁଥିଲେ ବଡ ଭାଇ ବୋଲି । ତାଙ୍କଠାରୁ ଶିଖି ଆମେ ସବୁ ଭୁବନେଶ୍ୱରର ସାହିତ୍ୟିକ, କଳାକାରମାନେ ତାଙ୍କୁ ବଡ ଭାଇ ବୋଲି ଡାକୁଥିଲୁ । ମୋ ପ୍ରଶ୍ନର ଉତ୍ତର ନଦେଇ ମୋ ପାନ ଡବା ଖୋଲି, ମୁଁ ଖଣ୍ଡେ ଖାଉଛି କହି, ସେ ଖଣ୍ଡେ ବାସିପାନ ଚଟକିନା ପୂରାଇ ଦେଇ କହିଲେ - ମୁଁ ଜାଣେ, ତମେ ନୀଳମଣିକୁ ଖୋଜିବ, ଆଉ ସେବି ତୁମକୁ ଛାଡିବ ନାହିଁ । ହେଲେ ସେ ଆଉ ଆଜି ଆସିଲା ନାହିଁ, କହିଲା, ଏ ପାଗରେ ମୋର ଯାଉଛି କିଏ / ସେ ପୁଣି ଟିକିଏ ହସି ଦେଲେ ।

ଏ କଥାରେ ମୋର ମୋଟେ ବିଶ୍ୱାସ ହେଲାନାହିଁ । କାରଣ ନୀଳମଣିବାବୁ ଘୋରି ପୋରି ହୋଇ ସକାଳଟାରେ ଶୋଇଯିବା ଲୋକ ନୁହଁନ୍ତି । ତେବେ କଣ ସେ କାଲି ରାତି କଥାକୁ ରିହ କରି ମୋ ଉପରେ ଏବେ ବି ବିଗିଡିଛନ୍ତି । ତାତ ସେ ଏପରି କଦାପି କରି ପାରିବେ ନାହିଁ । ମୋର ଦୋଷ, ଦୁର୍ବଳତା, ଅଳସୁଆଗିରୀ ଦେଖିଲେ ସେ ଭାରି ବିଗଡନ୍ତି ସତ, କିନ୍ତୁ ସଂଗେ ସଂଗେ ସେ ସବୁ କଥା କୁଆଡେ ଉଭେଇ ଯାଇ ପୁଣି କଅଁଳେଇ କହନ୍ତି- ହେ ରାଜ, - ଦେଲୁରେ ଆଗ ଖଣ୍ଡେ ପାନ । ଏମିତି ଭାବୁ ଭାବୁ ହଠାତ୍ ପଛପଟୁ ଖେଙ୍କି ହେଇ ନୀଳମଣିବାବୁ ଆସି ଉଭା ହୋଇଗଲେ । ମୁଁ ଟିକିଏ ଚମକି ପଡିଲି । ସେ ଦୁହେଁ ହସି ହସି ଗଡିଗଲେ । କାରଣ ନୀଳମଣି ବାବୁ ମତେ ଏମିତି ଡରାନ୍ତି, ଚିଡାନ୍ତି ବି । ଆଉ ଡେରି ନକରି ସଂଗେ ସଂଗେ ସେମାନଙ୍କ ସାଥୀରେ ବାହାରି ପଡିଲି ।

ଆମେ ଚାଲି ଚାଲି କେତେ ବାଟ ଚାଲିଯାଉ । ନାନା ଆଡର, କାନା ବିଷୟର, କେତେ କେତେ କଥା ଯୋଡେ । ଡିଙ୍କିଶାଳଠାରୁ ଢେଙ୍କାନାଳ କି କୁମାରିକା ଯାଏ, ଏପରିକି ସୁମେରୁ ଯାଏ ବି ନୁହେଁ, ତା ଉପରକୁ ଆହୁରି ଆହୁରି ଅଧିକ ଆହୁରି କିଛି ଅଧିକ । ପାର୍ଥିବ, ଅପାର୍ଥିବ, ଗାନ୍ଧୀ, ମାର୍କସ, ଫ୍ରଏଡ, ଶ୍ରୀ ଅରବିନ୍ଦ ଚେତନ୍, ଅଚେତନ, ଅବଚେତନ, ସଚେତନ, ଅତି ମାନସ, ତୁରିଆଲୋକ, ଦିବ୍ୟ ଜୀବନ, ନବଜ୍ୟୋତି ପ୍ରଭୃତି କେତେ କଣ ସେ ସବୁ ଆଲୋଚନାମାନ । ସବୁଥିରେ, ସବୁ କଥାରେ, ସମସ୍ତ ଆଲୋଚନାରେ ବାମାବାବୁ ଦାୟୀ କରନ୍ତି ଆମମାନଙ୍କୁ- ଆମ ପରି ସବୁ ତଥାକଥିତ, ଶିକ୍ଷିତ ଗୋଷ୍ଠୀଙ୍କୁ- ବିଶେଷତଃ କଳାକାର, ବୁଦ୍ଧିଜୀବୀ ବୋଲାଉଥିବା ସୌଖୀନ, ପରାନ୍ନପୁଷ୍ଟ, ମଲାଙ୍ଗ ସଂପ୍ରଦାୟକୁ । ବୃଥା ଅଭିମାନ କରି ଖାଲି ଗୋଡ ଲମ୍ବେଇ, ସରକାର ଆମକୁ



Digitized by srujanika@gmail.com

ପଚାଗ୍ରୁ ନାହାନ୍ତି ବୋଲି ଗୁଡାଏ ଶସ୍ତା କଥା କହି, ଏତେ କିନ୍ତୁ ସରକାରଙ୍କୁ ପଦେ ପଦେ ଠକି ଯେଉଁମାନେ ହାତ ସଫେଇ ହାତ ଚିକ୍‌କଣ କରନ୍ତି, ସେମାନଙ୍କ କଥା ପକାଇ ସେ ମହା ବିରକ୍ତି ହୁଅନ୍ତି । ଅତି ମାତ୍ରାରେ ବିଚଳିତ ବି ହୋଇପଡନ୍ତି । ମୁଁ ତାଙ୍କୁ ସଚେତନ କରାଇ ଦିଏ । କାରଣ ସେ ସେତେବେଳେ ଥିଲେ ପୌର ଉନ୍ନୟନ ବିଭାଗର ଅନୁଶାସନ ସଚିବ, ଅଣ୍ଡର ସେକ୍ରେଟାରୀ ।

ସେ ଖେଙ୍କି ଉଠି କହନ୍ତି- ରଖ ହୋ ତମର ଅଣ୍ଡର ସେକ୍ରେଟାରୀ କି ଆବଭ୍ ସେକ୍ରେଟାରୀ । କିଏ ଦେଶଟାକୁ ଏମିତି ଏମିତି କରି ଧୋଇ ଶୁଖାଇ ଖାଇଗଲେ ପଂଝାଏ ଲୋକେ । ବାଁ, ଡାଁ ବଡେଇ ଜାତିଟାକୁ ଗିଳି ଦେଲେଣି । ହୋ ହୋ... ହେ ଭଗବାନ ଭଗବାନ ।

ଆରେ ହୋ ନୀଳମଣି ଭଗବାନ ବି କଣ କିଛି ଶୁଣୁଛି ନା ଜାଣିଛି ନା ବୁଝିଛି । ସେ ବି ସେମିତି ଏବେ ଲୁଚି ଯାଇଛି । ଠିକ୍ ତମେ ଲେଖିଛ ନୀଳମଣି- ଦାରୁଭୂତସ୍ୟ ହିଂ ହିଂ ବୃତ୍ତାନ୍ତ । ସେଇଠୁ ପୁଣି ଗଡି ଚାଲେ ଭଗବାନଙ୍କ ଉପରେ ନାନା ବୌଦ୍ଧିକ, ତାତ୍ତ୍ୱିକ ଆଲୋଚନା ମାନ । ତାଙ୍କର ଛଫୁଟ ଲମ୍ବର ଦୀର୍ଘ, ବଳିଷ୍ଠ ଦେହ ଥରି ଥରି ଉଠେ । କଣ୍ଠରେ ବେଳେବେଳେ କଇଁ କଇଁ ହୋଇ ଉଠେ- ଆଖିରୁ ବାହାରି ପଡେ ଧାର ଧାର ଲୁହ । ପୁଣି ସେ କହନ୍ତି- ନା... ନା... ଭଗବାନ ଏ ସବୁ ଭିତରେ ନାହାନ୍ତି - ନାହାନ୍ତି ଯୁକ୍ତି ତର୍କ, ଆଲୋଚନା, ସମାଲୋଚନାର ଛିଣ୍ଡା, ଅଛିଣ୍ଡା ଗୋଲକ ଧନ୍ଦା ଭିତରେ । ସେସେ ଅଛନ୍ତି ସରଳ, ନିରୀହ ଚାଷୀଟିର ଦୟାର୍ଦ୍ର, କୋମଳ ଅନ୍ତର ଭିତରେ । ଭିକ ମାଗନ୍ତା ପିଲାଟିର ଅସହାୟ ନିର୍ବୋଧ ନିରୀହ ଆଖି ଭିତରେ । ଦହି ବିକୁଥିବା ସରଳ ମତି ଗୋପ ଗଉଡୁଣୀଙ୍କ ମେଳରେ । ଗପି ଗପି ଆସି ସେ ଲମ୍ବ ହୋଇ ପଡିଯାନ୍ତି ତାଙ୍କ ବୈଠକ ଖାନା (ସେ କହନ୍ତି ଦାଣ୍ଡଘର)ର ଛୋଟ ଖଟିଆଟା ଉପରେ ।

ତାପରେ ସେ ଉଚ୍ଚ ପାଟିରେ ଖୁବ୍ ତରତରରେ ଡାକ ଛାଡନ୍ତି- ଆରେ ହେ, ଶଙ୍କରୀ ହେ ମାମିନା, (ଯଥାକ୍ରମେ ବଡ ଓ ସାନ ଝିଅ) ଆରେ ଚା’ ଆଣ-ଚା’ । ହଁ ପାନ ଦି, ଚାରିଖଣ୍ଡ ଚଞ୍ଚଳ ପଠା । ଆରେ ଆଣିଲ- କଣ ସବୁ ଏତେବେଳ ଯାଏ କରୁଛମ ନୀଳମଣି ବାବୁ କହନ୍ତି- କଣ ବଡଭାଇ, ତମ ପାଟିରୁ କଥା ବା ଅର୍ଡର ବାହାରୁ ନ ବାହାରୁଣୁ, ଯାହା ଚାହିଁବ ସବୁ ଆସି ହାଜର ହୋଇଯିବ । ପୁଣି ସେ ଡାକ ଛାଡନ୍ତି - ଆରେ ହେ ଶଙ୍କରୀ, ହେ ମାମୀନା.... ।

ଏମିତି ସବୁ କେତେ କଥା । ସବୁଦିନେ- ସବୁ ସକାଳେ- ସବୁ ସଂଧ୍ୟାରେ - ସବୁ ରାତି ଦଶଟା କି ଏଗାରଟା ଯାଏ । ଚାକିରି ତଥା ଶେଷ ଜୀବନର ପ୍ରାୟ



Digitized by srujanika@gmail.com

ପାଞ୍ଚବର୍ଷ ପର୍ଯ୍ୟନ୍ତ ସେ ଏଇ ରାଜଧାନୀ ଭୁବନେଶ୍ୱରରେ ରହୁଥିଲେ । କ୍ୱାଟରସ୍ ପାଇଥିଲେ ଅଶୋକ ନଗର (ଦୁଇ ନମ୍ବର ଇଉନିଟ୍)ରେ । ଠିକ୍ ତାଙ୍କ ଘର ପଛକୁ ଥିଲା ମହାପାତ୍ର ନୀଳମଣି ସାହୁଙ୍କ କ୍ୱାଟରସ୍ । ମୁଁ ଥାଏ, (ଏବେ ବି ଅଛି) ଖାରବେଳ ନଗର ବା ଇଉନିଟ୍ ନମ୍ବର ତିନିରେ । ମୋ ବସାକୁ ତାଙ୍କ ବସା ଅଳ୍ପବାଟ । ସବୁ ଦିନେ ମୁଁ ବି, ଅନ୍ତତଃ ଥରେ ସେମାନଙ୍କ ପାଖକୁ ନ ଗଲେ ନ ଚଳେ । ବାମା ବାବୁଙ୍କ ଘର ଥିଲା ଆମର ଖଟ୍‌ଟି/ଆଡ୍‌ଡା ଜାଗା । କି ଖରା, କି ବର୍ଷା, କି ଶୀତ, କି ବସନ୍ତ ସବୁଦିନ ସକାଳେ ଆମେ ବୁଲି ଯାଉ ରାଜଧାନୀର ବିଭିନ୍ନ ରାସ୍ତାରେ, ବିଭିନ୍ନ ଇଉନିଟ୍ ଦେଇ । ସାମାନ୍ୟ ଖଣ୍ଡେ ଛୋଟ ଓଣ ବେହେରେଇ ହୋଇପଡି, ଦେହରେ ଖଣ୍ଡେ ହାତ ବାଲା ଗେଂଜି ଗଳେଇ ଦେଇ ସେ ଖୁବ୍‌ଶୀଘ୍ର ବାହାରି ପଡନ୍ତି । ଅତି ଜୋରରେ ପାଦ ପକାନ୍ତି ଆଗକୁ... ଆଗକୁ । ମନେ ହୁଏ ରାତିଯାକ ସେ ଯେପରି ପ୍ରତୀକ୍ଷା କରୁଥିଲେ ପ୍ରଭାତର ଏଇ ଶୁଭ ଆଗମନୀକୁ ।

ବେଳେବେଳେ ନୀଳମଣିବାବୁ କହନ୍ତି - ବଡଭାଇ, ଖଣ୍ଡେ ସାର୍ଟ, ଫାର୍ଟ ଦେହରେ ଗଳେଇ ଦେଇ ଆସୁନା, ଖାଲି ଏମିତି ଫୁଙ୍ଗୁଳାଟାରେ, ଏ ଶୀତଟାରେ ବାହାରି ପଡିଲ କାହିଁକି ? ସେ କୁହନ୍ତି- ବୁଝିଲ ନୀଳମଣି, କିଏ ପଚାରେ ହୋ, ଆମର ଏ ପ୍ୟାଣ୍ଟ, ସାର୍ଟକୁ, ଏ ଛତା ଯୋତାକୁ ! ! ସେ ଗୁଡାକୁ ଯେଉଁମାନେ ଦେଖେଇ ହେଉଛନ୍ତି ଦେଖାନ୍ତୁ । ଆମର କିଛି କହିବାର ନାହିଁ । କେବଳ ଲୁଗାପଟା ସଫା ରହିଲେ ହେଲା । ଧଳା ରଙ୍ଗର ଲୁଗାପଟା ଛଡା ସେ ଅନ୍ୟ କୌଣସି ରଙ୍ଗର ଲୁଗାପଟା ବ୍ୟବହାର କରୁନଥିଲେ । କେବଳ ଅଫିସକୁ ଛାଡି ଦେଲେ, ଅନ୍ୟ ସବୁବେଳେ ଖଦଡି ଧୋତି ଓ ପଞ୍ଜାବି ବ୍ୟବହାର କରୁଥିଲେ ।

ବାମାବାବୁଙ୍କ ସଙ୍ଗେ ମୋର ପରିଚୟ ବହୁତ ଦିନରୁ । ସନ ୧୯୫୧ ମସିହାର କଥା । ....ମୁଁ ସେତେବେଳେ ରେଭେନ୍‌ସା କଲେଜ ତୃତୀୟ ବାର୍ଷିକ କଳାର ଛାତ୍ର । ସେହି ସମୟରେ ଭାରତୀୟ ଭାଷା ମାନଙ୍କ ମଧ୍ୟରେ ଏକ ଅଖିଳ ଭାରତୀୟ କ୍ଷୁଦ୍ରଗଳ୍ପ ପ୍ରତିଯୋଗିତା ଅନୁଷ୍ଠିତ ହୋଇଥିଲା । ସେଇ ପ୍ରତିଯୋଗିତାରେ ପ୍ରଜାତନ୍ତ୍ର ପ୍ରଚାର ସମିତି' ଓଡ଼ିଆ ଗଳ୍ପ ପ୍ରତିଯୋଗିତାର ଦାୟିତ୍ୱ ଗ୍ରହଣ କରିଥିଲା । ବାମାବାବୁଙ୍କ "ମହାଯୁଦ୍ଧ", ଗଳ୍ପ ଉକ୍ତ ପ୍ରତିଯୋଗିତାରେ ଦ୍ୱିତୀୟ ସ୍ଥାନ ଅଧିକାର କରିଥିଲା ଓ ମୋ "ଲୁହର ଶିଶୁ" ଗଳ୍ପର ସ୍ଥାନ ଥିଲା ତୃତୀୟ । "ବିଷୁବ ମିଳନ"ରେ ପୁରସ୍କାର ଗ୍ରହଣ କରିବା ଅବସରରେ ସେ ମୋତେ କୁଣ୍ଢେଇ



Digitized by srujanika@gmail.com

ପକାଇଲେ ଆଉ ହସି ହସି ବଡ ପାଟିରେ ଡାକ ଛାଡିଲେ- ହେ ! ସୁରବାବୁ (ସୁରେନ୍ଦ୍ର ମହାନ୍ତି) ଶୁଣ, ଶୁଣ । ଆରେ ଏଇରେ ରାଜୁ ମହାନ୍ତି- "ଲୁହର ଶିଶୁ" ଗଳ୍ପର ଲେଖକ । ତାପରେ ତାଙ୍କର ଯେଉଁ ଅନାବିଳ ସ୍ନେହ ଆଉ ଆଦରନା, ସେ ମୋ ଜୀବନର ସମ୍ବଳ ହୋଇ ରହିଛି । ସେଇ ଦିନଠୁ ମୁଁ ତାଙ୍କର ସାନଭାଇ- ଅତି ଆଦରର ସାନଭାଇ ।

ସେ ଥିଲେ ଅତି ଉଚ୍ଚକୋଟୀର ସରଳ, ନିର୍ମାୟା ମଣିଷଟିଏ, ଦୟାବନ୍ତ ଥିଲା ତାଙ୍କର ହୃଦୟ । ଭାବଗଂଭୀର, ମର୍ଯ୍ୟାଦାବନ୍ତ ଥିଲା ତାଙ୍କର ବ୍ୟକ୍ତିତ୍ୱ । ପ୍ରାଣ ସତ୍ତା ଥିଲା ଅତି ରସାଳ- ଅତି ଉଦାର ।

ଚାଷୀ ପିଲାଟିଏ ଅତଳତଳ ମନ ଗହିର, ପରିବା ବିକାଳିଟିର ଛଳ ଛଳ ଦୁଇ ଆଖି, ସେ କେଉଁ ମଫସଲି ବୁଢିଟିର ଛିଣ୍ଡା, ମଇଳା ଅଖା, ରାମୁଲ ମୋଚିର ଟୁକୁରା ଟୁକୁରା ଚମଡା ଆଉ ଚଟିସିଆଁ ଡାମ୍ଫଣ, କେଉଁ ବାଉରାଣୀ ଝିଅଟିର ଗେଣ୍ଡା ସାଉଁଟିବା କଥା ଆଉ ବ୍ୟଥା, ବଟ ମହାପୁରୁଷର ନିର୍ଲିପ୍ତ, ଉଦାସ, ଭାବ ଭଙ୍ଗୀର ରୂପ, କିମ୍ବା ସରଳ, ନିର୍ବୋଧ ଶିଶୁଟି ପାଖରେ ବିଛାଟିଏ ଖେଳିବାର ଦୃଶ୍ୟ ପର୍ଯ୍ୟନ୍ତ ବ୍ୟାପି ଯାଇଥିଲା ତାଙ୍କର ଅନୁଭୁତିର ସୀମା ଆଉ ସରହଦ, ଅନ୍ତର୍ଦୃଷ୍ଟି । ଅତି ମହାନ୍, ଖୁବ୍ ଟିପ୍‌ଟାପ୍ ଆଇଡିଆ ତାଙ୍କର ସମସ୍ତ ଗଳ୍ପ, ରମ୍ୟରଚନା ଓ କଳାକୃତିରେ ପ୍ରତିଫଳିତ ।

ଅଥଚ କୌଣସି ସଂକୋଚ ନ ରଖି, ଅତି ଖୋଲା ଖୋଲି ଭାବରେ ସେ କହୁଥିଲେ- କାହିଁ ନୀଳମଣି, ତମପରି "ବାଘର ବିଳାପ" ବା ସୁରପରି "ବାସିମଡା" କିମ୍ବା ରାଜୁପରି "ଆହାର ଓ ଆତ୍ମା" ଗଳ୍ପ କଣ ମୁଁ ଲେଖି ପାରିଲି ? ଆରେ, କି ସୁନ୍ଦର ଭାଷା କି ଚମତ୍କାର ଶବ୍ଦ ଯୋଜନା ତମ ମାନଙ୍କର ସତେ ।

ମତେ କଣ ମୋତେ ସେ ସବୁ ଆସୁଛି ନା ଫାସୁଛି । ଯେତେ ଚେଷ୍ଟା କଲେ ଦେଖୁନା, କେମିତି ହୋଇଗଲା ଚନ୍ଦ୍ର ଓ ଚମ୍ପା ବହିଟା । (ଯଦିଓ ଚନ୍ଦ୍ର ଓ ଚମ୍ପା ଅତି ଉଚ୍ଚ କୋଟିର ଉପନ୍ୟାସ) । ସେ ଶଳା ଶଙ୍କରୀମା ନୀଳମଣି, ତମ ଗପ ପଢୁଛି, ରାଜୁବାବୁର "ପାଲାଣର କ୍ରନ୍ଦନ" ବହିକୁ ପିଇଦେଇ ଯାଉଛି, ଅଥଚ ମୁଁ ଯେତେ କହିଲେ "ମହାପୁରୁଷ ବାଗ" କି "ବଟ ମହାପୁରୁଷ", ଦନେଇ ତିଅଣ କି "ଜୀବନ ଓ ଜୀବିକା" କଣ ଟିକିଏ ହେଲେ ଦେଖୁଛି । ଆହା... ହା... କି ସୁନ୍ଦର, ନିଷ୍କପଟ, ଖୋଲା ମଣିଷ ସତେ ନ ଥିଲେ ବାମାଭାଇ ।



Digitized by srujanika@gmail.com

ଉପର ଠାଉରିଆ ଭାବ, ବାହାଦୁରିଆ ଭାଷାର କରାମତି, ଫୁଙ୍ଗୁଳାରିହର ଚମକେଇଲା ବର୍ଣ୍ଣନା ସେ ମୋଟେ ସହି ପାରୁନଥିଲେ । ସେ ସବୁ କଥା ପଡିଲେ ବାମାମିତ୍ର ବାନ୍ତି କରି ପକାଉଥିଲେ ।

ସେଇ ଅଣଓସାରିଆ ଛୋଟିଆ ଘର ଖଣ୍ଡିକ । ତା ଭିତରେ ଅତି ଛୋଟ, ଗୋଟେ ଅଢ଼େଇ ଫୁଟ ଓସାରର ଖଟିଆ ଖଣ୍ଡେ । ବିଛଣା ତା ଉପରେ ପଡିଲେ ହେଲା, ନ ହେଲା ନାହିଁ । ସେ ଲାଗି ଭ୍ରୂକ୍ଷେପ ନାହିଁ । ସେଇ ଖଟିଆଟା ଉପରେ ସବୁବେଳେ ପଡିରହି (ଅବସର ଗ୍ରହଣ କରିବା ପରେ) ସେ ସର୍ବଦା ଭାବୁଥିଲେ ବ୍ୟାସ, ବାଲ୍ମିକୀ, ଟଲଷ୍ଟୟ, ଟଏନ୍‌ବି, କାଳିଦାସ, ଭବଭୂତି, ପରମହଂସ, ବିବେକାନନ୍ଦ, ମହାତ୍ମା ଗାନ୍ଧୀ, ସାରଳା ଦାସ, ଉପେନ୍ଦ୍ର ଭଞ୍ଜ ପ୍ରଭୃତିଙ୍କ କଥା । ଅତି ଦୁଃଖରେ ସେ କହୁଥିଲେ, ଆରେ ସେ ସବୁକଥା କାହିଁ ପକାଇଛ ହୋ ରାଜ୍ଜୁ, ନୀଳମଣି- ଆମେ ଭଲା ସେ ବୁଢ଼ା ଫକୀର ମୋହ କି ବୈଷ୍ଣବ ପାଣି ଭଳିଆ ନିର୍ଭୟରେ କଲମ ଚଳେଇ ପାରୁଛୁ ? "ବନା ମା ହ'ନା ଥରେ ହାମ ଆଡକୁ" ବା "ରାଜାଘରେ ଚାକିରୀ ଖଟି, ବରଷକେ ଦି'ଦିନ ଛୁଟି' ଭଳି ରସରସିଆ ସଙ୍ଗୀତ ପଦୁଟିଏ ଲେଖି ପାରୁଛୁ ? ଏମିତିକା ଧାଡିଏ ଲେଖିବାକୁ ଆମକୁ ଲାଜ ଲାଗୁଛି । ବଡବଡିଆଙ୍କ ବିରୁଦ୍ଧରେ, ସରକାରଙ୍କ ମନମୁଖୀ କ୍ରିୟାକଳାପ ଉପରେ ଲେଖିବାକୁ ଡର ଲାଗୁଛି ଅଥଚ ପ୍ରତିଷ୍ଠା ବା ସମ୍ମାନ ପାଇବା ପାଇଁ କି ବ୍ୟାକୁଳତା- ଯେତେ ସବୁ ଫନ୍ଦି ଫିକର, ଧରାଧରିର ପାଲା ସତେ !

ଛି... ଛି.... ଛି.... । ଯେତେ ସବୁ ଆମେ ମେଡିଓଙ୍କର, ଫାଙ୍କିବାଜ ପ୍ରତିଷ୍ଠା କାଙ୍ଗାଳ ସାହିତ୍ୟିକର ଦଳ ! ଧନ୍ୟ... ଧନ୍ୟ... ଧନ୍ୟ । ଏଇଥିଲା ତାଙ୍କର ଆଦର୍ଶ ଆଉ ଆଚରଣ – ଚିନ୍ତା ଆଉ କଳ୍ପନା ।

ଶୁଣିବେ ତାଙ୍କର ପଇସାପତ୍ର କମେଇବା କି ପ୍ରତିଷ୍ଠାପାଇବା କଥାରୁ ଟିକିଏ ? ସେତେବେଳକୁ ସେ ଅବସରଗ୍ରହଣ କରି ସାରିଥାନ୍ତି । ଜୀବନର ସେ ଶେଷ ଅଧ୍ୟାୟ । ସରକାରୀ କ୍ୱାଟରସ୍ ଚାଲି ଯାଇଥିଲା । ରହୁଥିଲେ ନ ନମ୍ବର ଫ୍ଲାଟରେ ତାଙ୍କ ଭଣଜାଙ୍କ ଖଣ୍ଡେ ଛୋଟ କ୍ୱାଟସ୍‌ରେ । ବ୍ୟାଧି, ବେମାରି ତାଙ୍କୁ ଚାରିଆଡୁ ଘେରି ଆସୁଥିଲା- ଘେରି ଆସୁଥିଲା ଅଭାବ, ଅନାଟନର କଳା ଛାଇ । ସବୁବେଳେ ସେଇ ଛୋଟ ଖଟିଆ ଖଣ୍ଡକରେ ପଡିରହି ସେ ଭାବୁଥାନ୍ତି ଆଉ ଅଧାବୁଜା ଜୁଳୁଜୁଳୁ ଆଖିରେ କଣ ସବୁ ଖୋଜି ହେଉଥାନ୍ତି । କଣ ସେ ଭାବୁଥାନ୍ତି- କାହାକୁ ବା ସେ ଖୋଜି ହେଉଥାନ୍ତି ! ବ୍ୟାସ କିମ୍ବା ବାଲ୍ମିକିକୁ ? ବିଶିଷ୍ଟ କିମ୍ବା ବିଶ୍ୱାମିତ୍ରଙ୍କୁ ଅଥବା



Digitized by srujanika@gmail.com

ଟଲଷ୍ଟୟ କିମ୍ବା ଟଏ ନ୍‌ବିଙ୍କୁ ! ସ୍ୱାମୀ ବିବେକାନନ୍ଦଙ୍କୁ ନା ଶ୍ରୀ ଅରବିନ୍ଦଙ୍କୁ ? କେଜାଣି କେଜାଣି !!

ଦିନକର କଥା । ନୀଳମଣିବାବୁ କେତେଜଣ ପ୍ରତିଷ୍ଠିତ ସାହିତ୍ୟିକଙ୍କୁ ସଙ୍ଗରେ ଧରି ସେ ବେଳର ମୁଖ୍ୟମନ୍ତ୍ରୀ ଶ୍ରୀମତୀ ନନ୍ଦିନୀ ଶତପଥୀଙ୍କୁ ବାମାଚରଣ ମିତ୍ରଙ୍କ କୃତି ସମ୍ପର୍କରେ ବୁଝାଇ ତାଙ୍କର ଚିକିତ୍ସା ପାଇଁ କିଛି ସରକାରୀ ଅର୍ଥ ମଞ୍ଜୁର କରାଇ ଦେଇ ପାରିଥିଲେ । ଶ୍ରୀ ରମାକାନ୍ତ ରଥ ଥିଲେ ସେତେବେଳେ ମୁଖ୍ୟ ମନ୍ତ୍ରୀଙ୍କ ଶାସନ ସଚିବ । ରମାକାନ୍ତ ବାବୁ ସେ ଦିନ ମୋତେ ସଙ୍ଗରେ ନେଇ ବାମାବାବୁଙ୍କ ପାଖକୁ ଏ ସମ୍ବାଦ ନେଇ ଯାଇଥିଲେ ।

ଏ କଥା ଶୁଣି ବାମାବାବୁ କାବା ହୋଇ ଆମକୁ ଅନାଇ ରହିଲେ । ତାଙ୍କ ଆଖିରୁ ଧାରଧାର ଲୁହ ଗଡି ପଡିଲା । ଶୁଖିଲା ମୁହଁ ଓଦା ହୋଇଗଲା । ଅତି କଷ୍ଟରେ ଛେପ ଢୋକି ସେ କହିଲେ– ରମାକାନ୍ତ ବାବୁ, ତମ ପାଖରେ ଏଥିଲାଗି ମୁଁ ବିଶେଷ କୃତଜ୍ଞ । କିନ୍ତୁ ତମେ ଏ କଲ କଣ ? ମୋପରି ଗୋଟାଏ ସାମାନ୍ୟ ଲୋକ ପାଇଁ କାହିଁକି ଏ ସବୁ କାଣ୍ଡ କାରଖାନା ! ଆରେ, ମୁଁ ତ ସରକାରୀ ଚାକିରୀ କରିଥିଲି– ବର୍ତ୍ତମାନ ପେନ୍‌ସନ୍ ବି ପାଉଛି । ଚଳି ଯାଉଛି କୌଣସି ମତେ । ମୋ ପାଇଁ ଏତେ ବ୍ୟବସ୍ଥା କାହିଁକି ?

ଯେଉଁମାନେ ଦି ଓଳିରେ ମୁଠାଏ ସୁରୁଖୁରୁରେ ଖାଇବାକୁ ନ ପାଇ, ଦେଶପାଇଁ, ଜାତିପାଇଁ, ସାହିତ୍ୟ ଓ ସଂସ୍କୃତି ପାଇଁ ଦାନ କରିଗଲେ ଅଜସ୍ର, ସେମାନଙ୍କ କଥା କଣ ଟିକିଏ ତମଭଳି ହୃଦୟବାନ କବି, ଗାଳ୍ପିକ, ସାହିତ୍ୟିକମାନେ ବି ବୁଝିବ ନାହିଁ ? ଅନ୍ତତଃ ସେମାନଙ୍କ କଥା ଟିକିଏ ଭାବ ଭାଇମାନେ ।

ଏ ଟଙ୍କା ମୁଁ ରଖି ପାରିବି ନାହିଁ ରମାକାନ୍ତବାବୁ– ପାଇବା ପାଇଁ ହକଦାର ବି ହୋଇନାହିଁ । ସତ କହିବାକୁ ଗଲେ ଯଦି ଏ ଟଙ୍କା ମୁଁ ଛୁଇଁବି ତେବେ ଆଉ ବେଶିଦିନ ବଞ୍ଚି ପାରିବି ନାହିଁ । ମୋ ସୁନାଭାଇଟି ମାନେ ପରା, ତମେମାନେ ଫେରି ଯାଅ– କିଛି ଆଉ ଅଭାବ ନାହିଁ ।

ତରବରରେ ଆମେ ସେଦିନ ଫେରି ଆସିଥିଲୁ– ଫେରିବାକୁ ବାଧ ହୋଇଥିଲୁ । ତ୍ୟାଗ, ଆଦର୍ଶର ଜୀବନ୍ତ ସ୍ୱରୂପ ମୋର ସାରା ଅନ୍ତରକୁ, ସମସ୍ତ ଚେତନାକୁ ଥରାଇ ଦେଇଥିଲା, ଯାହା ଫଳରେ କି ଅନୁପ୍ରାଣିତ ହୋଇ ପରେ ଲେଖିଥିଲି "ଉପକଥାର ନାୟକ" ଗଳ୍ପଟିକୁ ।

କିନ୍ତୁ ଅତ୍ୟନ୍ତ ଆଶ୍ଚର୍ଯ୍ୟ ଓ ଗଭୀର ପରିତାପର ବିଷୟ ଏହି ଯେ, ତାର ମାତ୍ର ଦି ଚାରିଦିନପରେ ବାମାବାବୁ ଏ ସଂସାରରୁ ଚିର ବିଦାୟ ନେଇ ଚାଲିଗଲେ । ସେଦିନ



Digitized by srujanika@gmail.com

ଥିଲା ୧୯୫୫ ମସିହା, ଫେବୃୟାରୀ ମାସ ଏକୋଇଶି ତାରିଖ । ବାମାଭାଇ ଚାଲି ଯାଇଛନ୍ତି- ଚାଲି ଯାଇଛି ସେଇ ଅମଳିନ ସ୍ନେହ ଆଉ ସଖ୍ୟ, ଗୁରୁଗମ୍ଭୀର ଭାବଧାରା ଏବଂ ମହନୀୟ ଆଦର୍ଶ ।

ଏବେ ବି ସବୁଦିନେ ସକାଳ ହେଉଛି- ସୂର୍ଯ୍ୟ ଉଉଁଛି । କୁହୁଡି ପଡୁଛି, ମେଘ ବରଷୁଛି, କୋଇଲି ଗାଉଛି, ବଉଳ ଝଗୁଛି । ହେଲେ ସେଇ ସବୁ ସକାଳର ସଜୀବତା ନାହିଁ କି ନାହିଁ ସେ ସରସତା । ନାହିଁ ବି ସେ ରସାଳ ଜୀବନର ଅଫୁରନ୍ତ ପ୍ରାଣ ପ୍ରାଚୁର୍ଯ୍ୟ ମାନବୀୟ ଭାବଧାରା । ବାମାଭାଇ ଚାଲି ଯାଇଛନ୍ତି- ଚାଲି ଯାଇଛି ସେ ସକାଳ । ଆମ ପାଇଁ ଅପେକ୍ଷା କରି ରହିଛି କେବଳ ଅସଂଖ୍ୟ ଉଦାସୀନ ଗୈରିକ ଗୋଧୂଳୀ ।

ପତ୍ରିକା - 'ଇସ୍ତାହାର' ସଂଖ୍ୟା ୩୭
ମାର୍ଚ୍ଚ ୧୯୮୭





Digitized by srujanika@gmail.com

# ବାମାଚରଣ ମିତ୍ର ସ୍ମରଣେ

ଅଖିଳମୋହନ ପଟ୍ଟନାୟକ

ବାମାଚରଣ ମିତ୍ରଙ୍କ ସହିତ ମୋର ପରିଚୟ ବେଶୀ ଦିନର ନୁହେଁ । ସେତେବେଳେ ସେ ଭୁବନେଶ୍ୱରରେ ରହୁଥାଆନ୍ତି ଓ ତାଙ୍କର ସରକାରୀ ଚାକିରିରୁ କାର୍ଯ୍ୟକାଳ ପୂରିବାକୁ ଆଉ ଅଳ୍ପ କିଛିଦିନ ଥାଏ । ଭୁବନେଶ୍ୱରରେ ଯେଉଁ ଅଳ୍ପ କେତେଜଣ ସାହିତ୍ୟ ରସିକ ଥାଆନ୍ତି ପ୍ରତିଦିନ ସନ୍ଧ୍ୟାରେ ବାମାବାବୁଙ୍କ ଘରେ ଏକତ୍ରିତ ହେବା ସେମାନଙ୍କର ପ୍ରାୟ ଅଭ୍ୟାସ ହୋଇଯାଇଥାଏ । ସେହି ପ୍ରାତ୍ୟହିକ ବନ୍ଧୁମିଳନ ଓ ସାହିତ୍ୟିକ ଆଡ୍‌ଡାରେ ଯାହାସବୁ ଆଲୋଚିତ ହୋଇଥାଏ, ମୁଁ ମଝିରେ ମଝିରେ ଅନ୍ୟ ବନ୍ଧୁମାନଙ୍କ ଜରିଆରେ ତାହାର ଧାରା ବିବରଣୀ ଶୁଣିବାକୁ ପାଇଥାଏ । ସେହି ଆଡ୍‌ଡାରେ ମୋର ଅନୁପସ୍ଥିତିକୁ ଏକ ସାଧାରଣ ଭାବରେ ଗ୍ରହଣ କରିନିଆଯାଇଥାଏ । ଶୁଣିଛି, ବାମାବାବୁ କୁହନ୍ତି, ଅବସରପ୍ରାପ୍ତ ଚାକିରିଆ, ବାତଗ୍ରସ୍ତ ଅଧାପକ ପ୍ରଭୃତିଙ୍କ ସହିତ ଆଲୋଚନା କରିବାକୁ ସମସ୍ତେ ଖୁବ୍ ଉତ୍କଣ୍ଠିତ ଏକଥା ଆଶା କରିବା ଉଚିତ୍ ନୁହେଁ ।

ଥରେ ମୋର ଗୋଟିଏ ଗପ ବାମାବାବୁଙ୍କୁ ଖୁବ୍ ଭଲ ଲାଗିଥିଲା । ତେଣୁ ସେ ଟେଲିଫୋନ୍ ଯୋଗେ ମତେ ସାଧୁବାଦ ଜଣାଇବାକୁ ଯାଇ କହିଥିଲେ ଯେ



Digitized by srujanika@gmail.com

ଆପଣଙ୍କ ସହିତ ମୋର ଚାକ୍ଷୁଷ ପରିଚୟ ନାହିଁ ସତ, କିନ୍ତୁ ମୋର କେଜାଣି କାହିଁକି, ମୁଁ ଆପଣଙ୍କୁ ଯେପରି ଅନେକ ଦିନରୁ ଜାଣିଚି । ଏହା ବାମାବାବୁଙ୍କ ଚରିତ୍ରର ଅନ୍ୟ ଏକ ମହନୀୟ ଦିଗଥିଲା । ଯେକୌଣସି ଲେଖକର ଲେଖା ଭଲ ଲାଗିଲେ, ସେ ଅକୁଣ୍ଠିତ ଭାବରେ ପ୍ରଶଂସା କରିବାକୁ ପଶ୍ଚାଦ୍‌ପଦ ହେଉ ନଥିଲେ । ଅଧୁନା ଓଡ଼ିଆ ସାହିତ୍ୟରେ ଓ ସାହିତ୍ୟିକମାନଙ୍କ ମହଲରେ ଏହି ଗୁଣଟି ଅତିମାତ୍ରାରେ ଦୁର୍ଲ୍ଲଭ ।

ମୁଁ ଅନେକଥର ତାଙ୍କ ଘରକୁ ଯାଇଛି । ବହୁ କାର୍ଯ୍ୟବ୍ୟସ୍ତତା ଭିତରେ ତାଙ୍କର ଗୃହିଣୀ ପରସ୍ତକୁ ପରସ୍ତ ଚା' ଦେଇ ଚାଲନ୍ତି ଆଉ ସାହିତ୍ୟିକ ଆଡ୍‌ଡା ଧୀରେ ଧୀରେ ନିଜକୁ ଜମେଇନିଏ । ସେ ଆଡ୍‌ଡାର ପରିସମାପ୍ତି କେବେ ଜହ୍ନ ରାତିରେ ଖଣ୍ଡିଗିରି କିମ୍ବା ଧଉଳିଗିରିରେ ଜ୍ୟୋସ୍ନାବିହାର କରି, କେବେ କେବେ ହେଉଛି ସାଶ୍ରୁ ଲୋଚନରେ ଗଭୀର ଆତ୍ମସମୀକ୍ଷା, ଆହା ! ଆମେ ପାଇଲେନାହିଁ - ନାଇଲେନାହିଁ । ତାଙ୍କୁ ପାଇବା କ'ଣ ଏତେ ସହଜ ? ବାହ୍ୟ ପରିପାଟୀ କିଛି ନଥିଲେ ମଧ ବାମାବାବୁ ଆନ୍ତରିକ ଭାବରେ ଜଣେ ବୈଷ୍ଣବ ଥିଲେ । ବହୁବାର ଦେଖିଛି, କଥା କହୁ କହୁ ସେ ତତ୍କାଳିକ ଅବସ୍ଥା ସମ୍ପୂର୍ଣ୍ଣ ବିସ୍ମରଣ ହୋଇ କୃଷ୍ଣଭାବରେ ନିମଜ୍ଜିତ ହୋଇଯାଆନ୍ତି । ସେତେବେଳେ ସେ ଆଉ ପରିହାସପ୍ରିୟ, ଅମାୟିକ ବାମାବାବୁ ନୁହନ୍ତି, ସେ ଯେପରି ଏଇ ମରଦେହର ଶୃଙ୍ଖଳ ଭିତରେ ଅତି ଆକୁଳ ହୋଇ କୃଷ୍ଣଙ୍କୁ ଖୋଜୁଛନ୍ତି । ଭଗବତ୍ ପ୍ରେମର କୌଣସି ବାହ୍ୟ ବିକାର ତାଙ୍କଠାରେ ନଥିଲା ଏବଂ ବେଳେ ବେଳେ ସେ ମଧ କହୁଥିଲେ । ଚିତା ଚଇତନିଆଙ୍କ ଭିତରେ କେହି କେହି ସତ୍‌ଲୋକ ଥାଇପାରନ୍ତି, କିନ୍ତୁ ଅଧିକାଂଶ ଫାଙ୍କା ।

କାଲିପରି ମନେପଡୁଛି । ଚାକିରିରୁ ଅବସର ନେଲାପରେ ଦିନେ ଚକ୍‌ଚକ୍ କୋର୍ଟ ପ୍ୟାଣ୍ଟ ପିନ୍ଧି ବାର୍ ଆସୋସିଏସନ୍‌ରେ ହାଜରା ତାଙ୍କର ଓକିଲାତିରେ ପ୍ରଥମ ଦିନ । ମୁଁ ଖୁବ୍ ଖୁସି ହୋଇଗଲି । ଓକିଲ ଜୀବନରେ କାମ ଅପେକ୍ଷା ପ୍ରତୀକ୍ଷା ବେଶି । ସେଇ ସମୟତକ ଗପ କରି କଟିଯିବ ବୋଲି ମୁଁ ବାମାବାବୁଙ୍କୁ ଖୁବ୍ ଆଗ୍ରହରେ କହିଲି, ସାଙ୍ଗେ ସାଙ୍ଗେ ତାଙ୍କଠାରୁ କୌତୁକିଆ ଜବାବ ଆସିଲା, "ଆରେ ମୋର ତ ଅନେକ ବ୍ରିଫ୍, ମୋର ତମ ସାଙ୍ଗେ ଗପ କରିବାକୁ ସମୟ କାହିଁ ?" ନିଜକୁ ଅକୃପଣ ଭାବରେ ଥଟ୍ଟା କରିବା, ବ୍ୟଙ୍ଗ କରିବାରେ ସେ ଥିଲେ ଜଣେ ଓସ୍ତାଦ୍ ।



Digitized by srujanika@gmail.com

ନିଜେ ଭଲଲୋକ ନ ହେଲେ ନିଜର 'ମୁଁ' ପଣିଆରୁ ଅନେକାଂଶରେ ମୁକ୍ତ ନ ହେଲେ ନିଜକୁ ଥଟ୍ଟା କରିବା ସମ୍ଭବ ନୁହେଁ । ମୋର ନିଜର କିଛି କିଛି ବ୍ୟଙ୍ଗ ରଚନାର ବାମାବାବୁ ଅତ୍ୟନ୍ତ କଟୁ ସମାଲୋଚକ ଥିଲେ । ସେ କହୁଥିଲେ, ତମର ଶ୍ଳେଷ ଅତ୍ୟନ୍ତ କଟୁ । ଅନ୍ୟ ମନରେ କଷ୍ଟ ଦେଇ ବ୍ୟଙ୍ଗ ରଚନା ଲେଖାଯାଏନା ।

ବାମାବାବୁଙ୍କର ଅନେକ କ୍ଷୁଦ୍ରଗଳ୍ପ ସଂକଳନ ଓ କିଛି ଉପନ୍ୟାସ ପ୍ରକାଶ ପାଇଛି । ଏ ଲେଖା ଜରିଆରେ ମୁଁ ତାଙ୍କ ଲିଖିତ ପୁସ୍ତକର ମୂଲ୍ୟାୟନ କରିବାକୁ ଚାହୁଁନାହିଁ, କିନ୍ତୁ ଏତିକି କହିଲେ ଯଥେଷ୍ଟ ହେବ ଗତ କୋଡିଏ ବର୍ଷ ଧରି ଯେଉଁ ମୁଷ୍ଟିମେୟ ଲେଖକମାନଙ୍କ ଦ୍ୱାରା ଓଡ଼ିଆ ସାହିତ୍ୟ ସମୃଦ୍ଧ ହୋଇଛି ସେ ତନ୍ମଧ୍ୟରୁ ଥିଲେ ଅନ୍ୟତମ । ସେ ସମାଜତତ୍ତ୍ୱ, ଇତିହାସ ଓ ସାହିତ୍ୟ ଉପରେ ଏତେ ବିସ୍ତୃତ ଭାବରେ ପାଠ କରିଛନ୍ତି ଯେ ମୁଁ ତାଙ୍କ ସହିତ କୌଣସି ବିଷୟରେ ଆଲୋଚନା କରିବାକୁ ଗଲେ ସବୁବେଳେ ସଂକୁଚିତ ହୋଇପଡୁଥିଲି । ଓଡ଼ିଆ, ବଙ୍ଗଳା ଓ ଇଂରାଜୀ ସାହିତ୍ୟ ଅଧ୍ୟୟନରେ ତାଙ୍କର ଅସାଧାରଣ ବ୍ୟୁତ୍ପତ୍ତି ଥିଲା । ତାଙ୍କର ପରିଧି ଥିଲା ବେଦ, ଉପନିଷଦଠାରୁ ଏଜରା ପାଉଣ୍ଡ ପର୍ଯ୍ୟନ୍ତ ଏବଂ ଚାର୍ଲି ଚାପ୍‌ଲିନ୍‌ଙ୍କଠାରୁ ଓସ୍ତାଦ ଅମୀର ଖାଁଙ୍କ ପର୍ଯ୍ୟନ୍ତ । ଯଦି ଥରେ ତାଙ୍କୁ ଠିକ୍ ପରିବେଶ ଭିତରେ ଧରିପାରିବ, ତାହାହେଲେ ଇତିହାସ ଭିତରେ ବିଲୁପ୍ତ ହୋଇପଡିଥିବା ବହୁକଥା, ଉପକଥା, ବହୁ କିଂବଦନ୍ତୀର ଜୁଆର ଖୋଲିଯାଏ ।

ତାଙ୍କର ମୃତ୍ୟୁର ଅବ୍ୟବହିତ ପୂର୍ବରୁ ସେ ନବରବି, ଆସନ୍ତାକାଲି ଓ ମାନସରେ ଯେଉଁ ତିନୋଟି ନିବନ୍ଧ ଲେଖିଛନ୍ତି ତାକୁ ଯେଉଁମାନେ ପଢ଼ିଛନ୍ତି ସେମାନେ ତାଙ୍କ ଜ୍ଞାନର ପରିଧି ବିଷୟରେ ସମ୍ୟକ୍ ଧାରଣା କରିପାରିଥିବେ । ସେଇ ତିନୋଟି ନିବନ୍ଧ ସାହିତ୍ୟରେ ଏକ ଦିଗବାରିଣୀ ଖୁଣ୍ଟି ହୋଇ ରହିବ ।

ଅବସର ପ୍ରାପ୍ତି ପରେ ସରକାରୀ ଦପ୍ତରର ଅମଲାତନ୍ତ୍ର ଓ ନାଲିଫିତା ବିଷୟରେ ନିଜର ଅନୁଭୂତିରୁ ଅନେକ ଗଳ୍ପ କହୁଥିଲେ । ଗୋଟିଏ ମୋର ଏବେ ବି ମନେପଡୁଛି । ସେ ଥରେ ଚିଫ୍ ସେକ୍ରେଟାରୀଙ୍କର ପରିଦର୍ଶନ ପାଇଁ ଏକ ଆଗୁଆ ସମୀକ୍ଷକ ଦଳରେ କୌଣସି ପଞ୍ଚାୟତ ସ୍କୁଲ ପରିଦର୍ଶନରେ ଯାଇଥିଲେ । ସେହି ସ୍କୁଲରେ ନିରଳସ ଶୃଙ୍ଖଳିତ ଶିକ୍ଷକ ଓ ଅଧ୍ୟବସାୟୀ ଛାତ୍ରମାନଙ୍କର ସମବେତ ପ୍ରଚେଷ୍ଟାରେ ଏକ ସୁନ୍ଦର ଫୁଲବଗିଚା ହୋଇଥିବା କଥା ସରକାରୀ ନଥିପତ୍ରରେ ଅଛି । କିନ୍ତୁ ପହଞ୍ଚି ଦେଖାଗଲା ସେଠି ଗୋଟିଏ ଘାସ ମଧ୍ୟ ଗଜୁରିନାହିଁ । ତେଣୁ



Digitized by srujanika@gmail.com

ଜଣେ ପ୍ରତ୍ୟୁତ୍ପନ୍ନମତି ସରପଞ୍ଚ କିପରି ଅନ୍ୟ ଜାଗାରୁ ଫୁଲଗଛ ତାଡି, ଡାଳକାଟି ସ୍କୁଲ ପ୍ରାଙ୍ଗଣରେ ପୋତି ତାଙ୍କର ପରିଦର୍ଶନ ସରକାରୀ ନଥିପତ୍ର ଓ ଚିଫ୍ ସେକ୍ରେଟାରୀଙ୍କର ସୁପାରିଶ ଭିତରେ ସମନ୍ୱୟ ରକ୍ଷା କରିଥିଲେ । ତାଙ୍କର କାହା ପ୍ରତି ଆକ୍ରୋଶ ନାହିଁ । କିନ୍ତୁ ସେ ପ୍ରତିପାଦ କରିବାକୁ ଚାହୁଁଥିଲେ ଯେ ଏପରି ମଧ ଧୂଆଁବାଣ ମରାଯାଏ ।

ଶେଷବେଳକୁ ତାଙ୍କର ସ୍ୱାସ୍ଥ୍ୟ ଭାଙ୍ଗିପଡିଥିଲା । କିନ୍ତୁ ମନର ବଳ ଭାଙ୍ଗି ନଥିଲା । ଦୁଇଥର ଡାକ୍ତରଖାନାକୁ ଯିବାକୁ ପଡିଥିଲା । ଏଇ ସମୟ ମଧ୍ୟରେ ମୁଁ ବନ୍ଧୁଗହଣରେ ବହୁଥର ତାଙ୍କୁ ଦେଖିବାକୁ ଯାଇଛି । ଦେଖିଲାମାତ୍ରେ ଝାଡିଝୁଡି ହୋଇ ବସିପଡିବେ ଆଉ ଆରମ୍ଭ ହେଲା ଫେର ସେଇ ଗପ ଡାକ୍ତର ସିଷ୍ଟରଙ୍କ ବାରମ୍ବାର ବାରଣ ସତ୍ତ୍ୱେ ଶେଷବେଳକୁ ତାଙ୍କର ଆର୍ଥିକ ଅନାଟନ ଘଟିଥିଲା । ମତେ କେହି କେହି ପଚାରନ୍ତି ଭୁବନେଶ୍ୱରରେ ପିଅନଠାରୁ ଆରମ୍ଭ କରି ଉଚ୍ଚପଦସ୍ଥ ଅଫିସରମାନେ ଜମି କିଣି ଘର କରିପାରିଥିଲେ ସୁଦ୍ଧା ବାମାବାବୁ ଜଣେ ଉଚ୍ଚପାହ୍ୟାର ଅଫିସର ହିସାବରେ ଅବସର ନେଇ କୁଡିଆ ଖଣ୍ଡେ କରିପାରିଲେନାହିଁ କାହିଁକି ? ମୁଁ ମଧ ସେଇ କଥା ତାଙ୍କୁ ପଚାରିଛି । ସେ କୁହନ୍ତି କେତେ କି ଦରମା, ଆଜିକାଲି ଜିନିଷପତ୍ର ଯାହା ଦୁର୍ମୂଲ୍ୟ ସେଥିରେ ଚଳିବାକୁ ନିଅଣ୍ଟ । ଆଉ ଯେଉଁମାନେ କରିପାରୁଛନ୍ତି ସେମାନେ କରିତ୍କର୍ମା ମୋ ହାତରେ ହେଲାନାହିଁ । ପ୍ରକାଶ କରି ରଖେ ଯେ ବାମାବାବୁଙ୍କର ଦୈନିକ ବିଳାସ ଭିତରେ ଅନ୍ତର୍ଭୁକ୍ତ ଥିଲା କେତେଖଣ୍ଡ ପାନ ଆଉ କେଇ କପ୍ ଚା' । ଆମମାନଙ୍କ ଭିତରେ ଅନେକ ଚତୁର ବ୍ୟକ୍ତି ଅଛନ୍ତି ଯେଉଁମାନେ ସେମାନଙ୍କର ଜୀବନକାଳ ଭିତରେ ଲକ୍ଷ୍ମୀ-ସରସ୍ୱତୀଙ୍କର ଚିରନ୍ତନ ବିବାଦ ଭଞ୍ଜନ କରିପାରିଛନ୍ତି । ସାହିତ୍ୟିକ ଯଶ ଓ ଲକ୍ଷ୍ମୀଙ୍କର ଅକୃପଣ ଦାନ ଦୁଇଟାଯାକ ହାସଲ କରିପାରିଛନ୍ତି । କିନ୍ତୁ ବାମାବାବୁ ଥିଲେ ରୋକ୍‌ଠୋକ୍ ସିଧା ସିଧା କଥା କହିବା ଲୋକ । ସେଥିପାଇଁ କେହି କେହି ଲୋକ ତାଙ୍କୁ ବୋକା ବୋଲି ମଧ କହୁଥିଲେ ।

ବୋକା ବାମାବାବୁ ଆମ ଭିତରେ ଆଉ ନାହାନ୍ତି । କିନ୍ତୁ ସବୁବେଳେ ତାଙ୍କର ଉଜଳ ଆଖି ଆଉ ହସ ହସ ମୁହଁ ଆମମାନଙ୍କର ମନେପଡିଯାଉଛି ।

**ପ୍ରଜାତନ୍ତ୍ର ୨୫.୦୩.୧୯୭୫**





Digitized by srujanika@gmail.com

# ବାମାଚରଣଙ୍କ ସାହିତ୍ୟରେ ମାନବେତର ଚରିତ୍ର

ଡକ୍ଟର ବାବାଜୀଚରଣ ପଟ୍ଟନାୟକ

ଜଗତଭଳି ସାହିତ୍ୟ ଏକ ସୃଷ୍ଟି । ଭାଷାର ଶବ୍ଦକଳା-କାରିଗରି । ଇନ୍ଦ୍ରିୟମାନଙ୍କ ସାହାଯ୍ୟରେ ପ୍ରାଣୀମାନେ ଉପଭୋଗ କରୁଥିବା ରୂପ, ରସ, ବର୍ଣ୍ଣ, ଗନ୍ଧମୟ ଜଗତର ସ୍ରଷ୍ଟା ବ୍ରହ୍ମା । ସେ ପ୍ରଜାପତି, ବିଧାତା ଓ ଧାତା । ସାହିତ୍ୟ ସଂସାରର ଭିଆଣ-କର୍ତ୍ତା କିନ୍ତୁ ବ୍ୟକ୍ତି-ସ୍ରଷ୍ଟା । ଅପାର ସାହିତ୍ୟ ସଂସାରର ସେ ପ୍ରଜାପତି । ନିୟତିକୃତ ନିୟମ ରହିତ ହେଉଛି ସାହିତ୍ୟ-ସ୍ରଷ୍ଟାଙ୍କ ସାହିତ୍ୟ ସଂସାର । ପରିଦୃଶ୍ୟମାନ ଜାଗତିକ ସଂସାର ବ୍ୟକ୍ତି-ସ୍ରଷ୍ଟାଙ୍କ ଆତଯାତର କେନ୍ଦ୍ରସ୍ଥଳ । ତେଣୁ ଜଣେ ବ୍ୟକ୍ତି ଭାବରେ ସେ ଜଗତରେ ଯାହାଯାହା ଦେଖିଥାନ୍ତି, ଅନୁଭବ କରିଥାନ୍ତି ତହିଁ ପ୍ରତି ପ୍ରତିକ୍ରିୟାରୁ ହେଉ କିମ୍ବା ନିଜ ସ୍ୱତନ୍ତ୍ର ସୃଷ୍ଟିର ସଂସାରକୁ ସଜେଇବା ପାଇଁ ହେଉ ସେ ସାହିତ୍ୟ ସ୍ରଷ୍ଟା ଭାବରେ ସେ ସବୁକୁ ନିଜ ଲେଖାରେ ପ୍ରକାଶ କରିଥାନ୍ତି । ବାମାଚରଣଙ୍କ ସାହିତ୍ୟ ପାଇଁ ଏ ନିୟମ ଅନ୍ୟଥା ହେବାର ନୁହେଁ । ବିଶ୍ୱରେ ମଣିଷ ସହିତ ଅନେକ ଜୀବ ବସବାସ କରନ୍ତି । ସେମାନଙ୍କ ମଧ୍ୟରେ ମଣିଷ ଶ୍ରେଷ୍ଠ ହେଇଥିବାରୁ ଅନ୍ୟମାନଙ୍କୁ



Digitized by srujanika@gmail.com

ମାନବେତର କହିବା ଫାବୁଛି । ଅନ୍ୟ ପ୍ରାଣୀମାନଙ୍କଠାରୁ ମଣିଷ ନିଆରା । ଏ ସମ୍ବନ୍ଧରେ ବାମାଚରଣ ମିତ୍ରଙ୍କ ମତ ଉଦ୍ଧାର ଯୋଗ୍ୟ :

"ବ୍ୟକ୍ତିର 'ମୁଁ'ଟି ଆତ୍ମା ଓ ଇନ୍ଦ୍ରିୟ ରୂପକ, ବା ଆଧ୍ୟାତ୍ମିକ ଓ ଆଧିଭୌତିକ ରୂପକ ଦୁଇଟି ଅକ୍ଷ ମଧ୍ୟରେ ଥାଇ ଦୁଇପଟର ଆକର୍ଷଣ ଅନୁଭବ କରେ । ଯେଉଁ ଆଡକୁ 'ମୁଁ' ଯିବାକୁ ଇଚ୍ଛା କରେ ସେଇଆଡେ ଚରମ ବ୍ୟାପ୍ତି ପାଇଁ ସେ ବୁଦ୍ଧିକୁ ଚାଳିତ କରେ । ଏଠାରେ ଦୁଇଟି କଥା ଲକ୍ଷ୍ୟ କରିବାର ଅଛି । ପ୍ରଥମ, ଆଧିଭୌତିକ ଆଡେ ଚରମ ବ୍ୟାପ୍ତି ହେଉଛି ଜଡ଼ତ୍ୱ । ଏ ଅବସ୍ଥାରେ ଜୀବନ ସଂପୂର୍ଣ୍ଣ ଭାବେ ଜଡ଼ର ଅଧୀନ ହେବାରୁ ଅତ୍ୟନ୍ତ ଦୟନୀୟ ଅବସ୍ଥାରେ ଥାଏ, 'ମୁଁ' ମ୍ରିୟମାଣ ହୋଇଯାଏ । ଆଧ୍ୟାତ୍ମିକ ଆଡେ ଚରମ ବ୍ୟାପ୍ତି ହେଉଛି ଦେବତ୍ୱ । ଏ ଅବସ୍ଥାରେ ଜୀବନ ପରମାତ୍ମାର ଅଧୀନ ଏବଂ 'ମୁଁ' ନିଜକୁ ସବୁ ଅବସ୍ଥାରେ ଉର୍ଦ୍ଧ୍ୱରେ ରଖିପାରିଥିବାରୁ (ତ୍ରିଗୁଣାତୀତ ହେବାରୁ) ସଂପୂର୍ଣ୍ଣ ଶକ୍ତିମାନ । ଏ ଦୁଇ ଅବସ୍ଥା ବାହ୍ୟତଃ ଏକାଭଳି ଦିଶନ୍ତି, କିନ୍ତୁ ଗୋଟିଏ ଅଚେତନ ଓ ଅନ୍ୟଟି ସଂପୂର୍ଣ୍ଣ ସଚେତନ ଅବସ୍ଥା । ଦ୍ୱିତୀୟ କଥା ଇନ୍ଦ୍ରିୟର ଆକର୍ଷଣ ସହଜାତ ଏବଂ ତେଣୁ ପ୍ରବଳ ମନେହୁଏ, କିନ୍ତୁ ଆତ୍ମାର ଆକର୍ଷଣ ସାଧନାଦ୍ୱାରା ଜାଣିହୁଏ । ସେ ସାଧନା ହେଉଛି କର୍ମ, ଜ୍ଞାନ, ବିଜ୍ଞାନ, ଭକ୍ତିଦ୍ୱାରା ବୁଦ୍ଧିକୁ ବ୍ୟବସାୟାତ୍ମିକା କରିବା ବା ସ୍ଥିର କରିବା । ଏଇଠି ମଣିଷ ଅନ୍ୟସବୁ ପ୍ରାଣୀଙ୍କଠାରୁ ଭିନ୍ନ ପଶୁର ହିଂସା ବା ଅହିଂସା ନାହିଁ । ପ୍ରକୃତି ତାକୁ ଗୋଟିଏ ମାତ୍ର ଆକର୍ଷଣ ଦେଇଚି- ଇନ୍ଦ୍ରିୟର ଆକର୍ଷଣ । ସେ ତା'ରି ଦାଉରେ ପଡ଼ି ଅସହାୟ । ତା'ର ଆଧ୍ୟାତ୍ମିକ ଆକର୍ଷଣ ନଥିବାରୁ ଦ୍ୱନ୍ଦ୍ୱ ନାହିଁ" । (ମିତ୍ର, ବାମାଚରଣ-କ୍ଷୁଦ୍ରଗଳ୍ପର ମୂଲ୍ୟବୋଧ-ଝଙ୍କାର, ଜୁନ୍ (୧୯୭୦, ପୃ.୨୫୭)

'ମଣିଷ ଅନ୍ୟସବୁ ପ୍ରାଣୀଙ୍କଠାରୁ ଭିନ୍ନ'- ଏଇ କଥାକୁ ଏକଦା ୱାଶିଂଟନ ବିଶ୍ୱବିଦ୍ୟାଳୟର ପରିଦର୍ଶୀ ଦର୍ଶନ ପ୍ରଫେସର ଦାୟିତ୍ୱ ନିର୍ବାହ କରୁଥିବା Susanne K. Langer ଅନେକ ଦାର୍ଶନିକ, ମନସ୍ତତ୍ୱବିତ୍, ସ୍ନାୟୁବିତ୍ ଓ ନୃତତ୍ତ୍ୱବିତ୍ଙ୍କ ମତୋଦ୍ଧାର କରି ଦର୍ଶାଇଛନ୍ତି । Man's conquest of the world undoubtedly rests on the supreme development of his brain, which allows him to synthesize, delay and modify his reactions by the interpolation of symbols in the gaps and confusions of direct experience, and by means of 'Verbal Signs' to add the



Digitized by srujanika@gmail.com

experiences other people to his own. (Philosophy in a New Key-p-29) ଲାଙ୍ଗରଙ୍କ ମତରେ ଭାଷାର ଉନ୍ନତି ହେଉଛି ଶବ୍ଦଘଟିତ ପ୍ରତୀକାବଳୀର କ୍ରମୋନ୍ନତ ସଂଗ୍ରହ ଏବଂ ସଂପ୍ରସାରଣର ଇତିହାସ । ଭାଷାରେ ବ୍ୟବହାର କରାଯାଉଥିବା ଶବ୍ଦକୁ ଅଭିବ୍ୟକ୍ତିର ପ୍ରସିଦ୍ଧ ସାଧନ, ବ୍ୟକ୍ତିର ବିଶିଷ୍ଟ ପ୍ରକୃତି ଯାହା ସାର୍ବଜନୀନ ଏବଂ ଆଚରଣର ସ୍ପୃହଣୀୟ ସରଞ୍ଜାମ ବୋଲି ଉଲ୍ଲେଖ କରିଛନ୍ତି ଲାଙ୍ଗର । ତାଙ୍କ ମତରେ ବାକ୍‌ଶକ୍ତି ହେଉଛି ମଣିଷର ବିଶିଷ୍ଟ ଗୁଣ ବା ସଂକେତ । ତାହା ମଣିଷର ଚିନ୍ତାର ସାଧାରଣ ସୀମା । ଏଇଠୁ ମଣିଷର ପ୍ରତୀକ କର୍ମ ପ୍ରତୀକ କର୍ମ ପ୍ରକ୍ରିୟ ଆରମ୍ଭ ହୋଇଥାଏ । କେବଳ ବାକ୍‌ଶକ୍ତି ଓ ପ୍ରତୀକ ବ୍ୟବହାର ଦୃଷ୍ଟିରୁ ମଣିଷ ପୃଥିବୀର ପ୍ରାଣୀମାନଙ୍କ ମଧ୍ୟରେ ଶ୍ରେଷ୍ଠ ହୋଇପାରିଛି । ତାଙ୍କରି ଭାଷାରେ - Not higher sensitivity, not longer memory or even quicker association sets man so far above other animals that he can regrad them as denizens of lower world : no, it is the power of using symbols the power of speech- that makes him lord of the earth. ବସ୍ତୁତଃ ମଣିଷଠାରୁ ବିଶ୍ୱର ଅନ୍ୟ ପ୍ରାଣୀମାନେ ଇତର । ମଣିଷ କଥା କହି ଜାଣେ, ତାହାକୁ ଭାଷା-ପ୍ରତୀକରେ ଲେଖିପାରେ, ତେଣୁ ସାହିତ୍ୟିକ ହେବାର ଯୋଗ୍ୟତା ଲାଭ କରେ ସେ । କେବଳ ବାମାଚରଣ ମିତ୍ର କାହିଁକି ଯେକୌଣସି ସାହିତ୍ୟିକଙ୍କ କୃତିରେ ମାନବେତର ଚରିତ୍ର ପ୍ରକାଶ ପାଇବା ସ୍ୱାଭାବିକ କଥା । କାହିଁକିନା, ସାହିତ୍ୟ ହେଉଛି ବ୍ୟକ୍ତି ସ୍ରଷ୍ଟାର ଜଗତ ଓ ଜୀବନ ଦୃଷ୍ଟିର ବାଙ୍‌ମୟ କଳା-କର୍ମ । ବାଲ୍ମୀକିଙ୍କ ରାମାୟଣ ଓ ବ୍ୟାସଦେବଙ୍କ ମହାଭାରତର କାହାଣୀ ଯଥାକ୍ରମେ ମାନବେତର ଚରିତ୍ର କ୍ରୌଞ୍ଚର ମୃତ୍ୟୁ ଏବଂ ଦେବଶୁନୀ ସରମାର ଅଭିଶାପରୁ ଆରମ୍ଭ ହୋଇଛି । କେହିକେହି ମଜାରେ କହିଥାନ୍ତି ମହାଭାରତର ଆରମ୍ଭ କୁକୁରର ଅଭିଶାପରୁ ଶେଷ କୁକୁରର ଧର୍ମରୂପ ଗ୍ରହଣରେ । ବୈଦିକ ସାହିତ୍ୟରେ ମେଷ, ଗାଈ, ବୃଷଭ, କୁକୁର (ସରମା), ହଂସ ଆଦି ଚରିତ୍ର ଗାଥାରୀତିରେ ବର୍ଣ୍ଣିତ । ଆତ୍ମା ଓ ପରମାତ୍ମାଙ୍କୁ ମୁଣ୍ଡକୋପନିଷଦରେ ଦୁଇଟି ପକ୍ଷୀ ପ୍ରତୀକରେ ପ୍ରକାଶ କରାଯାଇଛି । ଯେପରି

ଦ୍ୱାସୁପର୍ଣ୍ଣା ସଯୁଜା ସଖାୟା ସମାନଂ ବୃକ୍ଷଂ ପରିଷସ୍ୱଜାତେ
ତୟୋରନ୍ୟପିପ୍ପଳଂ ସ୍ୱାଦ୍ୱତ୍ୟନଶ୍ନନ ନ୍ୟୋଽଭିଚାକଶୀତି । (ତୃତୀୟ ମୁଣ୍ଡକ, ୧ମ ଖଣ୍ଡ, ୧ମ ମନ୍ତ୍ର)



Digitized by srujanika@gmail.com

ଏଭଳି ପ୍ରତୀକକୁ ବାମାଚରଣ ଯେଭଳି ବ୍ୟାଖ୍ୟା କରିଛନ୍ତି ତାହା କେବଳ ତାଙ୍କ ପାଣ୍ଡିତ୍ୟ ସୂଚାଏ ନାହିଁ, ସାହିତ୍ୟ ସମ୍ବନ୍ଧୀୟ ସୂକ୍ଷ୍ମ ବିଚାରବୋଧ ମଧ୍ୟ ଦର୍ଶାଇଥାଏ । ତାଙ୍କ ଭାଷାରେ,

"ସର୍ବଦା ସଂଯୁକ୍ତ ଓ ତୁଲ୍ୟ ନାମ ବିଶିଷ୍ଟ ଦୁଇଟି ପକ୍ଷୀ ଗୋଟିଏ ବୃକ୍ଷକୁ (ଏ ଦେହକୁ) ଆଶ୍ରୟ କରି ଅବସ୍ଥାନ କରୁଛନ୍ତି । ସେମାନଙ୍କ ମଧ୍ୟରୁ ଗୋଟିଏ ବିଚିତ୍ର ଆସ୍ୱାଦଯୁକ୍ତ ଫଳ ଭକ୍ଷଣ କରୁଥାଏ ଓ ଅନ୍ୟଟି ଭକ୍ଷଣ ନ କରି କେବଳ ଦର୍ଶନ କରୁଥାଏ । ଯେଉଁ ପକ୍ଷୀଟି ଫଳ ଖାଉଚି ତା' ନିଜ କଥା ଯଦି କ୍ଷୁଦ୍ରଗଳ୍ପ ହୁଏ, ତେବେ ଅନ୍ୟ ପକ୍ଷୀଟିର କଥା ହେବ ପ୍ରବନ୍ଧ ବା ରମ୍ୟରଚନା । ଯିଏ ଖାଉଛି ତା'ର ଭାବ ସୀମିତ ବା କେନ୍ଦ୍ରୀଭୂତ । ଯିଏ ଦର୍ଶନ କରୁଛି ତା'ରି ଭାବ ତ ଅସୀମ, ଶାଖା ପ୍ରଶାଖା ମେଲି କୁଆଡେ କୁଆଡେ ଚାଲିଯାଏ । ଗୋଟିଏ ଘଟଣାର ଖିଅଧରି କେତେ କଥା ମନକୁ ଆସେ, କେତେ ଘଟଣା ଦିଶିଯାଏ । ଆଧୁନିକ ଉପନ୍ୟାସ ତେଣୁ ନାନା ବିକ୍ଷିପ୍ତ ଚରିତ୍ର ଓ ଘଟଣାର ସମାବେଶ । ସେସବୁ ଘଟଣାର ବା ଚରିତ୍ରର ଆଗପଛ ନାହିଁ, କିମ୍ବା କୌଣସିଟି ସ୍ପଷ୍ଟ ନୁହେଁ । ତେଣୁ ସେସବୁ ଘଟଣାର ଯୋଗସୂତ୍ର ଘାଟନିକ ସ୍ତରରେ ପାଇବେ ନାହିଁ, ସୂକ୍ଷ୍ମ-ମାନସିକ ସ୍ତରରେ ବା ଆଧ୍ୟାତ୍ମିକ ସ୍ତରରେ । ମହାଭାରତର କୌଣସି ଚରିତ୍ର ବା ଘଟଣାକୁ ଭଲ କି ମନ୍ଦ କିଛି କହିହେବ ନାହିଁ, ସବୁ ଅସ୍ପଷ୍ଟ । ମଣିଷ ବି ସେମିତି" । (ଶୋକ ସମ୍ବାଦ- ଏଣୁଷ୍ଟ ତେଣୁଷ୍ଟ- ପୁନଃ ମୁଦ୍ରଣ, ୧୯୭୭, ଗ୍ରନ୍ଥ ମନ୍ଦିର, କଟକ, ପୃ-୭)

ବାମାଚରଣଙ୍କ ସାହିତ୍ୟ ସମ୍ବନ୍ଧରେ ଦୃଷ୍ଟିଭଙ୍ଗୀ, ଚରିତ୍ର ସଂପର୍କରେ ଧାରଣା ଓ ମଣଷ ସମ୍ପର୍କରେ ଅଧ୍ୟୟନର ଫଳାଫଳ ଉଦ୍ଧାର କରାଯାଇଥିବା ତାଙ୍କ ରମ୍ୟରଚନା ଅଂଶରୁ ଜାଣିହୁଏ । ସେ ଜାଣନ୍ତି ମଣିଷ ଅସ୍ପଷ୍ଟ, ଅପୂର୍ଣ୍ଣ, ଅସହାୟ, ଦ୍ୱନ୍ଦ୍ୱାତ୍ମିକ ମାନସିକତାର ସଂଘର୍ଷରେ ନିତ୍ୟ ଜଡ଼ଶଡ଼ । ଏଇଥିପାଇଁ ଜୀବନ ସତ୍ୟର କଷଟିରେ ମଣିଷକୁ ପରୀକ୍ଷା କରୁକରୁ କେତେ ନା କେତେ କଥା ଶୁଣାଇ ଚାଲନ୍ତି ସେ । ତାଙ୍କ ଶୁଣାଇବା ରୀତି ରମ୍ୟ, ଚଟୁଳ; ବ୍ୟବହୃତ ଶବ୍ଦ ଅନେକ ସମୟରେ ତାର୍ଯ୍ୟକ । ଅଧ୍ୟୟନଗତ ଜ୍ଞାନ ଓ ସାଧନାଲବ୍ଧ ଅନୁଭୂତିର ସମନ୍ୱୟ ତାଙ୍କ ସ୍ୱତନ୍ତ୍ର ସାହିତ୍ୟ ଦୃଷ୍ଟିର ନିୟାମକ । ସେ ସାହିତ୍ୟ ଲେଖିଛନ୍ତି; ସବୁଠି ପାଠକକୁ ଶୁଣାଉଥିବାର ଶୈଳୀ ଅନୁଭୂତା ରମ୍ୟାଣୀ ବିକ୍ଷମ୍ ନୁହେଁ ରମ୍ୟାଣୀ ଶ୍ରୁୟତାମ ପ୍ରତି ତାଙ୍କ ସାହିତ୍ୟ ପାଠକମାନଙ୍କୁ ଆହ୍ୱାନ କରେ । ତାହା ତାଙ୍କର ଗଳ୍ପ, ରମ୍ୟରଚନା,



Digitized by srujanika@gmail.com

ଉପନ୍ୟାସ, ଗୁଇନ୍ଦା ସାହିତ୍ୟ, ସାହିତ୍ୟ-ସମାଲୋଚନା ଯାହା ହେଉନା କାହିଁକି । ଆମର ଆଲୋଚ୍ୟ ପ୍ରସଙ୍ଗ ହେଉଛି ତାଙ୍କ ସାହିତ୍ୟରେ ମାନବେତର ଚରିତ୍ର ।

ବାମାଚରଣ ମିତ୍ର ନିଜ ଜୀବନର ଘଟଣାବଳୀକୁ ସଜେଇ ମଜେଇ ଶୁଣେଇବା ରୀତିରେ ପ୍ରକାଶ କରିଥା'ନ୍ତି । 'ଖୋସାମଦି ସପକ୍ଷରେ' ଶୁଣାଉଶୁଣାଉ ଗାଳି ଦେଇ କିଭଳି ଖୋସାମଦ କରାଯାଏ ତାହା ଘର ଆଗରେ ବନ୍ଧାଯାଇଥିବା ଏକ ଗାଈର ଉପଲକ୍ଷଣାରେ ପ୍ରକାଶ କରିଛନ୍ତି । ତାହା ଏହିପରି-

"ଥରେ ଜଣେ ଉପରବାଲା ଗୋଟିଏ ଗାଈ କିଣିଥିଲେ । ଗାଈଟି ବେଶ୍ ଭଲା ତାଙ୍କର ନିମ୍ନସ୍ଥ କର୍ମଚାରୀ ଉପରବାଲାଙ୍କ ଘରେ ପହଞ୍ଚିଥିଲେ, କିଛି ନ ଜାଣିଲା ପରି । ଗାଈଟିକୁ କିଛିକ୍ଷଣ ଚାହିଁ ରହି ହାକିମଙ୍କୁ ଥୋକେ ଗାଳି ଦେଲେ, ଆପଣଙ୍କୁ କିଏ କହିଲା ଏସବୁ କରିବାକୁ ଶୁଣେ ? ଆପଣ ତ ସଂସାର କ୍ଷେତ୍ରରେ ଗୋଟିଏ ନିପଟ ବୋକା ମଣିଷ, ଦରଦାମ କରି ଜାଣନ୍ତି ନାହିଁ କି କାହାରିକି ସନ୍ଦେହ କରନ୍ତି ନାହିଁ । ଆପଣଙ୍କ ସ୍ତ୍ରୀ ନ ହେଲେ ତ ଦଣ୍ଡେ ଚଳି ପାରନ୍ତି ନାହିଁ । ଯାହାକୁ କହନ୍ତି ଅଯୋଗ୍ୟ, ଆପଣ ସେଇଆ । ଏ କାମରେ ଆପଣ କାହିଁକି ହାତ ଦେଲେ, ତାକୁ ଭଲା କହିଥାନ୍ତେ" । (ଖୋସାମଦି ସପକ୍ଷରେ)

ଏଠାରେ ଗାଈ ଭଳି ମାନବେତର ଚରିତ୍ର ଉଲ୍ଲେଖଧର୍ମୀତା ଦୃଷ୍ଟିରୁ ବ୍ୟବହୃତ । ବାମାଚରଣଙ୍କୁ ଡାକ୍ତର ଛେନା ଖାଇବାକୁ ପରାମର୍ଶ ଦେବାରୁ ତାଙ୍କ ପତ୍ନୀ ପ୍ରତିଭାମୟୀ ମିତ୍ର ଗାଈଟିଏ କଣିଥିବା ଓ ଏକଦା ଗାଈ ବାଛୁରୀ ସଂଧ୍ୟାସୁଦ୍ଧା ନ ପହଞ୍ଚିବାରୁ ଶ୍ରୀଯୁକ୍ତ ମିତ୍ର, ଶ୍ରୀମତୀଙ୍କୁ 'ଯାହାକୁ ରଖିପାରିବ ନାହିଁ, ତାକୁ ରଖିବ କାହିଁକି' ? ବୋଲି ଶୁଣାଇଥିବା ଶ୍ରୀମତୀ ପ୍ରସନ୍ନ କୁମାରୀ ଦେବୀଙ୍କ ଲେଖାରୁ ଜାଣିହୁଏ । (ବିନମ୍ର ପ୍ରଣତି- ଇସ୍ତାହାର-୩୭, ଜାନୁଆରୀ-ଫେବୃଆରୀ-ମାର୍ଚ୍ଚ-୧୯୮୭)

ଗଣତନ୍ତ୍ର ବ୍ୟବସ୍ଥାରେ ଲୋକମାନେ ଭୋଟ ଦେଇ ନିର୍ବାଚିତ କରୁଥିବା ପ୍ରତିନିଧିମାନଙ୍କଦ୍ୱାରା ସରକାର ଗଢ଼ାଯାଏ । ସରକାରଙ୍କଠାରୁ ଲୋକେ ଆଇନର ଶାସନ ନ ଚାହିଁ ଦୟା ଚାହୁଁଥିବାରୁ ଓଡ଼ିଶାର ଜଣେ ମୁଖ୍ୟମନ୍ତ୍ରୀ ନିଜ ଘରେ ଗୁହାରିଆମାନଙ୍କୁ ଟଙ୍କା ବାଣ୍ଟୁଥିଲେ । ଟଙ୍କା ଆସୁଥିଲା ବ୍ୟବସାୟୀମାନଙ୍କଠାରୁ । ବ୍ୟବସାୟୀମାନେ ଟଙ୍କା ଦେଇ ଫାଇଦା ପଠାଉଥିଲେ । ଜଣେ ଅଧ୍ୟାପିକା ନିଜର ବଦଳି ବନ୍ଦ କରିବାକୁ ଗୁହାରି କରିବା ନିମିତ୍ତ ମୁଖ୍ୟମନ୍ତ୍ରୀଙ୍କ ବାସଭବନରେ ପହଞ୍ଚିଲେ । ସବୁଲୋକ ଗଳାପରେ ସେ ହାତଯୋଡି ଛିଡ଼ା ହେଲେ । ସେ କିଛି କହିବା ପୂର୍ବରୁ ତାଙ୍କୁ ଦଶଟଙ୍କା ଦେବା ପାଇଁ ଏନାୟେତ୍‌କୁ ନିର୍ଦ୍ଦେଶ ଦିଆଗଲା ।



Digitized by srujanika@gmail.com

ଏନାୟେତ୍ ତାଙ୍କ ପକେଟରେ ଦଶଟଙ୍କା ପୂରାଇ ଏକରକମ ଧକ୍କା ମାରି ବାହାର କରିଦେଲା । ତା'ପରଦିନ ଅଧ୍ୟାପକ ଜଣକ ଯିବାରୁ ଏନାୟେତ୍ ବିଗିଡ଼ିଲା । ଅଧ୍ୟାପକ ଜଣକ ନିଜର ଦୁଃଖ ବଖାଣିବାକୁ ଯାଇ କହିଲେ ସେ ସାତଟି ପିଲାର ବାପା । ପିଲାମାନଙ୍କୁ ଭଲ କରି ଗଣ୍ଡେ ଖାଇବାକୁ ଦେଇପାରନ୍ତି ନାହିଁ 'ଦୁଧ କଥା ତେଣିକି ଥାଉ' । ଏତିକି କଥା କାନରେ ପଡୁପଡୁ ମୁଖ୍ୟମନ୍ତ୍ରୀ କହିଲେ 'ଆବ୍‌ବେ ଏନାୟେତ୍ ଓ ବୋଲତା ହୈ ଉସ୍‌କା ଦୁଧ ଖାନେକୋ ପୈସା ନେହି । କାଲ୍ ଏକ୍ ଆଦ୍‌ମି ଏକ୍‌ଠୋ ଗାୟ ଦେଗିଆଥା ନା, ଓହି ଗାୟ ଇସ୍‌କୋ ଦେ ଦୋ' । ଏନାୟେତ୍ ଗାଇକୁ ଆଣି ଅଧ୍ୟାପକଙ୍କ ହାତରେ ପଘା ଧରେଇ ଦେଲା । ଅଧ୍ୟାପକ ଯାହା କହିଲେ ବି ଏନାୟେତ୍ ଚିତ୍କାର କଲା 'ଯାଓ, ଯାଓ, ଭାଗୋ ଭାଗୋ' "ଅଧ୍ୟାପକ ବାପୁଡ଼ା ଗାଇଟି ଟାଣିଟାଣି କାନ୍ଦି ଘରକୁ ଫେରିଲେ । ରାସ୍ତାରେ ସେ ବଦ୍‌ମାସ ଗାଇ ବି ହ୍ୟାପ ଖସି ପଳେଇଲା" । (କାହିଁକି କେଜାଣି) ପରିବେଶ ଚାହିଁ ଗାଇ ପ୍ରସଙ୍ଗରେ ଅବତାରଣା ଏକାଧାରରେ ହସ ଓ ବେଦନା ଫୁଟାଏ ପାଠକ ଭିତରେ ।

'କାହିଁକି କେଜାଣି' ରଚନାରେ ଜୈବ ପ୍ରକ୍ରିୟା ବା ଦେହଭୋଗ କିଭଳି ରସଘନ ଓ ଉଲ୍ଲାସନ କଥା ତହିଁର ଚିତ୍ର ଫୁଟେଇବା ପାଇଁ ଜୀବନାନୁଭବର ଗୋଟିଏ ଘଟଣା ଶୁଣେଇଛନ୍ତି ବାମାଚରଣ । ଘଟଣାରେ ମାନବେତର ଚରିତ୍ର ଗାଈର ସ୍ୱାଭାବିକ କ୍ରିୟା ସମ୍ପନ୍ନତା ପ୍ରତିପନ୍ନ । ଜଣେ ବୁଢ଼ାର କେହି ପିଲାପିଲି ନଥିବାରୁ କଟକର ଏକ ସାହିରେ ସେ ଗାଈଟିଏ ରଖି ତାକୁ ଝିଅ ଭଳି ପାଳିଥାଏ । ତା' ଶିଙ୍ଘକୁ ରୂପାମୁଠି ଓ ବେକପାଇଁ ରୂପା ଘୁଙ୍ଗୁର କରିଥାଏ ବୁଢ଼ା । ପ୍ରତିଦିନ ବୁଢ଼ା ଗାଈକୁ କାଠଯୋଡି କୂଳ ଆଡେ ନିଏ । ଦିନେ ସକାଳୁ ସକାଳୁ ବୁଢ଼ା ବାଡ଼ିଟିଏ ଧରି ଆଗେଆଗେ ଚାଲିଛି, ଗାଈଟି ପଛେପଛେ । ବୁଢ଼ା ତା' ନାଁ ଦେଇଥାଏ ମାଳ । ସେଦିନ ମାଳର ପିଛା ଧରିଥାଏ ଗୋଟିଏ ଷଣ୍ଢ । ମାଳ ଟିକେ ଅଟକିଗଲେ ବୁଢ଼ା ଡାକିଲେ ସେ ଦୌଡିଯାଏ । କିନ୍ତୁ ପର ମୁହୂର୍ତ୍ତରେ ବୁଢ଼ା ଯେତେ ଡାକିଲେ ବି ମାଳ ଷଣ୍ଢ ପାଖରୁ ଗଲା ନାହିଁ । ବୁଢ଼ା ଫେରିଆସି ଷଣ୍ଢକୁ ମାରିବାକୁ ଗୋଡେଇବାରୁ ଗାଈଟି ବୁଢ଼ାକୁ ଭୁଷା ମାରି ତଡେଇ ଦେଲା । ବୁଢ଼ା ଖାଲି କହୁଥାଏ, 'ମାଳ ! ତୁ ଏୟା କଲୁ' । ସାହିର ପିଲାମାନେ ବୁଢ଼ାକୁ ରକ୍ଷା କଲେ । ପ୍ରାଣୀ ପ୍ରାଣର ଦୈହିକ ଆକାଙ୍‌କ୍ଷା କେତେ ତୀବ୍ର ତାହା ଗାଈ ମାଧ୍ୟମରେ ପ୍ରକାଶ କରିଛନ୍ତି ବାମାଚରଣ ।



Digitized by srujanika@gmail.com

ବାମାଚରଣଙ୍କ କେତୋଟି କ୍ଷୁଦ୍ରଗଳ୍ପରେ ମାନବେତର ଚରିତ୍ର ବାଘ-ବାଘୁଣୀଙ୍କ ଅବତାରଣା କରାଯାଇଛି । 'ସ୍ୱପ୍ନସିଦ୍ଧ' ଗଳ୍ପରେ ପୁଅ-ଝିଅ ଦୁହିଁଙ୍କୁ ଦୁଇ ପାଖରେ ଶୁଆଇ ବୋଉ ପ୍ରୀତି ବାଘ ଗପ ଶୁଣାଇଛନ୍ତି । ମିମିକୁ ଶୁଣାଇ କହୁଛନ୍ତି- 'ମିମି ତୁ ଦେଖିଚୁ ନା ସେ ବାଘ ! ମା' ଲୋ ଏଡ଼େଡେ ବଡ ବଡ କାନ, ଏଡ଼େଡେ ବଡ ବଡ ଦାନ୍ତ, ଏଡ଼େଡେ ବଡ ବଡ ଗୋଡ଼, ଏଡ଼େଡେ ବଡ ବଡ ହାତ'... ବାଘର ହାତ ନେଇ ଆପତ୍ତି କରିଛି ପୁଅ ଟୁକୁନା । ମାମି କିନ୍ତୁ ହାତଥିବା କହିଛି । ଏଇ କଥାକୁ ନେଇ ଭାଇ-ଭଉଣୀ ଯୁକ୍ତିତର୍କରୁ ହାତାହାତି ହୋଇଛନ୍ତି । ସେମାନଙ୍କ ବୋଉ ପ୍ରୀତି ପୁଣି କହି ଚାଲିଛନ୍ତି, 'ବାଘ ଆସି କହିଲା, ହାଉଁ ମାଉଁ ଖାଉଁ, ମଣିଷ ଗନ୍ଧ ପାଇଁ, କିଏ କାନ୍ଦୁଚିରେ ? ମୁଁ କହିଲି ନାଇଁ ମିମି କାନ୍ଦୁ ନାହିଁ, ଯା ଯା ତୁ ଯା । ବାଘ କହିଲା ଆଛା ହଉ ମୁଁ ଯାଉଛି, ଫେରେ କାନ୍ଦିଲେ ନେଇଯିବି' । ଟୁକୁନା କହିଲା, ହଁ ହଁ ମିମିକୁ ନେଇଯାଉ । ମିମି ମଧ୍ୟ ଅନୁରୂପ ରୀତିରେ ଟୁକୁନାକୁ ନେଇଯାଉ ବୋଲି ଚିଲେଇଲା । ଉଭୟଙ୍କ ଭିତରେ ମାଡଗୋଳ ଆରମ୍ଭ ହେଲା । ବୋଉ ପ୍ରୀତି ମୋତେ ବାଘ ନେଉ କହି ଉଠି ଚାଲିଗଲେ । ଅନ୍ୟପଟେ ତାଙ୍କ ସ୍ୱାମୀ ଓ ପିଲାମାନଙ୍କର ବାପା ସୁଦାମବାବୁଙ୍କ ଲେଖାଲେଖିରେ ବ୍ୟାଘାତ ସୃଷ୍ଟି ହେଉଥାଏ । ସେ ଦାନ୍ତ କଡମଡ କରୁଥାନ୍ତି । ପତ୍ନୀଙ୍କୁ ଗାଳି ଦେବାରୁ ସେ ପିଲାଙ୍କୁ ବୁଝାସୁଝା କରି ପୁଣି କଥା ଆରମ୍ଭ କରିଛନ୍ତି- 'ଆଲୋ ମିମି, ତୋ ସାଙ୍ଗରେ ଶାଶୂଘର କିଏ ଯିବ । ମିମି କହିଛି ଟୁକୁନା ଭାଇ । ଟୁକୁନାର ପ୍ରତିବାଦହେତୁ ପୁଣି କଳିଗୋଳ ହୋଇଛି । ସୁଦାମବାବୁ ଉଠି ଆସି ପିଲାମାନଙ୍କୁ ଧମକେଇ କହିଲେ, 'ମୁଁ ଯାଉଛି, ମୋତେ ବାଘ ନେଉ' । ପିଲା ଦୁଇଟିଙ୍କ ଭିତରେ ଆଦୌ ପ୍ରତିକ୍ରିୟା ପ୍ରକାଶ ପାଇଲାନି, ଅଥଚ ବୋଉ ଏତିକି କଥା କହି ଉଠିଗଲା ବେଳକୁ ସେମାନେ କୋହରେ ଫାଟି ପଡୁଥିଲେ । ଏଇକଥାକୁ ସୁଦାମବାବୁଙ୍କ ଆଖି ଛଳ ଛଳ ହୋଇ ଯାଇଛି । ସେତିକିବେଳେ ପ୍ରୀତି କହିଛନ୍ତି,

"ତୁମେ ପିଲାଙ୍କ କଥାରେ ଏମିତି ହଉଚ ନା ! ମାଇପିଙ୍କ ଜୀବନ ଭଳି ଆଉ ହୀନିମାନିଆ ଜୀବନ ଅଛି ? ତୁମେମାନେ ତ ସନ୍ନ୍ୟାସୀ । ଏସବୁ ପୁରୁଷର, ଅଥଚ କୌଣସିଥିରେ ପୁରୁଷର ଲୋଭ ନାହିଁ, ଆଉ ମାଇପି ? ଛି, ଘରର କେହି ନୁହେଁ ନା, ପୀଢ଼ାରେ କୁଆ ବସାଇ ଦିଏନା, ଯେତେ ଛୋଟ କଥା ଏଇ ମାଇପିଙ୍କର" ।

ରାତିରେ ଟୁକୁନା ଧଡ଼ପଡ଼ କରି ଉଠି ବନ୍ଧୁକ ଖୋଜୁଛି । ମିମିକୁ ନବାକୁ ବାଘ ଆସିଥିବା କଥା ସ୍ୱପ୍ନରେ ଦେଖି ତା'ର ଏଭଳି ଆଚରଣ । ଜୀବନର ସତ୍ୟ ଓ



Digitized by srujanika@gmail.com

ସ୍ୱାଭାବିକ ଦିଗକୁ ଦେଖେଇ ଦେବାପାଇଁ ମାନବେତର ଚରିତ୍ର ବାଘ କଥା ଯାହା ଛୋଟ ପିଲାମାନଙ୍କୁ ମା'ମାନେ କହିଥାନ୍ତି ତହିଁର ସଂଯୋଜକ କରିଛନ୍ତି 'ସ୍ୱପ୍ନସିଦ୍ଧ' କ୍ଷୁଦ୍ର ଗଳ୍ପରେ ବାମାଚରଣ ।

କଳାହାଣ୍ଡି ସମ୍ବନ୍ଧରେ ଓଡ଼ିଶା ଡିଷ୍ଟ୍ରିକ୍ଟ ଗେଜେଟିୟରରେ ଲେଖାଯାଇଛି- Till a few years ago Kalahandi had the reputation of being the home of man-eating tigers which attrated hunters from many parts of India. 'ବାବା ଡହରାନାନ୍ଦଙ୍କ ରୋମାଞ୍ଚକର କାହାଣୀ'ରେ ପୃଷ୍ଠଭୂମି ହୋଇଛି କଳାହାଣ୍ଡିର ଜଙ୍ଗଲ । ଗଛନାୟକ ଜଙ୍ଗଲରେ କାଠଚୋର ପଶିବା ଖବର ପାଇ ରାତି ନଅଟାରେ ବନ୍ଧୁକ ଓ ଟର୍ଚ୍ଚ ଲାଇଟ ଧରି ଚାଲିଲେ । ଥୋଡେ ବାଟ ଗଲାପରେ ଗୋଟେ ପାହାଡୀ ନଳା ପଡିଲା । ଟର୍ଚ୍ଚ ଆଲୁଅ ଟିପିବାରୁ ସେ କୋଡ଼ିଏ ହାତ ଦୂରରେ ଗୋଟିଏ ବାଘୁଣୀ ଛୁଆ ଦୁଇଟିକୁ ଘେନି ଗୋଟେ ମଣିଷର ମୁର୍ଦ୍ଦାର ଉପରେ ବସିଥିବା ଦେଖିଲେ । ଛୁଆ ଦି'ଟାଙ୍କୁ ପଛକୁ ଠେଲି ଦେଇ ବାଘୁଣୀ ପଛେଇ ପଛେଇ ଯାଇ ଲୁଚିଗଲା । ଗଛନାୟକ ସେମିତି ଛିଡା ହୋଇ ରହିଲେ । କିଛି ସମୟ ପରେ ହଠାତ୍ ପଛଆଡ଼ୁ ନରମହାତର ପ୍ରଚଣ୍ଡ ଧକ୍କା ଖାଇ ତଳେ ପଡିଗଲେ । ଟର୍ଚ୍ଚଟା ଏମିତି ଛିଟିକି କରି ପଡିଲାଯେ, ତା'ର ଆଲୁଅ ପଡୁଥାଏ ଗଛନାୟକଙ୍କ ମୁହଁକୁ । ସେ ଗୁରୁଣ୍ଡି ଗୁରୁଣ୍ଡି ଚାଲିଯିବାକୁ ଚେଷ୍ଟା କଲା ବେଳକୁ ପଛରୁ ଗୋଟାଏ ନରମ ଉଷ୍ମ ଚାପ ଅନୁଭବ କଲେ । କାମ ଭାବ ସୃଷ୍ଟି ହେଲା । ଶରୀରରେ ଶିହରଣ ଖେଳିଗଲା । ବାଘୁଣୀ ଆସି ଚୁମା ଦେଲା । ଥରିକରି ଦାନ୍ତ ଲଗାଇଲା ଗଛ ନାୟକଙ୍କ ବେକରେ । ନାୟକ ଗଜ ନିସ୍ତାରଣ ସ୍ତୋତ୍ର ଗାଇଲେ । ଆସ୍ତେ କରି ଖସିଯିବାକୁ ଚେଷ୍ଟା କଲାବେଳକୁ ବାଘୁଣୀ ଗଛନାୟକଙ୍କ ହାତକୁ ଦାନ୍ତରେ କାମୁଡି ଟାଣିବାକୁ ଲାଗିଲା । ଗଛନାୟକ ଚିତ୍କାର କରିବାରୁ  ବାଘୁଣୀ ବଣକୁ ପଳାଇଲା । ଏମିତି କେତେଥର ଖେଳ ଚାଲିଲା । ପରିଶେଷରେ ବାଘୁଣୀ ଗଛନାୟକଙ୍କ ଉପରେ ଶୋଇଲା । ଗଛନାୟକ ହାତଯୋଡି କହିଲେ, ମା' ମୋତେ ଆଉ ଏମିତି କରନା । ବାଘୁଣୀ ଅଟ୍ଟହାସ୍ୟ କଲା । ନିକଟରୁ ଶୁଭିଲା ବାଘର ଗର୍ଜନ ଓ ବନ୍ଧୁକର ଗୁଳିଫୁଟା ଶବ୍ଦ । ତା'ପରେ କ'ଣ ହେଲା ଗଛନାୟକ ଜାଣିନାହାନ୍ତି । ଜିପ୍‌ରେ ବୁହାହୋଇ ଆସିଛନ୍ତି । ଜାଣିଛନ୍ତି, ଯେଉଁମାନେ କାଠ ଚୋରି କରିବାକୁ ଯାଇଥିଲେ। ସେହିମାନେ ତାଙ୍କୁ ରକ୍ଷା କରିଛନ୍ତି । ସେମାନେ ଅନେକ ଗଛ କାଟି ନେଇଥିଲେ ବି ଗଛନାୟକ ସେମାନଙ୍କ ବିରୋଧରେ ରିପୋର୍ଟ



Digitized by srujanika@gmail.com

କରିନାହାନ୍ତି । ଏହି ଗଳ୍ପର ନାୟକ ଡମ୍ବରୁଧର ଓରଫ ଡହରାନନ୍ଦଙ୍କଠାରୁ ତାଙ୍କ ସାଙ୍ଗମାନେ ଶୁଣୁଥିଲେ ଏ ଗାଲୁ ଗଳ୍ପ । ଏକାସାଙ୍ଗରେ ପଚାରିଲେ 'ସତକଥା ନା ଡହରାମି ବା' । ଡହରାନନ୍ଦ ହସି କରି ଯାହା କହିଲେ ତାହା ହେଉଛି ବାମାଚରଣଙ୍କ ବକ୍ତବ୍ୟ-

"କଥାଯା ଶୁଣିଲ, ଉତ୍କଣ୍ଠା, ଆଗ୍ରହ, ଆଶ୍ଚର୍ଯ୍ୟ ହେବା ସବୁ ତୁମର ହେଲା, ଆମୋଦ ପାଇଲ । କଥାଟା ସତ ହେଉ ବା ନ ହେଉ ତୁମର କ'ଣ ଗଲା ! ନାଇଁ, କଥାଟା ହେଉଚି ଏସବୁ ଯଦି ଗୋଟାଏ ମିଛ ଗପ ପାଇଁ ଜାତ ହୋଇଥାଏ ତେବେ ଅନୁଶୋଚନା ହେବ ଯେ ତୁମେ ଠକିଗଲ । ଏଇ ଗପ ପାଇଁ ତୁମର ଯଦି କେତେବେଳେ କେମିତି ଭଗବାନଙ୍କ ପାଇଁ ବ୍ୟାକୁଳତାର ଆନନ୍ଦ ଜାତ ହେଉଚି ସେତେବେଳେ ସେଇଟା ବଡ ଲାଭ ପାଇଲବୋଲି ନ ଭାବି ଠିକ୍ ଭାବୁଚ ଯଦି ଭଗବାନ ନ ଥାନ୍ତି ତେବେ ଠକିଯିବ" ।

ମାନବେତର ଚରିତ୍ର ବାଘୁଣୀ ଆଧାରରେ ଗାଳ୍ପିକ ମିତ୍ର ଯେଉଁ ମିଛ କାହାଣୀ ଶୁଣାଇଛନ୍ତି ତାହାପ୍ରତି ଶ୍ରୋତାର ଆଗ୍ରହ ବା ଆନନ୍ଦ ଯଦି ବଢୁଛି, ତାହା ତ କ୍ଷୁଦ୍ରଗଳ୍ପ-କଳାର ସର୍ବୋତ୍କୃଷ୍ଟ ସଫଳତା ।

ମୂଷାଭଳି ଏକ ମାନବେତର ଜୀବକୁ କେନ୍ଦ୍ରରେ ରଖି ଜୀବନର ଜଟିଳତା ଓ ବୈଚିତ୍ର୍ୟକୁ ବାମାଚରଣ ଉପସ୍ଥାପନ କରିଛନ୍ତି 'ଗୋଟିଏ ମଧ୍ୟବିତ୍ତ ପରିବାରରେ ମୂଷା' ଗଳ୍ପରେ । ପୂର୍ବରୁ ଆଲୋଚନା କରାଯାଇଥିବା ରମ୍ୟରଚନା ଅଥବା କ୍ଷୁଦ୍ରଗଳ୍ପ ଗୁଡିକରେ ମାନବେତର ଚରିତ୍ର ଉଲ୍ଲେଖଧର୍ମୀ ରୀତିରେ ଉପସ୍ଥାପିତ । କିନ୍ତୁ ଏହି ଗଳ୍ପରେ ମୂଷା ନିଜ ପ୍ରକୃତି ଓ ଆକୃତି ସହିତ ସଂଚରଣଶୀଳତା ହେତୁ ଚରିତ୍ରୋପଯୋଗୀ ହୋଇପାରିଛି । ଅନୁପମା ଓ ବିଜୟବାବୁଙ୍କ ଭଳି ଦମ୍ପତିଙ୍କ ତିନିପୁଅ ଏବଂ ଝିଅ ବିଶିଷ୍ଟ ମଧ୍ୟବିତ୍ତ ପରିବାରରେ ରୋଗୀଣା ପୁଅ ପାଇଁ କିଣାଯାଉଥିବା ଛେନା କାହାର ଖାଦ୍ୟ ହେଉଛି ତାକୁ ମା-ବାପା-ପୁଅ ଜଗିଛନ୍ତି । ଏ କଥାକୁ ଘେନି ବିଜୟଙ୍କ ମନରେ ନାନା ଚିନ୍ତା ପଶିଛି । ସହଜେ ତ ଅଭାବୀ ହେତୁ ଦ୍ୱନ୍ଦ୍ୱାତ୍ମକ ବସ୍ତୁବାଦଠାରୁ ଗଣବିପ୍ଳବଯାଏ ଅନେକ କଥା ଚିନ୍ତା କରୁଥିଲେ, ଏବେ ଆଧ୍ୟାତ୍ମିକ ଭାବନାଟିଏ ମୁଣ୍ଡରେ ପଶି ତାଙ୍କୁ ଅସ୍ଥିର କରିଛି । ଭାବିଛନ୍ତି 'କାହ୍ନା ଆସି ଛେନା ଖାଇ ଯାଉ ନାହାନ୍ତି ତ !' ଏସବୁ ଭାବନାର ଅନ୍ତଃ ଘଟିଛି ସେହିଦିନ, ଯେଉଁଦିନ ରାତି ତିନିଟାରେ ରୋଷାଇଘର ଥାକରେ ଗୋଟେ ବଡ ମୂଷାକୁ ଦେଖିଛନ୍ତି ବାପା-ମାଆ-ସାନପୁଅ । ମୂଷା ଛେନା ତାଟିଆର ଢ଼ାଙ୍କୁଣି



Digitized by srujanika@gmail.com

ଅଣେଇ ଦେଇଥାଏ । ତା' ମୁହଁରେ ବିନ୍ଦୁ ବିନ୍ଦୁ ହୋଇ ଛେନା ଲାଗିଥାଏ । ସେ ପାଞ୍ଚଜଣ ସଶସ୍ତ୍ର ମଣିଷଙ୍କୁ ଦେଖି, ଡରି ନ ଯାଇ ନିରୁଦବିଗ୍ନ ରୀତିରେ ଖାଇ ଚାଲିଥାଏ ପୋଡପିଠାର ବକଳା । ତା'ର ଗୋଲାପି ରଙ୍ଗର ନାସାଗ୍ରଟି ଭୋଜନର ଆନନ୍ଦରେ ଫୁଲି ଉଠୁଥାଏ । ଗୋଲ ଗୋଲ ଆଖିରେ ମଣିଷ ଗୁଡାଙ୍କୁ ଦେଖି ସେ ଥାଏ ନିର୍ବିକାର । ତାଙ୍କୁ ମାରିବା ପାଇଁ ବାଡି ଉଞ୍ଚାଇବାକ୍ଷଣି ଡାକ୍ତରୀ ପାଠରେ ନାଁ ଲେଖାଇଥିବା ପୁଅ କହେ ଏତେ ଯୋର ଦରକାର ନାହିଁ ବାପା ! ତା'ର ସେକେଣ୍ଡ ସର୍ଭାଇକାଲରେ ଖାଲି ଠୁକେଇ ଦେଲେ ଯଥେଷ୍ଟ । ବିଜୟ ଠେଙ୍ଗାଟାକୁ ବାଗେଇକରିଧରି ପିଟିବା ପୂର୍ବରୁ ମୂଷା ଆଗ ଦୁଇ ଗୋଡକୁ ଯୋଡି ପ୍ରାର୍ଥନା ମୁଦ୍ରାରେ ଛିଡା ହେଲା । ବିଜୟର ବାଡି ପାହାରରେ ଥାକର ଡବାଗୁଡାକ ଝରଝଣ ହୋଇ ପଡିଗଲା । ମୂଷା କିନ୍ତୁ ସାନପୁଅର ଗାଲକୁ ଆଞ୍ଜୁଡି ଦେଇ ଦେ ଚମ୍ପଟ । ସବୁ ବାଟ ନିବୁଜ କରାଯାଇଥିଲା ତଥାପି ମୂଷା କେଉଁବାଟେ ଗଲା ବୋଲି ବିଜୟ ଚିନ୍ତା କରିବାରୁ ବଡପୁଅ କହିଛି ସେ ପରା ର୍ୟାଟ୍‌ଟର ନରୱେଜିକ୍‌ସ ମୂଷା, ଭାରି ଚଲାଖ । ଏମାନଙ୍କ ଆଦିଦେଶ ହେଉଛି ମଧ୍ୟ-ଏସିଆ, ଇଂଲଣ୍ଡକୁ ଏମାନେ ଯାଆନ୍ତି ସତର ଶହ ତିରିଶ ଖ୍ରୀଷ୍ଟାବ୍ଦରେ । ଏବେ ତ ପୃଥିବୀର ସବୁ ଗାଆଁକୁ ଏମାନେ ଖେଦିଗଲେଣି । ଭାରତକୁ କେବେ ଆସିଛନ୍ତି ଜଣାନାହିଁ । ତେବେ ଗଣେଶ ନିଜର ବାହନ ପାଇଁ ଗୋଟିଏ ରଖି ଆଉ ସମସ୍ତଙ୍କୁ ଛାଡି ଦେଇଛନ୍ତି ।

ବିଜୟ ମୂଷାକୁ ମାରିବା ପାଇଁ ଯନ୍ତ୍ର ଆଣିଲେ । ମୂଷା ତହିଁରେ ପଡିଲା ନାହିଁ । ଛେନା ଖାଉଥିବା ମୂଷା ପିଠାର ବକଳା ଖାଇଲା କାହିଁକି ଏ ଘେନି ମଝିଆଁ ପୁଅ ପ୍ରଶ୍ନ କରିବାରେ ଅନୁପମା ମୁରୁକି ହସି ବିଜୟଙ୍କ ଆଡେ ଚାହିଁଲା । ଜଣାଗଲା ସେ ମୂଷା ନୁହେଁ ମୂଷୀ । ସାନପୁଅ ତା ନାଁ ଦେଲା ଚଞ୍ଚଳୀ । ଯଥା ସମୟରେ ଚଞ୍ଚଳୀ ବହୁଦିନରୁ ଟଙ୍ଗା ହୋଇଥିବା କୋର୍ଟ ପକେଟରେ ଛୁଆ ଦେଇଛି । ପରିବାରରେ କଥା ହେଲେ, ଚଞ୍ଚଳୀ ଛୁଆଙ୍କ ପାଖକୁ ଆସିଲେ ତାକୁ ଧରି ଛୁଆଙ୍କୁ ସାଙ୍ଗରେ ତାକୁ ପିଞ୍ଜରାରେ ରଖାଯିବ । ପିଞ୍ଜରା ବି କିଣା ହେଲା । ହେଲେ, ଢ଼ମଣା ସାପ ଘରେ ପଶି ସମସ୍ତଙ୍କ ସାମ୍ନାରେ ମୂଷୀକୁ ଆହାର ପାଇଁ ପାଟିରେ ଧରି ବାହାରକୁ ନେଇଗଲା । ସେହି ସମୟରେ ମୂଷୀ ଚିଁ ଚିଁ ହେଉଥାଏ । ସତେ ଯେପରି ସେ କହୁଥାଏ, 'ମୁଁ ଚାଲିଲି, ମୋ ଛୁଆପିଲା ଲାଗିଲେ' । ଏ ଦୃଶ୍ୟରେ ସମସ୍ତଙ୍କ ଆଖି ଛଳ ଛଳ ହୋଇଗଲା । ସାନପୁଅ କାନ୍ଦିଲା । ସାନପୁଅ ମୂଷା ଛୁଆଙ୍କୁ କାଗଜ ବାକ୍ସରେ ତୁଳାଗଦି ପକେଇ ରଖିଲା । ସାତଟି ଯାକ ଛୁଆ ବି



Digitized by srujanika@gmail.com

ମରିଗଲେ । ଅନୁପମା କହିଲେ 'ହଅ, ଦୁନିଆ ତ ଏଇୟା' । ଏହି କାଣ୍ଡକୁ ଅଲୌକିକ କହି ବିଜୟ ବିସ୍ମିତ ହେଲେ । ଭାବିଲେ ପ୍ରକୃତିର କି ଭୟଙ୍କର ଲୀଳାରେ ବାବା । ମାନବେତର ଚରିତ୍ର ମୂଷା ଜରିଆରେ ଗାନ୍ଧିକ ପାରିବେଶିକ ସନ୍ତୁଳନା ଓ ମାନବ ଜୀବନ ସହିତ କୋଉଟି ନା କୋଉଟି ତା'ର ସାଦୃଶ୍ୟ ଅଛି, ସଂପର୍କ ବି ଯୋଡା ହୋଇଛି ତାହା ଦର୍ଶାଇଛନ୍ତି । ଏହି କ୍ଷୁଦ୍ରଗଳ୍ପରେ ପ୍ରସଙ୍ଗକ୍ରମେ ବର୍ଣ୍ଣନା କରାଯାଇଛି ଉତ୍ତର ଆମେରିକାର ଗୋଟାଏ ଜାତିର ମାଛରଙ୍କା ଚଢ଼େଇ କଥା । ଏହି ମାଛର ତଳ ଥଣ୍ଟରେ ଥଳିଟିଏ ଝୁଲୁଥାଏ । ମାଛରଙ୍କା ମାଛ ଧରି ଏହି ଥଳିରେ ରଖେ । କିଛି ମାଛ ହୋଇଗଲେ ସେ ଆରାମରେ ବସି ଖାଏ । ଗୋଟିଏ ଚଢ଼େଇର ଥଳି କୌଣସି କାରଣରୁ ଚିରିଗଲା । ସେ ମାଛ ଧରି ଖାଇପାରିଲା ନାହିଁ । ଜଣେ ଜୀବବିଜ୍ଞାନୀ ପ୍ରାୟ ମାସେ କାଳ ତା' ପଛେ ପଛେ ଦେଢ଼ ମାଇଲ ଯାଏ ଗୋଡେଇ ଗୋଡେଇ ତାକୁ ଧରିଲେ । ଚିରି ହୋଇଯାଇଥିବା ଥଳି ସିଲେଇ କରିଦେଲେ । ଚଢ଼େଇଟି ସୁସ୍ଥ ହୋଇ ମାଛ ଖାଇବା ପରେ ପ୍ରାଣୀ ବିଜ୍ଞାନୀ ଘରକୁ ଫେରିଲେ । ଏକଥା ପୁଅଠାରୁ ଜାଣି ବିଜୟ ଭାବିଛନ୍ତି, ଏଇ ମଣିଷ ବୋମା ପକାଇ ଲକ୍ଷ ଲକ୍ଷ ପ୍ରାଣୀଙ୍କ ମୃତ୍ୟୁର କାରଣ ହେଉଛି, ଏଇ ପୁଣି ପକ୍ଷୀଟିଏ ଖାଇ ନ ପାରିଲେ ସେ କିପରି ଖିଆପିଆ କରିବ ସେ ଘେନି ତା' ପଛେ ପଛେ ରାତିଦିନ ଗୋଡେଇଛି । ବିଜୟ ଚରିତ୍ରର ଭାବନାରେ ସତେ ଯେପରି ବାମାଚରଣ ନିଜ ମନୋଭାବ ପ୍ରକାଶ କରିଛନ୍ତି-

"ଏଇମାନେ ହିଁ ଧର୍ମକୁ ପୃଥିବୀରେ ଧରି ରଖିଛନ୍ତି । ଉତ୍କଟ ନିଷ୍ଠୁରତା, ହିଂସ୍ରତା ସତ୍ତ୍ୱେ ମଣିଷ ଉପରୁ ବିଶ୍ୱାସ ଯେ ତୁଟି ଯାଉନାହିଁ, ଆଶା ଯେ ସେମିତି ଉଜ୍ଜ୍ୱଳ ରହିଚି ଜାଣ ଏଇମାନଙ୍କ ପାଇଁ । ପ୍ରବଳ ସ୍ୱାର୍ଥାନ୍ଧ ନିଷ୍ଠୁରତାକୁ ଏଇମାନଙ୍କ ନୀରବ ଅଜ୍ଞାତ ପ୍ରେମ ହିଁ ଜାଣ ନେପଥ୍ୟରେ ନିଃସ୍ୱାର୍ଥ କଠିନ ସଂଗ୍ରାମ କରି ହଟାଇ ଦେଉଛି" ।

ପ୍ରଚୁର ଫସଲ ହେଲେ ଅର୍ଥନୀତିକୁ ସମତୁଲ ରଖିବା ପାଇଁ ଆଜିକାଲି ଶସ୍ୟ ପୋଡ଼ି ଦିଆଯାଉଛି । କିନ୍ତୁ ପୂର୍ବେ ମୂଷା ସଂଖ୍ୟା ବଢ଼ିବା ଦ୍ୱାରା ଏ ଅବସ୍ଥାକୁ ସମ୍ଭଳା ଯାଇ ପାରୁଥିଲା । ମାଈ ମୂଷା ବର୍ଷକୁ ପାଞ୍ଚଥର ଗର୍ଭବତୀ ହୋଇ ଥରକୁ ହାରାହାରି ଆଠଟି ଛୁଆ ଜନ୍ମ ଦିଅନ୍ତି । ବିଜୟ ଉତ୍‌ଫୁଲ୍ଲ ହୋଇ ଯାହା ଚିନ୍ତା କରିଛନ୍ତି ତାହା ହିଁ ଗାନ୍ଧିକଙ୍କ ମନୋଭାବ । ଏହିଭଳି 'ପ୍ରକୃତି ତା' ବାଟରେ ସମାଜବାଦ ପ୍ରତିଷ୍ଠା କରିବାକୁ ଲାଗିଛି' । ଏଇକଥାକୁ ବଢ଼େଇ କହିବା ପାଇଁ



Digitized by srujanika@gmail.com

ବିଜ୍ଞାନ ପତ୍ରିକାର ଗୋଟିଏ ବିବରଣୀ ଉପସ୍ଥାପନ କରାଯାଇଛି । 'ଗାଁରେ ମହୁଫେଣା ସଂଖ୍ୟା କମି ଗଲାରୁ ଗବେଷଣା କରି ଦେଖାଗଲା ଯେ, ଲୋକେ କୁକୁର ସଂଖ୍ୟା ବଢ଼େଇବାରୁ ଏପରି ହେଲା । କାରଣ କୁକୁରମାନେ ଗାଁରୁ ବିଲେଇମାନଙ୍କୁ ନିକାଲି ଦେଲେ । ବିଲେଇ ସଂଖ୍ୟା କମିବାରୁ ମହୁମାଛିମାନେ ସେ ଗାଁ ଛାଡିଦେଲେ । ଗାନ୍ଧିଜୀ ତାଙ୍କ ଆଶ୍ରମରେ ସାପ ମାରିବାକୁ ମନା କରି ଦେଇଥିଲେ ଏଇଥିପାଇଁ କେବଳ ଯେ ସାପ ସଂଖ୍ୟା କମିଲେ ମୂଷା ସଂଖ୍ୟା ବଢ଼ି ପନିପରିବା ବଗିଚା ନଷ୍ଟ କରିବେ' । ଜୀବ ଜଗତରେ ଘଟୁଥିବା ଏ ଧରଣର ପ୍ରାକୃତିକ ସ୍ୱାଭାବିକତା ପରିବେଶକୁ ସନ୍ତୁଳିତ ରଖିବା ସହିତ ଜୀବଜଗତକୁ ନିୟନ୍ତ୍ରଣ କରିପାରିଛି ।

ମାନବେତର ଚରିତ୍ର ବି ବୁଝେ ବାତ୍ସଲ୍ୟ । ଏହି ପ୍ରସଙ୍ଗରେ ଗାଳ୍ପିକ କୁକୁରୀ କାଳୀର ଛୁଆ ଦେବା ଦିନର କଥା ବର୍ଣ୍ଣନା କରିଛନ୍ତି । ତା'ର ସ୍ନେହପ୍ରାଣ ମାତୃତ୍ୱ ଦେଖି ଗଳ୍ପନାୟକ ଯେତିକି ଚିନ୍ତାଶୀଳ ହୋଇଥିଲେ ତା'ର ବର୍ଷକର ପୁଅକୁ ରମଣ କରିବାପାଇଁ କାଳୀକୁତୀ ଉତ୍ତେଜିତ କରାଇବା ଦୃଶ୍ୟ ଦେଖି ଘୃଣାରେ ସେତିକି ଶିହରି ଉଠିଥିଲେ । ପ୍ରକୃତିର ଏ ଭୟଙ୍କରତାର କିଛି କୂଳ କିନାରା ନ ପାଇ ହତାଶା ମିଶ୍ରିତ ଉଦାସ ମନରେ ଗଳ୍ପନାୟକ ବିଜୟ ମୂଷା ପ୍ରତି ସଂବେଦନଶୀଳ ହୋଇ ଖାଦ୍ୟ ରଖିବା ନିମିତ୍ତ ଜାଲି ଆଲମିରାଟିଏ କିଣିବା ପାଇଁ ମନସ୍ଥ କରିଛନ୍ତି । କିନ୍ତୁ କାଳର ଗତି ସେ ବା କାହୁଁ ବୁଝିବେ !

'ଗୋଟିଏ ମଧ୍ୟବିତ୍ତ ପରିବାରରେ ମୂଷା' କ୍ଷୁଦ୍ରଗଳ୍ପରେ ବାମାଚରଣ ମାନବେତର ଚରିତ୍ର ମୂଷାକୁ କେନ୍ଦ୍ରରେ ରଖି ନିଜ ମନର ଦ୍ୱନ୍ଦ୍ୱ ଓ ପ୍ରକୃତି-ପୁରୁଷର ଲୀଳାକୁ ବ୍ୟାଖ୍ୟା କରିଛନ୍ତି । ଅଧ୍ୟାତ୍ମ ଅଧ୍ୟାସ ମାନସିକତାକୁ ବିଶ୍ଳେଷଣ କରିବା ପଛରେ ସତେ ଯେପରି 'ମନମୂଷା ହୋ ତୁ ତ ଗଞ୍ଜେଇ ଖାଇ' ପଙ୍‌କ୍ତିର ପାରଂପରିକ ଆବେଦନ ତାଙ୍କୁ ବହୁମାତ୍ରାରେ ଅନୁପ୍ରେରିତ କରିଛି ।

'କୁକୁଡା ଚାଷ' ଗଳ୍ପରେ ଗାଳ୍ପିକ ଜୀବନର ସ୍ୱଭାବ ପ୍ରକୃତିକୁ ମାଇ କୁକୁଡା ଜରିଆରେ ରୂପ ଦେଇଛନ୍ତି । ଗୋବିନ୍ଦବାବୁ ସ୍ୱଳ୍ପ-ବିତ୍ତ ସମ୍ପନ୍ନ ଗୃହସ୍ଥ । ପାଞ୍ଚସୁକାର 'ଛବି ବହି' ଖଣ୍ଡେ କିଣି ନ ପାରି ନିଜ ଅଫିସରୁ 'କୁକୁଡା ଚାଷ' ବିଷୟରେ ଗୋଟିଏ ସରକାରୀ ପ୍ରଚାର ବହି ଆଣି ଧରାଇ ଦେଇଛନ୍ତି ପାଞ୍ଚବର୍ଷର ପୁଅ ବାପୁକୁ । ଗୋବିନ୍ଦବାବୁ ଜୀବନର ଗତି ସମ୍ପର୍କରେ ଚିନ୍ତା କରୁକରୁ ତା' ଭିତରକୁ ପଶିଆସେ ନିଜ ପରିବାରର ଦୈନ୍ୟ ସ୍ଥିତି ପ୍ରସଙ୍ଗ । ହତାଶାରେ ତାଙ୍କ ଆଖିରୁ ଲୁହ ଗଡେ । ବାପୁ କିନ୍ତୁ 'କୁକୁଡା ଚାଷ' ବହି ମଲାଟରେ ଥିବା ଫଟୋକୁ ନିବିଷ୍ଟ ଭାବରେ


Digitized by srujanika@gmail.com

ଦେଖେ, ଆ'କାର ଯାଏ ଶିଖିଥିବା ପାଠକୁ ବଡ ପାଟିକରି ବହି ପଢ଼ାରେ ଲଗାଏ । ବାପୁ ଟୁପୁ ମାଉସୀଙ୍କଠାରୁ ଗୋଟାଏ କୁକୁଡା ଆଣେ । ସପ୍ତମ ସନ୍ତାନ ପାଇଁ ଗର୍ଭ ଧରିଥିବା ବାପୁ ବୋଉ ଘରେ କୁକୁଡା ରଖେଇବେ ନାହିଁ ବୋଲି ଜିଦ୍ ଧରନ୍ତି । ପୁଅକୁ ଜିଦ୍ ପାଖରେ ତାଙ୍କ ଜିଦ୍ ହାରମାନେ । ମାଈ କୁକୁଡା ସହିତ ଗଞ୍ଜାର ଦେହ ଧର୍ମ, ଅଣ୍ଡା ଦେବା, ତା' ପାଇଁ ଛୋଟ ଘର କରାଯିବା ଆଦି ବର୍ଣ୍ଣନା କ୍ରମେ, କ୍ରମଶଃ କୁକୁଡା ବଂଶ ବଢ଼ିଛି । ପାଞ୍ଚବର୍ଷର ବାପୁ ଆଉ କୁକୁଡା ପ୍ରତି ଏତେ ଆଗ୍ରହୀ ନଥିବା ଦେଖି ବାପୁ ବୋଉ ମନେମନେ ସ୍ଥିର କଲେ ପଡ଼ିଶା ଘରକୁ ସବୁ କୁକୁଡା ଦେଇଦେବେ । ଦିନ ଦିନ ଧରି ଘରପିଣ୍ଡା ଧୋଇଧୋଇ ବାପୁ ବୋଉ ଚିଡଚିଡ ହୋଇଯାଇଥାନ୍ତି । ଯେଉଁଦିନ ସକାଳୁ ପଡ଼ିଶା ଘରର ପିଲା ଆସି କୁକୁଡା ନେବା କଥା ସେଦିନ ଅବିରାମ ବର୍ଷା ଚାଲିଥାଏ । ବାପୁ ବୋଉ କୁକୁଡା ଭିତରେ ଥିବା ବାତ୍ସଲ୍ୟ ଦେଖି ମନ ପରିବର୍ତ୍ତନ କରିଛନ୍ତି । ଗୋବିନ୍ଦବାବୁଙ୍କୁ ଡାକି ନେଇ ସେ ଦୃଶ୍ୟ ଦେଖାଇଛନ୍ତି । ସେହି ଦୃଶ୍ୟକୁ ବାମାଚରଣଙ୍କ ଭାଷାରୁ ଲକ୍ଷ୍ୟ କରାଯାଉ-

"କୁକୁଡାଙ୍କର ଏମିତି ଭାବ ଅଛି କି ? ଏଇ କୁକୁଡାର ମା' ବର୍ଷାରୁ ଏଇଠି ପିଣ୍ଡାରେ ଛିଡା ହେଲା, ଆଉ କକ୍‌କୃରକ ଆ-କରି ଡାକିଲା । ଏଇ ସାନଛୁଆଟି ବର୍ଷାରେ ଭିଜିଭିଜିଆସି ତା' ପାଖରେ ଛିଡା ହେଲା । ଦୁହେଁ ଦୁହିଁଙ୍କୁ ଚାହିଁ ମୁହଁକୁ ମୁହଁ ଲଗାଇ ଅନେକ କ୍ଷଣ ଛିଡା ହେଲେ । କଅଣ କଥାବାର୍ତ୍ତା ହେଲା ପରି ଲାଗିଲା । ନିଶ୍ଚୟ ମା' ତା'ର ଛୁଆକୁ ଗାଳି ଦେଲା କାହିଁକି ବର୍ଷାରେ ଭିଜୁଚି ବୋଲି । ତା'ପରେ ଛୁଆ କଅଣ କହିଲା କେଜାଣି ମା' ତାକୁ ବିଚାରି ଦି'ଚାରି ଖୁମ୍ପା ଦେଇ ମୁହଁ ଛାଟି ଚାଲିଗଲା । ଛୁଆଟି ସେତିକିବେଳୁ ମୁହଁ ତଳକୁ କରି ଛିଡା ହୋଇଛି ସେଠି, ଆଉ ବରଷାକୁ ଯାଉନାହିଁ, କି ସୁନ୍ଦର ମ ସତେ ! ତାଙ୍କର ମା' ମାନେ ବି ଛୁଆକୁ ଏମିତି ପାଳନ୍ତି ! ନାଇଲୋ ମା' କୁକୁଡା ମୁଁ କାହାରିକୁ ଦେବି ନାହିଁ" ।

ମାନବେତର ଚରିତ୍ର କୁକୁଡାରେ ବାତ୍ସଲ୍ୟ ପ୍ରାଣତା ଗଛର ବାପୁ ମା'କୁ ପ୍ରଭାବିତ କରିଛି । କୁକୁଡା ରଖିଲେ ପଠାଣ ଘର ହୋଇଯିବ କହି ତାହା କରାଇ ଦେବେ ନାହିଁ ବୋଲି ରଣରଙ୍ଗିଣୀ ବେଶ ଧାରଣ କରୁଥିବା ବାପୁବୋଉଙ୍କ ମାନସିକତାରେ ଏହି ଦୃଶ୍ୟ ପରିବର୍ତ୍ତନ ଆଣିପାରିଛି । ମାନବେତର ଚରିତ୍ର କୁକୁଡାର ସ୍ୱଭାବିକ ବାତ୍ସଲ୍ୟ ପ୍ରାଣତାର ଏ ଏକ ଦୃଶ୍ୟ । ରାତି ନ ପାହୁଣୁ କୁକୁଡା ବୋବାନ୍ତି । ତାହାକୁ ଏଥର ସେମାନେ ବୁଝିଲେ ଏହି ଅର୍ଥରେ-



Digitized by srujanika@gmail.com

"ବାଡ଼ି କବାଟ ଫିଟାଇ ଦିଅ, ଆମେ ବାହାରକୁ ଯିବୁ ନିଜ ନିଜ ଧନ୍ଦାରେ" ।

ଅଣ୍ଡା ଦେଇ ସାରି ବୋବାଉଥିବା କୁକୁଡ଼ାର ସ୍ୱରରୁ ଗୋବିନ୍ଦବାବୁ ଓ ତାଙ୍କର ପତ୍ନୀ ବୁଝନ୍ତି-

"ଅଣ୍ଡା ଦେଇ ସାରିଲି, ଅଣ୍ଡା ନେଇ ଯା ଖାଇବ" ।

କୁକୁଡ଼ା ତା'ର ସାଥୀରେ ସାତୋଟି ଛୁଆଙ୍କୁ ଧରି ଜଙ୍ଗଲରୁ ଘରକୁ ଫେରିବା ବେଳର ଚାଲି ତାଙ୍କ 'ଆଗନ୍ତୁକ' ଗଳ୍ପ ପଢ଼ିଥିବା ପାଠକମାନେ ଅବଶ୍ୟ ଭୁଲିପାରିନାହାନ୍ତି ।

ମଣିଷ କଥା କହିପାରେ । କଥାକୁ ଭାଷା ପ୍ରତୀକରେ ପ୍ରକାଶ କରିପାରେ । ମଣିଷ ଭିତରେ ଦେବତ୍ୱ ଓ ପ୍ରାଣୀତ୍ୱର ଦ୍ୱନ୍ଦ୍ୱ ଥାଏ । ଏଇଥିପାଇଁ ସେ ଜଗତର ପ୍ରାଣୀମାନଙ୍କ ମଧ୍ୟରେ ଶ୍ରେଷ୍ଠ । ତେଣୁ ମଣିଷ ବ୍ୟତୀତ ଆଉ ଯେତେ ପ୍ରାଣୀ ସମସ୍ତେ ମାନବେତର । ମାନବେତର ଚରିତ୍ରକୁ ସାହିତ୍ୟରେ ଚିତ୍ରଣ କରିବାର କଳା-କୌଶଳ ବୈଦିକ କାଳର ମୁନିଋଷିଙ୍କଠାରୁ ଆଜିର ସାହିତ୍ୟିକମାନଙ୍କ ଯାଏ କେତେକେତେ ବାଗର ହୋଇଛି । ଏଇ ଯେମିତି ଗାଈ ବିଷୟରେ ରଚନା ଲେଖିବା, ନିଜକୁ ଗାଈ ମନେ କରି ଆତ୍ମକାହାଣୀ ଲେଖିବା, ଗାଈକୁ ବାତ୍ସଲ୍ୟର ପ୍ରତିମା କରି ଫୁଟାଇବା (ଆଉ ଥରେ କାମଧେନୁ ହୁଅ ଆଜି ତୁମେ), ସେ ମଣିଷ ନୁହେଁ ଗାଈଟାଏ ଭଳି ଉକ୍ତି ଦ୍ୱାରା ଜଣକର ନିରୀହତା ପ୍ରକାଶ କରାଇବା, ଗାଈର ନାତ ମାରିବା ଚିତ୍ର ଦେଇ ନାରୀର ଉଦ୍ଦଣ୍ଡପଣ ଦେଖାଇବା, ପ୍ରବୃତ୍ତି ଦେଖାଇବା ଭଳି ନାନାବିଧ ଶୈଳୀ ଆମ ସାହିତ୍ୟରେ ଉପଲବ୍ଧ । ବ୍ୟାସକୃତ ମହାଭାରତରେ 'ମାର୍ଜାର ମୂଷିକ ସମ୍ବାଦ'ର ମୂଷା, ବିଷ୍ଣୁ ଶର୍ମାଙ୍କ ମିତ୍ରଲାଭରେ ହିରଣ୍ୟକ ନାମକ ମୂଷିକ ରାଜ, ମନୋଜ ଦାସଙ୍କ ଗଳ୍ପର ମୂଷା, ମହାପାତ୍ର ନୀଳମଣି ସାହୁଙ୍କ ଓଧ ଓ ମୂଷା ଶାନ୍ତନୁ କୁମାର ଆଚାର୍ଯ୍ୟଙ୍କର ଦୁର୍ବାର ଗଳ୍ପର ମୂଷା ବର୍ଣ୍ଣନା ବା ଉପସ୍ଥାପନ କୌଶଳ ଦୃଷ୍ଟିରୁ ଭିନ୍ନଭିନ୍ନ ହୋଇଥିବାରୁ ପାଠକମାନଙ୍କର ଉପଭୋଗ୍ୟ ହୋଇପାରିଛି ।

ବାମାଚରଣ ମିତ୍ରଙ୍କ ସାହିତ୍ୟରୁ ପଢ଼ିହେଉଥିବା ମାନବେତର ଚରିତ୍ରଗୁଡ଼ିକ ତାଙ୍କ ବର୍ଣ୍ଣନା କୌଶଳ ଦୃଷ୍ଟିରୁ ଅଭିନବ ଲାଗନ୍ତି । ବାମାଚରଣଙ୍କ ସାହିତ୍ୟ ତାଙ୍କ ଅଙ୍ଗେଲିଭା ଘଟଣା, ଚରିତ୍ର, ମୋଟାମୋଟି ତାଙ୍କ ଜୀବନୀର ଅଂଶ ବିଶେଷ । ବ୍ୟକ୍ତିଚର୍ଯ୍ୟା ଏବଂ ଜୀବନାଦର୍ଶ ମଧ୍ୟରେ ତାଙ୍କ ଭିତରେ ଦ୍ୱନ୍ଦ୍ୱ । ବହୁତ ଗ୍ରନ୍ଥ ଅଧ୍ୟୟନ କରିଥିବାରୁ ଯେକୌଣସି ବିଷୟକୁ ଯୁକ୍ତିସହ ହାସ୍ୟ-ବ୍ୟଙ୍ଗ ଶୈଳୀରେ



Digitized by srujanika@gmail.com

ଉପସ୍ଥାପନ କରିବାରେ ତାଙ୍କର ନୈପୁଣ୍ୟ ସ୍ୱୀକାର୍ଯ୍ୟ । ପାଠକଙ୍କୁ ଶୁଣେଇବା ଶୈଳୀର ସାହିତ୍ୟରେ ମାନବେତର ଚରିତ୍ର ଗୁଡିକଙ୍କ କଥା ଭିନ୍ନ ଭିନ୍ନ ଧାରାରେ ଉପସ୍ଥାପନ କରିପାରିଛନ୍ତି ସେ । କେତେବେଳେ ଉଲ୍ଲେଖଧର୍ମୀ, ଆଉ ବେଳେ ପ୍ରତୀକରୀତି, ଅନ୍ୟ ବେଳେ ସ୍ୱାଭାବିକ ଆଚରଣ ଦୃଷ୍ଟିରୁ ବାମାଚରଣ ଆହରଣ କରିଥିବା ଜୀବନଚିନ୍ତା ସହ ତୁଳନାତ୍ମକ ରୀତିରେ ମାନବେତର ଚରିତ୍ର ଚିତ୍ରି ପାରିଛନ୍ତି ତାଙ୍କ ସାହିତ୍ୟକୃତିଗୁଡ଼ିକରେ । ମାନବ ଓ ମାନବେତର ଚରିତ୍ର ଗୁଡିକୁ ତାଙ୍କ ସାହିତ୍ୟରେ ଯେତେ ଦେଖିଲେ ବି ନୂଆ ଦେଖିବାର ଅନୁଭବ ଲାଭ କରନ୍ତି ପାଠକମାନେ । କାରଣ, ହାସ୍ୟ ବ୍ୟଙ୍ଗ୍ୟ ଧାରାରେ ଜୀବନଚିନ୍ତାକୁ ବାମାଚରଣ ମିତ୍ର ଶୁଣାଇଛନ୍ତି ଜଣେ ଜୀବନ ବଞ୍ଚିଥିବା, ଜୀବନକୁ ଦେଖିଥିବା ଓ ତାହା ସମ୍ପର୍କରେ ଅଭିଜ୍ଞତା ଲାଭ କରିଥିବା ପାଠକଙ୍କୁ ।

ପତ୍ରିକା - ଝଙ୍କାର
ଜାନୁଆରୀ - ୨୦୧୬





Digitized by srujanika@gmail.com

# ବାମାଚରଣ ମିତ୍ର ଅତୀତ ସ୍ମୃତିର ଏକ ଅଧ୍ୟାୟ

ଡକ୍ଟର ହରିହର ଦାସ

ମୁହଁରେ ଶାନ୍ତ, ସୌମ୍ୟ ଓ ଗମ୍ଭୀର ଦାର୍ଶନିକ ପରି ଭାବ । ହଠାତ୍ ତାଙ୍କୁ ଦେଖିଲେ ତାଙ୍କର ଚାମ୍ଭୀର୍ଯ୍ୟ ଆଉ କେମିତି ଏକ ଦୁରନ୍ତ ଚୁପ୍ ଚୁପ୍ ବ୍ୟକ୍ତିତ୍ୱ ପାଖରେ ସହଜରେ କେହି ଭରସି ପାରିବନାହିଁ । ପ୍ରତ୍ୟେକଟି ବାକ୍ୟ ଓ ପ୍ରତି ବାକ୍ୟର ପ୍ରତ୍ୟେକଟି ଶବ୍ଦ ଯେମିତି ବ୍ୟବହର ପୂର୍ବରୁ ମାପଚୁପ୍ ଓ ତଉଲକରା । ଗୋଟିଏ ଶବ୍ଦକୁ ବାଦ ଦେଲେ ବାକ୍ୟଟି ଅସଂପୂର୍ଣ୍ଣ ଏବଂ ଗୋଟିଏ ଶବ୍ଦକୁ ପରିବର୍ତ୍ତନ କରିଦେଲେ ହୁଏ କଥାର ଗୁରୁତ୍ତର ମୋଡପରିବର୍ତ୍ତନ । ପ୍ରତ୍ୟେକ ସରସ, ଦରଦୀ ଓ ମାନସବାଦୀ ବ୍ୟକ୍ତି ବୋଧହୁଏ ଏପରିକି-ରସାଳ ନାରିକେଳ ସଦୃଶ । କିନ୍ତୁ ଭିତରେ ଏତେ ଅପର୍ଯାପ୍ତ ରସ ଆଉ ଅମୃତ ପାନୀୟ । ତାଙ୍କ ସହିତ ଥରେ ଅଧେ କୌଣସି ଉପର ଠାଉରିଆ ଦେଖା ସାକ୍ଷାତରେ ତାଙ୍କର ଭିତରର ବ୍ୟକ୍ତିତ୍ୱକୁ ଚିହ୍ନିବା ଏତେ ସହଜ ନୁହେଁ । ସେ ସେମିତି ଫୁଲା ଫାଙ୍କିଆ ଲୋକ ନଥିଲେ କିମ୍ବା ଉପରେ ପଡି ଗୁଡିଏ ଆବୁରୁ ଜାବୁରୁ ବକିବା ତାଙ୍କର ସ୍ୱଭାବ ବିରୋଧ ଥିଲା । ଯୁକ୍ତିତର୍କବେଳେ ସାଧାରଣତଃ ସେ ଉପରେପଡି କିଛି କହୁ ନଥିଲେ । ମତାମତ



Digitized by srujanika@gmail.com

ପଚାରିଲେ ପାଣ୍ଡିତ୍ୟପୂର୍ଣ୍ଣ ଉତ୍ତର ଦେଉଥିଲେ  ନିର୍ବିକାର ଭାବେ ଆଉ ନିର୍ବିକାର ଗତି ଚାଲୁଥିଲା ତାଙ୍କର ଯୁକ୍ତି ସଂବଳିତ ଆଲୋଚନାର ପ୍ରବାହ । ଏଭଳି ଆପାତ ବାହ୍ୟ ସରଳତା ଓ କୌଣସି କଥାରେ ନିଜକୁ ଜାହିର୍ କରୁନଥିବା ଶାନ୍ତ, ଶିଷ୍ଟ ବ୍ୟକ୍ତି ପାଖରେ ଯେ ଏତେ ଅଗାଧ ପାଣ୍ଡିତ୍ୟ ଥାଇପାରେ ତାହା ତାଙ୍କର ଘନିଷ୍ଠ ସଂସ୍ପର୍ଶରେ ନ ଆସିଥିବା ବ୍ୟକ୍ତି ବିଶ୍ୱାସ କରି ପାରିବ ନାହିଁ ।

ସୁପର ଫାଇନ୍ ବା ମିଡିୟମ୍ ଧୋତୀ ଉପରେ ଧଳା ପଞ୍ଜାବୀ ତାଙ୍କର ପତଳା ଲମ୍ବା ଚେହେରାକୁ ବେଶ୍ ମାନୁଥିଲା । ଲମ୍ବା ମୁହଁ, ଲମ୍ବା ନାକ, ମୁହଁକୁ ଦୁଇ ପାଖେ ଆବୃତ କଲାଭଳି ଦୀର୍ଘ କାନ, ଗୁଂଫିତ କେଶ ଏବଂ ଦୁଇଟି ବୁଦ୍ଧଦୀପ୍ତ ଆଖିରେ ଥିବା ଶାଣିତ ବ୍ୟଙ୍ଗ୍ୟ ତାଙ୍କର ବ୍ୟକ୍ତିତ୍ୱ ପ୍ରତି ଏକ ସମ୍ମାନ ସୃଷ୍ଟି କରୁଥିଲା ତାଙ୍କ ସଂସ୍ପର୍ଶରେ ଆସୁଥିବା ପ୍ରତ୍ୟେକ ବ୍ୟକ୍ତି ମନାର । ତାଙ୍କ ରମ୍ୟରଚନାର ଶାଣିତ ବ୍ୟଙ୍ଗ୍ୟ ଓ ବୌଦ୍ଧିକତା ସାଧାରଣ ଆଲୋଚନା ବେଳେ ମଧ ତାଙ୍କ କଥାରେ ପ୍ରକାଶ ପାଇଥାଏ ।

ପ୍ରତ୍ୟେକ ବ୍ୟକ୍ତି ତଥା ଅହଂଭାବାପନ୍ନ ନୀତିବାଗୀଶ ମାନଙ୍କୁ ସତର୍କ କରି ଭଗବାନ ଶ୍ରୀକୃଷ୍ଣଙ୍କ ଉପଦେଶ ଛଳରେ ବୋଧହୁଏ ସେ କହୁଥିଲେ- । ଅହଂଭାବାପନ୍ନ ନୀତିବାନ୍ ଲୋକ ଥିବାରୁ ନିଜକୁ ପାପୀ ମନେକରି ବୃଥା ନିଜର ଆନନ୍ଦ ନଷ୍ଟ କରୁଚି । ପାପ ପୁଣି କଅଣ ? ସବୁତ ମୁଁ ସୃଷ୍ଟି କରିଚି । ମୁଁ ପାପ, ମୁଁ ପୁଣ୍ୟ, ମୁଁ ସତ୍, ମୁଁ ଅସତ୍; ସବୁରି ସୃଷ୍ଟି ମୋର ପ୍ରେମରୁ । ଜୀବନକୁ ଏଭଳି ଅଧ୍ୟାତ୍ମ ଦର୍ଶନରେ ବୁଝିଥିଲେ ବାମାଚରଣ । ଖାଲି ଯେ ବୁଝିଥିଲେ ତାହା ନୁହେଁ ତାକୁ ନିଜର ଜୀବନରେ ଅକ୍ଷରେ ଅକ୍ଷରେ ପାଳନ କରୁଥିଲେ ।  ସମସ୍ତଙ୍କୁ କୋଳେଇ ନେଇ ସମସ୍ତଙ୍କ ଦୁଃଖରେ "ମାନବ ସେବା ହିଁ ମାଧବ ସେବା ବୋଲି କହି ଯେଉଁମାନେ ବୃଥା ବାହ୍ୟ ଆଚାର ଶୁଦ୍ଧି ଓ ଧାର୍ମିକତା ଦେଖାଇ ହୁଅନ୍ତି ସେମାନଙ୍କୁ ସେ ସମାଲୋଚନା କରନ୍ତି । ଏହି ଦୃଷ୍ଟିରୁ ସଂପୂର୍ଣ୍ଣ ସାମ୍ୟବାଦୀ, ବାମପନ୍ଥୀ ଚିନ୍ତାଧାରା ମଧ୍ୟରେ ଅଧ୍ୟାତ୍ମ ଦର୍ଶନ ଓ କୃଷ୍ଣପ୍ରେମ ଅନ୍ତିମ ସମୟରେ ମୋ ଅଧରରେ କୃଷ୍ଣନାମ ଥିବଟି ତାଙ୍କ ଚରିତ୍ରର ଥିଲା ବିଶେଷତ୍ୱ । ସେ ଥିଲେ କୃଷ୍ଣ ପ୍ରେମରେ ପାଗଳ, ଗଦ୍ ଗଦ୍, ଜଗନ୍ନାଥ ଦାସଙ୍କ ଓଡ଼ିଆ ଭାଗବତ ପୋଥି ତାଙ୍କର ପ୍ରାୟ କଣ୍ଠସ୍ଥ । ଠିକ୍ ବେଳ କାଳ ଦେଖି ସୁନ୍ଦର ଗୀତ କେଇପଦ ଗାଇ ସେ ଆମ ସମସ୍ତଙ୍କୁ ମୁଗ୍‌ଧ କରନ୍ତି । ସେଇ ଗୀତାର ଦର୍ଶନ ବୋଧହୁଏ ତାଙ୍କର ପ୍ରତ୍ୟେକ ଶ୍ୱାସ ପ୍ରଶ୍ୱାସରେ ପ୍ରବାହିତ ହେଉଥିଲା । - "ସାରା ବିଶ୍ୱର ମୂଳଶକ୍ତି ହେଉଛି ପ୍ରେମ । ଏଇ ପ୍ରେମ ଯେତେବେଳେ ଆଧ୍ୟାତ୍ମିକ ଚେତନା ମଧ୍ୟରେ



Digitized by srujanika@gmail.com

କାର୍ଯ୍ୟକରେ ସେତେବେଳେ ଗଛବୃଛ, ଜଡପ୍ରାଣୀ, ମଣିଷ ଆଦି ସମସ୍ତଙ୍କୁ ଏକ ଦେଖି ଅସୀମ ଆନନ୍ଦ ପାଏ । ପୁଣି ଯେତେବେଳେ ଇନ୍ଦ୍ରିୟନିଷ୍ଠ ଚେତନା ଭିତରେ ଥାଏ ସେତେବେଳେ ବିଭେଦ, ଭୟ, ଘୃଣା, କାମୁକତା ଆଦି ରୂପ ନିଏ । ସତ୍-ଅସତ୍, ପାପ-ପୂଣ୍ୟ ନୀତି ତେଣୁ ସାଧାରଣ ଇନ୍ଦ୍ରିୟନିଷ୍ଠ ଲୋକ ମାନଙ୍କ ପାଇଁ ଗୋଟାଏ କାମଚଳା କଥା, ଆଧ୍ୟାତ୍ମିକ ଚେତନାକୁ ଯିବା ପାଇଁ ଗୋଟାଏ ପନ୍ଥା ମାତ୍ର । ଇନ୍ଦ୍ରିୟନିଷ୍ଠ ଲୋକମାନଙ୍କ ପାଇଁ ଏସବୁ ମାନିବା ଯେମିତି ମୋର ସୃଷ୍ଟି, ଆଧ୍ୟାତ୍ମିକ ଲୋକମାନଙ୍କ ପାଇଁ ଏ ନିୟମକୁ ଅତିକ୍ରମ କରି ସବୁ ଏକ ଦେଖିବା କଥା ବି ମୋର ସୃଷ୍ଟ" ।

ଖାଲି ଇନ୍ଦ୍ରିୟନିଷ୍ଠତାରୁ ଉପରକୁ ଉଠିଲେ ଚଳିବ ନାହିଁ କାରଣ ସେହି ସ୍ତରରେ ମଧ୍ୟ ସଂପୂର୍ଣ୍ଣ ବିରୋଧ ଭାବ କଟିବ ନାହିଁ । ମଣିଷକୁ ଉଠି ଉଠିକା ତିନି ଗୁଣ ଉପରକୁ ଉଠିଯାଇ ନିସ୍ତ୍ରୈଗୁଣ ହେବାକୁ ହେବ ।  ତାଙ୍କ ଭାଷାରେ "ନିସ୍ତ୍ରୈଗୁଣ ହେଲେ ଦେଖିବ ଏକ ଅନ୍ୟର ବିରୋଧ ବୋଲି ଯାହା ମଣୁଥିଲେ ତା' ନୁହେଁ, ସବୁ ଏକ । ଏହି ବିରୋଧ ଭାବ ଯାହାର ଯେତେ କଟିଚି ସିଏ ସେତିକି ବିଜ୍ଞାନୀ, ତା' ବୋଲି ସାମାଜିକ ସ୍ତରରେ ଯେ ବିରୋଧ କରିବ ନାହିଁ ତା' ନୁହେଁ, ବିରୋଧ ଭାବ ରହିବ ନାହିଁ । ପ୍ରେମୀ ଲୋକ ବୁଝିବ ଏକ ସ୍ତରର କାର୍ଯ୍ୟରେ ସିନା ମୋର ବିରୋଧ କରିବା କର୍ତ୍ତବ୍ୟ ବୋଲି ମୁଁ ବିରୋଧ କରୁଚି, ବାସ୍ତବିକ୍ ମୂଳତଃ ମୁଁ ଓ ସେ ଏକ" । ବାମାଚରଣ ଏଭଳି ଭାବେ ଇନ୍ଦ୍ରିୟନିଷ୍ଠ ଅବସ୍ଥାରୁ ତିନିଗୁଣ ଉପରକୁ ଉଠି ନିସ୍ତ୍ରୈଗୁଣ୍ୟ ହୋଇଥିଲେ କି ନାହିଁ କହିବା ମୋ ପକ୍ଷେ ସହଜ ନୁହେଁ । ତାହା ଅନ୍ୟମାନେ ଯେଉଁମାନେ ତାଙ୍କ ସଂସ୍ପର୍ଶରେ ଆସିଛନ୍ତି ଅତ୍ୟନ୍ତ ଆତ୍ମିକ ଓ ନିବିଡ ଭାବରେ ସେହିମାନେ କହିପାରିବେ । କିନ୍ତୁ ସଂସାର ମଧ୍ୟରେ ଥାଇ ମଧ୍ୟ ତାଙ୍କୁ ସଂସାର କାର୍ଯ୍ୟରେ ସେ ସାଧାରଣ ମଣିଷପରି ମୁଁ କେବେ ଲିପ୍ତଥିବ ଦେଖିନାହିଁ । ସବୁକଥାରେ କେମିତି ଏକ ଦାର୍ଶନିକପରି ଯେମିତି ସେ କହିବାକୁ ଚାହୁଁ ଥିଲେ ମଣିଷର ପେଟ ପାଟଣା ଛଡା, ଚାକିରି, ପେନ୍‌ସନ୍ ପଦୋନ୍ନତି, ମହଙ୍ଗା ଭତ୍ତା ଓ ସରକାରୀ ଅଫିସ ଭିତରେ ଘଟିଥିବା ଫାଇଲ କାରବାର ଓ ନିତିଦିନିଆ ଘଟଣା ଛଡା କଣ ଜୀବନରେ ଆଉ କିଛି ନାହିଁ । ଏହି କାରଣରୁ ବୋଧହୁଏ ତାଙ୍କର ଆତ୍ମୀୟ ଥିଲେ ମହାପାତ୍ର ନୀଳମଣି ସାହୁ, ଗୋପୀନାଥ ମହାନ୍ତି, ଶାନ୍ତନୁ କୁମାର ଆଚାର୍ଯ୍ୟ, ସ୍ୱର୍ଗତ ଅଖିଳ ମୋହନ ପଟ୍ଟନାୟକ ଏବଂ ଅନ୍ୟାନ୍ୟ ସାହିତ୍ୟିକମାନେ । ପେଟପାଟଣା ପାଇଁ ତ ଚାକିରି । କିନ୍ତୁ ସେଇ ଚାକିରିତ ଜୀବନର



Digitized by srujanika@gmail.com

ସବୁକିଛି ନୁହେଁ । ତେଣୁ ଅଫିସରୁ ଫେରିବାପରେ ସେହି ଅତ୍ୟନ୍ତଭାବେ ବସ୍ତୁନିଷ୍ଠ ସାଂସାରିକ ଜୀବନ ଓ ଘସରା ଚାକିରି ସମ୍ପର୍କିତ କଥା ବା ଆଲୋଚନା ଠାରୁ ଦୂରେଇ ରହିବା ପାଇଁ ଆଗ୍ରହ ପ୍ରକାଶ କରୁଥିଲେ ।

ଅଫିସରୁ ଫେରି ଲମ୍ବା ଆରାମଚୌକିରେ ଆଖିବୁଜି ପଡି ରହି ବୋଧହୁଏ ଯୋଗାସନ ଅବସ୍ଥାରେ ସେ ରୂପହୀନ ମୁହୂର୍ତ୍ତମାନଙ୍କୁ କଳ୍ପନାର ଐନ୍ଦ୍ରଜାଲିକ ସ୍ପର୍ଶ ଦେଇ ସାକାର କରି ତୋଳୁଥିଲେ । ପରମ ବୈଭବମୟ ଶ୍ରୀରାମଙ୍କ ପାଦସ୍ପର୍ଶ ଯୋଗୁଁ ପାଷାଣୀ ଅହଲ୍ୟା ଦିବ୍ୟରୂପ ପରିଗ୍ରହଣ କରିବା ସଦୃଶ ବାମାଚରଣଙ୍କ କ୍ରିୟାତ୍ମକ ସାଧନା ଓ ବିଜ୍ଞାନ ବୌଦ୍ଧିକତାରେ ରସାଣିତ କଳ୍ପନା ସୃଷ୍ଟି କରୁଥିଲା ଅନେକ ରମ୍ୟରଚନା, ଗଳ୍ପ ଓ ଉପନ୍ୟାସ । ସେତିକିବେଳେ ଆମକୁ ଦେଖିଲେ ଯେମିତି ତାଙ୍କ ଚକ୍ଷୁରେ ଦିବ୍ୟାନନ୍ଦର ମୋତି ଝଲସି ଉଠୁଥିଲା । ସତେ ଯେମିତି ସେ ଆମକୁ ହିଁ ଅପେକ୍ଷା କରିଥିଲେ ।

୧୯୭୫ ମସିହା ଫେବୃୟାରୀ ମାସ ୨୧ ତାରିଖରେ ବାମାଚରଣ ମିତ୍ରଙ୍କର ସରଳ, ନିରାଡମ୍ବର ପ୍ରେମମୟ ଜୀବନର ପରିସମାପ୍ତି ଘଟିଲା । ମୁଁ ସେତେବେଳକୁ ବ୍ରହ୍ମପୁରରେ । ଦୁଇଦିନ ପରେ ଖବରକାଗଜରେ ଗୋଟିଏ ଛୋଟ ଶୋକ ସମ୍ବାଦ ପଢ଼ି ହଠାତ୍ କଥାଟାକୁ ଗ୍ରହଣ କରିପାରିଲି ନାହିଁ । ପୁଣି ପଢ଼ିଲି; କଥାଟା ବୁଝିବାରେ କଷ୍ଟ ହେଲାନାହିଁ, କିନ୍ତୁ ଗ୍ରହଣ କରିବାପାଇଁ ମନ ବଳିଲାନାହିଁ । କିନ୍ତୁ ସେଥିରେ କ'ଣ ବା ଯାଏଆସେ... କେତେ ବା ଯାଏ ଆସେ ? ପୃଥିବୀ ଛାଡି, ଏ ମର ଦେହ ଛାଡି ସେ ଚାଲି ଯାଇଥିଲେ । ମୃତ୍ୟୁକୁ ସେ ଏମିତି ନିକଟରୁ ଏବଂ ଏତେ ନିବିଡ, ଆତ୍ମୀୟଭାବେ ଚିହ୍ନିଥିଲେ (ଯାହା ତାଙ୍କର 'ଶୋକ-ସମ୍ବାଦ' ପଢ଼ିଲେ ଯେ କେହି ଜାଣି ପାରିବ) ଯେ ତାଙ୍କ ପାଇଁ ମୃତ୍ୟୁ ଚେତନା କୃଷ୍ଣ-ଚେତନା ଠାରୁ ଭିନ୍ନ ନଥିଲା । ମରନ୍‌ରେ ତୁହୁଁ ମମ ଶ୍ୟାମ ସମାନ... ।

ମୃତ୍ୟୁ ସମ୍ପର୍କିତ ତାଙ୍କର ନାଟକୀୟ ସଂଳାପ-

"ମୃତ୍ୟୁ- (ମୁହଁରେ ମନ ଭୁଲାଣିଆ ହସ) ଆସ ସଖି !

ବ୍ୟକ୍ତି- ତୁମେ କିଏ ?

ମୃତ୍ୟୁ - ମୁଁ ପରା ତୁମର ଘନଶ୍ୟାମ ଗୋ !

ବ୍ୟକ୍ତି- ଘନଶ୍ୟାମ କିଏ ?

ମୃତ୍ୟୁ- କୋଟି, କୋଟି ଗ୍ରହତାରା ଯେଉଁ ମୂଳଶକ୍ତିରୁ ଶକ୍ତିଆହରଣ କରି



Digitized by srujanika@gmail.com

କାର୍ଯ୍ୟକରି ଚାଲିଛନ୍ତି, ସେଇ ମୂଳ ଶକ୍ତିଟି ହେଉଛି ପ୍ରେମ । ମୁଁ ସେଇ ପ୍ରେମ, ଆନନ୍ଦ । ଆସ ସଖି !

ବ୍ୟକ୍ତି- ଚାଲ । ଆଃ କି ଆରାମ, କି ଆନନ୍ଦ !

ବାମାବାବୁଙ୍କ ଦେହାବସାନର ପ୍ରାୟ ଦୁଇମାସ ପରେ ନୀଳମଣି ଭାଇନା ଯାହାଙ୍କୁ ମୁଁ ବଡଭାଇ ବୋଲି ସମ୍ବୋଧନ କରେ (ଶ୍ରୀ ମହାପାତ୍ର ନୀଳମଣି ସାହୁ) ସରକାରୀ କାମରେ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟକୁ ଆସିଥିଲେ । ଗାଡି ଭିତରେ ବସିଯାଇଛୁ ହଠାତ୍ ପଚାରିଲେ-ହରି !

ବାମାଭାଇ ମରିଗଲେ ଶୁଣିଛୁଟି !

- ହଁ ଖବରକାଗଜରେ ପଢ଼ିଛି !

ବୋଧହୁଏ ଏଇ ପଦିଏ କଥାକୁ ଯେମିତି ସେ ଅପେକ୍ଷା କରିଥିଲେ । କେଉଁଦିନରୁ ସାଇତା କୋହର ବନ୍ଧ ଯେମିତି ହଠାତ୍ ଭାଙ୍ଗିଗଲା ଏଇ ପଦିଏ କଥାରେ । ମୋ ହାତଟାକୁ ଜାବୁଡି ଧରି ଛୋଟ ଛୁଆଭଳି କଇଁ କଇଁ ହୋଇ ସେ କାନ୍ଦି ପକାଇଲେ । ତୁହାକୁ ତୁହା କୋହ ଉଠୁଥାଏ । ଛୋଟ ଛୁଆଟି ଭଳି କାନ୍ଦି, କାନ୍ଦି ଆଖି ମନ୍ଥୁଥିଲେ ସିଏ । ମୋର ମଧ ଆଖିରେ ଦିବୁନ୍ଦା ଲୁହ ଜମି ଆସିଥିଲା ସେଦିନ । ମୋର କିନ୍ତୁ ମନେ ହେଲା ବାମାବାବୁଙ୍କର ନିଜସ୍ୱ ଉକ୍ତି- "....ଦିନେ ମୁଁ ସେ ସବୁକୁ ଓଟାରି ନେବି । ସେତେବେଳେ ପୁଣି ସବୁ ନିସ୍ତବ୍ଧ । ଖାଲି ମୁଁ ଯୋଗନିଦ୍ରାରେ ଥିବି । ମୋର ସେତେବେଳେ ବାହ୍ୟ ସୁପ୍ତ, ନିଷ୍କ୍ରିୟ; କିନ୍ତୁ ଭିତର ଜାଗ୍ରତ, କ୍ରିୟାଶୀଳ । ମୁଁ ପୁଣି ଏକ ନୂତନ ସୃଷ୍ଟିପାଇଁ ଯୋଗ କରିବି ସେତେବେଳେ । ହେଲା" ।

ବାମାଚରଣ ମିତ୍ରଙ୍କ ସହିତ ଜୀବନର ଯେଉଁ ଶୁଭ ମୁହୂର୍ତ୍ତରେ ଦେଖା ହୋଇଥିଲା ସେହିଦିନ, ତାର ତାରିଖ ଆଜି ଆଉ ମନେ ନାହିଁ- ନ ରହିବା ମଧ ସ୍ୱାଭାବିକ । କିନ୍ତୁ ଜୀବନର ସେଇ ସାର୍ଥକ ମୁହୂର୍ତ୍ତଟି ଆଜି ମଧ ଠିକ୍ ସେଇ ଦିନର ସ୍ମୃତିପରି ଅମ୍ଳାନ ରହିଛି । ଭୁବନେଶ୍ୱରରେ ସେ ପହଞ୍ଚିବା ପରେ ବି ଜେ.ବି. କଲେଜରେ ଦିନ ଗୁଡ଼ିକ କେମିତି ପ୍ରଥମେ, ପ୍ରଥମେ ଅସରା ଓ ନିହାତି ନିରସ ମନେହେବା ସତ୍ତ୍ୱେ କଟି ଯାଉଥିଲା ଅହୀନ ଭବେ । ଏମିତି ଜୀବନ ତ ସମସ୍ତେ ଅତିବାହିତ କରନ୍ତି- ଗ୍ରାସାଚ୍ଛାଦନ ପାଇଁ ପରିଶ୍ରମ କରିବା, କାମଧନ୍ଦା କରିବା ଅତ୍ୟନ୍ତ ଘରୋଇ କଥା । କିନ୍ତୁ ସବୁ ଭାବ ସତ୍ତ୍ୱେ କେମିତି ଏକ ଅଭାବ, ସବୁ ପ୍ରାପ୍ତି ଭିତରେ ଅପ୍ରାପ୍ତି ଓ ଶୂନ୍ୟତା ଯେମିତି ଗ୍ରାସକରି ରହିଥାଏ ।



Digitized by srujanika@gmail.com

ବି.ଜେ.ବି. କଲେଜ ଷ୍ଟାଫ୍ କମନ୍ ରୁମରେ ଯେଉଁଦିନ ପ୍ରଥମ ପରିଚୟ ହେଲା ଅଧ୍ୟାପକ ମହାପାତ୍ର ନୀଳମଣି ସାହୁଙ୍କ ସହିତ ସେଦିନ ମନେହେଲା ବାହାର ଓ ଭିତରର ପ୍ରକୃତି ସମନ୍ୱିତ ହେଲେ । କୃଷ୍ଣଚୂଡ଼ା ଓ ଶୀରିଷା ଗଛମାନଙ୍କରେ ନାଲି ଓ ହଳଦିଆ ରଙ୍ଗର ଅନେକ ଫୁଲ ଛାଏଁ, ଛାଏଁ ଫୁଟିଗଲେ, ଖେଳିଗଲେ । ପ୍ରକୃତିରେ ବସନ୍ତ ଆସିଗଲା । ଗୋଟିଏ ରଙ୍ଗୀନ୍ ଫୁଆରା ବାୟୁମଣ୍ଡଳକୁ ଶୀତଳ କରିଦେଲା । ଅନେକ ମଧୁରକଣ୍ଠୀ ଏକା ସାଙ୍ଗରେ ସଙ୍ଗୀତ ମୁଖରା ହୋଇ ଉଠିଲେ । ମେଘମୁକ୍ତ ସ୍ୱଚ୍ଛ ଆକାଶରେ ଈଷକ୍ ଲାଳିମା ଖେଳିଯାଇ ରଙ୍ଗୀନ୍ ଚନ୍ଦ୍ରାତାପ ପରି ତାକୁ ସଜାଇ ଦେଲା । ଦୂରଦୂରାନ୍ତରରୁ ବଂଶୀରେ ସତେ ଅବା କିଏ ତୋଳି ଧରିଛି ଏକ ସୁମଧୁର ପରିଚିତ ରାଗିଣୀ । ସେତିକିବେଳେ ନିଶ୍ଚୟ ଦୟା ଓ କୁଆଖାଇ ନଦୀରେ ଅନେକ କଲ୍ଲୋଳିତ ତରଙ୍ଗ ସ୍ରୋତ ହୋଇ ବହି ଯାଇଥିବେ ଜୀବନର ପ୍ରବହମାନତା ଭିତରେ ସାର୍ଥକ ଗୋଟିଏ ମୁହୂର୍ତ୍ତର ସତ୍ୟକୁ ଉଦ୍‌ଘୋଷିତ କରି- ଅନୁଭୂତିର ସମ୍ବେଗରେ ରସାଣିତକରି । ସେଇ ମହାପାତ୍ର ନୀଳମଣି ସାହୁ ପରବର୍ତ୍ତୀ ସମୟରେ ବାସ୍ତବ ଅର୍ଥରେ ଏଇ ଲେଖକର ବଡଭାଇ ।

କିଛି ସମୟର କଥାବାର୍ତ୍ତା ପରେ ଯେଉଁ ପ୍ରଶ୍ନ ସେ ବା ତାଙ୍କଭଳି ଯେ କୌଣସି ଦରଦୀ ଓ ହୃଦୟବାନ ସାହିତ୍ୟିକ ପଚାରିବା ଉଚିତ ବୋଲି ମୁଁ ଭାବୁଥିଲି ସେ ପ୍ରଶ୍ନ ସେ ହଠାତ୍ ପଚାରି ବସିଲେ- ତୁମେ କଣ କିଛି ଲେଖା, ଲେଖକର । ସେତିକିବେଳେ ମୋର ଦୁଇଟି କବିତା ବହି ପ୍ରକାଶିତ ହୋଇ ସାରିଥିଲା, କିନ୍ତୁ ମୁଁ ଅନେକ ଗୁଡ଼ିଏ କ୍ଷୁଦ୍ର ଗଳ୍ପ ଓ ଗୋଟିଏ ଉପନ୍ୟାସ ଲେଖିସାରି ପ୍ରକାଶ କରିବା ପାଇଁ ସାହାସ କରୁନଥାଏ । ପରବର୍ତ୍ତୀ ସମୟରେ ସେଦିନର ସେହି ପ୍ରଶ୍ନ ମୋ ଭିତରେ ସାର୍ଥକ ଉତ୍ତର ପାଇଁ ଏକ ପ୍ରସ୍ତୁତି ପର୍ବଭାବେ ବ୍ୟବହୃତ ହୋଇଥିଲା । ମୋର ସମୁଦ୍ରର ମନ ଉପନ୍ୟାସର ନାମକରଣ ଓ ପ୍ରକାଶ ତାଙ୍କ ଯୋଗୁଁ ହିଁ ସମ୍ଭବପର ହୋଇଥିଲା । ଅବଶ୍ୟ ପରବର୍ତ୍ତୀ ସମୟରେ ଡାଃ. କୃଷ୍ଣ ପ୍ରସାଦ ମିଶ୍ର କାନଡାରୁ ଫେରିବା ପରେ ତାଙ୍କ ସହିତ ମୋର ଘନିଷ୍ଠବନ୍ଧୁତ୍ୱ ସ୍ୱାଭାବିକ ଭାବେ ଗଢ଼ି ଉଠିଥିଲା ଓ ଏ ବହି ପ୍ରକାଶ ପାଇଁ ସେ ମଧ୍ୟ ସାହାଯ୍ୟ କରିଥିଲେ । ଏହି ଭୁବନେଶ୍ୱରରେ ପାଦ ଦେବାର ଅଳ୍ପଦିନ ଭିତରେ ଶ୍ରୀ ଶାନ୍ତନୁ କୁମାର ଆଚାର୍ଯ୍ୟଙ୍କର ବ୍ୟକ୍ତିତ୍ୱର ଆକର୍ଷଣକୁ ଏଡି ଦେବା ସହଜ ନଥିଲା । ସେତିକିବେଳେ ତାଙ୍କର ନର କିନ୍ନର ପ୍ରକାଶିତ ହୋଇ ଓଡ଼ିଆ ଉପନ୍ୟାସ ସାହିତ୍ୟ କ୍ଷେତ୍ରରେ ଏକ ଆଲୋଚନା ସୃଷ୍ଟି କରିଥାଏ ।



Digitized by srujanika@gmail.com

କୃଷ୍ଣ ପ୍ରସାଦ ମିଶ୍ର, ଶାନ୍ତନୁ ଆଚାର୍ଯ୍ୟ ଓ ମୁଁ କଲେଜ କଲୋନୀରେ ଥିବାଯୋଗୁଁ ବହୁ ସମୟରେ ଏକାଠି ଆଳାପ, ଆଲୋଚନା କରିବାର ସୁଯୋଗ ମିଳେ । ମହାପାତ୍ର ନୀଳମଣି ସାହୁ ଦୁଇନମ୍ବର ୟୁନିଟ୍‌ରେ ପ୍ରଥମେ ବାମାଚରଣ ମିତ୍ରଙ୍କ ସାହି ଆଗରେ ଏବଂ ତାପରେ ରାଜଧାନୀର ରାଜରାସ୍ତା ଯାହା ରାଜମହଲ ଛକ ଠାରୁ ରାଜଭବନ ଦେଇ ଆହୁରି ଆଗକୁ ଲମ୍ବିଯାଇଛି ସେଠାରେ ଘରଟିଏ ପାଇ ବାମାବାବୁଙ୍କ ଘରପଛ ସାହିକୁ ଉଠଆସିଥାନ୍ତି । ଅଧିକାଂଶ ସମୟରେ କୃଷ୍ଣ ପ୍ରସାଦ ମିଶ୍ରଙ୍କ ଲମ୍ବେଟା ବା ଶାନ୍ତନୁ ଆଚାର୍ଯ୍ୟଙ୍କ ଫ୍ୟାଣ୍ଡାବୁଲସ୍ ପଛରେ ବସି ମୁଁ ପହଞ୍ଚେ ନୀଳମଣିବାବୁଙ୍କ ଘରେ । ସେଠାରେ ଚା' ଜଳଖିଆ ଖିଆହୁଏ ବା ବେଳେବେଳେ ଆମେ ସେମିତି ବୁଲି ବାହାରି ପଡୁ ଏବଂ ବାଟରେ ଯେଉଁଠି ଇଚ୍ଛା ସେଇଠି ଖିଆଯାଏ । ନୂଆ ରାଜଧାନୀ ଠାରୁ ସମସ୍ତେ ପାଦରେ ଚାଲି ଚାଲି ପହଞ୍ଚୁ ଲିଙ୍ଗରାଜ ମନ୍ଦିରରେ । ମନ୍ଦିରର କାରୁକାର୍ଯ୍ୟ ସମ୍ପର୍କରେ ଆଲୋଚନା ହୁଏ- ଆଲୋଚନା ହୁଏ ଓଡ଼ିଶୀନୃତ୍ୟ ଓ ସଂଯୁକ୍ତା ପାଣିଗ୍ରାହୀ ସମ୍ପର୍କରେ । ସୁନନ୍ଦା ପଟ୍ଟନାୟକ କେମିତି ମେଘମଲ୍ଲାର ରାଗରେ ଗାଇବା ପାଇଁ ରାତି ଦୁଇଟାବେଳେ ସଦ୍ୟସ୍ନାତା ହୋଇ ମୁକ୍ତ କେଶକୁ ଦିଗ୍‌ବଳୟରେ ତରଙ୍ଗାୟିତ କରି ତାଙ୍କର ସୁଲଳିତ କଣ୍ଠରେ ରିୟାଜ୍ କରନ୍ତି । ସେତେବେଳେ ତବଲାରେ କିଏ ସ୍ୱର ସଙ୍ଗୀତ୍ କରୁଥିବ ଟି ! ଲିଙ୍ଗରାଜ ମନ୍ଦିର ଯିବା ବାଟରେ ରାଜରାଣୀ ମନ୍ଦିରର ଆକର୍ଷଣ କଣ ସହଜରେ ଏଡି ହେବ ! ମନ୍ଦିରଟି ଛୋଟ ହେଲେ ସୁଦ୍ଧା ଏବଂ କୌଣସି ଦେବାଦେବୀ ସେଠାରେ ପୂଜିତ ହେଉନଥିଲେ ସୁଦ୍ଧା କାରୁକାର୍ଯ୍ୟରେ ଓ ଭାସ୍କର୍ଯ୍ୟର ସୌନ୍ଦର୍ଯ୍ୟରେ ମନ୍ଦିରଟି ଅନୁପମ । ପଥର ଗାତ୍ରରେ ପରିଗ୍ରହ କରୁଥିବା ନର୍ତ୍ତକୀ, ଲସ୍ୟମୟୀ ସୁନ୍ଦରୀ ଓ ବିଭଙ୍ଗ ଅଳସ ମୁଦ୍ରାରେ ସାଜସିଙ୍ଗାର କରୁଥିବା ନଟୀମାନଙ୍କୁ ଅତି ନିକଟରୁ ଅନ୍ତରଙ୍ଗଭାବେ ଦେଖିବାର ପ୍ରଚେଷ୍ଟା ହୁଏ- ଅନୁଶୀଳନ, ବିଶ୍ଳେଷଣର ମାଧମରେ ପ୍ରକାଶିତ ହୁଏ । ଲିଙ୍ଗରାଜ ମନ୍ଦିରର ଭାସ୍କର୍ଯ୍ୟ ସହିତ ରାଜରାଣୀର ତୁଳନା ହୁଏ । ଇତିହାସ, ସମାଜ ତତ୍ତ୍ୱ, ଓଡ଼ିଆର ଜାତୀୟ ଗୌରବ ଆଲୋଚନା ହେବାବେଳେ ଉପେନ୍ଦ୍ର ଭଞ୍ଜ, କବିସୂର୍ଯ୍ୟ, ଫକୀର ମୋହନ, ଗଙ୍ଗାଧର, ଗୋପୀନାଥ ସେ ଭିତରେ ନିଜ, ନିଜର ଅଂଶ ଦାବିକରି ବସନ୍ତି ।

କେଦାରଗୌରୀ କୁଣ୍ଡ ଯାହା ଏକ ରୋମାଞ୍ଚକର ଉପକଥା ବା ଅକ୍ଷାୟିକା ଉପରେ ଆଧାରିତ ଏହାର ଐତିହ୍ୟିକ ସତ୍ୟତାକୁ ଆମେ ପ୍ରଶ୍ନ କରୁ । ଇତିହାସ ଏହାକୁ ସ୍ୱୀକାର କରୁ ବା ନକରୁ ଏହା ଏକ ଅତ୍ୟନ୍ତ ରମଣୀୟ ସ୍ଥାନ । କେଉଁ ସୁଦୂର ଅତୀତରେ ଏହାର ଅଶୋକ, ବକୁଳ ଓ ଆମ୍ର କୁଞ୍ଜ ପ୍ରେମିକ ପ୍ରେମିକା



Digitized by srujanika@gmail.com

ମାନଙ୍କର ମିଳନ ଆଶାୟୀ ଉଦ୍‌ବେଳିତ ହୃଦୟକୁ ଏକତ୍ରିତ କରିବା ପାଇଁ ସୁରଭିତ ଶୀତଳ ଛାୟାର ଆଶୀର୍ବାଦ ପ୍ରଦାନ କରିଥିବ । ଏହା ପାଖରେ ମୁକ୍ତେଶ୍ବର ମନ୍ଦିର ପୁଞ୍ଜ । ମନ୍ଦିର ଗାତ୍ରରେ ଗଙ୍ଗା ନନଙ୍କର ସିନ୍ଦୁର ଲେପିତ ସୌମ୍ୟ ମୂର୍ତ୍ତି । ପାଖରେ ଅନବରତ ବହି ଚାଲିଛି ପୁଣ୍ୟତୋୟା ଝରଣାଟି । ଏଠାରେ ବସି ବହୁ ଅପରାହ୍ଣରେ ବିତକତ ମୁହୂର୍ତ୍ତମାନଙ୍କୁ ଏକ ନୂତନ ଆହ୍ଲାଦରେ ଆମେମାନେ ଭରି ଦେଇଛୁ । ବେଳେ ବେଳେ ବାମାବାବୁ ସଂଧ୍ୟାରେ ଆମର ଏଇ ରାଜଧାନୀ ଭ୍ରମଣ ଏବଂ ମନ୍ଦିର ମାଳିନୀ ପୁରୁଣା ସହର ଗାତ୍ରରେ ନର୍ତ୍ତକୀ ଓ ଅନୂଢ଼ା କିଶୋରୀ ମାନଙ୍କର ଭାସ୍କର୍ଯ୍ୟ ମୂର୍ତ୍ତି ମାନଙ୍କର ଚାରୁ କଳା ଅନୁଶୀଳନ ସମୟରେ ଆମ ସହିତ ଯୋଗଦେଇ ନାନା ତାତ୍ତ୍ୱିକ ଆଲୋଚନା ଓ ଶାଣିତ ବ୍ୟଙ୍ଗ୍ୟ ମାଧ୍ୟମରେ ସଂଧ୍ୟାଟିକୁ ଅତ୍ୟନ୍ତ ଉପଭୋଗ୍ୟ କରିଦିଅନ୍ତି । ମଣିଷ ଚରିତ୍ର ସଂପର୍କରେ ତାଙ୍କର ଗଭୀର ଆତ୍ମଧ୍ୟାନ ଓ ଗବେଷଣା ସମର୍ଥିତ ଜ୍ଞାନ ଯୋଗୁଁ ତାର ସମସ୍ତ ଦୋଷ, ଦୁର୍ବଳତା ଏଭଳିକି ତାର ଅନ୍ଧାରୀ ମନର ଗୋପନ କଥା ସଂପର୍କରେ ସେ ଯେତେ ବେଶି ଜାଣିଥିଲେ ସେତିକି ସାଧାରଣ ଏବଂ ଅତ୍ୟନ୍ତ ଭାବେ ସେଇ ନିରୀହ ମଣିଷଟି ପ୍ରତି ସେ ହୋଇ ଉଠିଥିଲେ ସଂବେଦନଶୀଳ । ବାମାବାବୁଙ୍କର ଅଗାଧ ପାଣ୍ଡିତ୍ୟ, ବହୁ ଶାସ୍ତ୍ରଦର୍ଶିତା, ବିସ୍ତୃତ ଅଧ୍ୟୟନ ଓ ବୌଦ୍ଧିକତା ଯେମିତି ତାଙ୍କ ରମ୍ୟ ରଚନା ଗୁଡିକରୁ ପ୍ରକାଶିତ ହୋଇଥାଏ ସେଭଳି ଏକ ଅତ୍ୟନ୍ତ ମାନବବାଦୀ, ସଂବେଦନଶୀଳ ଏବଂ ସମାଜ ପ୍ରତି ଅଙ୍ଗୀକାର ବଦ୍ଧ ଦରଦୀ ହୃଦୟ ତାଙ୍କର କ୍ଷୁଦ୍ର ଗଳ୍ପ ଗୁଡିକରୁ ସହଜରେ ବାରି ହୋଇପଡେ । ସେ କେବେ ନିଷ୍ଠୁର ଭାବେ କୌଣସି ଚରିତ୍ରକୁ ଉପସ୍ଥାପିତ କରି ନାହାନ୍ତି ତାଙ୍କର ଗଳ୍ପ ମାନଙ୍କରେ ଏହାହିଁ ତାଙ୍କ ବ୍ୟକ୍ତି ଜୀବନର ଆଦର୍ଶ ଥିଲା ।

ବାମାବାବୁଙ୍କ ସହିତ ପରିଚୟ ହେବା ପୂର୍ବରୁ ତାଙ୍କର 'ମହାପୁରୁଷ ବାଗ' ଗଳ୍ପ ସଂକଳନଟି ପଢ଼ିଥାଏ । ବାମା ବାବୁଙ୍କର ମୁଁ ଯେତିକି ଘନିଷ୍ଠ ହୋଇଥିଲି ତାଙ୍କର ଗଳ୍ପର ଚରିତ୍ର ଗୁଡିକ କେମିତି ଅଧିକ, ଅଧିକ ବିସ୍ତୃତ ଓ ବିନ୍ୟାସ ଲାଭ କରୁଥିଲେ ମୋରି ଭିତରେ । ତାଙ୍କର 'ସ୍ୱପ୍ନସିଦ୍ଧ', 'ଅସୀମ' ଓ 'ବଟ ମହାପୁରୁଷ' ଆଦି ସଂକଳନରେ ସନ୍ନିବେଶିତ ଗଳ୍ପ ଗୁଡିକ ଓଡ଼ିଆ ସାହିତ୍ୟର ପାଠକେ ଊଣା ଅଧିକେ ନିଶ୍ଚୟ ପଢ଼ିଥିବେ । ବଡ ଭାଇ ମହାପାତ୍ର ନୀଳମଣିଙ୍କ ଭାଷାରେ- "ଏତେ ଜୀବନ୍ତ ମଣିଷ, ଏତେ ବହୁଶ୍ରୁତ ମଣିଷ, ଏଭଳି ସତ୍ୟସନ୍ଧ, କାରୁଣିକ ହୃଦୟ, ହାସ୍ୟ ପରିହାସ ନିପୁଣ, ଭଗବତ୍ ପରାୟଣ ବିପ୍ଳବୀ ଆତ୍ମା, ମୁଁ ତାଙ୍କ ଛଡା ଆଉ ଦ୍ୱିତୀୟ ଦେଖିନାହିଁ" । ବାମାବାବୁଙ୍କ ସଂପର୍କରେ ଏହା ଯାହା କୁହାଯାଇଛି



Digitized by srujanika@gmail.com

ତାଙ୍କର ଅଧିକାଂଶ ଚରିତ୍ର ଏହି ସବୁ ଗୁଣ ବହନ କରି ଗଳ୍ପ ମାନଙ୍କରେ ଜୀବନ୍ତ । ବାମାଚରଣ ମିତ୍ରଙ୍କ କଥନ ଶୈଳୀ ଏବଂ କଥକତାର ମାଧୁର୍ଯ୍ୟ ତାଙ୍କର ବୌଦ୍ଧିକ ବ୍ୟାପକତାରେ ଦେଖିବା ପାଇଁ ମିଳେ । କିନ୍ତୁ ସମସ୍ତ ହାସ୍ୟରସ ଓ ବ୍ୟଙ୍ଗାତ୍ମକ ତୀର୍ଯ୍ୟକ ଦୃଷ୍ଟି ସତ୍ତ୍ୱେ ସେ ନିଜ ଜୀବନରେ ଥିଲେ ଏକାନ୍ତ ନିଃସଙ୍ଗ । ବାମାବାବୁଙ୍କର ଆଭ୍ୟନ୍ତରୀଣ ପ୍ରକୃତିର ମାର୍ମିକ ଚିତ୍ରଟିଏ ସତେ ଯେମିତି ଆଙ୍କି ଦେଇଛନ୍ତି ମହାପାତ୍ର ନୀଳମଣି ତାଙ୍କ ବର୍ଣ୍ଣନାରେ- "ନିଜର ଆଭ୍ୟନ୍ତରୀଣ ଜୀବନ ମଧ୍ୟରେ ସେ ଥିଲେ ଏକ ନିଃସଙ୍ଗ ବ୍ୟକ୍ତି । ଏକପ୍ରକାର ବୈରାଗୀ ବୈଷ୍ଣବ । ଉଚ୍ଚାକାଂକ୍ଷାଶୂନ୍ୟ, କାମନା-ଅଭିଳାଷ ଶୂନ୍ୟ ନିର୍ଲିପ୍ତ ଉଦାସୀ ଅଥଚ କୃଷ୍ଣ ପ୍ରେମରେ ସେ ଥିଲେ ରସ ଜର୍ଜରିତ" । ଏହି ପରମ ବୈଷ୍ଣବ ଭାବ ଏବଂ କୃଷ୍ଣ ପ୍ରେମ ଯୋଗୁଁ ମରିବାର ଅଳ୍ପ ସମୟ ପୂର୍ବ ପର୍ଯ୍ୟନ୍ତ ସେ ବାରମ୍ବାର ତାଙ୍କୁ ଗୋଟିଏ ପ୍ରଶ୍ନ ପଚାରୁଥିବେ- "ମରିଯିବିତ ଚଞ୍ଚଳ, ଆଉ ବେଶି ଦିନ ନୁହେଁ- କିନ୍ତୁ ମୃତ୍ୟୁ ବେଳକୁ ମୁଁ କୃଷ୍ଣ ଚେତନାରେ ରହି ପାରିବିତ ? ତୁମେ କିନ୍ତୁ ସେତେବେଳେ ଯେପରି ହେଲେ ମୋ କାନରେ ଜଗନ୍ନାଥ ଦାସଙ୍କ ଦଶମସ୍କନ୍ଧ ଭାଗବତ ପଢ଼ି ଶୁଣାଇବ" । ନୀଳମଣିବାବୁ ଅବଶ୍ୟ ମୃତ୍ୟୁ ବେଳକୁ ଭାଗବତ ପଢ଼ି ପାରିଲେ ନାହିଁ ବୋଲି ଦୁଃଖ କରୁଥିବେ । କିନ୍ତୁ- "ମନ୍‌ରେ ତୁହୁଁ ମମ ଶାମ ସମାନ" । କହି ପାରୁଥିବା ବାମାବାବୁଙ୍କ ମୃତ୍ୟୁ ଚେତନା ଯେ କୃଷ୍ଣ ଚେତନାଠାରୁ କୌଣସି ଗୁଣରେ କମ ନଥିଲା ଏହା ଯେ କେହି କହିବ ।

ମୃତ୍ୟୁକୁ ବାମାବାବୁ ଏଭଳି ଏକ ସହଜ ସିଦ୍ଧ ଘଟଣା ଭାବେ ଗ୍ରହଣ କରିଛନ୍ତି ଯେ ତାଙ୍କର ମୃତ୍ୟୁ ସମ୍ପର୍କରେ କିଛି କହି ଭାବାବେଗ ଜଡିତ ହେବା ବେଳକୁ ଜଣେ ଏସବୁ ସମ୍ପର୍କରେ ସଚେତନ ନ ହୋଇ ରହି ପାରିବ ନାହିଁ । ତାଙ୍କରି ଭାଷାରେ ମାନୁଚି, ମରିବାଟା ଆଶ୍ଚର୍ଯ୍ୟ ନୁହେଁ, ବଞ୍ଚି ରହିବାଟା ଆଶ୍ଚର୍ଯ୍ୟ । ଏ ଆଣବିକ ଓ ଯନ୍ତ୍ର ଯୁଗରେ ସେ କଥାତ ମର୍ମେ, ମର୍ମେ ଉପଲବ୍ଧ ହେଉଚି । ସେଇଥିପାଇଁ ତ ଇଯେ ଶୋକ ସଭାମାନଙ୍କରେ ବକ୍ତୃତା ଶୁଣିଲେ ବା ଶୋକ ସମ୍ବାଦ ପଢ଼ିଲେ ହସ ମାଡେ" । ମୃତ୍ୟୁ ପରବର୍ତ୍ତୀ ଶୋକ ସଭା ସମ୍ପର୍କରେ ବାମାବାବୁଙ୍କ ଶାଣିତ ବ୍ୟଙ୍ଗ ମତେ ବାରମ୍ବାର ମୋର ଲେଖା ବିଷୟରେ ସଚେତନ କରିଦେଇଛି ।

"ସେମିତି ଶୋକ ସଭା କଥା । ଏ ସଭାରେ ମୃତ ବ୍ୟକ୍ତିର ଏପରି ଗୁଣ ସବୁ ବକ୍ତାମାନେ ବର୍ଣ୍ଣନା କରନ୍ତି ଯାହା କେବଳ ବୁଦ୍ଧ, ଯୀଶୁ, ଚୈତନ୍ୟ ଆଦି ଯୁଗାବତାର ମାନଙ୍କଠାରେ ସମ୍ଭବ, କିମ୍ବା ଅସମ୍ଭବ ମଧ୍ୟ । ଆଉ ପ୍ରତ୍ୟେକ ନିଜ ସହିତ ମୃତ ବ୍ୟକ୍ତିର ସମ୍ପର୍କ ଏପରି ଭାବରେ ଚିତ୍ରଣ କରନ୍ତି ଯେ, ଧାରଣା ଜନ୍ମେ,



Digitized by srujanika@gmail.com

ମୃତ ବ୍ୟକ୍ତି କେବଳ ବକ୍ତାଙ୍କୁ ଛାଡିଦେଲେ ଆଉ କାହାରିକୁ ବିଶ୍ୱାସ କରୁନଥିଲେ ବା ଖାତିର୍ କରୁନଥିଲେ । କେହି, କେହି ବକ୍ତା ମଝିରେ କାନ୍ଦି ମଧ ପକାନ୍ତି" ।

ମହାପାତ୍ର ନୀଳମଣି ସାହୁ ଝଙ୍କାରର ସଂପାଦକତ୍ୱ ଗ୍ରହଣ କଲାପରେ ବାମାଚରଣ ମିତ୍ର, କୃଷ୍ଣ ପ୍ରସାଦ ମିଶ୍ର, ଶାନ୍ତନୁ କୁମାର ଆଚାର୍ଯ୍ୟ, ଶରତ ମହାନ୍ତି ଓ ମୁଁ ଆମେ ସମସ୍ତେ ଏକାଠି ବସୁ । ସାହିତ୍ୟ ଆଲୋଚନା ହୁଏ ଏବଂ ପୃଥିବୀର ବିଭିନ୍ନ ବିଷୟରେ ଆଲୋଚନା ହୁଏ । ଡକ୍ଟର ହରେକୃଷ୍ଣ ମହତାବଙ୍କ ଏକାମ୍ର ନିବାସ, ପ୍ରଜାତନ୍ତ୍ର ପ୍ରଚାର ସମିତି ଅଫିସ ଓ ସୁଭଦ୍ରା ମହତାବଙ୍କ ସରକାରୀ ବାସଭବନରେ ସାହିତ୍ୟ ଆଲୋଚନା ସଭାମାନ ଆୟୋଜିତ ହୁଏ । ସମସ୍ତଙ୍କୁ ବିଭିନ୍ନ ବିଷୟରେ କହିବା ପାଇଁ ନିମନ୍ତ୍ରଣ ଆସେ । ଝଙ୍କାରର ସାହିତ୍ୟ ବିଚାରର ପୃଷ୍ଠାରେ ଆଲୋଚନା ପାଇଁ ଆମକୁ ବହି ମାନଙ୍କର ସମୀକ୍ଷା କରିବାକୁ ପଡେ । ଅନେକ ସମୟରେ ମନାନ୍ତର, ମତାନ୍ତର ଘଟିଛି ଖୁବ୍ ସ୍ୱାଭାବିକ୍ ରୀତିରେ । କିନ୍ତୁ ଏହା ତାତ୍ତ୍ୱିକ ମାତନୈକ୍ୟ ଓ ବିରୋଧ ବିରୋଦାଭାବ ସୃଷ୍ଟି କରି ନାହିଁ । ବଡ ଭାଇଙ୍କ ଘରେ ଆରମ୍ଭ ହୋଇଥିବା କଳି ସଂଧ୍ୟାରେ ବାମାବାବୁଙ୍କ ଘରେ ଆଲୋଚନା ବେଳେ ଆପେ ସମାହିତ ହୋଇଯାଇଛି । ସେହି ସାହିତ୍ୟିକ ପରିବାରର ମୁଁ ଥିଲି ସର୍ବ କନିଷ୍ଠ ସଭ୍ୟ; ତେଣୁ ସବୁ କଥା ଶୁଣିବାକୁ ଓ କମ୍ କହିବାକୁ ମୁଁ ପସନ୍ଦ କରୁଥିଲି । ବାମାବାବୁଙ୍କ ସହିତ ମୋର ବୌଦ୍ଧିକ ଆଲୋଚନା କମ୍ କିନ୍ତୁ ଅନ୍ତରର ଭାବ ସମନ୍ୱୟ ବୋଧହୁଏ ଥିଲା ବେଶି । ତାଙ୍କ ଝିଅ ସଂଘମିତ୍ରା ଥିଲା ମୋର ଛାତ୍ରୀ । ବୋଧହୁଏ ଆମର ଘନିଷ୍ଠତାର ତାହାଥିଲା ଅନ୍ୟ ଏକ କାରଣ ।

ବାମାବାବୁଙ୍କ ସଂପର୍କରେ ଚିନ୍ତା କଲାବେଳେ ଅତୀତର ସେହି ଘଟଣା ବହୁତ ମୁହୂର୍ତ୍ତ ଗୁଡିକ ସ୍ମୃତିପଟରେ ଭାସି ଉଠିବା ସ୍ୱାଭାବିକ । ବାମାବାବୁଙ୍କ ସାରସ୍ୱତ ପ୍ରେରଣା ଭୁଲି ହେବନାହିଁ । ବଡ ଭାଇଙ୍କ ଭାଷାରେ- "କିନ୍ତୁ ସତେକି ସେ ଜୀବନ୍ତ ରହିଛନ୍ତି- ତାଙ୍କର ଗଳ୍ପ ଆଉ ତାଙ୍କର ପ୍ରବନ୍ଧ ଭିତରେ । ନିଜର ଅନ୍ତରକୁ ନିଜର ଜୀବନକୁ ସେ ଆନ୍ତରିକ ଭାବେ ତାଙ୍କର ବକ୍ତବ୍ୟ ଗୁଡିକ ଭିତରେ ଢ଼ାଳି ଦେଇଛନ୍ତି । ସେ ବକ୍ତବ୍ୟ ସବୁ ଚିରଦିନ ଜୀବନ୍ତ ରହିବ ଓଡ଼ିଆ ସାହିତ୍ୟରେ । ମଣିଷ ଚାଲିଗଲା ପରେ ଯାଇ ତାର ଭାବଧାରା ସବୁ ଅଧିକ ଜୀବନ୍ତ ହୋଇ ଉଠନ୍ତି ।

ପତ୍ରିକା - "ଇସ୍ତାହାର", ସ ଂଖ୍ୟା ୩୭

ମାର୍ଚ୍ଚ ୧୯୮୭





Digitized by srujanika@gmail.com

# ବାମାଚରଣ, ଶହେ ବର୍ଷ ପରେ

ଗୌରହରି ଦାସ

ବାମାଚରଣ ମିତ୍ର ୧୯୭୫ ମସିହା, ଫେବୃୟାରୀ ୨୧ ତାରିଖରେ, ମାତ୍ର ୬୦ ବର୍ଷ ବୟସରେ ପୃଥିବୀରୁ ବିଦାୟ ନେଇଯାଇଥିଲେ ଏବଂ ତାଙ୍କ ମୃତ୍ୟୁକୁ ୪୦ବର୍ଷ ହୋଇଗଲାଣି । ଏହି ୪୦ ବର୍ଷ ଭିତରେ 'ଇସ୍ତାହାର' ଓ 'ମାନସ' ପରି କିଛି ସାହିତ୍ୟ ପତ୍ରିକା ଏବଂ ସାରଳା ସାହିତ୍ୟ ସଂସଦ ଓ ଉତ୍କଳ ସାହିତ୍ୟ ସମାଜ ପରି କିଛି ଅନୁଷ୍ଠାନର ଉଦ୍ୟମ ଭିନ୍ନ ବାମାଚରଣଙ୍କ ସ୍ମୃତିରକ୍ଷା ନିମନ୍ତେ ସମ୍ଭବତଃ ବିଶେଷ କିଛି ହୋଇନାହିଁ । ବଜାରରେ ଯେଉଁ ଲେଖକଙ୍କର ବହି ଦୁଷ୍ପ୍ରାପ୍ୟ ହୋଇଯାଏ, ସେ ଲେଖକ ବିସ୍ମୃତ ହୋଇଯାଆନ୍ତି । ଯାହାଙ୍କର ସ୍ମୃତିରକ୍ଷା ଲାଗି ଅନୁଷ୍ଠାନମାନ ଆୟୋଜନ ହୁଏ ନାହିଁ, ନୂଆ ପିଢ଼ି ତାଙ୍କୁ ଜାଣିବାର ଅବକାଶ ପାଆନ୍ତି ନାହିଁ । ସେହି ଦୃଷ୍ଟିରୁ ବାମାଚରଣଙ୍କ ଶତବାର୍ଷିକୀ ଅବକାଶ ପୁଣି ଥରେ ତାଙ୍କୁ ସ୍ମରଣ, ଅଧ୍ୟୟନ ଏବଂ ଅନୁଶୀଳନ କରିବା ଲାଗି ଆମକୁ ଅନୁପ୍ରେରିତ କରିବ ବୋଲି ବିଶ୍ୱାସ । ପ୍ରତିଭାଧର ବାମାଚରଣଙ୍କ ମୈତ୍ର ୧୯୧୫ ମସିହା ଡିସେମ୍ବର ୧୭ ତାରିଖରେ ଜନ୍ମ ହୋଇଥିଲା । ଯାଜପୁର ଜିଲ୍ଲାର ବରୁହାଁ ପୁରୁଷୋତ୍ତମପୁର ତାଙ୍କର ଗାଁ । ବାମାଚରଣ ପୂର୍ବପୁରୁଷ ଶ୍ରୀଚୈତନ୍ୟଦେବଙ୍କ



Digitized by srujanika@gmail.com

ଅନୁଗାମୀ ହୋଇ ଓଡ଼ିଶା ଆସିଥିଲେ ବୋଲି କୁହାଯାଏ । ତାଙ୍କର ଶିକ୍ଷାର ଭିତ୍ତିଭୂମି ଥିଲା କଟକ । ତାଙ୍କ ବାପା ଶ୍ରୀ କୃଷ୍ଣଚନ୍ଦ୍ର ମିତ୍ର କଟକରେ ପେସ୍କାର ଥିଲେ ଓ ବାମାଚରଣଙ୍କୁ ଜଜ୍ ଭାବେ ଦେଖିବା ପାଇଁ ସ୍ୱପ୍ନ ଦେଖୁଥିଲେ । ବାମାଚରଣ ଅତ୍ୟନ୍ତ ମେଧାବୀ ଛାତ୍ର ଥିଲେ । ରେଭେନ୍ସା କଲିଜିଏଟ୍ ସ୍କୁଲ, ରେଭେନ୍ସା କଲେଜ ପ୍ରଭୃତି ତାଙ୍କର ଶିକ୍ଷାନୁଷ୍ଠାନ ଥିଲା ।

କେବଳ ଜଣେ ମେଧାବୀ ଛାତ୍ର ନୁହେଁ, ଜଣେ ବିଚକ୍ଷଣ ସନ୍ତରଣକାରୀ ଓ ହକି ଖେଳାଳି ଭାବେ ତାଙ୍କର ପ୍ରସିଦ୍ଧି ଥିଲା । ତାଙ୍କର ଏଇ ସନ୍ତରଣ ଆଗ୍ରହ ନେଇ ଗୋଟେ ଛୋଟ କୌତୁହଳୋଦ୍ଦୀପକ କଥା ଅଛି । ସେ ଥରେ ରାଜ୍ୟସ୍ତରୀୟ ସନ୍ତରଣ ପ୍ରତିଯୋଗିତାରେ ଭାଗ ଦେବାକୁ ଚାହୁଁଥିଲେ, ମାତ୍ର ତାଙ୍କର ପିତା ଏହା ଚାହୁଁ ନଥିବାରୁ ତାଙ୍କୁ ପ୍ରତିଯୋଗିତା ଦିନ ଗୋଟାଏ ଘର ଭିତରେ ବନ୍ଦ କରି ଦେଇଥିଲେ । ମାତ୍ର ବୁଦ୍ଧିମାନ୍ ବାମାଚରଣ ବହିର୍ଗମନ ବାହାନାରେ କେବଳ ଖଣ୍ଡିଏ ତଉଲିଆ ପିନ୍ଧି କାଠଯୋଡି ନଈ କୂଳରେ ହାଜର ହୋଇ ସେ ପ୍ରତିଯୋଗିତାରେ ଭାଗ ନେଇଥିଲେ ଏବଂ ସନ୍ତରଣ ପ୍ରତିଯୋଗିତାରେ ପ୍ରଥମ ସ୍ଥାନ ଅଧିକାର କରିଥିଲେ । ବିଜେତାଙ୍କୁ ଟ୍ରଫି ଦେବାଲାଗି ମୁଖ୍ୟ ଅତିଥି ଆସିଲେ । ମାତ୍ର ବିଜେତା ସଂପୂର୍ଣ୍ଣ ଉଲଗ୍ନ, କାରଣ ପହଁରାବେଳେ ତଉଲିଆଟି ଖସିଯାଇଥାଏ । ଆୟୋଜକମାନେ ତାଙ୍କୁ ବସ୍ତ୍ରଦାନ କରି ତାଙ୍କର ଲଜ୍ଜା ନିବାରଣ କରିଥିଲେ ଓ କିଶୋର ବାମାଚରଣ ବିଜୟୀର ପୁରସ୍କାର ଧରି ଘରକୁ ଫେରିଥିଲେ ।

ତାଙ୍କର ସନ୍ତରଣପଟୁତା ସମ୍ବନ୍ଧରେ ତାଙ୍କର ବନ୍ଧୁ ଜ୍ୟୋତିରିନ୍ଦ୍ର ନାଥ ଜୋଅରଦାର୍ ବହୁ କଥା ଲେଖିଛନ୍ତି । ତାହା ଭିତରୁ ଗୋଟିଏ ହେଉଛି ନଈବଢ଼ିର ଉଚ୍ଛୁଳା ଗ୍ରାସ ଭିତରୁ ସେ ଗୋଟିଏ ମଇଁଷିକୁ ଉଦ୍ଧାର କରି ତତ୍କାଳୀନ ଇଂରେଜ ଜିଲ୍ଲାପାଳଙ୍କ ଦୃଷ୍ଟି ଆକର୍ଷଣ କରିପାରିଥିଲେ । ସାଇକେଲିଂରେ ମଧ ତାଙ୍କର ପଟୁତା ଥିଲା ଏବଂ ସେ ତାଙ୍କର ବାଲ୍ୟବନ୍ଧୁ ବିଜୁ ପଟ୍ଟନାୟକଙ୍କ ସହ ସାଇକେଲ୍‌ରେ ରାମଗଡ ଯାଇଥିଲେ । ଏହାଛଡା ସଙ୍ଗୀତ ପ୍ରତି ମଧ ତାଙ୍କର ଗଭୀର ଅନୁରାଗ ଥିଲା ।

ଶିକ୍ଷା ସମାପ୍ତ ପରେ ବାମାଚରଣ ଆଇନ୍ ବିଭାଗରେ ନିଯୁକ୍ତି ପାଇଥିଲେ ଏବଂ ବିଭିନ୍ନ ପଦପଦବୀରେ ଦାୟିତ୍ୱ ସମ୍ପାଦନ କରି ଓଡ଼ିଶା ସରକାରଙ୍କ ଯୁଗ୍ମ ଶାସନ ସଚିବ ଭାବେ ଅବସର ନେଇଥିଲେ । ଏହାପରେ ସେ କିଛିକାଳ ଓକିଲାତି



Digitized by srujanika@gmail.com

ମଧ୍ୟ କରିଥିଲେ । ମାତ୍ର ତାହା ସଂକ୍ଷିପ୍ତ ଥିଲା । ବାମାଚରଣ ସାରାଜୀବନ ଅଙ୍ଗୀକାରବଦ୍ଧ ଲେଖକ ଏବଂ ସଚ୍ଚୋଟ ସରକାରୀ ଅଧିକାରୀ ଥିଲେ । ସେଥିପାଇଁ ଉଚ୍ଚ ପଦବୀରେ ଥାଇ ସୁଦ୍ଧା ସେ ନିଜଲାଗି ଘର ଖଣ୍ଡିଏ ତୋଳିପାରି ନଥିଲେ । କେବଳ ସେତିକି ନୁହେଁ, ସେ ଅସୁସ୍ଥ ହୋଇପଡିଥିବାବେଳେ ତାଙ୍କର ଲେଖକ ବନ୍ଧୁ ମହାପାତ୍ର ନୀଳମଣି ସାହୁ ଏବଂ ଓଡ଼ିଶା ସରକାର ତାଙ୍କର ଚିକିତ୍ସା ଲାଗି କିଛି ଅର୍ଥ ମଞ୍ଜୁର କରିଥିଲେ । ଏ ଖବର ନେଇ ତାଙ୍କ ଘରକୁ ତତ୍କାଳୀନ ମୁଖ୍ୟମନ୍ତ୍ରୀଙ୍କ ସଚିବ ବିଶିଷ୍ଟ କବି ଶ୍ରୀଯୁକ୍ତ ରମାକାନ୍ତ ରଥ ଯାଇଥିଲେ । ମାତ୍ର ଅତି ନମ୍ରତାର ସହ ବାମାଚରଣ ମିତ୍ର ସେହି ସରକାରୀ ସାହାଯ୍ୟକୁ ପ୍ରତ୍ୟାଖ୍ୟାନ କରି ଦେଇଥିଲେ ।

ବନ୍ଧୁ ଆଲୋଚକ ବାମାଚରଣଙ୍କୁ ଜଣେ ଆଧ୍ୟାତ୍ମବାଦୀ ବ୍ୟକ୍ତି ଭାବେ ଅଭିହିତ କରିଛନ୍ତି । ମାତ୍ର ଧର୍ମ ସମ୍ପର୍କରେ ତାଙ୍କର ମତାମତ ସ୍ପଷ୍ଟ ଥିଲା । ସେ କହୁଥିଲେ, ସବୁ ମଣିଷଙ୍କୁ ସମାଜ ଆଗେ ଖୋଇପେଇ ଥଇଥାନ କରୁ । ତା'ପରେ ଯାଇ ଧର୍ମ । ଏଥିପାଇଁ ସାମ୍ୟବାଦ ଆସୁ ବା ଭଗବାନଙ୍କୁ ଦୂରେଇ ଦିଆଯାଉ, ମାତ୍ର ମଣିଷର ଦୁଃଖ ଦୂର ହେଉ । ବାମାଚରଣ ଗାନ୍ଧିବାଦୀ ଥିଲେ ଏବଂ ଅହିଂସା ଉପରେ ତାଙ୍କର ପ୍ରବଳ ଆସ୍ଥା ଥିଲା ।

ଯୀଶୁ, ବିବେକାନନ୍ଦ, ରବୀନ୍ଦ୍ର ନାଥ ଓ ଚାଲି ଚାପ୍‌ଲିନ୍‌ଙ୍କ ଛବି ସମ୍ମୁଖରେ ଶେଷ ନିଃଶ୍ୱାସ ତ୍ୟାଗ କରିବା ପୂର୍ବରୁ ବାମାଚରଣ ତାଙ୍କର ତିନିଟି ଅଭିଳାଷ କଥା କହିଯାଇଥିଲେ- ମୃତ୍ୟୁ ପୂର୍ବରୁ ଭାଗବତ ଅଧ୍ୟାୟେ ଶୁଣିବେ, ମୃତ୍ୟୁ ପରେ ତାଙ୍କ ପତ୍ନୀ ହାତରୁ ଚୁଡି ଓହ୍ଲେଇବେ ନାହିଁ ଏବଂ ଦଶାହ କର୍ମରେ ବ୍ରାହ୍ମଣମାନଙ୍କ ବଦଳରେ ଅସହାୟ କୁଷ୍ଠରୋଗୀଙ୍କୁ ଭୋଜି ଦିଆଯିବ । ଏ କଥାଗୁଡିକରୁ ସିଏ ଯେ ହେତୁବାଦୀ ଓ ମାନବବାଦୀ ଥିଲେ ତାହା ଆମେ ଜାଣିପାରୁ । ବାସ୍ତବିକ୍ ସେ ହିନ୍ଦୁ ଧର୍ମର ଉପଚାରରେ ବିଶ୍ୱାସ କରୁନଥିଲେ । ଯୁବକାବସ୍ଥାରେ, ପ୍ରେତ ପାଇଁ ନିକାଞ୍ଚନ ଜାଗାରେ ବଢ଼ାଯାଉଥିବା ସ୍ୱାଦିଷ୍ଟ ଖାଦ୍ୟ ବନ୍ଧୁଙ୍କ ସହ ନେଇଆଣି ସେ ନିର୍ବିକାରରେ ଖାଇଦେଉଥିଲେ ।

ଆମ୍ଭେମାନେ ଜାଣନ୍ତି, ୧୯୫୦ ମସିହାରେ 'ପ୍ରଜାତନ୍ତ୍ର ପ୍ରଚାର ସମିତି' ଆନୁକୂଲ୍ୟରେ ଆୟୋଜିତ ଗଳ୍ପ ପ୍ରତିଯୋଗିତାରେ ବାମାଚରଣଙ୍କ 'ମହାଯୁଦ୍ଧ' ଗଳ୍ପ ପ୍ରଥମ ସ୍ଥାନ ଅଧିକାର କରି ପାଠକ ଓ ସମାଲୋଚକଙ୍କ ଦୃଷ୍ଟି ଆକର୍ଷଣ କରିଥିଲା । ତାହା ପରଠାରୁ ସେ ଉପନ୍ୟାସ, ପ୍ରବନ୍ଧ ଓ ଗଳ୍ପ ବିଭାଗରେ ଲେଖନୀ



Digitized by srujanika@gmail.com

ଚାଳନା କରିଚାଲିଥିଲେ । ତାଙ୍କର ଗଳ୍ପ ସଂକଳନଗୁଡିକରୁ କେତୋଟି ହେଲା ‘ସ୍ୱପ୍ନସିଦ୍ଧ’, ‘ମହାପୁରୁଷବାଗ’, ‘ପାଷାଣର ପ୍ରାଣ’, ‘ଅସୀମ’ ଓ ‘ବଟ ମହାପୁରୁଷ’ ପ୍ରଭୃତି । ବାମାଚରଣ ତାଙ୍କର ପ୍ରବନ୍ଧ ସଂକଳନ ‘ଏଣୁଙ୍କ ତେଣୁଙ୍କ’ ଲାଗି ମରଣୋତ୍ତର ଭାବେ ଓଡ଼ିଶା ସାହିତ୍ୟ ଏକାଡେମୀ ପୁରସ୍କାର ଲାଭ କରିଥିଲେ ।

ଜ୍ଞାନପୀଠ ବିଜେତା ଗୋପୀନାଥ ମହାନ୍ତି ବାମାଚରଣଙ୍କ ସମ୍ପର୍କରେ ଲେଖିଥିଲେ, “ନିଜ ବିଷୟରେ ଚୁପ୍‌ଚାପ୍ ସେହି ସରଳ ନିରାଡମ୍ବର ନିରହଙ୍କାର ବ୍ୟକ୍ତିଙ୍କଠିଁ ବିଶିଷ୍ଟ ଆକର୍ଷଣ ଥିଲା ଓ ତାଙ୍କଠି ଥିଲା ଗହୀର ହୋଇ ନାନା ପ୍ରଶଂସନୀୟ ଗୁଣ । ମୁଁ ଜାଣେ, ସେ ହିନ୍ଦୁ ଦର୍ଶନ ପଢ଼ିଥିଲେ, ଶାସ୍ତ୍ରପୁରାଣ ଓ ଧର୍ମତତ୍ତ୍ୱ ବିଷୟରେ ନାନା ଗ୍ରନ୍ଥ ପଢ଼ିଥିଲେ । ଅଟଳ ଈଶ୍ୱର ବିଶ୍ୱାସ ଥିଲା । ଦିନେ ଦିବ୍ୟଦୃଷ୍ଟି ଓ ଈଶ୍ୱର ଦର୍ଶନ କଥା ପଡ଼ିଲା । ସେ କାନ୍ଦି ପକାଇଲେ । ଆନ୍ତରିକ ବିଶ୍ୱାସ ନଥିଲେ ସେ ହଠାତ୍ ସେଦିନ କାନ୍ଦି ନ ଥାନ୍ତେ” ।

ଅଖିଳମୋହନ ପଟ୍ଟନାୟକ ଲେଖିଥିଲେ, “ବାମାଚରଣ ସମାଜତତ୍ତ୍ୱ, ଇତିହାସ ଓ ସାହିତ୍ୟ ଉପରେ ଏତେ ବିସ୍ତୃତ ଭାବରେ ପାଠ କରିଛନ୍ତି ଯେ ମୁଁ ତାଙ୍କ ସହିତ କୌଣସି ବିଷୟରେ ଆଲୋଚନା କରିବାକୁ ଗଲେ ସବୁବେଳେ ସଂକୁଚିତ ହୋଇ ପଡୁଥିଲି । ଓଡ଼ିଆ, ବଙ୍ଗଳା ଓ ଇଂରାଜୀ ସାହିତ୍ୟ ଅଧ୍ୟୟନରେ ତାଙ୍କର ବ୍ୟୁତ୍ପତ୍ତି ଥିଲା । ତାଙ୍କର ପରିଧି ଥିଲା ବେଦ, ଉପନିଷଦଠାରୁ ଏକରା ପାଉଣ୍ଡ ପର୍ଯ୍ୟନ୍ତ ଏବଂ ଚାର୍ଲି ଚାପ୍‌ଲିନ୍‌ଙ୍କଠାରୁ ଓସ୍ତାଦ୍ ଅମୀର ଖାଁଙ୍କ ପର୍ଯ୍ୟନ୍ତ” ।

ଜ୍ୟୋତିରିନ୍ଦ୍ର ନାଥ ଜୋଅରଦାର୍ ଲେଖିଥିଲେ, “ସେ ଯେତେ ଗାଳ୍ପିକ ନଥିଲେ ସେ ତ ଥିଲେ ଦାର୍ଶନିକ ଓ ଚିନ୍ତକ । ମଣିଷ ପ୍ରତି ଦରଦ - ଏହାହିଁ ବାମାଚରଣଙ୍କ ସାହିତ୍ୟ ସୃଷ୍ଟିର ମୂଳ ଉତ୍ସ” ।

ପଡୋଶୀ ତଥା ମହାପାତ୍ର ନୀଳମଣି ସାହୁଙ୍କ ପତ୍ନୀ ପ୍ରସନ୍ନ କୁମାରୀ ଦେବୀ ଲେଖିଥିଲେ, “ବାମାବାବୁଙ୍କ ସହିତ ପଡୋଶୀ ଭାବରେ ୫/୬ ବର୍ଷ ରହିଛି । ମୁଁ ଦୃଢ଼ତାର ସହ କହିପାରେ ଯେ ସେ ଯାହା, ତାଙ୍କ ଲେଖା ସେହିଭଳି । ସେ ନିଜେ ଯାହା ଜୀବନକୁ ଯେମିତି ବଞ୍ଚିଛନ୍ତି ସେ କଥା ସେମିତି ସେ ତାଙ୍କ ଲେଖା ଭିତରେ ଫୁଟାଇଛନ୍ତି । ତାଙ୍କ ହୃଦୟ ଓ ମନଟି ଯେମିତି ଗଙ୍ଗା ନଦୀ । ତାଙ୍କ ଭିତରେ ସର୍ବଦା ଗୋପୀଭାବ ଛଳଛଳ ହେଉଥାଏ” ।

ଅନୁଜ ପ୍ରତିମ ମହାପାତ୍ର ନୀଳମଣି ସାହୁ ନିଜେ ଲେଖିଥିଲେ, “ବାମାଚରଣ ସବୁ ଗଳ୍ପରେ ମାନବିକତାର ଜୟଗାନ କରିଛନ୍ତି । ମଣିଷର ଛୋଟିଆ ପଣକୁ



Digitized by srujanika@gmail.com

ଭୂମାର ଉତ୍ସଙ୍ଗ ଭିତରେ ମୁକ୍ତି ଦେଇଛନ୍ତି । କ୍ଷମାଶୀଳ ଉଦାରମନ ନେଇ ସେ ମଣିଷଙ୍କୁ ଦେଖିଛନ୍ତି । ତାଙ୍କ ମଣିଷମାନେ ଜାତି, ଧର୍ମ, ବର୍ଣ୍ଣ ଓ ଯେକୌଣସି ଶ୍ରେଣୀ ବା ବର୍ଗର ଉର୍ଦ୍ଧ୍ୱରେ । ସେମାନେ ଏଇ ବାସ୍ତବ ଜଗତରେ ରକ୍ତମାଂସର ମଣିଷ କିନ୍ତୁ ସେମାନେ ସମସ୍ତେ ଭାବରସରେ ଜୁଡୁବୁଡୁ” ।

ମହାପାତ୍ର ନୀଳମଣି ସାହୁଙ୍କ ପରି ବିଖ୍ୟାତ ଲେଖକ ଶାନ୍ତନୁ କୁମାର ଆଚାର୍ଯ୍ୟ ମଧ୍ୟ କିଛିକାଳ ବାମାଚରଣ ମିତ୍ରଙ୍କ ପ୍ରତିବେଶୀ ଥିଲେ । ଶାନ୍ତନୁବାବୁଙ୍କ ପତ୍ନୀ, ସୁଲେଖିକା ନିରୂପମା ଆଚାର୍ଯ୍ୟ ବାମାଚରଣଙ୍କୁ ଖୁବ୍ ସମ୍ମାନ ଦେଇଥିଲେ । ଶ୍ରୀମତୀ ଆଚାର୍ଯ୍ୟ ବାମାଚରଣଙ୍କୁ ଖୁବ୍ ସମ୍ମାନ ଦେଉଥିଲେ । ଶ୍ରୀମତୀ ଆଚାର୍ଯ୍ୟଙ୍କର ଲେଖାଟି ଗୋଟେ ମର୍ମସ୍ପର୍ଶୀ ଶ୍ରଦ୍ଧାଞ୍ଜଳି । ଓଡ଼ିଆ ସାହିତ୍ୟ ଓ ସାହିତ୍ୟିକଗଣ ଯେ ବାମାଚରଣଙ୍କୁ ଜୀବନରେ ବା ମୃତ୍ୟୁ ପରେ ଯେ ଯଥାଯୋଗ୍ୟ ସମ୍ମାନ ଦେଇପାରିନାହାନ୍ତି ଏକଥା ସେ କ୍ଷୋଭର ସହ ସେଥିରେ କହିଛନ୍ତି ।

ବାମାଚରଣ ମିତ୍ରଙ୍କ ଶବ ଶ୍ମଶାନକୁ ନିଆଯାଉଥିବାବେଳେ ହାତରେ ନିଜ ବଗିଚାର ଡାଲିଆ ସେବତୀ ଫୁଲ ଧରି ଧାଇଁ ଧାଇଁ ଯାଇଥିଲେ ନିରୂପମା, ସାଙ୍ଗରେ ଥିଲେ- ବୀଣାପାଣି ମହାନ୍ତି । ମାଲଭାଇମାନଙ୍କ ଛଡା ଆଉ ମାତ୍ର ଚାରି ପାଞ୍ଚ ଜଣଙ୍କୁ ଦେଖି ମର୍ମାହତ ହୋଇଥିଲେ ନିରୂପମା । ଯେଉଁ ଲୋକଟି ଜୀବନସାରା ସାଧନା କରି ଓଡ଼ିଆ ସାହିତ୍ୟକୁ ସମୃଦ୍ଧ କରିଗଲା, କଅଣ ଦେଲା ତାକୁ ଏ ସମାଜ ? ସାହିତ୍ୟିକ ବନ୍ଧୁମାନେ କିପରି ଉଦାସୀନ ରହିପାରିବେ ? ନିରୂପମା ଧାଇଁ ଧାଇଁ ଯାଇ ଫୁଲତକ ଶବର ପାଦପାଖେ ରଖିବାକୁ ବଢ଼ାଇଦେଇ ଠିଆହୋଇ କାନ୍ଦୁଥିଲେ । ଜଣେ ପଥଚାରୀ ସ୍ତ୍ରୀ ଲୋକ ପଚାରିଲା, “କିଏ ମ ! କିଏ ଚାଲିଗଲା, ତୁମର କଅଣ ହୁଅନ୍ତି” ?

ନିରୂପମା ଲେଖିଛନ୍ତି, “ମନ କହିଲା, ସେ ମୋର କଅଣ ନୁହନ୍ତି” ? ଠିକ୍ ଏଇ ପ୍ରକାର ପ୍ରତିକ୍ରିୟା ବିଶିଷ୍ଟ ଲେଖକ ଚନ୍ଦ୍ରଶେଖର ରଥ ମଧ୍ୟ ପ୍ରକାଶ କରିଥିଲେ, ତାଙ୍କର ‘ନିଜକୁ ବାମା ମିତ୍ର ମନେକରି’ ଦୀର୍ଘ ଲେଖାରେ । ସାହିତ୍ୟିକ ଓ ସତୀର୍ଥ ରାଜକିଶୋର ମହାନ୍ତି ବାମାଚରଣଙ୍କର ସମ୍ପର୍କରେ ଲେଖିଥିଲେ, “ସେ ଥିଲେ ଅତି ଉଚ୍ଚକୋଟୀର ସରଳ, ନିର୍ମାୟା ମଣିଷଟିଏ । ଦୟାବନ୍ତ ଥିଲା ତାଙ୍କର ହୃଦୟ । ଭାବଗମ୍ଭୀର, ମର୍ଯ୍ୟାଦାବନ୍ତ ଥିଲା ତାଙ୍କର ବ୍ୟକ୍ତିତ୍ୱ । ପ୍ରାଣସତ୍ତା ଥିଲା ଅତି ରସାଳ - ଅତି ଉଦାର । ଚାଷୀ ପିଲାଟିର ଅତଳତଳ ମନ ଗହୀର, ପଇଁବା ବିକାଳିଟିର ଛଳଛଳ ଦୁଇ ଆଖି, ସେ



Digitized by srujanika@gmail.com

କେଉଁ ମଫସଲୀ ବୁଢ଼ାଟିର ଛିଣ୍ଡା, ମଇଳା ଅଖା, ରାମୁଲ୍ ମୋଚିର ଟୁକୁରା ଟୁକୁରା ଚମଡ଼ା ଆଉ ଚଟିସିଆଁ ଡାମ୍ଫଣ, କେଉଁ ବାଉରାଣୀ ଝିଅଟିର ଗେଣ୍ଡା ସାଉଣ୍ଟିବା କଥା ଆଉ ବ୍ୟଥା, ବଟ ମହାପୁରୁଷର ନିର୍ଲିପ୍ତ, ଉଦାର ଭାବଭଙ୍ଗୀର ରୂପ କିମ୍ୱା ସରଳ ନିର୍ବୋଧ ଶିଶୁଟି ପାଖରେ ବିଛାଟିଏ ଖେଳିବାର ଦୃଶ୍ୟ ପର୍ଯ୍ୟନ୍ତ ବ୍ୟାପିଯାଉଥିଲା ତାଙ୍କର ଅନୁଭୂତି ସୀମା ଆଉ ସରହଦ, ଅର୍ନ୍ତଦୃଷ୍ଟି" ।

ଆଉ ଜଣେ ଗବେଷକ ଲେଖିଥିଲେ, ବାମାଚରଣଙ୍କ ବିଶିଷ୍ଟତା ହେଲା ସେ କ୍ଷଣକ ମଧ୍ୟରେ ଯେକୌଣସି ବିଷୟରେ ମର୍ମସ୍ଥଳରେ ପହଞ୍ଚି ପାରୁଥିଲେ ଓ ବିଷୟଟିକୁ ଶ୍ରୋତା ବା ପାଠକ ଆଗରେ ସରଳ ଭାବରେ ପରିବେଷଣ କରିପାରୁଥିଲେ, ଫଳରେ ବହୁ ବିତର୍କିତ ବିଷୟରେ ଅପ୍ରତ୍ୟାଶିତ ସରଳ ରୂପ ପାଠକକୁ ଉଭୟ ମୁଗ୍ଧ ଓ ଚକିତ କରୁଥିଲା । ଯେକୌଣସି ତତ୍ତ୍ୱକୁ ଲୀଳାରେ ପ୍ରତ୍ୟକ୍ଷୀଭୂତ କରି ଦେଖାଇବା ହିଁ ଆର୍ଟ ବା କଳା ବୋଲି ବାମାଚରଣଙ୍କର ମତ । ବାମାଚରଣ ଥିଲେ ଜଣେ ପରିପୂର୍ଣ୍ଣ ମଣିଷ । ସାହିତ୍ୟ, ସନ୍ତରଣ ଶାସ୍ତ୍ରୀୟ ସଙ୍ଗୀତ, ହକି, ଚେସ୍ ଖେଳ, ଦୁଃସାହସିକ ଅଭିଯାନ, ବନ୍ଧୁବତ୍ସଳତା, ରସବୋଧ, ଅଧ୍ୟୟନ, ଆଧ୍ୟାତ୍ମିକତା, ହେତୁବାଦ, ଆସକ୍ତି ଓ ଅନାସକ୍ତି ସବୁ ତାଙ୍କରି ଭିତରେ ଥିଲା । ତେବେ ସେ ଥିଲେ ମୂଲ୍ୟବୋଧର ମଣିଷ । ତାଙ୍କ ଗଳ୍ପନାୟକମାନଙ୍କର ଆଦର୍ଶ ସକ୍ରେଟିସ୍‌ଙ୍କ ଆଦର୍ଶ - କେବଳ ବଞ୍ଚିବାଟା ବଡ଼କଥା ନୁହେଁ, ମୂଲ୍ୟବୋଧକୁ ନେଇ ବଞ୍ଚିବା ହିଁ ବଡ଼କଥା । ସେଥିଲାଗି ତାଙ୍କ ଗଳ୍ପ 'ପାଷାଣର ପ୍ରାଣ'ର ଅଭାବୀ ବାପଟିଏ ମିଛ କହି ଦୋକାନୀକୁ ଜଖମ ଥର୍ମୋମିଟର ଫେରାଇ ଦେଇପାରେ ନାହିଁ । କହେ - "ଭଗବାନ ମୋତେ ଧନମାନ ନ ଦିଅ, ଆପତ୍ତି ନାହିଁ କିନ୍ତୁ ଅସାଧୁ କରନାହିଁ" ।

ବାମାଚରଣଙ୍କ ଗଳ୍ପରେ ଗବାକ୍ଷ ଦେଇ ତାଙ୍କ ସମୟର ଓଡ଼ିଶାକୁ ଭଲ ରୂପେ ଦେଖିହୁଏ । ବୁଝିହୁଏ ସାଧାରଣ ମଣିଷଙ୍କ ଆବେଗ ଓ ଭାବପ୍ରବଣତା । ତାଙ୍କର ଅନୁଭବ, ଅଭିଜ୍ଞତା, ବିରାଗ ଅନୁରାଗ, ଭାବ-ଅଭାବ, ସ୍ୱପ୍ନ-ଅଭିଳାଷ, ସାମର୍ଥ୍ୟ ଅସହାୟତା ସବୁକୁ ପାଠକ ପ୍ରାଞ୍ଜଳ ଭାବେ ବୁଝିପାରେ । ପୁଣି ବୁଝିପାରେ ଜୀବନର ଘନ ରହସ୍ୟ, ଯାହାର ସାରାଂଶ ହେଉଛି, ତୁମର ଶେଷ ଅଛି, ମୋର ଶେଷ ଅଛି, ଜୀବନର ଶେଷ ନାହିଁ । ମାଆ ମୂଷାକୁ ସାପ ଗିଳିଦେଇପାରେ, ମାତ୍ର ସେତେବେଳକୁ ଶାବକ ମୂଷା ଗୁଡିକ ପୃଥିବୀକୁ ଆସିସାରିଥାଆନ୍ତି । ବାମାଚରଣ ଲଘୁକଥା ଛଳରେ ଗମ୍ଭୀର କଥା କହିବସନ୍ତି ଓ ଗମ୍ଭୀର କଥାକୁ ଲଘୁ ରସରେ



Digitized by srujanika@gmail.com

ବୁଡେଇ ବଖାଣିଥାଆନ୍ତି । ଚାଲି ଚାପ୍‌ଲିନ୍ ଥିଲେ ତାଙ୍କର ଆଉ ଜଣେ ପ୍ରିୟ ମଣିଷ । ମୋର ମନେହୁଏ, ଚାର୍ଲି ଚାପ୍‌ଲିନ୍‌ଙ୍କ ବ୍ୟକ୍ତିତ୍ୱର ପ୍ରଭାବ ତାଙ୍କ ଉପରେ ପଡିଥିଲା । ସେଥିପାଇଁ ସେ ଗମ୍ଭୀର କଥାକୁ ହସି ହସି କହିପାରୁଥିଲେ, "ମୋର କାନ୍ଦିବାର ଥିଲେ ବର୍ଷାବେଳେ ମୁଁ କାନ୍ଦେ, ତାହାହେଲେ ମୋର ଲୁହ କାହାରିକୁ ଦିଶିବ ନାହିଁ" । ବାମାଚରଣ ମିତ୍ର ସେଇଆ କହିଥିଲେ, ତାଙ୍କ ଚରିତ୍ରମାନେ ସେଇଆ କରି ଚାଲିଛନ୍ତି ।

ପତ୍ରିକା : ଆଧୁନିକ
ଶାରଦୀୟ ମହାପୂଜା ବିଶେଷାଙ୍କ - ୨୦୧୫





ଜୁଲାଇ ୧୯, ୨୦୧୫ରେ କେନ୍ଦ୍ରୀୟ ସାହିତ୍ୟ ଅକାଦେମି ତରଫରୁ ବାମାଚରଣ ମିତ୍ରଙ୍କ ଜନ୍ମ ଶତବାର୍ଷିକୀ ସମାରୋହ ।





Digitized by srujanika@gmail.com

# ଏକ ସମୁଜ୍ଜ୍ୱଳ ସାହିତ୍ୟିକ ବ୍ୟକ୍ତିତ୍ୱ : ସ୍ୱର୍ଗତ ବାମାଚରଣ ମିତ୍ର

ଶ୍ରୀ ନରସିଂହ ନନ୍ଦ

ବାମାବାବୁ ଚାଲିଗଲେ । ଗୋଟିଏ ନିରହଙ୍କାରୀ, ବିନମ୍ର, ଭଦ୍ର ଅମାୟିକ ଏବଂ ନିରୋଳା ସାହିତ୍ୟିକଙ୍କର ଶେଷ ଜୀବନ ଏମିତି ଦୟନୀୟ ଭାବେ ଅବସାନ ହୁଏ ଏକଥା ଭାବିଲାବେଳକୁ ଆମ୍ଭମାନଙ୍କ ଭିତରୁ ଅନେକଙ୍କର ଶେଷ ପରିଣତି ସମ୍ପର୍କରେ ଆଶଙ୍କା ଆସେ । କିଛିଦିନ ତଳେ ତାଙ୍କର ଅବସରପ୍ରାପ୍ତ ଜୀବନର ରଗ୍ଣ ଓ ଆର୍ଥିକ ଅନାଟନ ଅବସ୍ଥାରେ ସରକାର ସାହାଯ୍ୟ କରିବାକୁ ଗାଳ୍ପିକ ଅଖିଳ ପଟ୍ଟନାୟକ, ମହାପାତ୍ର ନୀଳମଣି ସାହୁ, ଶାନ୍ତନୁ ଆଚାର୍ଯ୍ୟ ଓ ଗୋଦାବରୀଶ ସାହିତ୍ୟ ସଂସଦର ବିନୋଦବିହାରୀ ପଲାଇ ଓ ଅନ୍ୟାନ୍ୟ ସଭ୍ୟମାନେ ସରକାରଙ୍କୁ ଆବେଦନ କରିଥିଲେ । ଏପରି ଆକସ୍ମିକ ଭାବେ ସେ ଗଲେ ଯେ ଧରିତ୍ରୀ ପୃଷ୍ଠାରୁ ତାଙ୍କ ମୃତ୍ୟୁ ସମ୍ବାଦ ଆମ ପାଇଁ ଏକ ବଜ୍ରାହତ ମର୍ମାନ୍ତିକ ଦୁଃସମ୍ବାଦ ପରି ଜଣାଗଲା । ତାଙ୍କ ଶେଷ ଦର୍ଶନ ବି ଭାଗ୍ୟରେ ମିଳିଲାନି ।

ସେଦିନର କଥା ଆଜି ଗୋଟି ଗୋଟି ମନେପଡେ । ମହାପାତ୍ର ନୀଳମଣି ସାହୁ ଥାନ୍ତି 'ଝଙ୍କାର' ସମ୍ପାଦନା ଦାୟିତ୍ୱରେ । ତାଙ୍କ ବସାରେ ପ୍ରାୟ ପ୍ରତିଦିନ ସନ୍ଧ୍ୟାରେ ସାହିତ୍ୟ ଆସର ଜମେ । ଶାନ୍ତନୁ ଆଚାର୍ଯ୍ୟ, ବେଣୁଧର ରାଉତ,



Digitized by srujanika@gmail.com

ରାଜକିଶୋର ମହାନ୍ତି, ବେଳେ ବେଳେ କୃଷ୍ଣ ପ୍ରସାଦ ମିଶ୍ର, ହରି ବାବୁ ଆଉ ଆମ ଗୋଦାବରୀଶ ସାହିତ୍ୟ ସଂସଦର ଆମେ କେତେ ବନ୍ଧୁ ନୀଳମଣି ବାବୁଙ୍କଘରେ ଜମୁ । ସାହିତ୍ୟର ଡ଼ିଙ୍କିଶାଳରୁ ଢେଙ୍କାନାଳ ଯାଏଁ ଅନେକ ବୈକ୍ତିକ, ତାତ୍ତ୍ୱିକ ଆଲୋଚନା ଭିତରେ ଆକର୍ଷଣୀ ଥିଲେ ବାମା ବାବୁ । ତାଙ୍କର ପଦଟିଏ ମାତ୍ର ହାସ୍ୟ ବ୍ୟଙ୍ଗ ପୂର୍ଣ୍ଣ ଶାଣିତ ମନ୍ତବ୍ୟ ମାଧ୍ୟମରେ, ସତେ ଯେମିତି ଆମ ଆଲୋଚନାର ସମସ୍ତ ନିର୍ଯ୍ୟାସ ଏକାଧାରରେ ପ୍ରକାଶ ପାଇଥାଏ ।

ସେ ଥିଲେ ତାଙ୍କ ସମବୟସୀ ବନ୍ଧୁମାନଙ୍କର ପ୍ରିୟ 'ଦାଦା' । ଆମେ କେତେକ ଅର୍ବାଚୀନ ବୟସରେ ଯଥେଷ୍ଟ ସାନ ହୋଇଥିଲେ ବି ଯେତେଶୀଘ୍ର ପଦେ ଦି'ପଦ କଥାରେ, ଖଣ୍ଡିଏ ପାନ ବିନିମୟରେ ସେ ଆପଣାର କରିନିଅନ୍ତି । ଆଶ୍ଚର୍ଯ୍ୟ ତାଙ୍କର ମେଳାପୀ ବ୍ୟକ୍ତିତ୍ୱ ! ସେଭଳି ମିଷ୍ଟଭାଷୀ, ଉଦାର, ମେଳାପୀ ମଣିଷ କଣ ଆଉ ମିଳିବେ ସତେ ?

ବେଦ, ପୁରାଣ, ବ୍ୟାସ, ବାଲ୍ମିକିଙ୍କ ଠାରୁ କାର୍ଲମାର୍କ୍ସ ପର୍ଯ୍ୟନ୍ତ ଚାର୍ବାକଙ୍କ ଠାରୁ ପାଶ୍ଚାତ୍ୟ ଦାର୍ଶନିକଙ୍କର ସୃଷ୍ଟ ସହିତ କେବଳ ପରିଚିତ ନ ଥିଲେ ସେ । ସମସ୍ତଙ୍କୁ ଘନିଷ୍ଠ ଭାବେ ହଜମ୍ କରି ତାଙ୍କ ସୃଷ୍ଟି ମାଧ୍ୟମରେ ପ୍ରକାଶ କରିଥିଲେ । ତାଙ୍କ ସହ ଆଲୋଚନା କଲେ, ଯେକେହି ନବୀନ ସାହିତ୍ୟ ସାଧକର ଜ୍ଞାନଭଣ୍ଡାର ଅଦ୍ଭୁତ ଭାବେ ବୃଦ୍ଧି ପାଉଥିଲା । ସେ ବାବଦରେ ବାମା ବାବୁଙ୍କଠାରେ ମୁଁ ବ୍ୟକ୍ତିଗତ ଭାବେ ଋଣୀ । ଆଶ୍ଚର୍ଯ୍ୟ ରକମ ଭାବେ ସେ ଜଣେ ଭକ୍ତ ଥିଲେ । ଅଥଚ ସେ ସମ୍ପର୍କରେ ପ୍ରଚାରିତ ହେବାକୁ ସେ ଆଦୌ ଇଚ୍ଛାକରୁ ନଥିଲେ । ଶ୍ରୀକୃଷ୍ଣଙ୍କ ପ୍ରତି ତାଙ୍କର ପ୍ରଗାଢ଼ ଭକ୍ତିଭାବ ମୁଁ ଏକାନ୍ତ ଭାବେ ଲକ୍ଷ୍ୟ କରିଛି ଏବଂ କେତେକ ଲେଖନୀ ମାଧ୍ୟମରେ ପ୍ରକଟିତ ହୋଇଛି ତାଙ୍କର ଅନ୍ତର୍ନିହିତ ନିଷ୍ଠାପର ଭକ୍ତିଗତ ପ୍ରାଣ ପ୍ରାଚୁର୍ଯ୍ୟ ।

ବାମା ବାବୁ ଏକାଧାରରେ ଥିଲେ କଥାକାର ଏବଂ ଉଚ୍ଚକୋଟୀର ପ୍ରବନ୍ଧକ ତଥା ସମାଲୋଚକ । ସଭା ସମିତିରେ ବକ୍ତୃତା ଦେବାକୁ ଅନୁରୋଧ କଲେ ବିନମ୍ର ଭାବେ ସେ ଏଡେଇ ଦିଅନ୍ତି । ଅଥଚ ତାଙ୍କ ସହିତ ଆଳାପ ଆଲୋଚନା କଲେ ଘଣ୍ଟା ଘଣ୍ଟା ଅନର୍ଗଳ ଗପି ଚାଲନ୍ତି, ଜୀବନ, ସାହିତ୍ୟ ଓ କଳା ସମ୍ପର୍କରେ । ମଝିରେ ମଝିରେ ସଙ୍ଗୀତଜ୍ଞ, କଳାକାରଙ୍କ ଜୀବନୀ ସମ୍ପର୍କରେ ତାଙ୍କ ନିବନ୍ଧମାନଙ୍କରୁ ତାଙ୍କର ନାଟକ ସଙ୍ଗୀତ ଓ କଳାର ଉନ୍ନତ ରଚିବୋଧ ସମ୍ପର୍କରେ ପରିଚୟ ମିଳେ । ତାଙ୍କ 'ଜୀବନ-ସାହିତ୍ୟ-କଳା' ନିରସ ପ୍ରବନ୍ଧ ନୁହଁ ବରଂ ସୁଖପାଠ୍ୟ



Digitized by srujanika@gmail.com

ଗଳ୍ପ ଏବଂ ଉଚ୍ଚାଙ୍ଗ ସମାଲୋଚନା । ଚନ୍ଦ୍ରଶେଖର ରଥଙ୍କୁ ଛାଡିଦେଲେ ତାଙ୍କ ଶୈଳୀର ପ୍ରବନ୍ଧ ଏବେ କେହି ଲେଖୁନାହାନ୍ତି ।

ଓଡ଼ିଆ ଗଳ୍ପରେ ନିଛକ ଚରିତ୍ର, ପରିବେଷ୍ଟନୀର ଜୀବନ୍ତ ଚିତ୍ର ଏବଂ ବ୍ୟଙ୍ଗାତ୍ମକ ସୃଷ୍ଟି ଶୈଳୀରେ ଉଚ୍ଚ ଦାର୍ଶନିକ ଚିନ୍ତାର ପରିପ୍ରକାଶ ନିମନ୍ତେ ବାମା ବାବୁ ସିଦ୍ଧହସ୍ତ । ତାଙ୍କ ବଟମହାପୁରୁଷ, ଚନ୍ଦ୍ର ଓ ଚମ୍ପା, ସ୍ୱପ୍ନସିଦ୍ଧ, ନରଛଞ୍ଚାଣ ପ୍ରଭୃତି ଗଳ୍ପ ଗ୍ରନ୍ଥଗୁଡ଼ିକ ଓଡ଼ିଆ ସାହିତ୍ୟରେ ନିଜସ୍ୱ ମର୍ଯ୍ୟାଦା ଅମଳିନ ଭାବେ ଅକ୍ଷୁର୍ଣ୍ଣ ରଖିଛନ୍ତି । ଧରିତ୍ରୀର ସମ୍ପାଦକ ଶ୍ରୀଯୁକ୍ତ ରାମନାଥ ପଣ୍ଡା ହିଁ ବାମାବାବୁଙ୍କ ଗଳ୍ପଗ୍ରନ୍ଥ 'ପରାଗ'ର ପ୍ରଥମ ପ୍ରକାଶକ । ତାଙ୍କ ବିକାଶ ପ୍ରତିଷ୍ଠାନ ମାଧ୍ୟମରେ ସ୍ୱର୍ଗତ ମିତ୍ରଙ୍କର ଅନେକ ଗଳ୍ପଗ୍ରନ୍ଥ ପ୍ରକାଶିତ ୧୯୭୩ରେ ଉଚ୍ଚାଙ୍ଗ ପ୍ରବନ୍ଧ ପାଇଁ ପ୍ରଜାତନ୍ତ୍ର ବିଷୁବ ପୁରସ୍କାର ସ୍ୱରୂପ ଏକ ହଜାର ଟଙ୍କା ସେ ପାଇଥିଲେ । କିନ୍ତୁ ମାତ୍ର ୬୨ ବର୍ଷ ବୟସରେ ସେ ଏମିତି ଆକସ୍ମିକ ଚାଲିଯିବେ ବୋଲି କାହାର ଆଶାଥିଲା ? ତାଙ୍କ ବ୍ୟକ୍ତିତ୍ୱ ଓଡ଼ିଆ ସାହିତ୍ୟରେ ବାସ୍ତବିକ ଅପୂରଣୀୟ । ଭଗବାନ ଭବିଷ୍ୟତ ପାଇଁ ଆଉ କିଛି ବାମାଚରଣ ମିତ୍ର ସୃଷ୍ଟି କରନ୍ତୁ ଏହାହିଁ ପ୍ରାର୍ଥନା ।

ଧରିତ୍ରୀ
୦୨ ମାର୍ଚ୍ଚ, ୧୯୭୫





Digitized by srujanika@gmail.com

# ନିଜକୁ ବାମାମିତ୍ର ମନେକରି

## ଶ୍ରୀ ଚନ୍ଦ୍ରଶେଖର ରଥ

ଚଉସ୍ତରି ପୂଜାରେ ବୋଧେ ଖଣ୍ଡେ ଦିଖଣ୍ଡ କଣ ଲେଖିଥିଲି- ମୋର ଠିକ୍ ମନେ ପଡୁନାହିଁ । ଆପଣ ତାକୁ ସବୁ ପଢ଼ିଛନ୍ତି ନା ? ସତ କହନ୍ତୁ ଦେଖି, ଆପଣଙ୍କୁ ସେଥିରୁ କେଉଁଟା ଭଲଲାଗିଲା ? ସତେ ଭଲଲାଗିଲା ? ଓହୋ, ଆପଣମାନଙ୍କ ଭଳି ବିଦ୍ୱାନ୍ ଲୋକ ଯେତେବେଳେ କହିଦିଅନ୍ତି ଯେ ତାଙ୍କୁ ଲେଖାଟା ଭଲଲାଗିଲା, ମୋ ଭିତରଟା କେମିତି କେମିତି ହୋଇଯାଏ । ଗୋଟାଏ କଣ ସିଦ୍ଧି ପାଇଗଲା ଭଳି ଲାଗେ । ଆଉ କଣ ପଢ଼ିଛନ୍ତି କହନ୍ତୁ ନା- ମୋ କାନ ଟିକିଏ ଶୁଣୁ ! 'ଚନ୍ଦ୍ର ଓ ଚମ୍ପା' 'ବଟ ମହାପୁରୁଷ' ? ଆଉ ସେ ଯେଉଁ ହିନ୍ଦୁ ମୁସଲମାନ ଗପଟା ! ତାର ନାଁ ମନେପଡୁନାହିଁ । ନାଁଟା ମନେ ନ ପଡିଲେ କ'ଣ ଯାଏ ଆସେ ? ଆଚ୍ଛା, ଆଚ୍ଛା, ସଙ୍ଗୀତ ଉପରେ ସେ ପୁରୁଣା କାଳିଆ କଥାଗୁଡା ଆପଣଙ୍କୁ ଭଲଲାଗିଲା ? କେମିତି ଟିକିଏ ନଷ୍ଟାଲଜିକ ଲାଗିଲା ? ବାଃ, ଆପଣ ଲେଖା ମଧ୍ୟ ବାହାରିଥିଲା ବୋଲି ମୋ ଉପରେ ଆଖିପଡିଗଲା । ହେ, ହେ...ମୁଁ ମଧ୍ୟ ସେଇପରି ଉଦାର ଭାବରେ ତାକୁ ଗ୍ରହଣ କରିଛି, ସେଇ ମୋର ସୌଭାଗ୍ୟ । ମୁଁ ଆଉ ସେଥର ବିଷୁବମିଳନକୁ ଯାଇପାରିଲିନାହିଁ । ସେଠିକି ଯାଇଥିଲେ ଆପଣଙ୍କ ଭଳି ମୋର ଗୁଡିଏ ଆତ୍ମୀୟସ୍ୱଜନଙ୍କୁ ଦେଖିବାକୁ ପାଇଥାନ୍ତି । ସେତେବେଳୁ ଜାଣନ୍ତୁ ମୋର ବିପର୍ଯ୍ୟୟ ଆରମ୍ଭ ହୋଇଯାଇଥିଲା । ତା'ପରେ ମୋତେ ଚାରିଆଡୁ ମେଘ ଘୋଡେଇ ହୋଇ ଆସିଲା । ସେଥିରେ ମୋର ଦୁଃଖ ନାହିଁ । ଟୋକାଦିନେ ବଢ଼ିଆ ଫୁଟ୍‌ବଲ ଖେଳୁଥିଲି । ଏ ଯେଉଁ ମହାନଦୀଟା ଆପଣ ଦେଖୁଛନ୍ତି, ମୁଁ ପହଁରି ଯାଉଥିଲି ଏ କୂଳରୁ ସେ କୂଳକୁ ।



Digitized by srujanika@gmail.com

ଆଚ୍ଛା, କହନ୍ତୁ ନା, ମୋ ଚେହେରାଟା କଣ ସେମିତି ଗୋଟାଏ ବଡ ବାଜେ ଚେହେରା ? ମୁଁ ତ ବେଶ୍ ଲମ୍ବା ସିଧାସଳଖ ମଣିଷଟାଏ ଥିଲି । ମୋ ମୁହଁଟା ଅବଶ୍ୟ ସେତେଟା ଦୀର୍ଘ ନହୋଇଥିଲେ ଚଳିଥାନ୍ତା । ବେଳେ ବେଳେ ନିଜ ଉପରେ ରାଗିଗଲେ 'ଘୋଡାମୁହାଁ' ବୋଲି ଗାଳିଦେବାକୁ ଭାରି ସୁବିଧା ହେଉଥିଲା ମୋତେ । ଆଉବେଳେ କିନ୍ତୁ ନିଜକୁ ଘୋଟକଜାତୀୟ ପୁରୁଷ ଭାବି ଭାରି ଗର୍ବ ଅନୁଭବ କରୁଥିଲି । ମୁଁ ଏବେ ବି କହିରଖୁଛି ଯେ ଗୋଟାକେତେ ବିଷୟରେ ଆତ୍ମବିଶ୍ୱାସ ନଥିଲେ, ଗର୍ବ ଅନୁଭବ କରୁନଥିଲେ, ସଂସାରରେ ଚଳିବା ସହଜ ନୁହେଁ । ସେ ଚାରିଆଡୁ ଦାବି ହୋଇଯାଏ ତା' ! ଫଣା ଟେକି ନ ରଖିଲେ ସୁଅଟାକୁ କାଟିବେ କେମିତି ? ହେ, ହେ ! ମୁଁ ମଧ୍ୟ ସେଇଭଳି ଆପଣଙ୍କୁ ପଚ୍ଛିଚି ନା; କିନ୍ତୁ ଆପଣ ମୋ ଠଉଁ ଢ଼େର୍ ଢ଼େର୍ ବଡ ଲେଖକ । ବୟସ ଦୃଷ୍ଟିରୁ ମୋତେ ବଡଭାଇ କହୁଚନ୍ତି, ମୋର ଆପତ୍ତି ନାହିଁ । କିନ୍ତୁ, ଆପଣହିଁ ମୋର ମାନନୀୟ । ମୁଁ ଗୋଟାଏ ସତେ ଲେଖକ ନା କଣ ? ଏମିତି ଅନେକ ଦିନରୁ ଝୁଙ୍କ ଥିଲା ବୋଲି ଗଣ୍ଡେ ଗପ ଲେଖିପକାଇଚି- ଆପଣ ଉଦାର ଭାବରେ ତାକୁ ଗ୍ରହଣ କରିଛନ୍ତି ।

ମୁଁ ଏମିତି କରିଦେଉଛି ସିନା କିନ୍ତୁ ଲେଖକ ହେଲେ ଅଭ୍ୟାସଟା ଖରାପ ହୋଇଯାଏ । ଆଉ ଯଦି ଗପ ଲେଖୁଥାନ୍ତି ତାହେଲେ ତ ଅବସ୍ଥା ଆହୁରି ସାଂଘାତିକ । ତୁଚ୍ଛା କୁହାଳିଆ ଉହରା ଗୁଣ କଥାରେ ଓ କାମରେ ଜଣାପଡିଯାଏ । ସେ କାରଣରୁ ସଂସାର ବିଷୟରେ ମୁଁ ଯାହା ସବୁ ବଡ ବଡ କଥା କହିଦେଉଚି, ନିଜେ ସେଥିରୁ କିୟଦଂଶ ମଧ୍ୟ କରିପାରିନାହିଁ । ସେଠି ଚଳିବାଭଳି ଯୋଗ୍ୟତା ମୋର କେବେ ନଥିଲା । ପରିବାର ବୃଦ୍ଧି କଣ ଗୋଟାଏ ଯୋଗ୍ୟତା ନା କଣ ? ବିଶେଷ କରି ଯଦି ପୁରୁଷଟା ଘୋଟକଜାତୀୟ ହୋଇଥାଏ ଏବଂ ଗୋଟିଏ ପଦ୍ମିନୀ ଜାତୀୟ ନାରୀ ସାଙ୍ଗରେ ତାର ସଂଯୋଗ ହୋଇଥାଏ ? କିନ୍ତୁ ତେଣିକି ଆଉ ଯାହା ସମସ୍ୟା ଆସେ ତାକୁ ତୁଲାଇଲା ଭଳି ସାମର୍ଥ୍ୟ ମୋର ଆଦୌ ନଥିଲା । ସାମର୍ଥ୍ୟ ହୁଏତ ଥିଲା; କିନ୍ତୁ ରୁଚି ନଥିଲା, ପ୍ରବୃତ୍ତି ନଥିଲା । ଠିକ୍ ବୁଝିଲେ ସମୟ ବି ନଥିଲା । କାରଣ ମୁଁ ପରା ସାହିତ୍ୟ ଲେଖୁଥିଲି । ସେଇଟା ତ କିଛି ସୌଖୀନ ବ୍ୟାପାର ନୁହେଁ ଯେ ଖୋଲଅଣା ସୁବିଧା ହେଲେ ଯାଇ ଟିକିଏ ଆମୋଦ କରିନେବା, ନହେଲେ ନାହିଁ । ସେ ନିଶା ନଘାରିଲେ ଜାଣିହେବ ହିଁ ସେଇଟା କେତେ ସାଂଘାତିକ । କେମିତି ଭୂତ ଚଢ଼ିଲା ପରି ମଥା ଉପରେ ମଡେଇ ହୋଇଥାଏ । ରାତି ଗୋଟାଯାକ ଚୌକିରୁ ଚୌକିକୁ ସ୍ଥାନ ବଦଳିକରି ନାନାପ୍ରକାର



Digitized by srujanika@gmail.com

ସରଳ ଏବଂ ଜଟିଳ ଯୋଗାସନରେ ସାହିତ୍ୟ ସାଧନା କରିବାକୁ ପଡେ । ନିଶାର୍ଦ୍ଧ ପରେ ହୁଏତ ଚା' କପେ ସକାଶେ ଦାମ୍ପତ୍ୟକୁ ବାଜି ଲଗେଇ ଦିଆହୁଏ ଏବଂ ସନ୍ନ୍ୟାସ ନେବା ବାହାନାରେ ଦୁଇନମ୍ବର ଇଉନିଟ୍‌ରେ ଯାଇ ନୀଳମଣି ପାଖରେ ବୈରାଗ୍ୟତକ ଝାଡିଦେବାକୁ ହୁଏ ଏବଂ ଅନୁରାଗରେ ବୋଝେଇହୋଇ ଫେରିଆସିବାକୁ ହୁଏ । ନହେଲେ ପୁଣି ସଂସାର ଚଳିବ କେମିତି ? ଆଚ୍ଛା, ନୀଳମଣି କିଏ ବୋଲି ପଚାରୁଛନ୍ତି ? ଆଶ୍ଚର୍ଯ୍ୟ- ନା, ଠିକ୍ କଥା, ଏଥିରେ ଆଶ୍ଚର୍ଯ୍ୟ ଆଉ କଣ ? ରାତିଅଧରେ ମୋରି ଭଳି ନୟାନ୍ତ ହେଉଥିବା ସେ ଆରକ ଉଲୁକ । ସେ ଅଧମକୁ ମଧ୍ୟ ଶୀତ ରାତି ନିଦ ନାହିଁ । ଏ ସାହିତ୍ୟିକ ନିଶା ପାଇଁ ତାର ମଧ୍ୟ ଘରୋଇ ଅବସ୍ଥା ତଦ୍ରୂପ । ସେତେବେଳେ ରାଜଧାନୀ ଆକାଶର ଫାଳେ ସୋରାଏ ଜହ୍ନ ଦୈବାତ୍ ଦେଖାଦେଲେ, ମୋ ନିଶାର ଜୋର୍‌ଟା ଆହୁରି ବଢ଼ିଯାଉଥିଲା । ମୁଁ ମାତିଯାଉଥିଲି ଗୋଟାଏ ଭାବରେ । ଏଇ ଧରନ୍ତୁ ବ୍ୟାସଦେବ ସମ୍ପର୍କରେ । ସେ ତ ମଣିଷ ନଥିଲେ; ମାନେ ଅନ୍ତତଃ ମୋ ଭଳି ମଣିଷ ନଥିଲେ ! ମହାଭାରତ ବି ସାହିତ୍ୟ ନୁହେଁ । ଯଦି ତାହା ସାହିତ୍ୟରୂପେ ସମ୍ଭବ, ତେବେ ମୋ କଲମଖଣ୍ଡ ହେମାମ୍‌ଦସ୍ତାରେ ଛେଚି ଗୁଣ୍ଡ କରିଦେବା ଉଚିତ ନୁହେଁ କି ? ମୁଁ ବହୁବାର ଏଭଳି ସଂକଳ୍ପ କରି କଲମର ବେକଟାକୁ ଧରିନେଇଛି; କିନ୍ତୁ ତାକୁ ଛେଚିବା ପରିବର୍ତ୍ତେ ଶସ୍ତା କାଗଜ ଉପରେ ତାକୁ ଘୋରି ନେଇଯାଇଛି; ଫଳରେ ସାହିତ୍ୟ କିଛିଟା ଛେଚିହୋଇଯାଇଛି । ଏକାକଥା ! ମୋ ସାହିତ୍ୟ ହେଉ ବା ମୋ କଲମ ହେଉ, ବ୍ୟାସଦେବଙ୍କ ଖାତିର୍‌ରେ ମୋ ସାଙ୍ଗରେ ଛେଚିହୋଇ ଗୁଣ୍ଡ ହୋଇଯିବା କଥା । ତା ହେଉଚନ୍ତି ! ଆଉ ବ୍ୟାସଦେବ ? ସେ ମୋ ପାଇଁ ସାହିତ୍ୟ ଭଳି ଗୋଟାଏ ଚିରନ୍ତନ ନିଶା ! କହୁଚି, ଶୁଣନ୍ତୁ !

ସେ ମହାଶୟ ମୋତେ ମୂଳରୁ ତାଙ୍କ କିଣା ଚାକର କରି ରଖିଥିଲେ । ତାଙ୍କ ନାଁ ଶୁଣିଲେ ମୁଁ ସବୁବେଳେ ହାତ ଯୋଡିଦେଉଥିଲି । ସେଭଳି ଅଚିହ୍ନା ଭଦ୍ରଲୋକ ପାଖରେ ଥିଲେ କାଳେ ଦେଖେଇହେଉଛି ବୋଲି କହିପାରନ୍ତି ଭାବି ମନେ ମନେ ନମସ୍କାର କରିଦେଉଥିଲି । କାରଣ ବ୍ୟାସଦେବ ଗୋଟାଏ ହିମାଳୟ ଭଳି ମହାପୁରୁଷ, ସମୁଦ୍ର ଭଳି ତାଙ୍କର ବ୍ୟକ୍ତିତ୍ୱ । ସେ ସାରା ସଂସାରଟାକୁ ହାତପାପୁଲି ଉପରେ ଥୋଇ ନଚେଇ ପାରୁଥିଲେ । ମଣିଷଟାକୁ ଭିତରେ, ବାହାରେ, ଉପରେ, ତଳେ କୋଉଠି ସେ ନ ଦେଖିଛନ୍ତି ବୋଲି ନୁହେଁ । ନମୋ ନମଃ ! ନମୋ ନମଃ ! ଆରେ ବାବା ! ଅସମ୍ଭବ ଭାବରେ ବିରାଟ ହେଉଛନ୍ତି ବ୍ୟାସଦେବ ! ହଁ



Digitized by srujanika@gmail.com

କଣ କହୁଥିଲିଟି- ସେ ମୋତେ ନିଶା ଭଳି ଘାରିଥାନ୍ତି । ଅଳ୍ପ ବହୁତ, ସବୁ ସାହିତ୍ୟିକ ମୋର ନିଶା । ମୁଁ ସେମାନଙ୍କୁ କେତେ ଭଲପାଏ, କେତେ ସମ୍ମାନ କରେ ! ! ଫକୀରମୋହନଙ୍କ ଫଟୋ ଦେଖିଲେ ମୁଣ୍ଡିଆ ମାରିପକାଏ । ରବୀନ୍ଦ୍ରନାଥ, ସେକ୍‌ସପିୟର, ଟଲଷ୍ଟୟ, ଦାନ୍ତେ-ଆରେ ବାପ୍‌ରେ ସେମାନେ ଯେ ମୋର ପରମ ମାନନୀୟ ପିତୃପୁରୁଷ ! ! ଆଉ ଆପଣମାନେ, ଯେଉଁ କେତେଜଣ ମୋ ସାଙ୍ଗରେ ବସି ଚା' ଖାଆନ୍ତି, ଭଦ୍ରତା ଖାତିର୍‌ରେ ଆପଣଙ୍କ ଆଗରେ ଯେତିକି ପ୍ରଶଂସା କରେ, ଆପଣମାନେ ଚାଲିଗଲେ ମନେପକାଇ ତା ଅପେକ୍ଷା ଆହୁରି ବେଶି ସମ୍ମାନ କରେ, ଭୟ କରେ । ନା, ଈର୍ଷା କେବେ କରେନା । ମୁଁ ଭାରି ଭଦ୍ର କି ନା ! ! ନାଇଁ ନାଇଁ, ପରିହାସ ନୁହେଁ- ମୁଁ ପ୍ରକୃତରେ ଭାରି ଭଦ୍ର- ଏଣୁ ଅନେକ ଭୀରୁ । ଆଦୌ ଖରାପ କାମ ବା ଖରାପ କଥା ମୋ ଦ୍ୱାରାରେ ହୋଇନାହିଁ । ହଁ, ମାନୁଛି ଯେ ସଙ୍ଗଦୋଷରୁ- ମାନେ କେତେଜଣ ନିର୍ଭୀକ ସାହିତ୍ୟିକଙ୍କ ସାଙ୍ଗରେ ମିଶି ଶାଳକର ଗ୍ରାମ୍ୟ ପରିଭାଷାଟା ଥରେ ଥରେ ଉଚ୍ଚାରଣ କରିଛି । ଚାଳିଶବର୍ଷ ପରେ ନୂଆ ନୂଆ ବିରଳ ଧଳା କେଶଗୁଡ଼ିକୁ ଉତ୍ପାଟନ କରିଛି ଏବଂ ଆଉ ଗୋଟିଏ ଅପରାଧ କରିଛି । ଆପଣଙ୍କ ଆଗରେ କହିଦେଲେ ଦୋଷ ଲାଘବ ହୋଇଯିବ ବୋଲି କହିଦେଉଛି । ଅନେକ ଦିନ ତଳେ, ମୋର ଜଣେ ଭାଉଜଲେଖା ହେବେ, ତାଙ୍କୁ ଥରଟେ ଚିମୁଟି ଦେଇଛି ! ! ପରେ ସମଗ୍ର ଫ୍ରଏଡ୍‌ଶାସ୍ତ୍ର ଅନୁସାରେ ଅର୍ଥ କରି କରି ଗ୍ଳାନିଭାରରେ ଆତ୍ମହତ୍ୟା କରିଥାନ୍ତି । ଆପଣଙ୍କ ଭିତରୁ ଜଣେ ମୋତେ ହସି ହସି ତା ଅପେକ୍ଷା ଶତଗୁଣ ଭୟଙ୍କର କାଣ୍ଡ ତାଙ୍କ ଜୀବନରୁ ଶୁଣାଇ ଆଶ୍ୱସ୍ତ କଲେ । ...ନା, ସେ କିଏ ବୋଲି ଆପଣ ପଚାରନ୍ତୁ ନାହିଁ । ଓଡ଼ିଶାରେ ସାହିତ୍ୟିକମାନଙ୍କର ନାଁ ଧରିବା ମନା ବୋଲି କଣ ମୁଁ ଜାଣିନାହିଁ ? ପାଞ୍ଚଜଣଙ୍କ ନାଁ କହିଦେଲେ ଷଷ୍ଠଜଣକ ଗଛ ଉହାଡ଼ରୁ ମୋ ଉପରକୁ ବୋଲୁଅ ଚାଡ଼ିବ ବୋଲି କଣ ଜାଣିନାହିଁ ? ଅନ୍ତତଃ ଆପଣଙ୍କୁ ନିରାପଦ ରଖିବା ତ ମୋର କର୍ତ୍ତବ୍ୟ !

ଦେଖନ୍ତୁ, କଥା କେମିତି ଧାଡ଼ି ଛାଡ଼ିଗଲା; ବ୍ୟାସଦେବଙ୍କ କଥା କହୁ କହୁ କୁଆଡ଼େ କୁଆଡ଼େ ଚାଲିଗଲି । ଏଇଟା ହେଲା ଅଧମ ଗାଳ୍ପିକର ଲକ୍ଷଣ । ଅଯଥା ଫେଣେଇହେବା ତାର ଗୋଟାଏ ବଦଭ୍ୟାସ । ଆଚ୍ଛା, ବ୍ୟାସଦେବ ମୋତେ ଘାରିଥାନ୍ତି ଅନେକ ଦିନ ଧରି । ମୁଁ ମନେ ମନେ ତାଙ୍କରି ନାଁ ଜପୁଥାଏ । ଲେଖାଲେଖି ସେ କେତେ ମାସ ସମ୍ପୂର୍ଣ୍ଣ ବନ୍ଦ । ଭିତରେ ଜର ଚଢ଼ୁଥାଏ । କୌଣସି କାମରେ ମନ ଧରୁ ନଥାଏ । ଘରେ ଝଗଡ଼ା ମଧ୍ୟ ନାହିଁ । ଚେଇଁଥିଲେ ସିନା



Digitized by srujanika@gmail.com

ଝଗଡା- ମୁଁ ତ ବ୍ୟାସ ନିଶାରେ ଟଳୁଥାଏ। ସବୁଗୁଡାକ ମୋତେ ଦିଶୁଥାନ୍ତି ମହାଭାରତର ଚରିତ୍ର ପରି । ଖୁବ୍ କାନ୍ଦ ମାଡୁଥାଏ । ପ୍ରଥମେ ଲୁଚେଇ ଲୁଚେଇ, ତା'ପରେ ବେଶ୍ ଖୋଲାଖୋଲି କାନ୍ଦିଲି । ଆପଣ କାହିଁକି ଏଇଠି ଭୂରୁ କୁଞ୍ଚେଇଲେ ମୁଁ ବୁଝିଗଲି । କିଛି କିଛି ବିଦ୍ୟା ସାଧିଛି- କଣ ମାହାଳିଆ ? ଆପଣ ବର୍ତ୍ତମାନ ଭାବୁଛନ୍ତି ଯେ, ଟିକିଏ ଆଗରୁ ଇଏ ନିଜକୁ ଘୋଟକଜାତୀୟ ପୁରୁଷ ବୋଲି ଗର୍ବ କରୁଥିଲା, ଫେର୍ ଏଇଲାଗେ କହିଛି ଯେ ସେ ଖୋଲାଖୋଲି କାନ୍ଦୁଥିଲା। ଲମ୍ବା ଚଉଡା ଘୋଡାମୁହାଁ ଗୋଟାଏ ପୁରୁଷ କାନ୍ଦିଲେ କେତେ ହାସ୍ୟାସ୍ପଦ ଭଲା ଦିଶୁ ନ ଥିବ। ତା ଦିଶୁଥିବ। ସେଥିକି ମୋର ଆୟତ୍ତ କଣ ? କିନ୍ତୁ ଘୋଡାମାନେ ଯେ କାନ୍ଦନ୍ତି ଏକଥା ଆପଣ ଜାଣିନାହାନ୍ତି ପରା। ସେମାନେ ତାଙ୍କ ପୌରୁଷ ସତ୍ତ୍ୱେ ଏବଂ ବୋଧହୁଏ ସେଥିପାଇଁ ଖୁବ୍ କାନ୍ଦନ୍ତି- ଏଣୁ କିଛି ଅସୁବିଧା ନାହିଁ । ମୁଁ କାନ୍ଦୁଥାଏ ଏବଂ ମନେ ମନେ ଝୁରୁଥାଏ ବ୍ୟାସଦେବଙ୍କୁ । ଦିନେ ଖୁବ୍ ବର୍ଷା ଛେଚୁଥାଏ । ଦିପହରେ ମୁଁ ମୋ ଅଫିସ୍‌ରେ ବସିଥାଏ ଏକାକୀ । ପ୍ରକାଶ ଥାଉକି ସାହିତ୍ୟିକମାନେ ଚାକିରି କରନ୍ତି, ଦରମା ଖାଇ ବଞ୍ଚନ୍ତି ଏବଂ ସାହିତ୍ୟ ଲେଖନ୍ତି । ମୁଁ ବିନା କାମରେ ବସିଥାଏ । ବାବୁମାନେ ଚାଲିଯାଇଛନ୍ତି ଚା' ଦୋକାନକୁ । ମୋ ଆଖି ଉପରେ ଛାଇଟା ମଡେଇହେଲା ପରି ଲାଗିଲା । ଅଫିସରେ ସେ ସ୍ୱତଃ ଅବରୁଦ୍ଧ କବାଟ ପାଖରୁ କେହି ଜଣେ ମୋ ଟେବୁଲ ଆଡକୁ ଚାଲିଆସିଲେ । ମୁଁ ହଠାତ୍ ଲକ୍ଷ୍ୟକଲି ଯେ ତାଙ୍କର ପ୍ରକାଣ୍ଡ ଦାଢ଼ି । ସୁନେଲି ପିଙ୍ଗଳ ବର୍ଣ୍ଣର ଗୁଡାଏ ଜଟା । ଆଖିଗୁଡାକ କଳା- ମୁହଁ ଉପରେ ଦୁଇଟା ହୀରାଖଣ୍ଡ ପରି ଦାଉ ଦାଉ । ଗୋଟାଏ ମୁହୂର୍ତ୍ତ ବିମୂଢ଼ ରହିବା ପରେ ହଠାତ୍ ମୁଁ ଚମକିପଡିଲି। ...କିଏ, ବ୍ୟାସଦେବ ? ତାପରେ କଣ ହେଲା ମୋର ମନେନାହିଁ । ଯେଉଁଠି ସେ ମୂର୍ତ୍ତି ଠିଆହୋଇଥିଲେ ତାକୁ ବାରମ୍ବାର ଲେହନ କରି ସେଇ ଭୂଇଁକୁ ଦରାଣ୍ଡିଲାବେଳେ ଅଫିସର 'ବଡବାବୁ' ଫାଇଲ୍ ନେଇ ପଶିଆସିଥିଲେ । ମୋତେ ସେଭଳି ଗୁରୁଣ୍ଡିବା ଅବସ୍ଥାରେ ଦେଖି ତାଙ୍କ ଆଖି ବୋଧହୁଏ ଖୋସିହୋଇଗଲା । ମୁଁ କିନ୍ତୁ କିଛି ନକହି ସେଇଠୁ ମୋ କଲମଟାକୁ ଗୋଟେଇବା ବାହାନାରେ ଉଠିପଡିଲି । ମୁଣ୍ଡ ବୁଲାଉଥିଲେ ମଧ୍ୟ କିଛି କହିଲି ନାହିଁ । ମୁଁ ଗୋଟାଏ ବିସ୍ତର ଭଦ୍ରମଣିଷ ଥିଲି ତ।

ଭଦ୍ର ଥିଲି ବୋଲି ବେଶି ହଟହଟା ହେଉଥିଲି । ଆପଣମାନେ ସବୁବେଳେ ମୋର ସୋଦର କୁଟୁମ୍ବୀ ( ୬ ) ଦେଖାଯାନ୍ତି । ଏଣୁ ଆପଣଙ୍କୁ ମୁଁ ସ୍ୱାଗତ ଜଣାଇଲାବେଳେ ଗଦ୍‌ଗଦ ହେଉଥାଏ । ଆପଣମାନେ ମୋତେ ବୋଧହୁଏ ନିଶ୍ଚୟ



Digitized by srujanika@gmail.com

ସ୍ନେହ କରୁଥିଲେ । ନହେଲେ କଣ ମୋର ସେ ଅସ୍ୱସ୍ତିକର ବାରପ୍ରକାରର କାଠ ଚୌକିଗୁଡ଼ାକରେ ଘଣ୍ଟା ଘଣ୍ଟା ଧରି ବସିଥାନ୍ତେ ! ମୋର ବସାଉଠା ଘରେ ଚୌକିର ସ୍ୱଚ୍ଛତାଦୃଷ୍ଟିରୁ ମୁଁ ଖଣ୍ଡେ ଖଟ ସବୁବେଳେ ପକାଇଥାଏ । ସରକାରୀ ତିନିନମ୍ବରୀ ଘରଟି ତ ଉଛୁଳୁଥାଏ ମଣିଷଙ୍କ ଭିତରେ । ମୋରି ବିସ୍ତୃତ ବିଶୃଙ୍ଖଳ ପରିବା କଥାହିଁ କହୁଛି । ଏଣୁ ସେ ବୈଠକଘର ବାଟଟିରେ ମୁଁ ଶୁଏ । ମୋ ମୁଣ୍ଡ ଉପରକୁ ରାମକୃଷ୍ଣଙ୍କ ଫଟୋ । ସେପଟେ ରବୀନ୍ଦ୍ରନାଥ, ଆଉ ଆରପଟେ ମନାଲିସା । ଆପଣ ସେଇ ଖଟଟିରେ ବେଳେ ବେଳେ ଗଡ଼ିପଡ଼ିଲେ ମୋତେ କାନ୍ଦ ମାଡ଼ିଯାଏ । ଭାବେ ଏଇମାନେ ତ ଏ ଯୁଗର ଦୀପ୍ତିମାନ୍ ପାଣ୍ଡବ । ମୋ ଚାଦରଟା ପାଞ୍ଚଦିନ ହେଲା ବଦଳ ହୋଇପାରିନାହିଁ ଏବଂ ମୋର ଅର୍ବାଚୀନ ବାନରପଲ ତା ଉପରେ ଯେଥେଚ୍ଛାଚାର କରିଛନ୍ତି । ଏଇଟା କଣ ଏଭଳି ଅତିଥିମାନଙ୍କ ପାଇଁ ଯୋଗ୍ୟ ! ଘରର ଆଉ କୌଣସି ଅଂଶ ତା ଅପେକ୍ଷା ଭଲଥିଲେ ମୁଁ ସେଇଠି ଆପଣଙ୍କୁ ନିଶ୍ଚୟ ବସାଇଥାନ୍ତି ! କବାଟ, ଝରକା, ଖଟ, ଟେବୁଲତଳ ସବୁଆଡ଼େ ବାଦୁଡ଼ି ଓହଳିଲା ପରି ମଇଲା କପଡ଼ା ଝୁଲୁଥାଏ । କାନ୍ଥକୋଣଗୁଡ଼ାକ ଭର୍ତ୍ତି ହୋଇ ରହିଥାଏ ପଟି, ତକିଆ ଏବଂ ଝାଡୁରେ । ଏଗୁଡ଼ାକ ସବୁ ନିଶ୍ଚୟ ଅଭଦ୍ର କଥା । ରୁଚି ନାହିଁ, ସଫେଇ ନାହିଁ; କିନ୍ତୁ ମୂଳତଃ ତାକୁ ବଦଳାଇବାକୁ ହେଲେ ଘରେ ଗହଳି ଟିକିଏ କମିବା ଉଚିତ ଥିଲା, କିମ୍ବା ଖର୍ଚ୍ଚ ତାଲିକାଟା ଆଉ ଟିକିଏ ଲମ୍ବାହେବା ଉଚିତ ଥିଲା- ଉଭୟ ଅସମ୍ଭବ ପ୍ରସ୍ତାବ । ଏଣୁ ଆପଣ ଆସି ମୋ ଘରେ ପହଞ୍ଚିଲେ, ମୋଟା ମୋଟା କପ୍‌ରେ, ମୋର ବିଶ୍ୱାସ ଥିଲା ଯେ ତଳେ ଛେଚିଲେ ନ ଭାଙ୍ଗୁଥିବା ପଦାର୍ଥହିଁ କିଣିବା ଉଚିତ, ଆପଣଙ୍କୁ କିଛି ଚା' ମୁଁ ଦେବାକୁ ଏକପ୍ରକାର ବାଧ ହେଉଥିଲି; କିନ୍ତୁ ସେ ଅବସରରେ ଏସବୁ ଦେଖିବା କିମ୍ବା ବୁଝିବା ପାଇଁ ସୁଯୋଗ ନଥିଲା । ମୂଳକଥା ଥିଲା ସାହିତ୍ୟ ଏବଂ ଆପଣମାନେ ଏକେ ଏକେ ମହାନ୍ ପ୍ରତିଭାର ଅଧିକାରୀ । କେତେ କଥା ସବୁ ଆପଣ ସତେ ଜାଣିଛନ୍ତି ! ମୁଁ ମୋର ସାଧମତେ ଯୋଗ ଦେଉଥିଲି । ସବୁଆଡ଼କୁ ବୁଲି ବୁଲି ଆସି କଥା ବଳେ ମୁହାଁଣ- ମୁହାଁ ନଈ ଭଳି ପଡୁଥିଲା ସାରଳା, ଗୋପାଳକୃଷ୍ଣ, କବିସୂର୍ଯ୍ୟ ଏବଂ ଦୀନକୃଷ୍ଣଙ୍କ ପାଖରେ । ତେଣିକି ଗୋଟାଏ ପଦ କଥାରେ ମୋର କିସ୍ତିମାତ୍ ହୋଇଯାଉଥିଲା । ସେ ଗଉଡ଼ଟୋକା ନାଁ ପଡ଼ିଲେ ମୋର ରକ୍ତ ପାଣି ହୋଇଯାଉଥିଲା । ମୁଁ ବିହ୍ୱଳ ହୋଇ କାନ୍ଦିପକାଉଥିଲି କିମ୍ବା ଉନ୍ମତ୍ତ ଭଳି ଆପଣଙ୍କ ଆଗରେ ଚିତ୍କାର କରୁଥିଲି । ମୋର ଉପାଦାନ ତାକୁ ସମ୍ଭାଳି ପାରୁନଥିଲା । ସେ ସବୁବେଳେ ମୋର ପୁରୁଷକାର



Digitized by srujanika@gmail.com

ହରଣକରିନେଉଥିଲା ଏବଂ ଏ ଯେଉଁ ବୈଷ୍ଣବକବି କେତେଜଣ ଓଡ଼ିଆରେ ସବୁ ସାରିଦେଇଛନ୍ତି, ସେମାନେ ମୋତେ ଏମିତି ଦୁର୍ବଳ କରିବା ପାଇଁ ଦାୟୀ । ମୁଁ ସେ ପ୍ରସଙ୍ଗ ଉଠିଲେହିଁ କାନ୍ଦେ । ଗୋପୀ ପାଇଁ ନନ୍ଦ, ଯଶୋଦା, ଦେବକୀ, ବସୁଦେବ ସମସ୍ତଙ୍କ ପାଇଁ ବହେ ଲେଖା କାନ୍ଦିଯାଏ । ତାପରେ ଶଠଶିରୋମଣି ଧୋକାବାଜ୍ ମୋର ପ୍ରିୟତମ ପାଇଁ ଜୀବନସାରା କାନ୍ଦି କାନ୍ଦି ବିତାଇଦିଏ । ମୋର ଭିତରିକଥା ଆପଣଙ୍କ ଭିତରୁ ଜଣେ ଦିଜଣ ଜାଣିଥିଲେ । ଏଣୁ ମୋତେ ହତବୀର୍ଯ୍ୟ କରିବାକୁ ଥିଲେ, ସେମାନେ ଏଇ ଗୋଟିଏ ମାତ୍ର ନାଁରେ ମୋତେ ଫାୟାର୍ କରୁଥିଲେ । ସେଇ ଗୋଟାଏ ଚୋଟରେ ମୁଁ ଟଳିପଡୁଥିଲି ଦ୍ୱାପରକୁ, ମଧୁରାକୁ ଏବଂ ଗୋପକୁ ।

ତାରି ପ୍ରଭାବରେ ଶେଷବେଳକୁ ମୋର ଆଉ ଗୋଟାଏ ଖୋଇ ଉଠିଲା । ଆପଣ ଶୁଣିଲେ ହୁଏତ ହସିବେ; କାରଣ ପାଗଳାମି ଛଡା ଏଇଟା ଆଉ କିଛି ନୁହେଁ । ମୁଁ ଓଲୁଙ୍କ ଭଳି ପଚାରିବା ଆରମ୍ଭ କରିଦେଲି... "ମୁଁ ଭଗବାନଙ୍କୁ କେମିତି ଦେଖନ୍ତି !" ଇଂରାଜୀରେ 'ଗଡ୍' ଶବ୍ଦ ବାରମ୍ବାର ଜପିଲି । ଆପଣ ସେ ଅବସ୍ଥାରେ ମୋତେ ଦେଖିଛନ୍ତି; ମୋର ସେ ନିର୍ଲଜ୍ଜ ପ୍ରଶ୍ନ ଶୁଣିଛନ୍ତି; ଭଦ୍ରତା ଖାତିର୍‌ରେ କିଛି କହିନାହାନ୍ତି ହୁଏତ; କିନ୍ତୁ ମନେ ମନେ ଯାହା ମନ୍ତବ୍ୟ ଦେଇଛନ୍ତି ସେଇଟା ମୁଁ ଜାଣେ । ତଥାପି କଣ କରାଯାଏ ? ନିଶା ଘାରିଲେ ତ ଓହ୍ଲେଇବା ଯାଏଁ ଅପେକ୍ଷା କରିବାକୁ ହୁଏ । ଆପଣ ସବୁ ସତ୍ତ୍ୱେ ମୋତେ ସ୍ନେହ କରିଆସିଛନ୍ତି, ସହି ଆସିଛନ୍ତି । ଅଣଓସାରିଆ ଲୁଙ୍ଗି ପିନ୍ଧିଥିଲେ ମୋର ଗୋଛି ଦେଖାଯାଏ । ସେଇଟା ମୋ ଦୋଷ । ଫେକ୍ଟେରୀରେ ଭାରତୀୟ ଉଚ୍ଚତା ପାଞ୍ଚଫୁଟ ଚାରିଇଞ୍ଚ ଲୋକଙ୍କ ପାଇଁ ଧୋତି ବୁଣାଯାଏ । ଏମିତି ଅର୍ଘାମଣିଷ କେତେଜଣ ଅଧେ ଫୁଙ୍ଗୁଳା ରହିଲେ କଣ ଯାଏଆସେ ! ସେଭଳି ଲୁଙ୍ଗି ଉପରକୁ ବଡ ସାଇଜ୍‌ର ହାତବାଲା ଗଞ୍ଜିଟାଏ ମୁଁ ପିନ୍ଧିଥାଏ । ଆପଣ ତାକୁ ଦେଖି ହସନ୍ତି । ଅନେକ ଦିନ ଗାନ୍ଧିବାଦ ପାଇଁ ମୁଁ ବେଳେ ବେଳେ ଖଦଡ ପଞ୍ଜାବି ସାଙ୍ଗକୁ ଖଦଡ ଧୋତି ପିନ୍ଧି ବାହାରିପଡେ । ସେତେବେଳେ କିନ୍ତୁ ଗେଞ୍ଜି ପିନ୍ଧିପାରେନାହିଁ । ସେଇଟା ମୋତେ ବେଦରକାରୀ ଭଳି ଲାଗେ । ତାକୁ ବି ଆପଣ ଭଲପାଆନ୍ତି । ଆପଣ ଭାରି ଭଦ୍ର ! ଆପଣ ମୋର ସ୍ୱଜନ । ଆପଣ ଆଉରି ଅନେକ ଦିନ ରହି ସେଇଠି ସାହିତ୍ୟ ଲେଖନ୍ତୁ ! ମୋ ପାଇଁ ମନଦୁଃଖ କରନ୍ତୁ ନାହିଁ ।

ଆପଣ କାହିଁକି ଦୁଃଖ କରୁଚନ୍ତି ମୁଁ ଜାଣେ । ଗୋଟିଏ ସାହିତ୍ୟିକକୁ ମଶାଣିକି କାନ୍ଧେଇ ନେବା ପାଇଁ କଣ ଚାରି ପାଞ୍ଚ ଜଣରୁ ବେଶି ଲୋକ ପ୍ରୟୋଜନ ? ମୁଁ



Digitized by srujanika@gmail.com

ତାର ବନ୍ଧୁ ଆଗରୁ ଖୁବ୍ ହାଲୁକା ବି ହୋଇସାରିଥିଲି । ମୋ ହାତଟାକୁ ଟେକି ମୁଁ ଅନେଇଥିଲି । ସେଥିରେ ଚମଡାଟା ନଥିଲେ ବୋଧହୁଏ ହାଡ ଦିଶିଥାନ୍ତା । ମୋର ଖୁବ୍ ଭାରି ଗୁଡାଏ ଯଶ, ଧନ କିମ୍ବା ପ୍ରତିପତ୍ତି ଥିଲେ ତାକୁ କାନ୍ଧେଇବାକୁ ସେଇ ଅନୁପାତରେ ଲୋକ ଯାଇଥାନ୍ତେ । ତା କଣ ଏ ସାହିତ୍ୟିକ ପାଇଁ ସମ୍ଭବ ନା ସମୀଚୀନ ? ସେକଥା ଛାଡନ୍ତୁ- ସେତେବେଳକୁ ମୋର ଅର୍ଥାଭାବ ହୋଇଗଲା । ସେଥିପାଇଁ କଣ ଆପଣ ଦାୟୀ ନା ଆଉ କେହି ଦାୟୀ ? ସାରା ଜୀବନ ଆଉ କିଛି ପେଟ-ପିଠିରୁ କାଟି ସଞ୍ଚୟ କରିବାକୁ ମୋତେ ତ କେହି ମନାକରି ନଥିଲା। ଫଳରେ ମୋ ଧୋତିଟା ଆଉ ଟିକିଏ ଚିରା ପଡିଥାନ୍ତା ଏବଂ ସେ ପିଲାଗୁଡାକ ଆଉରି ଟିକିଏ ମଢ଼ିଆ ହୋଇଯାଇଥାନ୍ତେ । ଆଉ 'ଗିନ୍ନି' ? ତାର ଆଉ କ୍ଷୟ ବୃଦ୍ଧି କଣ ? ତାର ତ କୋଉ କାଳୁ ପଞ୍ଜୁରୀଖଣ୍ଡ ଝୁଲୁଥିଲା । ଏଣୁ ଯାହାହେଲା ତା ଅନିବାର୍ଯ୍ୟ । ସାହିତ୍ୟିକର ପୁଅ, ପୁଣି ଏଭଳି ଘୋଡାମୁହାଁ ବାପାର ପୁଅ ସେମାନଙ୍କ ଭାଗ୍ୟରେ ଆଉ କଣ ଥାଇପାରେ ? କିଛି ସଂଘର୍ଷ କରନ୍ତୁ। ମୁଁ ତ କାହାକୁ ହେଲେ ଅଣ୍ଟାଟିଏ ଦେଇପାରିନାହିଁ । ଜାମା ଖଣ୍ଡେ ନିୟମିତ ଭାବରେ ଦେବା କଷ୍ଟ ହେଉଥିଲା । କନ୍‌ଭେଣ୍ଟରେ ପଢ଼େଇନାହିଁ । ଏଣୁ କଣ ଆଉ ହବ ? କିନ୍ତୁ ବିଶ୍ୱାସ କରନ୍ତୁ, ସେ ହତଭାଗାଗୁଡିକର ଚରିତ୍ର ଖୁବ୍ ପକ୍‌କା । ସେମାନେ ଆଦୌ ମିଛ କହିବେନାହିଁ । ଚୋରି କରିବେନାହିଁ । ଦି ଓଳି ଉପାସ ରହିଗଲେ ମଧ ଚିତ୍କାର କରିବେନାହିଁ । ଆପଣ ପରୀକ୍ଷାକରି ଦେଖିପାରନ୍ତି । ମୋ ପାଇଁ ସବୁପ୍ରକାର ସ୍ନେହ ସତ୍ତ୍ୱେ ଆପଣଙ୍କର ଦୁଇପଦ ମଧୁର ଭର୍ତ୍ସନା ମଧ ମୋ କାନରେ ପଡୁଛି । ସେଇଟା ହେଲା ମୋର ମରଣୋତ୍ତର ଦାୟିତ୍ୱ । ମୁଁ ମୋର ଅର୍ଜିତ ପରିବାର ପାଇଁ ଅନ୍ତତଃ ଘରଖଣ୍ଡେ କାହିଁକି କଲିନାହିଁ ? ଆପଣ ମୋର ଦାୟିତ୍ୱ ଜ୍ଞାନ ବିଷୟରେ ଏତେ ଜାଣି ମଧ କିପରି ଏ ଯୁକ୍ତି କରିପାରିଲେ । ମୁଁ ଦେଖି ଆଶ୍ଚର୍ଯ୍ୟ । ସାରାଜୀବନ ଭଡାଘରେ କିମ୍ବା ସରକାରୀ କ୍ୱାର୍ଟର୍‌ରେ କଟିଗଲା । ମୋର ପ୍ରାୟ ବିଶ୍ୱାସ ହୋଇଯାଇଥିଲା ଯେ ଗୋଟାଏ ଘରେ ସବୁଦିନ ପାଇଁ ରହିଗଲେ ବ୍ୟକ୍ତିତ୍ୱର ବିକାଶ ହେବନାହିଁ । ଅନେକ ସହରରେ ବୁଲିଲା ଭଳି ଅନେକ ଘରେ ମଧ ରହିବା ଦରକାର- କିଛି ବୈଚିତ୍ର୍ୟ ତ ଆସିବ। ଏସବୁ ସତ୍ତ୍ୱେ ମୁଁ ଚେଷ୍ଟା କରିଥିଲି ଘରଖଣ୍ଡେ କରିବି ବୋଲି । ଏପରିକି ଗୋଟାଏ ସରକାରୀ ଜାଗା ମଧ ମୋ ନାଁରେ ରେଜିଷ୍ଟ୍ରି କରେଇ ନେଇ ପାରିଥିଲି; କିନ୍ତୁ ଦେଖିଲି ଯେ ସେଇଠି ଘର ପରିବର୍ତ୍ତେ ବାମ୍ପିଟାଏ କରିବା ସୁବିଧା । ରାଣ୍ଡୀପୁଅ ଅନନ୍ତା ପରି ମୁଁ ସେଇଠି ଠିଆହୋଇ ମୋର ଉଞ୍ଚ



Digitized by srujanika@gmail.com

ମାଟି ପୋତିଥିଲେ ସେ ଅନ୍ୟମାନଙ୍କ ବାଡିଆଡ ଜମିର ଉଚ୍ଚତା ଲାଭକରିଥାନ୍ତା । ମୁଁ ସେଥିପାଇଁ ସେଥିରେ ଆଉ ଅଗେଇଲି ନାହିଁ । ଏଇଭଳି ଗୋଟିଏ ଖାଲୁଆ ଭାଗ୍ୟ ନେଇ, ସେମିତି ଗଭୀର ଅଭାବଗୁଡ଼ିଏ ନେଇ ମୋର ଜୀବନଟି ଗଢ଼ା । କେତେବେଳେ ଭରପୂର ହେବାର ଆଶା ମୋର ନଥିଲା । ଏଣୁ ସେଥିପାଇଁ ଯୋଜନା ମଧ୍ୟ ନଥିଲା । ଆପଣମାନେ ବର୍ଷାଜଳ ଭଳି ଉପରୁ ଓହ୍ଲେଇ ଆସୁଥିଲେ ଏବଂ କିଛି କାଳ ମୋ ଗର୍ଭରେ ରହିଯାଉଥିଲେ ବୋଲି, ବେଳେବେଳେ ଆକାଶ ସେଇଠି ପ୍ରତିଫଳିତ ହୋଇପାରୁଥିଲା । ଯାଯାବର ପାଇଁ ଘର କଣ ହେବ ? ଯାଯାବର ପରିବାର ମଧ୍ୟ ଘର ନେଇ କଣ କରିବେ ? ମୁଁ ଏତେବର୍ଷଧରି ସାହିତ୍ୟ ସାଧନା କଲି, ସେଇଟା କଣ ଯଥେଷ୍ଟ ପୁରସ୍କାର ନୁହେଁ ? ଏବଂ ତାର ପରିଣାମରେ ଯଦି ଟିକିଏ ଦରିଦ୍ର ହୋଇଗଲି, ଉଦ୍‌ବାୟୁ ହୋଇଗଲି, କିମ୍ବା ମୋର ପେନ୍‌ସନୀ ଜୀବନର ଅବସାନ ପରେ ମୋର ପ୍ରିୟ ପରିବାରଟି ଅନାଥ ହୋଇଗଲା, ସେଥିରେ ଏତେ କ୍ଷୁର୍ଣ୍ଣ ହେବାର କଣ ଅଛି ? ଆପଣ ସୁଖରେ ରହନ୍ତୁ ! ରାଜଧାନୀରେ ଆଉରି ବଡ ବଡ କୋଠା ଉଠୁ । ଆପଣମାନେ ଆମ୍ବାସେଡୋର୍‌ରେ ଗଲାବେଳେ ଯଦି କେଉଁଠି ଗୋଟିଏ ଦରିଦ୍ର, ଚରିତ୍ରବାନ୍ ଟୋକା ଦେଖନ୍ତି- ଡେଙ୍ଗାଡାହାଳିଆ ଚେହେରା, ମୁହଁଟା ଈଷତ୍ ଲମ୍ବା, ବର୍ଣ୍ଣ ଶ୍ୟାମଳ, ଭାରି ମିଠାମିଠା ହସେ; ତାକୁ ପଚାରିବେ- ଖାଲି ଗୋଡରେ ଚାଲିବାରେ ତାକୁ ବେଶି କଷ୍ଟ ହେଉଚି କି ? ସେ ହୁଏତ ଆଖି ଛଳଛଳ କରି ଆପଣଙ୍କୁ ଚାହିଁବ । ଆପଣ ମୋଟେ ପରିଚୟ ନଦେଇ କହିବେ- କଷ୍ଟ ସହିବା ଅଭ୍ୟାସ କରିନେ ! ଏବଂ ସେଇଠି ନ ରହି ଚଞ୍ଚଳ ଚାଲିଯିବେ । ନହେଲେ ସେ ହୁଏତ ଅଭଦ୍ର ଭଳି କିଛି ମାଗିଦେଇପାରେ ।

ମୋ ପାଇଁ ଆପଣ ଢ଼େର୍ କଲେଣି । ସଭା କଲେ । ପତ୍ରିକାରେ ଲେଖା ଛପାଇଲେ । ଖୁବ୍ ପ୍ରଶଂସାପତ୍ର ଦେଲେ । ଆଉ କଣ କରିଥାନ୍ତେ ? ଆପଣ ଖୁବ୍ ଚିହ୍ନନ୍ତି । ସେଇ ଅନୁପାତରେ ସମ୍ମାନ ମଧ୍ୟ ଦିଅନ୍ତି । ଆଠନମ୍ବରକୁ ଜଗିଲା ଭଳି ଗୋପବନ୍ଧୁଙ୍କୁ କଣ ଆପଣ ଠିଆକରେଇନାହାନ୍ତି ? ମୂର୍ତ୍ତି ପାଇଁ ମୋର ଯୋଗ୍ୟତା ନାହିଁ । ତୈଳଚିତ୍ର ପାଇଁ ବି ନୁହେଁ । ମୋଠାରୁ ଢ଼େର୍ ବଡଲୋକଙ୍କ ପାଇଁ ସେ ଚୂଡାନ୍ତ ଗୌରବ ସଂରକ୍ଷିତ ରହୁ । ଆଉ ବର୍ଷେ ଦି'ବର୍ଷ ଶ୍ରାଦ୍ଧବାସରୀୟ ଲେଖା ଦୁଇଟି ଛପେଇଦେଲେ ମୁଁ ମୋର ପ୍ରାପ୍ୟ ପାଇଗଲି । ମୁଁ ଆପଣଙ୍କ ପାଖରେ ଋଣୀ ହେବା ଉଚିତ ହେଉନାହିଁ; କାରଣ ପରିଶୋଧ କରିବାର ଉପାୟ ଆଉ ନାହିଁ । ଏଣୁ ମୋ ପାଇଁ କିମ୍ବା ମୋର ସ୍ମୃତି ବହନ କରିଥିବା ସେ ଗୃହସ୍ଥଳୀର ଅନ୍ୟମାନଙ୍କ



Digitized by srujanika@gmail.com

ପାଇଁ ଆପଣ ଆଦୌ ଦୁଃଖ କରିବେ ନାହିଁ । ଆପଣ ପ୍ରାୟ ଭୁଲିଆସିଲେଣି । ସମ୍ପୂର୍ଣ୍ଣ ଭୁଲିଗଲେ ଆମେ ଗୋଟାଏ ଅସମ୍ମାନକର ଦୟାଦାନରୁ ନିଷ୍କୃତି ପାଇଯାନ୍ତୁ ।

ପୁସ୍ତକ - 'ମୁଁ ସତ୍ୟଧର୍ମା କହୁଛି'
ଗ୍ରନ୍ଥମନ୍ଦିର, କଟକ-୨
୧୯୭୭





Digitized by srujanika@gmail.com

# ବିନମ୍ର ପ୍ରଣତି

## ଶ୍ରୀମତୀ ପ୍ରସନ୍ନ କୁମାରୀ ଦେବୀ

ମୋ ସ୍ୱାମୀଙ୍କଠାରୁ (ମହାପାତ୍ର ନୀଳମଣି ସାହୁ) ମୁଁ ତାଙ୍କ କଥା ବହୁତ ଶୁଣିଥିଲି । ୧୯୫୫-୫୬ ମସିହା ପର୍ଯ୍ୟନ୍ତ ମୁଁ ତ ତାଙ୍କୁ ଆଖିରେ ଦେଖି ନଥିଲି । କିନ୍ତୁ ନୀଳମଣି ବାବୁ ପ୍ରଥମେ ମୋତେ ତାଙ୍କର କେତୋଟି ଗଳ୍ପ ପଢ଼ି ଶୁଣାଇଲେ । ସେହି ଗଳ୍ପ ଗୁଡ଼ିକ ମତେ ଏତେ ବାସ୍ତବ ଆଉ ଜୀବନ୍ତ ଲାଗୁଥାଏ ଯେ ମୋର ମନେହୁଏ, ମୁଁ ବୋଧହୁଏ ଏସବୁ ଘଟଣା ସହିତ କେବେ ଆଗରୁ ପରିଚିତ ହୋଇଛି । ଆମ ଛୋଟ ଜୀବନର କେତେ ସୁଖଦୁଃଖ ରସମୟ ରୂପ ଧରି ତାଙ୍କ ଲେଖନୀରୁ ବାହାରି ଆସିଛି । ଅତି ସାଧାରଣ ପାରିବାରିକ କଥା ସବୁ । କିନ୍ତୁ ସେ ସବୁ ଭିତରେ କେତେ ନିଗୂଢ଼ ଅର୍ଥ ଓ କେତେ ଗଭୀର ମର୍ମ । ବେଳେ ବେଳେ ଭାରି ହସ ଲାଗେ- ଏବଂ ହସୁ ହସୁ କାନ୍ଦ ବି ଲାଗେ । ତାଙ୍କର "ଲଡ୍‌ଡୁ" ଗଳ୍ପଟି ମୁଁ ପ୍ରଥମେ ଶୁଣିଲି- କିନ୍ତୁ ପରେ ପରେ ଅତି କମ୍‌ରେ ତିନି ଚାରିଥର ପଢ଼ିଲି ନିଜେ ନିଜେ । ଯେଉଁମାନେ ପଢ଼ିଥିବେ, ସେମାନେ ଅନୁଭବ କରିଥିବେ ସେ ଗଳ୍ପର ବିଷୟ ବସ୍ତୁଟି କେତେ ହାସ୍ୟଉଦ୍ଦୀପକ ! ପୁଣି କେତେ କରୁଣ ଓ ହୃଦୟସ୍ପର୍ଶୀ । 'ଝଙ୍କାର' ପତ୍ରିକାରେ ସେତେବେଳେ ତାଙ୍କ ଗଳ୍ପ ସବୁ ବାହାରୁ ଥାଏ । ସେହି



Digitized by srujanika@gmail.com

ସବୁ ଗଳ୍ପ ପଢୁପଢୁ ମୋର ମନେ ହେଉଥିଲା ସତେକି ମୁଁ ତାଙ୍କୁ ଦେଖିଛି ଓ ତାଙ୍କ ସହିତ ମୋର ପରିଚୟ ଅଛି । ସତେକି, ସେ ମୋର ଖୁବ୍ ନିକଟରେ ଖୁବ୍ ଆପଣାର ଜଣେ ପରମାତ୍ମୀୟ ।

କିନ୍ତୁ ସତକୁ ତ, ମୁଁ ତାଙ୍କୁ ବୋଧହୁଏ ୧୯୬୪-୬୫ ମସିହାରେ ପ୍ରଥମେ ଯେତେବେଳେ ଦେଖିଲି, ମୁଁ ମୋ ଆଖିକି ବିଶ୍ୱାସ କରି ପାରିଲିନାହିଁ । ଯାହା ତାଙ୍କ ବିଷୟରେ ଭାବିଥିଲି- ଯେମିତି ମୋ କଳ୍ପନାରେ ତାଙ୍କ ଭାବ ମୂର୍ତ୍ତି ରୂପ ନେଇଥିଲା, ଠିକ୍ ସେହିଭଳି ଆକୃତି ଓ ପ୍ରକୃତି । ଦୀର୍ଘ ଆଉ ସିଦା ଦେହ । ଦେହର ରଙ୍ଗ ମଧୁର ଓ ଶ୍ୟାମଳ । ଚାହାଣୀ ଖୁବ୍ ଭାବପୂର୍ଣ୍ଣ । ଆଉ ଅନ୍ୟକୁ ଟାଣି ନେଲାଭଳି ହସ ହସ ମୁହଁ । ଦେହରୁ କାନ୍ତା ସେଣ୍ଟର ବାସ୍ନା ବାହାରୁଥାଏ । ମୁଁ ତାଙ୍କୁ ନମସ୍କାର କଲି । ସେ ମତେ ଦେଖି ମୋର ସ୍ୱାମୀଙ୍କ ଉଦ୍ଦେଶ୍ୟରେ ହସି ହସି କହିଲେ- ଖୁବ୍ ସୁନ୍ଦରୀ ଲକ୍ଷ୍ମୀ ବୋହୁଟିଏ ତ ବାହା ହୋଇଛ ।

ନୀଳମଣିବାବୁ ତାଙ୍କର ସ୍ୱଭାବ ସୁନ୍ଦର ପ୍ରଗଲଭତାରେ କହିଲେ- ତା' ଠିକ୍ ଯେ, ହେଲେ ବଡଭାଇ, ତୁମେ ତାଙ୍କର ନାକଟିକୁ ମାର୍କ କରି ସାର୍ଟିଫିକେଟ ଦେଉଛ ତ ।

ବାମାବାବୁ ହସି ହସି କହିଲେ- ଭଲ ଭଲ ନୀଳମଣି । ସ୍ତ୍ରୀର ନାକ ଖୁବ୍ ବଡ ହେବା ଠିକ୍ ନୁହେଁ । ତା'ହେଲେ ସେମାନେ ତୁମ ଜୀବନର ସବୁ କଥାରେ ନାକ ପୂରାଇବେ । ତୁମେ ଶଙ୍କରୀମା'ଙ୍କୁ ଦେଖିଛ ତ (ବାମାବାବୁଙ୍କ ସ୍ତ୍ରୀ) ମୋ ଜୀବନରେ ଏମିତି ସ୍ଥାନ ନାହିଁ ବା ବିଷୟ ନାହିଁ ଯେଉଁଠିକି ଲମ୍ବା ନାକ ନ ପାଉଛି ।

ଏତିକି କହି ସେ ହସିଲେ- ଆଉ ଆମେ ବି ହସି ହସି ଗଡିଗଲୁ । ସବୁବେଳେ ସେ ସେମିତି । ହସିବେ ଯେମିତି, କାନ୍ଦିବେ ସେମିତି ଓ ହସେଇବେ ଯେଉଁଭଳି, କନ୍ଦାଇବେ ମଧ୍ୟ ସେଇଭଳି । ମୋର ଆଗରୁ ଧାରଣା ଥିଲା ଯେ, ଲେଖକ ମନରୁ ଫାନ୍ଦି ଫୁନ୍ଦି ଲୋକଙ୍କୁ ଭୁଲାଇବା ପାଇଁ ବା ଚମକାଇବା ପାଇଁ ଗଳ୍ପ ଲେଖନ୍ତି । ଆଉ କେତେକ ଲେଖକ ଅଛନ୍ତି- ଲେଖନ୍ତି ପ୍ରକାରେ କିନ୍ତୁ ସେମାନେ ନିଜେ ଆଉ ଏକ ପ୍ରକାରେ । ବାମାବାବୁଙ୍କ ସହିତ ପଡୋଶୀ ଭାବରେ ୫/୬ ବର୍ଷ ରହିଛି । ମୁଁ ଦୃଢ଼ତାର ସହିତ କହିପାରେ ଯେ, ସେ ଯାହା, ତାଙ୍କ ଲେଖା ସେହିଭଳି । ସେ ନିଜେ ଯାହା ଯେମିତି ଜୀବନକୁ ବଞ୍ଚିଛନ୍ତି- ସେଇ କଥା ସେ ତାଙ୍କ ଲେଖା ଭିତରେ ଫୁଟାଇଛନ୍ତି । ମୋ ସ୍ୱାମୀ ନିଜେ ଲେଖକ ଯୋଗୁଁ, ତାଙ୍କର ବନ୍ଧୁ ଲେଖକ ବନ୍ଧୁଙ୍କୁ ମୁଁ ଖୁବ୍ ନିକଟରେ ଦେଖିଛି । ବଡ ବଡ ଲେଖକମାନଙ୍କୁ ମଧ୍ୟ ଦେଖିଛି । ମାତ୍ର



Digitized by srujanika@gmail.com

ବାମାବାବୁଙ୍କ କଥା ଅଲଗା । ତାଙ୍କ ହୃଦୟ ଓ ମନଟି ଯେମିତି ଗଙ୍ଗାନଦୀ । ସେମିତି ପବିତ୍ର, ନିର୍ମଳ ଓ ଗଭୀର । ମୋ ସ୍ୱାମୀତ ତାଙ୍କୁ ବଡଭାଇ ବୋଲି ଡାକୁଥିଲେ ଓ ତାଙ୍କ ସ୍ତ୍ରୀଙ୍କୁ ଭାଉଜ ବୋଲି ଡାକୁଥିଲେ । ମୁଁ ମଧ ତାଙ୍କୁ ଭାଇ ବୋଲି ଡାକିଲି । ସେ ମତେ 'ପାପା' ବୋଲି ଡାକନ୍ତି ମୋର ଡାକ ନାଁରେ । ଆମେ ପ୍ରଥମଥର ଭୁବନେଶ୍ୱରରେ ଥିଲାବେଳେ ସେ ଦୁଇ ନମ୍ବର ଇଉନିଟ୍‌ର ରାଜମହଲ ଛକ ପାଖେ ରହୁଥିଲେ । ଆମେ ଠିକ୍ ତାଙ୍କ ବାଡିପଟକୁ ଲାଗି ଘରେ ରହିଲୁ । ସେତେବେଳେ ନୀଳମଣି ବାବୁ 'ଝଙ୍କାର' ପତ୍ରିକା ସଂପାଦନା କରୁଥିଲେ । ସେ ଦୁହିଁଙ୍କ ଭିତରେ କ୍ଷୀର ନୀର ପ୍ରୀତି । ଏପରି ବନ୍ଧୁତ୍ୱ ସଂସାରରେ ଦୁର୍ଲଭ ।

ଆମେ ଯେତେବେଳେ ଏକାଠି ବାଡିକୁ ବାଡି ଲାଗି ରହିଲୁ- ସେତେବେଳେ ଯାଇ ମୁଁ ବାମାବାବୁଙ୍କ ସ୍ତ୍ରୀ 'ଶଙ୍କରୀମା'ଙ୍କୁ ଦେଖିଲି । ବହୁ ଦିନରୁ ତାଙ୍କୁ ଦେଖିବାକୁ ବାସନା ଥିଲା- ଏଥିପାଇଁ ଯେ, କିଭଳି ସେ ଏପରି ଗୁଣବନ୍ତ ସଂସାର-ବୈରାଗୀ କବିଟିକୁ ଧରି ସଂସାର ଚଳେଇଛନ୍ତି ଏବଂ ଆଗଯାଇ ଦେଖିବି, ସେହି ମହୀୟସୀ ମହିଳାଙ୍କର ଗାରିମାମୟୀ ନାକ ନାମକ ଅବୟବଟିକୁ । ଦେଖିବି, କେଡେ ଲମ୍ବାନାକବତୀ ସେ- କେମିତି ସେ ଏତେ ବଡ ପ୍ରତିଭାବାନ୍ ଧର୍ମବନ୍ତ ଲେଖକଟିର ସଂସାରରେ ସବୁ କଥାରେ ସବୁ ବିଷୟରେ ତାଙ୍କର ସୁନା ନାକଟିକୁ ପ୍ରବେଶ କରାଇ ପାରନ୍ତି ।

ଦେଖିଲି ମଧ ସେଇଭଳି ତାଙ୍କୁ । ସତକୁ ସତ ସେଇଆ । ଖୁବ୍ ସ୍ୱାସ୍ଥ୍ୟବାନ ସୁନ୍ଦରୀ ଭଦ୍ର ମହିଳା- ଖୁବ୍ ବ୍ୟକ୍ତିତ୍ୱମୟୀ ମଧ । ବାମାବାବୁଙ୍କ ବର୍ଣ୍ଣିତ ତାଙ୍କ ନାକଟିକୁ ମଧ ଦେଖିଲି । ଭାବିଲି-ହଁ ଏ ନାକ ବାମାବାବୁଙ୍କ ସଂସାରର ସବୁଥିକୁ ପାଇଲା ଭଳି । ଖୁବ୍ ସଂଯତ କଥାବାର୍ତ୍ତା କରନ୍ତି କିନ୍ତୁ ଦେଖିଲେ ମୁହଁରେ ହସ ଫୁଟି ଉଠେ, ଭାରି ଭଦ୍ର ଓ ବିନୟୀ ମଧ । ତାଙ୍କର ଆତ୍ମ ସମ୍ମାନ ବୋଧ ଖୁବ୍ ପ୍ରଚଣ୍ଡ ଭାବେ ରହିଛି । ଦେଖିଲା ମାତ୍ରେ ଆମେ ଦୁହେଁ ପରସ୍ପରକୁ ଗ୍ରହଣ କରିନେଇଥିଲୁ । ମୁଁ ତାଙ୍କୁ ଡାକେ 'ଦିଦି' ବୋଲି ଓ ସେ ମୋ ଡାକନାମରେ ଡାକନ୍ତି । କ୍ରମଶଃ ଆମ ଦୁହିଁଙ୍କ ଭିତରେ ଭଉଣୀଭାବ ବଢ଼ି ବଢ଼ି ଚାଲିଲା ।

ପଡୋଶୀ ହୋଇତ ଥିଲୁ । ମୁଁ ଦେଖିଛି-କି ନିରଳସ ଭାବେ ସକାଳୁ ରାତି ୨ଟା ଯାଏ ସେ ଖଟୁଥାନ୍ତି । ସ୍ୱାମୀତ ଯାହାଙ୍କୁ କହନ୍ତି- ଭୋଳା ନାଥ । ସଂସାରର ଝଞ୍ଜାଳ ସବୁ ଗୋଟେଇ ଆଣ ନ୍ତି । କିନ୍ତୁ ଦିଦି ସେ ସବୁର ସମାଧାନ କରନ୍ତି । ବାମାବାବୁ ଅଫିସ କାମ ଓ ସାହିତ୍ୟକୁ ନେଇ ମାତିଥାନ୍ତି । ଘରେ ଥିବାତକ



Digitized by srujanika@gmail.com

ପଢୁଥିବେ, ନ ହେଲେ ଲେଖୁଥିବେ । ଛୋଟିଆ ଗାମୁଛା ପିନ୍ଧନ୍ତି ଘରେ । ବେଳେବେଳେ ତାଙ୍କ ପଢ଼ା ଘରେ ଛୋଟ ନେଳିଆ ବତୀଟିଏ ଜାଳି ଏକୁଟିଆ ରେଡିଓ ଖୋଲି ଖିଆଲ, ଠୁମୁରୀ ପ୍ରଭୃତି କ୍ଲାସିକାଲ ସଂଗୀତ ଶୁଣୁଥିବେ । ସତେକି ଧ୍ୟାନରେ ସେ ବୁଡିଯାଇଛନ୍ତି । ସାଂସାରିକ କଥା ନେଇ କେହି ତାଙ୍କ ସହିତ ଦେଖା କରିବାକୁ ଆସିଲେ ନିର୍ଲିପ୍ତ କଣ୍ଠରେ କହିଦିଅନ୍ତି- ଭିତରକୁ ଯାଅ- ଶଙ୍କରୀମା' ଅଛନ୍ତି ।

ପ୍ରକୃତରେ ଶଙ୍କରୀ ମା' ତାଙ୍କ ଘରର ପ୍ରାଣକେନ୍ଦ୍ର । ବାମାଭାଇଙ୍କ କଣ୍ଠରେ "ଗୋ ଶୁନ୍‌ଛ' ଭାରି ଭଲ ଶୁଣାଯାଏ । ମୁଁ ଯେମିତି ଜାଣେ- ବାମା ଭାଇ ତାଙ୍କୁ କେବଳ ଭଲପାଉନଥିଲେ- ସବୁ କଥାରେ ସେ ତାଙ୍କ ଉପରେ ନିର୍ଭରଶୀଳ ମଧ୍ୟ ଥିଲେ । ଘରର ବାସନ ମଜା ଓ ଲୁଗାଧୁଆ ଠାରୁ ଆରମ୍ଭ କରି, ବଜାର ହାଟ ଆଉ ଝିଅ ଝିଆରୀ, ପୁଅ ପୁତୁରାମାନଙ୍କ ପାଠପଢ଼ା, ବିବାହ ଓ ଥଇଥାନ ପର୍ଯ୍ୟନ୍ତ ସବୁକଥା ଦିଦି ହିଁ କରିଛନ୍ତି । ବାମାଭାଇଙ୍କ ଉପରେ ସେ କୌଣସି ସମସ୍ୟା କେବେ ଲଦିଦେଇ ନାହାନ୍ତି । ନିର୍ଦ୍ୱନ୍ଦରେ ଆଉ ନିଶ୍ଚିନ୍ତରେ ତାଙ୍କୁ ସାହିତ୍ୟ ସାଧନା କରିବାକୁ ଛାଡି ଦେଇଛନ୍ତି । ବନ୍ଧୁବାନ୍ଧବ, ଅତିଥି, ଅଭ୍ୟାଗତ କୁଣିଆ ମୈତ୍ର କିଏ ଆସୁଛନ୍ତି, କିଏ ଯାଉଛନ୍ତି କେମିତି ଚର୍ଚ୍ଚା ହେଉଛନ୍ତି- ସେ କଥା ବାମାଭାଇ ଜାଣୁନଥିଲେ । ମୁଁ ବେଳେବେଳେ ଆଶ୍ଚର୍ଯ୍ୟ ହୁଏ ଯେ ଦିଦି ଏତେ ବଡ ସଂସାରକୁ କିଭଳି ଅଣନିଃଶ୍ୱାସ ହୋଇ ଚଳାନ୍ତି । ସେ କେବେ ସେମିତି ଦେହ ଦୁଃଖରେ ପଡିନାହାନ୍ତି । ଅଥଚ, ବାମାଭାଇ ପଚାଶ ବର୍ଷ ପଶିବା ମାତ୍ରେ ରୋଗୀଣା ହୋଇଗଲେ ଓ ଦିଦିଙ୍କ ମୁଣ୍ଡରେ ସଂସାର ଜଞ୍ଜାଳ ସହିତ ତାଙ୍କ ସେବା ପରିଚର୍ଯ୍ୟାର ଅହରହ ଦାୟିତ୍ୱ ମଧ୍ୟ ପଡିଗଲା ।

କିନ୍ତୁ ଯା ବୋଲି ତମେ ଭାବନାହିଁ ଯେ ଦିଦି କେବଳ ଗୋଟିଏ ସଂସାରୀ ମହିଳା । କେବଳ ହିସାବକିତାବରେ ଜୀବନ କଟାଇଛନ୍ତି । ବାମାଭାଇଙ୍କ ସାହିତ୍ୟିକ ଜୀବନର ଆଦର୍ଶକୁ ମଧ୍ୟ ସେ ସମ୍ପୂର୍ଣ୍ଣ ଗ୍ରହଣ କରି ନେଇଥିଲେ । ତାଙ୍କ ସଂସାରରେ ଅଭାବ ଅନାଟନ ସବୁବେଳେ ଲାଗି ରହୁଥିଲା । କିନ୍ତୁ ଦିଦିଙ୍କ ଠାରେ ମୁଁ କେବେ ଲୋଭ ବା ଈର୍ଷା ଦେଖିନାହିଁ । ସେ କେବେ ମିଛ କହିଥିବାର ମୁଁ ଜାଣିନି । ପରନିନ୍ଦା, ପରଚର୍ଚ୍ଚାଠାରୁ ବି ସେ ସର୍ବଦା ଦୂରରେ ଥାଆନ୍ତି । କଥାବାର୍ତ୍ତାରେ ଓ ଅନ୍ୟ ସହିତ ବ୍ୟବହାରରେ ସେ ଏତେ ଭଦ୍ର ଓ ଶାଳୀନ ଯେ ମୁଁ ବେଳେବେଳେ ତାହା ଦେଖି ଆଶ୍ଚର୍ଯ୍ୟ ହୋଇଯାଏ ।



Digitized by srujanika@gmail.com

ପଢ଼ିବାକୁ ମଧ୍ୟ ସମୟ କରିଥାନ୍ତି । ବାଜେ ଗଳ୍ପ କରି ସମୟ ନଷ୍ଟ କରିବା ମୁଁ କେବେ ତାଙ୍କୁ ଦେଖିନି । ସେ ନୀଳମଣିବାବୁଙ୍କ ଗଳ୍ପକୁ ଖୁବ୍ ପ୍ରଶଂସା କରନ୍ତି । ତା'ଶୁଣି ବାମାଭାଇ ବେଳେ ବେଳେ ଆମ ଘରକୁ ଆସି କହନ୍ତି ହସି ହସି- "ବୁଝିଲ ପାପା ! ମୋ ଜୀବନ ବୃଥା । ମୋ ଲେଖା ତମ ଦିଦିଙ୍କୁ ଭଲ ଲାଗେନି । ସେ କେବଳ ନୀଳମଣିର ଲେଖା ପଢ଼େ । ଅଥଚ ନୀଳମଣି କହେ- ମୁଁ ତା'ଠାରୁ କୋଉଠି ଭଲ ଗପ ଲେଖେ । ଆଚ୍ଛା-ତୁମର ମତ କ'ଣ ?"

ସବୁବେଳେ ସେ ଏମିତି ପିଲାଳିଆ ଓ ରହସ୍ୟ ପରାୟଣ । ମୁଁ ତାଙ୍କ କଥା ଶୁଣି କହେ- "ମିଛକଥା ! ଦିଦି ଆପଣଙ୍କ ଲେଖାର ବହୁ ପ୍ରଶଂସା କରନ୍ତି ମୋ ଆଗେ । ସେ କ'ଣ ଆଉ ଆପଣଙ୍କ ଆଗେ ଆପଣଙ୍କୁ ପ୍ରଶଂସା କରନ୍ତେ ? କେହି ନିଜ ଜିନିଷକୁ ପ୍ରଶଂସା କରେ ?"

ତାଙ୍କ ଆଖି ସତକୁ ସତ ଆନନ୍ଦରେ ଉଚ୍ଛୁଳି ଉଠେ । ସେ ପୁଣି ପିଲାଳିଆ ହୋଇ କହନ୍ତି- ପାପା ସତ କହ- ମୋର ରାଣପକାଇ କହ । ତୁମ ଦିଦିଙ୍କୁ ମୋ ଲେଖା ସତରେ ଭଲଲାଗେ ? କେଜାଣି ? ମୋର ବିଶ୍ୱାସ ହୁଏନା !

ଆମ କଥା ମଝିରେ ନୀଳମଣିବାବୁ ଆସି ପହଞ୍ଚନ୍ତି ଓ ବାମାଭାଇଙ୍କୁ ଚିଡେଇବା ପାଇଁ କହନ୍ତି- "ତୁମର ପରା ବାମାଭାଇ ଜମା ଈର୍ଷା ନାହିଁ କୁଆଡେ ? ଭାରୀ ଦେବପୁରୁଷ ବୋଲି ପାପା କହେ । ମୁଁ ତ ହେଲି ପାପା ମତରେ ସର୍ବପାପ ଓ ଦୋଷାଦୋଷର ଆକର । ଅଥଚ ଭାଉଜ ମୋ ଲେଖାକୁ ଅଧିକ ପସନ୍ଦ କରନ୍ତି ବୋଲି ତୁମର ଏତେ ଈର୍ଷା କେମିତି ହଉଛି ?

ବାମାଭାଇ ଖୁବ୍ ସିରିଅସ୍ ହୋଇଯାଇ ତାଙ୍କୁ କୁଣ୍ଢାଇ ପକାଇ କହନ୍ତି- "ମୁଁ କୃଷ୍ଣଙ୍କ ଶପଥ ନେଇ କହୁଛି ତୁମର ପ୍ରଶଂସା ଶୁଣିଲେ ମୋ ମନ ଭାରୀ ଖୁସି ହୋଇଯାଏ କିନ୍ତୁ କଥା କଣ କି- ତୁମ ଭାଉଜ ଟିକେ ସାମାନ୍ୟ ଯଦି ମୋର ପ୍ରଶଂସା କରନ୍ତା- ତା'ହେଲେ ମତେ ଆଉ ଟିକିଏ ଭଲ ଲାଗନ୍ତା ନାହିଁ ? ଯେତେହେଲେ ଅହଙ୍କାର ଯିବ କୁଆଡେ ?

ଆମେ ସମସ୍ତେ ଆଶ୍ଚର୍ଯ୍ୟ ହେଉ ଯେତେବେଳେ ଦେଖୁ- ଦିଦି କେତେବେଳୁ ଆସି ବାଡି କବାଟ ପାଖେ ଠିଆହୋଇ ଆମ ରଙ୍ଗ ରହସ୍ୟ ଦେଖି ହସୁଛନ୍ତି ।

ସତକଥା ! ମୁଁ ବେଳେବେଳେ ଭାବେ ଦିଦି ବାମାଭାଇଙ୍କର ପତ୍ନୀ ଥିଲେ, ନା ମା' ଥିଲେ ! ଅବୋଧ ଶିଶୁକୁ ମା' ଆଖି ଆଗରେ ରଖିଲା ପରି ଦିଦି ସବୁବେଳେ ତାଙ୍କ ପିଛା ରହିଥାନ୍ତି ।



Digitized by srujanika@gmail.com

ଶେଷ ଜୀବନରେ ବାମାଭାଇ ନିଜେ ମୁହଁରେ କହୁଥିଲେ- ଶଙ୍କରୀ ମା' ମୋର ସ୍ତ୍ରୀ ନୁହେଁ- ସେ ମୋର ମାଆ । ମୁଁ କହେ କେବଳ ମା' ନୁହଁ- ଜନନୀ ଭଗିନୀ ପ୍ରିୟା- ପୁଣି ଦାସୀ, ସଖୀ ଓ ମୈତ୍ରୀ । କଅଣ ନୁହନ୍ତି ଦିଦି କୁହନ୍ତୁ ?

ଘରଣୀ ହିସାବରେ ଦିଦି ଅତୁଳନୀୟ । ମୁଁ ତାଙ୍କ ଠାରୁ ବହୁ ଘରକରଣା ବିଷୟ ଶିଖିଛି । ଧୈର୍ଯ୍ୟ ସାହସ ମଧ ଶିଖିଛି । ତାଙ୍କ ଠାରୁ ମଧ ଶିଖିଛି- କେମିତି ପ୍ରତିଭାବାନ ଖିଆଲୀ ଲେଖକ ସ୍ୱାମିଟିର ନାନାଦି ଦୌରାତ୍ମ୍ୟକୁ ଧୈର୍ଯ୍ୟଧରି ସହିବାକୁ ହୁଏ ଓ କେମିତି ତାଙ୍କର ଜୀବନ ରଥର ସାରଥୀ ହୋଇ ରଥକୁ ଠିକଣା ପଥରେ ଚଳାଇବାକୁ ହୁଏ ।

ମୁଁ ବହୁତ ସମୟରେ ଦିଦିଙ୍କ ସହିତ ହାଟବଜାରରୁ ଜିନିଷ କିଣି ଆଣିଯାଏ । ଫେରିଲାବେଳକୁ ରାତି ଦିନେ ଦିନେ ବେଶୀ ହୋଇ ଯାଇଥାଏ । ତାଙ୍କ ଦାଣ୍ଡକବାଟ ମେଲାଥାଏ । ପିଲାଏ କେହି ଶୋଇଥାନ୍ତି ଓ କେତେକ ନିଜ ନିଜ ଭିତରେ କଳି କରୁଥାନ୍ତି । ଆମ ଆସିବାର ଶବ୍ଦ ବାରି ବାମାଭାଇ ତାଙ୍କ କୋଠରୀରୁ ବାହାରି ଆସି କହନ୍ତି- "ଓଗୋ ଶଙ୍କରୀ ମା' କେତେ ଡେରି କରିଲେ ବଲତୋ ? ଆମାକେ ଖେତେ ଦାଓ ! ଦାରୁଣ କ୍ଷୁଧା ପାଛି' । ଦିଦି କହନ୍ତି- ଦେଖତ ପାପା, ଝିଅକୁ ଡାକି ଖାଇବାର ବନ୍ଦୋବସ୍ତ ନକରି କିଭଳି ବସି ରହିଛନ୍ତି । ପିଲାଏ କଣକଲେ ସେଥିପ୍ରତି ନଜର ନାହିଁ କି ନିଜ ପେଟପାଇଁ ତତ୍ପର ନୁହଁନ୍ତି । ବେଳେବେଳେ ଦିଦି ବଡ ଅଭିମାନରେ କହି ପକାନ୍ତି- ପେଟର ଜ୍ୱାଳା ସହ୍ୟ ନକରି ପାରି ବୋଧହୁଏ ଶଙ୍କରୀ ମା'କୁ ତୁମଭାଇ ଖୋଜନ୍ତି । ଆଉ କିଛି ପାଇଁ ନୁହେଁ । ସେ ଦୁହେଁ ମୋର ନମସ୍ୟ । ତାଙ୍କ ପ୍ରେମର ରୀତି ମତେ ଜଣାନାହିଁ । ଏଣୁ ଦିଦି ଅଭିମାନରେ ଏପରି ପ୍ରକାଶ କରୁଛନ୍ତି ମୋ ଆଗରେ ବୋଲି ମୁଁ ବୁଝେ ।

ସେକ୍ରେଟେରିଅଟ୍‌କୁ ଆସିବା ଆଗରୁ ବାମାଭାଇ ଏସ୍.ଡି.ଓ ଥିଲେ । ତାଙ୍କ ପାଖରେ ସେତେବେଳେ ଅନେକ ଅର୍ଡର୍ଲୀ ବା ପିଅନ ଥିଲେ ବି, ଦିଦି ସେମାନଙ୍କ ଦ୍ୱାରା ଘରର କିଛି କାମ କରାଉନଥିଲେ । ବାମାଭାଇଙ୍କର କଡା ନିର୍ଦ୍ଦେଶ ଯେ, ସେମାନେ ସରକାରଙ୍କର ଚାକର- ତମ ଘର କାମ ତାଙ୍କ ଦ୍ୱାରା କରାଇବ ନାହିଁ । ଏଣୁ ଦିଦି ସ୍ୱାମୀଙ୍କ ଆଦେଶକୁ ପାଳନ କରୁଥିଲେ କେବଳ ତାଙ୍କର ଜୀବନାଦର୍ଶର ସାଥୀ ବା ସହଧର୍ମିଣୀ ହିସାବରେ । ଅନେକ ଲୋକ ବାମାଭାଇଙ୍କୁ ଜାଣନ୍ତି ଲେଖକ ହିସାବରେ ଓ ସଚ୍ଚୋଟ ସରକାରୀ ଅଫିସର ହିସାବରେ । କିନ୍ତୁ ତାଙ୍କ ସହଧର୍ମିଣୀ ପ୍ରତିଭାମୟୀ ମିତ୍ର 'ମୋ ଦିଦିଙ୍କ' ବିଷୟରେ ବୋଧହୁଏ, କେହିକିଛି ଜାଣି



Digitized by srujanika@gmail.com

ନଥିବେବୋଲି ମୋର ଧାରଣା ଅଥଚ, ବାମାଭାଇଙ୍କ ଜୀବନର ସାଂସାରିକ ଓ ସାହିତ୍ୟିକ ସମସ୍ତ ସାଧନା ଓ ସିଦ୍ଧିର ମୂଳ ସହଚାରିଣୀ ସେ । ଓଡ଼ିଆ ସାହିତ୍ୟ ଏଇ ମହନୀୟା ନାରୀଟି ପ୍ରତି ନିଶ୍ଚୟ କୃତଜ୍ଞ ରହିବ ।

ବାମାଭାଇ ବହୁତ ଡେରୀରେ ପ୍ରେମରେ ପଡି ଯେଉଁ ଦିଦିଙ୍କୁ ବିବାହ କରିଥିଲେ ସେ ଦିଦି ତାଙ୍କ ଠାରୁ ୧୨ ବର୍ଷ ବୟସରେ ସାନ । ଶିକ୍ଷାଦୀକ୍ଷା ବି ସେହି ଅନୁପାତରେ ସ୍ୱାମୀଙ୍କ ଠାରୁ କମ୍ ଥିଲା । ଯେହେତୁ ସେ ଗ୍ରାମରେ ରହୁଥିଲେ ଓ ସେ ବେଳେ ଝିଅଙ୍କ ପାଠପଢ଼ା ପ୍ରତି ଅଭିଭାବକମାନଙ୍କର ହେୟ ଜ୍ଞାନ ଥିଲା । ଏକା ଗାର ଦୁହେଁ । ଏଣୁ ବାମାଭାଇ କଟକର କଲେଜ ଛୁଟି ସମୟରେ ଗାଁକୁ ଆସିଲେ ଦିଦିଙ୍କୁ ଦେଖୁଥିଲେ ଓ ମନେ ମନେ ତାଙ୍କୁ ଭଲପାଇ ଯାଇଥିଲେ । ବିଚାରୀ ଅନୂଢ଼ା ବାଳିକାଟି ତାଙ୍କ ପ୍ରେମର ବା କି ମୂଲ୍ୟ ଜାଣିପାରିବ ? ସେ ଯାହା ହେଉ, ଦିଦି ତାଙ୍କ ପ୍ରେମରେ ପଡିଥିଲେ ବି ବାମାଭାଇ ନିଜେ ଦିଦିଙ୍କ ସ୍ନେହ ସୋହାଗରେ ଜୁଡୁବୁଡୁ ହୋଇ ପରିଶେଷରେ ତାଙ୍କୁ ହିଁ ବିବାହ କଲେ । ସେ କେବଳ ତାଙ୍କ ସ୍ତ୍ରୀଙ୍କୁ ସମ୍ମାନ କରନ୍ତି ନାହିଁ ସବୁ ନାରୀଙ୍କୁ ସେ ସମୀହ କରି କଥା କୁହନ୍ତି । ନାରୀମାନଙ୍କ ପ୍ରତି ପ୍ରଚୁର ସମ୍ମାନବୋଧ ତାଙ୍କର । ସମସ୍ତଙ୍କ ସଙ୍ଗେ ତାଙ୍କର ବାକ୍ୟାଳାପ ବଡ ମଧୁର, ଆନ୍ତରିକ ଓ ସୁଶ୍ରାବ୍ୟ ଥିଲା । ଖୁବ୍ ବିନୟ ଓ ନମ୍ରତାର ସହିତ ସେ କଥା କୁହନ୍ତି । ମୁଁ ତାଙ୍କ ପାଟିକୁ ମନ୍ତ୍ର ମୁଗ୍ଧ ପରି ଚାହିଁ ରହିଥାଏ । ପ୍ରତ୍ୟୁତ୍ତର ପାଇଁ ମୋ ପାଟିକି ବାକ୍ୟ ସ୍ଫୁରେନି । ଦିଦିଙ୍କୁ ସେ ଦେବୀ ଭଳି ଜ୍ଞାନ କରନ୍ତି ଓ ତାଙ୍କ ପାଖେ ନିଜକୁ ଓ ତାଙ୍କର ସଂସାର ଦାୟିତ୍ୱ ପର୍ଯ୍ୟନ୍ତ ସବୁକୁ ସମର୍ପି ଦେଇ ସେ ନିଜେ ଉଲ୍ଲାସରେ ଶିଶୁଭଳି ମା' ସାରଳାଙ୍କ ପାଖେ ଗୁହାରିଆ ପଡିଥାନ୍ତି । କିନ୍ତୁ ସରକାରୀ କାର୍ଯ୍ୟରେ ତାଙ୍କୁ ତତ୍ପରତା ଦେଖିଲେ କେହି ବିଶ୍ୱାସ କରିବନି ଯେ, ଏ ଲୋକ ଅନ୍ୟବେଳେ ଏଭଳି ଭୋଳାନାଥ ।

ତାଙ୍କ ବାରି ଓ ଆମ ବାରିପଟ ହେଲା ଆମମାନଙ୍କର ଯାତାୟତର ପଥ । ସେ ଅଧିକାଂଶ ସମୟରେ ଆମ ଘରକୁ ଆସନ୍ତି । ଦୁଇ ବନ୍ଧୁଙ୍କ ଭିତରେ ଜୀବନ ଓ ସାହିତ୍ୟ ବିଷୟରେ ଆଲୋଚନା ହୁଏ । ବିଭିନ୍ନ ମତବାଦ ଉପରେ ମଧୁର ଆଳାପ ଆଲୋଚନାରୁ ତୁମୁଳ ପାଟିତୁଣ୍ଡ କରି ଆଲୋଚନାର ଘୂର୍ଣ୍ଣିବାତ୍ୟା ମଧ୍ୟରେ ସେମାନେ ବହୁ ସମୟ ରହନ୍ତି । ଯେତେବେଳେ ଆମ ଘରେ ଆଲୋଚନା ହେଉଥାଏ- ସେ ବିଷୟ ପ୍ରତି ମୁଁ ଅବଗତ ନଥିଲେ ମଧ୍ୟ ସେଇ ଘର ବାରଣ୍ଡାରେ ଦୁଇଥର ଚାଲଫେର ହୋଇଗଲେ, ସେ ମତେ ଦେଖିଦେଇ ଖୁବ୍ ବ୍ୟସ୍ତ ହୋଇ କହିପକାନ୍ତି ଆରେ



Digitized by srujanika@gmail.com

କେତେ ବେଳ ହେଲାଣିକି ? ତମେ ସବୁ ଖାଇବ ଯାଅ- ମୁଁ ଯାଏ- କହି ସୁଧାର ବାଳକଟି ପରି ଘରକୁ ଫେରି ଯାଆନ୍ତି ।

ଆଉ ଦିନକର ଘଟଣା । ଶାସ୍ତ୍ରୀଜୀ ତାସକେଣ୍ଟ ଚୁକ୍ତିସ୍ୱାକ୍ଷରିତ କଲାପରେ ସେ'ଦିନ ରାତି ୧ଟାରେ ଦୁଇବନ୍ଧୁ ଯେ ଯାହା ଘରେ ଖୁସିରେ ଯାଇ ଶୋଇଲେ । ତା'ପରଦିନ ସକାଳୁ ଆମ ବାରି କବାଟରେ କିଏ ଖୁବ୍ ଜୋର୍‌ରେ ବାଡେଇ ଭାରୀ କଣ୍ଠରେ ଅସ୍ପଷ୍ଟଭାବେ ଶୁଣିଲି କଣ କହୁଛି । କିଛି ନ ବୁଝିପାରି ମୁଁ ନିଦ ମଳମଳ ଆଖିରେ ଆସି କବାଟ ଖୋଲି ଦେଲି । ସେତେବେଳେ ସେ ଅଶ୍ରୁଳ ନୟନରେ ନିଜ ଛୋଟ ଗାମୁଛା ଖଣ୍ଡକୁ ଜୋର୍‌ରେ ଅଣ୍ଟାରେ ଧରି ଖୋସଣି ମାରି ଆମ ଶୋଇବା ଘର ଭିତରକୁ ପଶିଯାଇ ତାଙ୍କ ବନ୍ଧୁଙ୍କୁ ଶାସ୍ତ୍ରୀଜୀଙ୍କ ମୃତ୍ୟୁ ଖବର ଜଣାଇ ଦେଶର ଅବସ୍ଥା କ'ଣ ହେବ କହିବାହୁନୀ ପକାଇଲେ । ନୀଳମଣି ! ଶାସ୍ତ୍ରୀଜୀ ଚାଲିଗଲେ । ଏ ହତଭାଗ୍ୟ ଦେଶ ତାଙ୍କୁ ବଞ୍ଚାଇ ରଖି ପାରିଲା ନାହିଁ । ଭାରତର ଆତ୍ମା ଚାଲିଗଲା ।

ଦୁଇ ବନ୍ଧୁଙ୍କର ସେହି ବେଳର ମନର ଅବସ୍ଥା ଓ ଶୋକାର୍ତ୍ତଭାବକୁ ମୁଁ ବର୍ଣ୍ଣନା କରିପାରୁନି । ଭାଇ ସଦୃଶ ଦୁଇ ବନ୍ଧୁ କୋଳାକୋଳି ହୋଇ କଇଁ କଇଁ ହୋଇ କାନ୍ଦିଲେ । ସେ କ୍ରନ୍ଦନରୋଳରେ ମୋ ପିଲାଏ ସମସ୍ତେ ନିଦରୁ ଉଠି- ନନା କାହିଁକି କାନ୍ଦୁଛନ୍ତି ବୋଲି କିଛି ନବୁଝିପାରି ସହଜାତ ପ୍ରକୃତିର ଆଳଧରି କାନ୍ଦିଲେ କିଛି ବିପତ୍ତି ପଡିଛି ବୋଲି ଆଶଙ୍କା କରି ସାଇ ପଡିଶାରୁ କେତେକ ଦେଖଣାହାରି ଦଉଡି ଆସିଲେ । ସେହି ଘଟଣାର କାରଣ ଶୁଣି ସାରି ଦୁଇ ବନ୍ଧୁଙ୍କୁ ଆଢୁଆଳରେ ସାମାନ୍ୟ ଥଟ୍ଟା କରି ଆଶ୍ୱାସନା ଦେଇ ଓ ଦୁଇ ବନ୍ଧୁଙ୍କର ଏତାଦୃଶ ଭାବକୁ ପାଗଳାମୀ ଆଖ୍ୟା ଦେଇ ଯେ ଯାହା ବାଟ ଧରିଲେ । ରାଜଧାନୀ ଗୋଲାମନଗରୀରେ ବହୁ ବଡ ବଡ ବୁଦ୍ଧିଜୀବୀ ଓ ଅଫିସର ଆମରି ସାହିରେ ଥାଆନ୍ତି ଓ ସେମାନେ ଏହି ଦୁହିଁଙ୍କର ହାବ ଭାବ ଚାଲି ଚଳନକୁ ଆଢୁଆଳରେ ଥାଇ ଉପହାସ କରନ୍ତି । ବାମାଭାଇ ଓ ନୀଳମଣି ବାବୁ ଦୁହେଁ ସାହିତ୍ୟର ବିଭିନ୍ନ ବିଷୟ ଉପରେ ଆଲୋଚନା କରନ୍ତି- ବହୁବେଳେ ଆସନ୍ତି ଶାନ୍ତନୁ ବାବୁ ଓ ରାଜୁ ବାବୁ ଅନେକ ଲୋକଙ୍କର ଲେଖା ଉପରେ ଦୁଇଜଣ ଏକମତ ନହୋଇ ପାରି ତୁମୁଳ ପାଟିତୁଣ୍ଡ କରି ବାକ୍ୟ ବାଣରେ ଜର୍ଜ୍ଜରିତ ହୁଅନ୍ତି । ସେ ଆଲୋଚିତ ବିଷୟ ବସ୍ତୁର ଉଗ୍ରତା କମିଗଲେ ଓ ହଠାତ୍ ଯଦି ଅନ୍ୟ କାହାରିକୁ ଦେଖି ପକାନ୍ତି, ତେବେ ତାଙ୍କର ଦେହ, ପେଟ ଓ ସର୍ବୋପରି ଘର ମନେ ପଡିଯାଏ । 'ପୁନଃ ମୂଷିକ ଭବ' ରୀତିରେ ବଡଭାଇ ପୁଣି



Digitized by srujanika@gmail.com

ବଡଭାଇର ସ୍ଥାନରେ ରହି ଯାଆନ୍ତି ଓ ଅଗ୍ରଜ ଆଜ୍ଞାବହ ପରି ନୀଳମଣି ବାବୁ ନମସ୍କାର ଆଦାନ ପ୍ରଦାନ କରି ଯେଝା ନୀଡାଭିମୁଖେ ଫେରି ଯାଆନ୍ତି । ମୁଁ ବେଳେ ବେଳେ ଏତାଦୃଶ ପରିସ୍ଥିତି ଉପରେ ବିରକ୍ତ ହୁଏ- ପୁଣି ନରମି ଯାଏ । ଭାବେ ଭାବଜଗତର ଲୋକ ଏମାନେ । ଏମାନଙ୍କ ରିତିବିଧିକୁ ବୁଝିବା କଷ୍ଟ । ନିୟନ୍ତ୍ରଣ କରିବା କାଠିକର ପାଠ ।

ବାମାଭାଇଙ୍କର ଦେହ ଅଧିକାଂଶ ସମୟରେ ଖରାପ ହେଉଥାଏ । ଡାକ୍ତରଙ୍କ ପରାମର୍ଶ ଅନୁଯାୟୀ ତାଙ୍କୁ ସକାଳୁ ବୁଲିବାକୁ କୁହାଗଲା । ଆଛା ଅଡୁଆରେ ବିଚରା ପଡିଲେ । ଶଙ୍କରୀ ମା' 'ନଛୋଡ ବନ୍ଧା' ଲୋକ- ଏଣୁ ବୁଲିବାକୁ ନଗଲେ ଘରେ ସେ ଶାନ୍ତିରେ ବସାଇ ଦେବନି । ଏଣୁ ପ୍ରତ୍ୟୁତ୍ପନ୍ନମତିକୁ ସଙ୍ଗେ ସଙ୍ଗେ ଏକ ଉପାୟ ମିଳିଗଲା । ସଙ୍ଗେ ସଙ୍ଗେ ଦଉଡି ଆସି ମତେ ଡାକି କହିଲେ- "ପାପା' ଦେଖ- ନୀଳମଣି ସକାଳୁ ନଉଠି ବହୁତ ସମୟ ଯାଏ ଶୋଉଛି । ମୁଁ ତାକୁ ପ୍ରତିଦିନ ସକାଳୁ ଉଠାଇ ବୁଲାଇବାକୁ ନେବି- ସ୍ୱାସ୍ଥ୍ୟ ଭଲ ରହିବ- ଡିସେଣ୍ଟ୍ରି ଭଲ ହୋଇଯିବ । ତାକୁ ତମେ ସକାଳୁ ଛାଡିଦେବ । ଏହି ବାକ୍ୟଟିକୁ ସେ ଯେଭଳି ବିନୟ ସହକାରେ କହନ୍ତି- ଯେ କେହି ଲୋକ ଘଟଣା ଚକ୍ରରେ ପଡି ନୁହେଁ- ସ୍ୱଇଛାରେ ସ୍ୱୀକୃତି ଜଣାଇବ । କିଛି ଦିନ ଦୁଇ ବନ୍ଧୁ ଏପରି ରାତି ଫସର ଫାଟିଲା ବେଳକୁ କାଣ୍ଡିଆ ଚାଦର ବା ବେହେରଣ କରି ରାଜପଥରେ ଖୁବ୍ ଆବେଗ ତତ୍ପରତାର ସହ ଲମ୍ବ ଲମ୍ବ ପାହୁଣ୍ଡ ପକାଇ ଚାଲନ୍ତି । ସତେକି ଦୁଇଭାଇ ମାହେନ୍ଦ୍ର ମୁହୂର୍ତ୍ତ ଦେଖି 'ଗଡଜୟ' ଅଭିଯାନରେ ବାହରିଲେ କଥାବାର୍ତ୍ତା ହୋଇ । ସେ ବେଳେ ବାମାଭାଇ 'ଚୈତନ୍ୟ ଚରିତାମୃତ' ପଢୁଥାନ୍ତି- ଏଣୁ ସେଇ ପ୍ରସଙ୍ଗରେ ତାଙ୍କ ଆଲୋଚନା ଆରମ୍ଭ ହୁଏ- ସେ ଶ୍ରୀକୃଷ୍ଣଙ୍କୁ ଦେଖିବାକୁ ବ୍ୟାକୁଳ ହୋଇପଡନ୍ତି । ବେଳେବେଳେ ଏପରିକି ରାଜପଥକୁ ବ୍ରଜଦାଣ୍ଡ ବୋଲି ଭାବି ଦୁଃଖ ବିରହରେ ଅଭିଭୂତ ହୋଇ ସେହି ରାସ୍ତାରେ ଗଡି ଯାଆନ୍ତି । ତାଙ୍କ ତୁଣ୍ଡରୁ ଆଉ ବାକ୍ୟ ସ୍ଫୁରେନି । ତାଙ୍କ ଭିତରେ ସର୍ବଦା ଗୋପୀଭାବ ଛଳ ଛଳ ହେଉଥାଏ । ସେଇ ଭାବ ମଧ ତାଙ୍କୁ ଉନ୍ନତି କରିଦିଏ- ତାଙ୍କ ସ୍ୱାସ୍ଥ୍ୟ ଅପେକ୍ଷା ତାଙ୍କ ଭାବର ମାତ୍ରା ଅଧିକ ଥିଲା । ରାମକୃଷ୍ଣ ପରମହଂସ କହନ୍ତି- ଛୋଟ ପୋଖରୀଟିରେ ମଦମତ୍ତ ଭାବହସ୍ତି ପଶିଗଲେ ସେ ପୋଖରୀର ଅବସ୍ଥା ଆଉ ରହିବ କି ? ନୀଳମଣିବାବୁ ତାଙ୍କର ଦୁଃଖ ଓ ଭାବାନ୍ତର ହୃଦୟଙ୍ଗମ କରି 'କୃଷ୍ଣ ମିଳିବେ- ମିଳିବେ ଦିନେ' ବୋଲି କହି ରାସ୍ତାରୁ ସାଉଁଟି ଆଣି ଆଲିଙ୍ଗନ ପାଶରେ ଆବଦ୍ଧ କରି



Digitized by srujanika@gmail.com

ଧରିରଖନ୍ତି କିଛି ସମୟ । ଦୁଇ ବନ୍ଧୁ କୁଣ୍ଢିଆ କୁଣ୍ଢି ହୋଇ ଅନେକ ବେଳେ କଇଁ କଇଁ ହୋଇ କାନ୍ଦନ୍ତି । ବାମାବାବୁ ଆଉ ବହୁଦିନ ବଞ୍ଚିଥାନ୍ତେ । ତାଙ୍କର ସ୍ୱାସ୍ଥ୍ୟ ଖୁବ୍ ଭଲ ଥିଲା । କିନ୍ତୁ ଏଇ ଭାବପ୍ରବଣତା ତାଙ୍କ ସ୍ୱାସ୍ଥ୍ୟକୁ ଦୋହଲାଇ ଦେଲା ।

ଆଉ ଦିନକର କଥା– ବାମାଭାଇଙ୍କୁ ଡାକ୍ତର ଛେନା ଖାଇବାକୁ କହିଲେ । ଦିଦି ବ୍ୟସ୍ତ ହୋଇ ଭଲ ଗାଈ କିଣି ଦାଣ୍ଡପାଖେ ଚାଳିକରି ରଖି ତାରି ସେବା ଯତ୍ନରେ ଲାଗିପଡିଲେ । ଗଉଡ ଆସିଲା– ଗାଈ ଦୁହାଁ ହେଲା । ଦୁଧ ଖାଇଲେ ପିଲାଏ । ଛେନା ବି ରୀତିମତ ଜବରଦସ୍ତୀ ବାମାଭାଇଙ୍କୁ ଖୁଆଗଲା । ଗାଈକୁ ଦୁହିଁସାରି ଗଉଡ ଗୋଠରେ ସେ ଗାଈକୁ ନେଇକରିଯାଏ । ବାଛୁରୀକୁ ଦିଦି ଅଗଣାରେ କବାଟ ବନ୍ଦ କରି ରଖିଥାନ୍ତି । ଦିନେ ଦିଦି ଘରେ ନଥିବା ବେଳେ ଦାଣ୍ଡ କବାଟ ଖୋଲାଥିଲା । ଦୂରରେ ଗାଈ ଆସିବା ଶବ୍ଦ ଶୁଣି ବାଛୁରୀଟି ଦାଣ୍ଡବାଟେ ଯାଇ ଗାଈ ସହିତ ଗୋଠରେ ଚାଲିଗଲା । ବାମାଭାଇ ଘରେ ଥାଆନ୍ତି । ଦିଦି ଆସି "ଗାଈ ଆସିନି କି ଗୋଠ"ରୁ ପଚାରିଲେ ଓ "ବାଛୁରୀ ନାହିଁ" ବୋଲି ପଚାରନ୍ତେ ସେ ଚିଡି ଯାଇ ଦିଦିଙ୍କୁ ଗାଳି ଦେଲେ । ବିଚରା ସନ୍ଧ୍ୟାବେଳେ ବହୁତ ଖୋଜା ଖୋଜି କରି ମନଦୁଃଖରେ ରାତିରେ ଆସି ପହଁଞ୍ଚିଲେ । କାହାରିକୁ କିଛି ନକହି ଗାଳି ଦେଲେ । କହିଲେ– ଯାହାକୁ ରଖି ପାରିବ ନାହିଁ, ତାକୁ ରଖିବ କାହିଁକି ?

ମୋ ପେଟ ଥରେ ଖରାପ ହେଲା । ଏଣୁ ନୀଳମଣି ବାବୁ ଘରେ ରହି ପିଲାଙ୍କ ଜଞ୍ଜାଳ କଲେ । ବାମାଭାଇ ଗପ କରିବାକୁ ଆସି ଦେଖନ୍ତି ତ ମୁଁ ଘରେ ଶୋଇ ରହିଛି । ମୋଠାରୁ ମୋ ଦେହର ଅବସ୍ଥା କଥା କିଛି ବୁଝି ସେ ଡାକ୍ତରଙ୍କ ଭଳି ରୋଗର କାରଣ ଓ ନିରାକରଣ ବିଷୟରେ ତଥ୍ୟ ସଜାଡି ଆଦେଶ ଦେଲେ ଯେ, ତମେ ପ୍ରତିଦିନ 'ଓଲୁଅ' ଖାଇଲେ ପେଟବେମାରି ଭଲ ହୋଇଯିବ । ତାଙ୍କ କଥାରେ ସମ୍ମତି ଜଣାଇଲି । ତହିଁ ଆରଦିନ ସକାଳୁ ଆସି ପଚାରିଲେ । ଓଲୁଅ ଆମଘରେ ନାହିଁ ବୋଲି କହିଲି । ସେ ସଙ୍ଗେ ସଙ୍ଗେ ଘରକୁ ଯାଇ ଦିଦିଙ୍କୁ ଓଲୁଅ ତରକାରୀ କରି ଆମ ଘରେ ଦେଇ ଆସିବାକୁ କହିଲେ । ଦିଦି ବିଚରା ତାଙ୍କର ସବୁ ଦୌରାତ୍ମ୍ୟକୁ ଯେପରି ବହନ କରନ୍ତି, ସେଇ ରୀତିରେ ତରକାରୀ କରି ମୋ ପାଖରେ ହାଜର । ପାଟିକୁ ରୁଚିକର ହେଲାନି । ସେତିକିରେ ମୋ ପାଟି କୁଣ୍ଡେଇ ହେଲା ଓ ପେଟ ଭିତରଟା ମଧ୍ୟ ଖରାପ ଲାଗିଲା । କିଛି ସମୟ ପରେ ପାଟି ତଣ୍ଟି ସବୁ ଫୁଲିଲା । ଦିଦି ବ୍ୟସ୍ତ ହୋଇ ବାମାଭାଇଙ୍କୁ ଜଣାଇ ଗାଳି ଦେଲେ । ବାମାଭାଇ ଡାକ୍ତରଙ୍କୁ ଡକାଇ ମୋର ଚିକିତ୍ସା କଲେ । ନୀଳମଣିବାବୁ ସେତେବେଳେ ଘରେ ନଥାନ୍ତି ।



Digitized by srujanika@gmail.com

ସଂସାରର ମହା ଜଞ୍ଜାଳ ଭିତରେ ସେ ପ୍ରତିଦିନ କିଛି ବହି ଓ ପତ୍ରପତ୍ରିକା ପିଲାଏ ବଡ କାଳୁସ୍ଥ ହୋଇ ଠିଆ ହୋଇଥାନ୍ତି । ଡାକ୍ତର ଦେଖିସାରି 'ଓଲୁଅ' ତାଙ୍କ ଦେହରେ ଆଲର୍ଜି ହେଲା ବୋଲି କହି ତାର ପ୍ରତିକାର କଲେ । ମୁଁ ସୁସ୍ଥ ହେବାପରେ ଦିନେ ସେ ଆସି ତାଙ୍କୁ ଝିଅାଲି ଅବିମୃଶ୍ୟକାରିତା ହେତୁ ଦୁଃଖିତ ବୋଲି ଭାରି ବିନୟକଲେ । ସାଧାରଣତଃ ଲେଖକ ଓ କବିମାନେ ଅହଙ୍କାରୀ ବୋଲି ମୋର ଧାରଣା । କିନ୍ତୁ ବାମାଭାଇ ଥିଲେ ଅନନ୍ୟ । ତାଙ୍କର ହୃଦୟ ଥିଲା ଶିଶୁ ଭଳି ସରଳ । ଫୁଲ ପରି କଅଁଳ । ସେ ଥିଲେ ଯଥାର୍ଥରେ ବୈଷ୍ଣବ ମଣିଷ । ଅମାନୀକୁ ବି ବହୁମାନ୍ୟ ଦେଲାବାଲା । ସାମାନ୍ୟ ରିକସାବାଲା କି ମୋଟିଚିଙ୍କୁ ମଧ୍ୟ ସେ ମାନ୍ୟରେ କଥା କହନ୍ତି ।

ବାମାଭାଇ ଚାକିରିରୁ ଅବ୍ୟାହତି ନେଲା ପର୍ଯ୍ୟନ୍ତ ବି ନିଜେ ରହିବା ପାଇଁ ଘର ଖଣ୍ଡିଏ କରିନଥିଲେ । ଚାକିରି ଶେଷ ଆଡକୁ ତାଙ୍କର ଶରୀର ଅସୁସ୍ଥ ହୋଇ ଚାଲିଥାଏ । ସେ ବହୁତ ଡେରୀରେ ବିବାହ କରିଥିଲେ ଓ ଖୁବ୍ ବିଳମ୍ବରେ ମଧ୍ୟ ତାଙ୍କର ତିନି ପୁଅ ଓ ଦୁଇ ଝିଅ ହୋଇଥିଲେ । ଚାକିରିରୁ ଅବସର ନେବା ପୂର୍ବରୁ କେବଳ ବଡଝିଅ ଶଙ୍କରୀକୁ ବିବାହ ଦେଇ ସାରିଥିଲେ । ବିଭୁଙ୍କ କୃପାରୁ ଝିଅଲାଗି ଉତ୍ତମ, ସୁନ୍ଦର ଜ୍ୱାଇଁଟିଏ ବି ସେ ପାଇଥିଲେ । ବଡ ପୁଅଟି ଡାକ୍ତରୀ ପଢୁଥିବା ଅବସ୍ଥାରେ ସେ ନିଜେ ନିଜକୁ ଅକର୍ମଣ୍ୟ ବୋଧ କଲେ । ସ୍ୱଳ୍ପ ପେନ୍‌ସନ୍ ଟଙ୍କାରେ ଘରଭଡା ନେଇ ପିଲାଙ୍କ ପଢ଼ା ଦାୟିତ୍ୱ, ପରିବାର ପୋଷଣ ଓ ରୋଗୀର ସେବା ଯତ୍ନକରିବା ଦିଦିଙ୍କପକ୍ଷେ କଷ୍ଟ ସାଧ୍ୟ ହୋଇଥିଲା । ତଥାପି ସେ ଦିନେ କାହାରିକି ନିଜର ଅଭାବ ଅସୁବିଧା କଥା ଜଣାଇ ନାହାଁନ୍ତି । ଅଦ୍ଭୁତ ଭଦ୍ରମହିଳା ସେ, ମନ ଓ ଶରୀରରେ କି ଅପ୍ରମିତ ଶକ୍ତି !, କି ଆତ୍ମ ବିଶ୍ୱାସ, ଭକ୍ତି ଓ ସମ୍ମାନରେ ତାଙ୍କ ପାଖେ ସ୍ୱତଃ ମୋ ମୁଣ୍ଡ ନଇଁଯାଏ । ବାମାଭାଇଙ୍କ ଆଦର୍ଶ ଏବେବି ମଥାରେ ବହନ କରି ପିଲାଙ୍କୁ ମଣିଷ କରିବାରେ ସେ ଲାଗିଛନ୍ତି । ବାମାଭାଇଙ୍କ ତପସ୍ୟାର ଫଳ ସ୍ୱରୂପ ପିଲାମାନେ ମଧ୍ୟ ଏକକୁ ଆରେକ ବଳିୟାର। ସାନ ଝିଅର ବିବାହ ସରିଛି । ବଡପୁଅ ଚନ୍ଦମୌଳି ମଧ୍ୟ ବର୍ତ୍ତମାନ ଡାକ୍ତର ହୋଇଗଲାଣି- ମଝିଆଁ ପୁଅ 'ବାପ୍‌ଚି' ବର୍ତ୍ତମାନ ଇଞ୍ଜିନିୟର ଓ ସାନପୁଅ (ମନ୍ଯୁମାନ) ତା'ର ପଢ଼ା ଶେଷ କରି ବର୍ତ୍ତମାନ ପାଇଲଟ୍ । ଯେ ସବୁ ସତ୍ତ୍ୱେ ଦିଦି ନିଜକୁ ନିଃସ୍ୱ ମନେ କରୁଛନ୍ତି ବାମାଭାଇଙ୍କ ବିହୁନେ । ଏବେ କେବେ ଯଦି ଦେଖା ହୋଇଯାଏ ଦିଦିଙ୍କ ସଙ୍ଗେ- ହଠାତ୍ ଶୁଖିଲା ମୁହଁରେ ବଳପୂର୍ବକ ହସକୁ ଆଣନ୍ତି ମତେ କଷ୍ଟ ନଦେବା ପାଇଁ । କିନ୍ତୁ ଯାହା ସ୍ପଷ୍ଟ, ତାହା କେବେବି ଲୁଚି ରହିପାରେନି । ତାଙ୍କରି ଦୁଃଖରେ ସମବେଦନା



Digitized by srujanika@gmail.com

ଜଣାଇବା ବ୍ୟତୀତ ମୁଁ ତାଙ୍କ ପାଇଁ କିଛି କରିପାରିନି । ବିଭୁଙ୍କୁ ଜଣାଉଛି ତାଙ୍କର ଅବଶିଷ୍ଟ ଜୀବନକୁ ବିଭୁଗୁଣ ଗାନରେ ବିତାଇବା ପାଇଁ ଦିଦିଙ୍କୁ କୃପା କରନ୍ତୁ ।

ବାମାଭାଇ ତାଙ୍କର ତିନୋଟି ଅନ୍ତିମ ଅଭିଳାଷ ନୀଳମଣିବାବୁଙ୍କୁ ଜଣାଇଥିଲେ । ପ୍ରଥମଟି କହିଥିଲେ ଯେ ତାଙ୍କର ମୃତ୍ୟୁର ଅବ୍ୟବହିତ ପୂର୍ବରୁ ଯେପରି ସେ ନୀଳମଣି ବାବୁଙ୍କ ତୁଣ୍ଡରୁ ଭାଗବତ ଶୁଣିବେ । ଦ୍ୱିତୀୟଟି ତାଙ୍କ ଅନ୍ତେ ଦିଦିଙ୍କର ସୁନା ଚୁଡ଼ୀ ହାତରୁ ଉତାରିବ ନାହିଁ । ତୃତୀୟଟି ହେଲା- ତାଙ୍କ ମୃତ୍ୟୁରେ ବ୍ରାହ୍ମଣ ଭୋଜନ ନକରାଇ କୁଷ୍ଠ ରୋଗୀମାନଙ୍କୁ ଅଭଡା ଡାଲମା ଖୁଆଇବ । କିନ୍ତୁ ଆମର ଦୁର୍ଭାଗ୍ୟ ନୀଳମଣି ବାବୁ ଭୁବନେଶ୍ୱରରେ ସେ ପ୍ରାଣ ତ୍ୟାଗ କଲାବେଳେ ଥିଲେ ବି ନ ଜାଣିବା ହେତୁ ତାଙ୍କ ପାଖେ ପହଞ୍ଚି ନଥିଲେ । ଏଣୁ ନୀଳମଣିବାବୁ ତାଙ୍କ 'ଦଶାହ' କ୍ରିୟା ଦିନ ତିଳତର୍ପଣ କରିବାବେଳେ ଉଚ୍ଚକିତ କଣ୍ଠରେ ଭାଗବତରୁ କିଛି ଅଂଶ ପାରାୟଣ କରିଥିଲେ । ସେ ଦିନୁ ଆଜି ପର୍ଯ୍ୟନ୍ତ ଆମେ ଘରେ ଭାଗବତ ପଢ଼ିଲାବେଳେ ତାଙ୍କ ଇଚ୍ଛାଟି ମନେ ପଡିଯାଏ । କାନ୍ଥରେ ମରାହୋଇଥିବା ତାଙ୍କର ଫଟୋକୁ ଲକ୍ଷ୍ୟ କରି ନୀରବରେ ନମସ୍କାର କରି ମୁଁ ଭାଗବତ ଶୁଣିବାକୁ ଯାଙ୍କୁ ଅନୁରୋଧ କରେ । ଉପଯୁକ୍ତ ସମୟରେ ବାମାଭାଇଙ୍କର ଶେଷ ଅଭିଳାଷଟିକୁ ଆମେ ଦୁହେଁ ପୂରଣ କରିନଥିବାରୁ ସେ ଭୁଲର ପ୍ରାୟଶ୍ଚିତ ପାଇଁ ନିତିପ୍ରତି ଭାଗବତ ପଢ଼ିଲାବେଳେ ତାଙ୍କୁ ସ୍ମରଣ କରୁ । ବହୁ ଲେଖକଙ୍କୁ ମୁଁ ଦୂରରୁ ଓ ନିକଟରୁ ଦେଖିଛି । କିନ୍ତୁ ମତେ ଲାଗେ ବାମାବାବୁ ସ୍ୱୟଂ ଥିଲେ ପରମ ଭଗବତ ।

ବାମାଭାଇଙ୍କ ଅନ୍ତେ ଦିଦିଙ୍କୁ ଓ ତାଙ୍କର ନାଁ ବାଳକ ପିଲାଙ୍କୁ ଦେଖି ମନ ବଡ ବିଷର୍ଣ୍ଣ ହୋଇପଡେ- ମନେ ମନେ ଭାବେ ଲେଖକ ବାମାଭାଇ ଓଡ଼ିଶାରେ ଯଦି ଜନ୍ମ ଗ୍ରହଣ କରିନଥାନ୍ତେ- ତେବେ ତାଙ୍କର ସନ୍ତାନମାନଙ୍କୁ ଯେଉଁ ଆର୍ଥିକ ଅନାଟନ ଭୋଗ କରିବାକୁ ପଡିଲା- ତାହା ହୋଇନଥାନ୍ତା । ପିଲାଙ୍କ ପକ୍ଷେ ବାପାଙ୍କ ବିଚ୍ଛେଦ ଅପୂରଣୀୟ ହେଲେବି ତାଙ୍କ ପରିବାର ତାଙ୍କ କୃତି ପୁସ୍ତକରୁ ପ୍ରଚୁର ଅର୍ଥ ପାଇପାରିଥାନ୍ତେ । ଗୁଣୀ ଲୋକର ଆଦର ଅଭ୍ୟର୍ଥନା ସେ ଦେଶରେ ହୁଏ । ଏଠି ସ୍ୱଜାତି ପରିହିଂସ୍ରକ । ଓଡ଼ିଆ ଓଡ଼ିଆଣୀମାନେ କଣ ବହି ପଢ଼ନ୍ତି ? ପୁଣି କିଣିକରି ?

ତାଙ୍କ ବାପା ଓଡ଼ିଆ ଭାଷାରେ ଲେଖାମାନ ଲେଖିଥିବାରୁ ସିନା ପିଲାଏ ଏପରି ଆର୍ଥିକ କଷ୍ଟ ଭୋଗିଲେ ? ବାମାବାବୁ ସତ୍ ଓ ନିଷ୍ଠାପର କର୍ମୀ ଥିଲେ । ତାଙ୍କର ଦେବୋପମ ବ୍ୟକ୍ତିତ୍ୱ ତାଙ୍କ ଅନ୍ତେ ତାଙ୍କ ପିଲାମାନଙ୍କୁ ମଣିଷକରି ଗଢ଼ିବାରେ



Digitized by srujanika@gmail.com

ସାହାଯ୍ୟ କଲା । ଈଶ୍ୱରଙ୍କର କୃପାଲାଭ କରି ତାଙ୍କ ପିଲାମାନେ ବାପାଙ୍କ ଆଦର୍ଶକୁ ଜୀବନର ସମ୍ବଳ ରୂପେ ଧରି ଆଗେଇ ଚାଲିଛନ୍ତି ।

ବାମାଭାଇଙ୍କ ଦେହାନ୍ତର ବର୍ଷକପରେ 'ମାନସ' ପତ୍ରିକା ତାଙ୍କ ବିଷୟରେ କିଛି ଲେଖା ପ୍ରକାଶ କରିଥିଲେ । ତା'ପରେ ସ୍ୱତନ୍ତ୍ର ଭାବେ ଆଉ କୋଉ ପତ୍ରିକା ତାଙ୍କ ସମ୍ବନ୍ଧେ କିଛି ପ୍ରକାଶ କରିଥିବାର ମତେ ଜଣାନାହିଁ ।

ବାମାଭାଇଙ୍କ ଦେହାନ୍ତର ଦଶବର୍ଷପରେ ଶୁଣିଛି ଯେ ତାଙ୍କ ପାଇଁ କିଛି ଗୋଟାଏ କରାଯିବ । ଏହି ମର୍ମରେ ନିତ୍ୟାନନ୍ଦବାବୁ ବାମାଭାଇଙ୍କର ତୈଳ ଚିତ୍ର ଶ୍ରୀରାମଚନ୍ଦ୍ର ଭବନରେ ଉନ୍ମୋଚିତ କରିବା ପାଇଁ ଆମରି ଘରେ ବସି ବିଭିନ୍ନ ବିଷୟରେ ଆଲୋଚନା କରୁଥିବାର ଶୁଣି ମୋର ସେମାନଙ୍କ ପରିବାରର କେତେ କଥା ମନେ ପଡିଯାଉଛି- ବାବୁ, ଶଙ୍କରୀ, ବାପ୍‌ଚି, ମାମୁନି ଓ ନନ୍ଦୁ ପ୍ରଭୃତି କିପରି ଭାବେ ମତେ କାକୀମା କହି ମୋ ପାଖେ ଗେହ୍ଲେଇ ହୁଅନ୍ତି, ସେ ସବୁ ଦୃଶ୍ୟ ସ୍ମୃତିର ଗହ୍ୱରରୁ ବାହାରିଆସି ଆଖି ଆଗରେ ଚଳଚ୍ଚିତ୍ର ଭଳି ଭାସି ଯାଇ ମନକୁ ମନ୍ଥି ପକାଉଛି । ମୁଁ ଏତିକିରେ ଭାବି ଭାବବିହ୍ୱଳ ହେଉଛି- ଦିଦିଙ୍କ କଥା ମୁଁ ଚିନ୍ତା କରିପାରୁନି । ପିଲାମାନେ ଦିଦିଙ୍କୁ ଛାଡି ଛୁଡି ଯେ ଯାହା କାର୍ଯ୍ୟରେ ଲାଗି ପଡିଛନ୍ତି । ଦିଦି ବାମାଭାଇଙ୍କ ଅନ୍ତେ ମୁଣ୍ଡ ଗୁଞ୍ଜିବାକୁ ଦୁଇବଖରା ଘର ବନ୍ଧୁ କଷ୍ଟସହି କରିଛନ୍ତି ଓ ତାର ଭିତରେ ଏକାକୀ ରହି ସ୍ୱାମୀଙ୍କ ଗୁଣକୁ ସୁମରି ସୁମରି ନୀରବରେ ମନସ୍ତାପ କରି ବସି ରହିଛନ୍ତି ଧ୍ୟାନସ୍ଥ ହୋଇ ତା'ଙ୍କ ଡାକକୁ ଅପେକ୍ଷା କରି ।

ପିଲାମାନଙ୍କୁ ଦମ୍ଭ କରିବା ପାଇଁ ଦିଦିଙ୍କୁ ଆହୁରି କିଛି ଦିନ ସୁସ୍ଥରେ ବଞ୍ଚାଇ ରଖିବା ପାଇଁ ପ୍ରଭୁପାଦେ ପ୍ରାର୍ଥନା କରୁଛି । ଯାହାଙ୍କ ପାଇଁ ଜୀବନକୁ ସମର୍ପି ଦେଇଛନ୍ତି ଦିଦି- ତାଙ୍କରି ଉତ୍ତରାଧିକାରୀ ଦାୟାଦ ମାନଙ୍କ ପାଇଁ ଦିନ ତାଙ୍କୁ ଦମ୍ଭଧରି ଛିଡା ହେବାକୁ ହେବ ।

କେଉଁ ଦିନ ତାଙ୍କର ସ୍ମରଣୀକା ପ୍ରକାଶିତ ହେବ- ବିଭିନ୍ନ ବ୍ୟକ୍ତି ତାଙ୍କ ଲେଖା ଉପରେ ଓ କେଉଁ ବ୍ୟକ୍ତି କିଭଳି ଭାବେ ତାଙ୍କ ସହିତ ସମ୍ପର୍କିତ ତାହା ଜାଣିବା ପାଇଁ ବ୍ୟଗ୍ରତାର ସହିତ ଅପେକ୍ଷା କରି ରହିଛି । ସ୍ନେହ ଓ ଶ୍ରଦ୍ଧାର ନିଦର୍ଶନ ସ୍ୱରୂପ ସେ ଦମ୍ପତିଙ୍କୁ ନୀରବରେ ବିନମ୍ର ପ୍ରଣତି ଜଣାଉଛି ।

ପତ୍ରିକା - 'ଇସ୍ତାହାର' ସଂଖ୍ୟା ୩୭

ମାର୍ଚ୍ଚ ୧୯୮୭





Digitized by srujanika@gmail.com

# ଗଳ୍ପକାର ବାମାଚରଣ ମିତ୍ର : ଏକ ମୁଗ୍ଧ ଦୃଷ୍ଟି

ଶତ୍ରୁଘ୍ନ ପାଣ୍ଡବ

*(ଚଳିତ ବର୍ଷ ପ୍ରଖ୍ୟାତ ଗାଳ୍ପିକ ବାମାଚରଣ ମିତ୍ରଙ୍କ ଜନ୍ମ ଶତବାର୍ଷିକୀ ବର୍ଷ। ଅବିଭକ୍ତ କଟକ ଜିଲ୍ଲାର ଯାଜପୁର ସବ୍‌ଡିଭିଜନ୍‌ର କାବର୍‌ପୁର ବରୁଆଁ ଗ୍ରାମରେ ୧୯୧୫ ମସିହା ଡିସେମ୍ବର ୧୭ ତାରିଖରେ ଭୂମିଷ୍ଠ ହୋଇଥିବା ବାମାଚରଣଙ୍କର ମାତ୍ର ୬୦ ବର୍ଷ ବୟସ (୧୯୭୫ ଫେବୃୟାରୀ ୨୧ ତାରିଖ)ରେ ଦେହାନ୍ତ ହୋଇଥିଲା। ଅନ୍ୟୂନ ଚଉଠ ଶତକ (୧୯୫୦-୭୫)ର ସାଧନାପର୍ବରେ ମୌଳିକ ଚିନ୍ତନ, କଥାବସ୍ତୁ ଚୟନରେ ଅପୂର୍ବ କଳାକାରିଗରୀ, ଦାର୍ଶନିକ ଓ ଅଧ୍ୟାତ୍ମ ଭାବ-ବିଭୂତିରେ ସେ ୧୯୫୦ ପରବର୍ତ୍ତୀ ଓଡ଼ିଆ ଗଦ୍ୟସାହିତ (ଗଳ୍ପ, ଉପନ୍ୟାସ, ପ୍ରବନ୍ଧ, ରମ୍ୟରଚନା)କୁ ସମୃଦ୍ଧ କରିଯାଇଛନ୍ତି। ନ୍ୟାସନାଲ ବୁକ୍‌ଟ୍ରଷ୍ଟ ଦ୍ୱାରା ପ୍ରକାଶିତ "ବାମାଚରଣ ଗଳ୍ପ ସମ୍ଭାର' (୧୯୯୮)କୁ ସଂପାଦନା କରିଥିବା କବି ଓ ସ. ାକ୍ଷକ ଡ. ଶତ୍ରୁଘ୍ନ ପାଣ୍ଡବଙ୍କର ଏଇ ଆଲେଖ୍ୟଟିକୁ ପ୍ରକାଶ କରି ଆମେ ସେହି ଦିବଂଗତ ସାହିତ୍ୟ ଶିଳ୍ପୀଙ୍କୁ ଜନ୍ମ ଶତବାର୍ଷିକୀ ଶ୍ରଦ୍ଧାଞ୍ଜଳି ଜ୍ଞାପନ କରୁଛି- "ପ୍ରତିବେଶୀ' ପରିବାର।)*



Digitized by srujanika@gmail.com

ଜଣେ ଗଭୀର ମନନଧର୍ମୀ ଓ ଜୀବନ ସୁହାଗୀ ସ୍ରଷ୍ଟାଭାବେ ସ୍ୱାଧୀନତା ପରବର୍ତ୍ତୀ ଓଡ଼ିଆ ଗଳ୍ପ ସାହିତ୍ୟକୁ ବାମାଚରଣ ମିତ୍ର (୧୯୧୫-୧୯୭୫)ଙ୍କ ଅବଦାନ ଏକାନ୍ତ ଉଲ୍ଲେଖନୀୟ। ଅନ୍ୟୁନ ଚଉଠ ଶତକ ସମୟ ଅବଧି (୧୯୫୦-୭୫)ର ନିରଳସ ସାଧନାରେ ଓଡ଼ିଆ ଗଳ୍ପଧାରାକୁ ସେ ଅପୂର୍ବ ବିଷୟ ବିନ୍ୟାସ, ରସବନ୍ତ ବିଦଗ୍ଧଶୈଳୀ ଓ ମହତ୍ତମ ଭାବ ବିଭୂତିରେ ସମୃଦ୍ଧ କରିଯାଇଛନ୍ତି। ପ୍ରଖର ହୃଦୟବତ୍ତା ଓ ସୂକ୍ଷ୍ମ ମାର୍ମିକ ଆବେଦନରେ ରସାପ୍ଳୁତ ବାମାଚରଣଙ୍କ ଗଳ୍ପସକଳ ପାଠକ ପ୍ରାଣରେ ଆନନ୍ଦବିଷାଦର ରସଘନ ଅଭିବ୍ୟକ୍ତି ଦେବା ସଂଗେ ସଂଗେ ତା'ର ଅନ୍ତର୍ଜଗତକୁ ତତ୍ତ୍ୱ, ଦର୍ଶନ ଓ ମାନବିକ କରୁଣାରେ ସିକ୍ତ କରିଥାନ୍ତି। ଗଭୀର ଏକ ଆତ୍ମୀୟତାବୋଧ ନେଇ ତାହା ବ୍ୟକ୍ତି ଓ ବିଶ୍ୱକୁ ଯୋଡ଼ିଥାଏ। ତାଙ୍କ ଗଳ୍ପଗୁଡ଼ିକରେ କେବଳ ବ୍ୟକ୍ତିର ଅସହାୟତା, ତୃଷ୍ଣା ଓ ଅବିମୃଶ୍ୟକାରିତାର ସ୍ୱରୂପ ପ୍ରଦର୍ଶିତ ହୋଇନାହିଁ, ବରଂ ଏଗୁଡ଼ିକ ଏକ ମାର୍ଜିତ ରୁଚି ଓ ବିଚାରବୋଧ ସହ ତା'ର ଆତ୍ମସତ୍ତାକୁ ଆଲୋକଦୀପ୍ତ ଓ ମହତ୍ତର କରିବାର ପ୍ରଚୋଦନା ଦେଇଥାନ୍ତି।

ଆମର ସାମାଜିକ, ସାଂସ୍କୃତିକ ଓ ଆଧ୍ୟାତ୍ମିକ ଉତ୍‌ଥାନ ନିମନ୍ତେ ମାର୍କସ୍‌, ଗାନ୍ଧୀ ଓ ବିବେକାନନ୍ଦଙ୍କ ଆଦର୍ଶ ଓ ଆଭିମୁଖ୍ୟ ପ୍ରତି ବାମାଚରଣ ଥିଲେ ଆସ୍ଥାଶୀଳ। ଚିନ୍ତା ଚେତନାରେ ସେ ଥିଲେ ମହାଭାରତୀୟ ଏବଂ ବ୍ୟକ୍ତିଗତ ଜୀବନରେ ଏକ ବୈରାଗ୍ୟ ବୈଷ୍ଣବ। ବିଭିନ୍ନ ଧର୍ମ ପ୍ରତି ଥିଲା ତାଙ୍କର ଏକ ଉଦାର ଦୃଷ୍ଟିଭଂଗୀ ଏବଂ ତଥାକଥିତ ଧର୍ମ ଧାରଣାର ଉର୍ଦ୍ଧ୍ୱରେ ସେ ନିଜକୁ ରଖିପାରିଥିଲେ। ପ୍ରାକ୍‌ ସ୍ୱାଧିନତା କାଳରୁ ଲେଖାଲେଖି ଆରମ୍ଭ କଲେ ବି ସ୍ୱାଧୀନତା ପରବର୍ତ୍ତୀ ସମୟ ଖଣ୍ଡରୁ ଦେହାନ୍ତ ହେବା ପର୍ଯ୍ୟନ୍ତ ସମୟ ଥିଲା ତାଙ୍କ ସାରସ୍ୱତ ସାଧନା ଓ ଉତ୍କର୍ଷର କାଳ। ଏହି ପର୍ଯ୍ୟାୟଟି ବାସ୍ତବରେ ଓଡ଼ିଶାର ଖ୍ୟାତିମାନ କଥାଶିଳ୍ପୀଙ୍କ ସାଧନା ଓ ସିଦ୍ଧିର ଉଜ୍ଜ୍ୱଳ ଅଧ୍ୟାୟ ଭାବେ ଚିହ୍ନିତ। ଗୋପୀନାଥ ମହାନ୍ତି, ରାଜକିଶୋର ପଟ୍ଟନାୟକ, ସଚ୍ଚିଦାନନ୍ଦ ରାଉତରାୟ, ସୁରେନ୍ଦ୍ର ମହାନ୍ତି, ନିତ୍ୟାନନ୍ଦ ମହାପାତ୍ର, ରାଜକିଶୋର ରାୟ ଆଦି ଗଳ୍ପକାରମାନଙ୍କ କଥା ପ୍ରତିଭାର ଉନ୍ମେଷ-ବିକାଶ କାଳରେ ଏହି ପ୍ରବାହରେ ସାମିଲ ହୁଅନ୍ତି ବାମାଚରଣ ମିତ୍ର, ମହାପାତ୍ର ନୀଳମଣି ସାହୁ, ମନୋଜ ଦାସ, କିଶୋରୀ ଚରଣ ଦାସ, ଅଖିଳ ମୋହନ ପଟ୍ଟନାୟକ, ଅଚ୍ୟୁତାନନ୍ଦ ପତି, ଚୌଧୁରୀ ହେମକାନ୍ତ ମିଶ୍ର, ଶାନ୍ତନୁକୁମାର ଆଚାର୍ଯ୍ୟ ପ୍ରମୁଖ। ଅବଲୀଳା କ୍ରମେ ଏଥିରେ ବହୁ ଶକ୍ତିଶାଳୀ ସ୍ରଷ୍ଟାଙ୍କର ସଂଯୋଗ ଘଟେ। ସ୍ୱତନ୍ତ୍ରୋତ୍ତର ଓଡ଼ିଶା, ଯୁଦ୍ଧୋତ୍ତର ବିଶ୍ୱ ଏବଂ ସ୍ୱାଧୀନ ଭାରତବର୍ଷ ଏମାନଙ୍କର କଥା-ଭୂମି। ଏମାନେ



Digitized by srujanika@gmail.com

ସଭିଏଁ ପ୍ରଶିକ୍ଷିତ ଏବଂ ପ୍ରାଚ୍ୟ-ପାଶ୍ଚାତ୍ୟ ଗଳ୍ପଧାରା ଓ ପରମ୍ପରା ସଚେତନ, ପୁଣି ବହୁ ଶାସ୍ତ୍ରନିପୁଣ ବିଜ୍ଞାନ ଦର୍ଶନ ମନସ୍ତତ୍ତ୍ୱ ସଂପର୍କୀୟ ଉତ୍ତମ ଜ୍ଞାନ ଏବଂ ପରିବର୍ତ୍ତିତ ସମାଜ ଆର୍ଥନୀତିକ ବ୍ୟବସ୍ଥା ତଥା ଆନ୍ତର୍ଜାତିକ ପ୍ରେକ୍ଷାପଟ୍ଟ ସହ ପରିଚିତ ସ୍ୱକୀୟ ଶୈଳୀ ଓ କଳାପ୍ରବଣତାର ଜଣେ ଜଣେ ଯତ୍ନଶୀଳ ସ୍ରଷ୍ଟା।

୧୯୫୦ ମସିହାରେ ପ୍ରକାଶିତ "କୀର୍ତ୍ତିଯସ୍ୟ' ବାମାଚରଣଙ୍କ ପ୍ରଥମ ପ୍ରକାଶିତ ପୁସ୍ତକ। ପ୍ରାରମ୍ଭରେ ପାଶ୍ଚାତ୍ୟ ଲେଖକଙ୍କର ଅନୁସରଣରେ "କିର୍ତ୍ତିଯଶ୍ୟ'' ଓ "ନଗଛଅଁାଣ'' ପରି ଅପରାଧମୂଳକ କାହାଣୀ ରଚନା କଲେ ମଧ୍ୟ କ୍ରମଶଃ ଗଳ୍ପରଚନା କ୍ଷେତ୍ରରେ ଅପୂର୍ବ ସିଦ୍ଧହସ୍ତତା ପ୍ରଦାନ କରିଛନ୍ତି। ଏହି ଅପରାଧମୂଳକ ବା ଡିଟେକ୍‌ଟିଭ କାହାଣୀର ସଂଖ୍ୟା ଦଶ। ଏସବୁ କାହାଣୀରେ ଗୋବର୍ଦ୍ଧନ ବାବୁ ଓ ଜଣେ ଯୁବ ଡାକ୍ତରଙ୍କ ସମ୍ମିଶ୍ରଣରେ ବାମାଚରଣଙ୍କ ସ୍ରଷ୍ଟାମାନସ ଆତ୍ମପ୍ରକାଶ କରିଛି। ହତ୍ୟା, ଚୋରି, ଅପହରଣ ଇତ୍ୟାଦି ସଂପର୍କରେ ଅନୁସନ୍ଧାନ ଏହାର ବିଷୟବସ୍ତୁ ହୋଇଥିବା ସ୍ଥଳେ ଜୀବନ ଓ ଜଗତ ସଂପର୍କରେ ଅନୁସନ୍ଧାନ ଏହାର ବିଷୟବସ୍ତୁ ହୋଇଥିବା ସ୍ଥଳେ ଜୀବନ ଓ ଜଗତ ସଂପର୍କୀୟ ଦର୍ଶନ ଏଥିରେ ପ୍ରମୁଖତା ପାଇଛି। ଗଳ୍ପରେ ଭାଷାର ଅକୃତିମ ପରିପକ୍ୱତା ଏବଂ ଭାବର ବ୍ୟାପ୍ତି ଓ ବିବିଧତା ବାମାଚରଣଙ୍କୁ ବେଳହୁଁ ଏକ ପୋଖତ ବା ଅଭିଜ୍ଞ ଶିଳ୍ପୀର ମର୍ଯ୍ୟାଦା ଦେଇଥାଏ। ଗଳ୍ପ ଲେଖାର ପ୍ରାରମ୍ଭ କାଳରୁ କିଛି କିଛି ବର୍ଷ ବ୍ୟବଧାନରେ ବାମାଚରଣଙ୍କର "ସ୍ୱପ୍ନସିଦ୍ଧ'', "ଅସୀମ'', "ବଟ ମହାପୁରୁଷ,'' "ପାଷାଣର ପ୍ରାଣ'', "ମହାପୁରୁଷବାର'' ଆଦି ଗଳ୍ପ ସଂକଳନ ମାନ ପ୍ରକାଶ ପାଇଥିଲା। ଗଳ୍ପ ସହତ ପ୍ରବନ୍ଧ ଓ ରମ୍ୟରଚନା ପ୍ରତି ଗାଳ୍ପିକଙ୍କର ରହିଥିଲା ଅନୁରୂପ ଅନୁରାଗ। ପ୍ରବନ୍ଧ ପୁସ୍ତକ ଭାବେ "ଜୀବନ, ସାହିତ୍ୟ ଓ କଳା'' ତଥା ରମ୍ୟରଚନା ପୁସ୍ତକ ଭାବେ "ଏଣୁଶ ତେଣୁଶ'' ପ୍ରକାଶିତ। ବିଭିନ୍ନ ଦର୍ଶନ, ତତ୍ତ୍ୱ ଏବଂ ତତ୍‌ସହିତ ନିଜସ୍ୱ ଅନୁଶୀଳନ ଓ ବକ୍ତବ୍ୟ ଗଳ୍ପ କ୍ଷେତ୍ରରେ ପୂର୍ଣ୍ଣତଃ ପ୍ରକାଶ ପାଇଁ ବାଟ ନ ପାଇ ପ୍ରବନ୍ଧ ଓ ରମ୍ୟରଚନାରେ ପ୍ରକାଶଧନ୍ୟ ହୋଇଛି। ତାଙ୍କ ଗଳ୍ପ କ୍ଷେତ୍ରରେ କେବେ ପ୍ରବନ୍ଧ ଓ ରମ୍ୟରଚନାର ପ୍ରବେଶ ଘଟିଛି ତ କେବେ ପ୍ରବନ୍ଧ ରମ୍ୟରଚନା ମଧ୍ୟରେ ଗଳ୍ପକାରିତା ପରିଲକ୍ଷତିତ ହୁଏ।

ପରିଣତ ପର୍ଯ୍ୟାୟରେ ନିଜର ସମସ୍ତ ଗଳ୍ପକୁ ସୁନିର୍ବାଚିତ ଭାବେ ଏକତ୍ର ସ୍ଥାନିତ କରିବା ମନୋଭାବ ହେତୁ ସେ "ମିତ୍ରକଳ୍ପ'', 'ମିତ୍ରଗଳ୍ପ', "ମିତ୍ରସ୍ୱଳ୍ପ'' ଗ୍ରନ୍ଥର ପରିକଳ୍ପନା କରିଥିଲେ। ବାମାଚରଣଙ୍କ ଦେହାନ୍ତ (୧୯୭୫ ଫେବୃୟାରୀ ୨୧



Digitized by srujanika@gmail.com

ତାରିଖ) ପରେ ପ୍ରଥମ ଦୁଇଟି ଗ୍ରନ୍ଥ ୧୯୭୯ରେ ଏବଂ ଶେଷଟି ୧୯୮୧ ମସିହାରେ ତିନୋଟି ବିଶିଷ୍ଟ ପ୍ରକାଶନ ସଂସ୍ଥା ଦ୍ୱାରା ପ୍ରକାଶିତ ହୋଇଥିଲା। ୧୯୫୮ରେ ବାମାଚରଣ ତାଙ୍କର ଏକମାତ୍ର ଉପନ୍ୟାସ "ଚନ୍ଦ୍ର ଓ ଚମ୍ପା'' ଲେଖିଥିଲେ ଯାହା ଖାରବେଳଙ୍କ ରାଜୁତିକାଳୀନ ସମୟର ଇତିହାସ ଓ କିମ୍ବଦନ୍ତୀକୁ ଆଧାର କରିଛି। ଈଶ୍ୱର ବିଶ୍ୱାସ, ଅଧ୍ୟାତ୍ମବୋଧ ଓ ପ୍ରେମ ଚେତନାକୁ ଉପଜୀବ୍ୟ କରି ରଚିତ ଏ ଉପନ୍ୟାସ ବ୍ୟକ୍ତି ଓ ସମାଜର ସହୃଦୟ ସହାବସ୍ଥାନ ଉପରେ ବାର୍ତ୍ତା ଦେଇଥାଏ। ବୌଦ୍ଧଧର୍ମ, ଜୈନଧର୍ମ, ବ୍ରାହ୍ମଣଧର୍ମ ଓ ହିନ୍ଦୁଧର୍ମର ଭାବସତ୍ୟ ଭିତ୍ତିରେ ଏ ଲେଖାଟି ଚିତ୍ତଲୋକର ଶୁଦ୍ଧତାକୁ ଗୁରୁତ୍ୱ ଦେଇଛି। ଅନ୍ୟ କଥାକାରମାନଙ୍କ ପରି ବାମାଚରଣ ଚର୍ଚ୍ଚାର ପରିସରକୁ ଆସି ନଥିଲେବି ତାଙ୍କର ୧୦ ଗୋଟି ଗଳ୍ପ ବିଦ୍ୟାଳୟ, ମହାବିଦ୍ୟାଳୟ ଓ ବିଶ୍ୱବିଦ୍ୟାଳୟ ଅଧୀତବ୍ୟ ବିଷୟ ରହିଛି। ଏକଦା "ଚନ୍ଦ୍ର ଓ ଚମ୍ପା'' ମଧ୍ୟମହାବିଦ୍ୟାଳୟ ସ୍ତରରେ ପାଠ୍ୟପୁସ୍ତକ ଥିଲା। ଏ ଶତାବ୍ଦୀର ପ୍ରାରମ୍ଭରେ ବାମାଚରଣଙ୍କ ସମସ୍ତ ରଚନା "ବାମାଚରଣ ଗଳ୍ପ ସମଗ୍ର'' (ପ୍ରଥମ, ଦ୍ୱିତୀୟ) ଏବଂ "ବାମାଚରଣ ଚରନା ସମଗ୍ର'' (ତୃତୀୟ, ଚତୁର୍ଥ) ନାମରେ ୪ ଗୋଟି ଭାଗରେ ପ୍ରକାଶିତ ହୋଇଛି।

ଗଳ୍ପର ବର୍ଣ୍ଣନାପାଟବ ଓ ଭାଷା ବିନ୍ୟାସ କ୍ଷେତ୍ରରେ ବାମାଚରଣ ଓଡ଼ିଆ ଗଳ୍ପର ପ୍ରଚଳିତ ପରମ୍ପରାକୁ ଗ୍ରହଣ କରିଛନ୍ତି। ଯଦିଓ ସମସାମୟିକ କୌଣସି ଘଟଣା ବା ଅନୁଭୂତିକୁ ସାଧାରଣତଃ ତାଙ୍କ ଗଳ୍ପର ବିଷୟବସ୍ତୁ ଭାବେ ସେ ନେଇଥାନ୍ତି, ତା'ଭିତରେ ଜୀବନ ଓ ଜଗତ ପ୍ରତି ଏକ ବ୍ୟାପକ ଅନ୍ତରଙ୍ଗ ଦୃଷ୍ଟି ପରିଲକ୍ଷିତ ହୁଏ ଏବଂ ଗଳ୍ପର ଆବେଦନ ଏକ ଗଭୀର ଓ ମହତ୍ତମ ବାର୍ତ୍ତା ପ୍ରଦାନ କରୁଥାଏ। ଗଳ୍ପ ମଧ୍ୟରୁ ବାମାଚରଣଙ୍କ ତତ୍ତ୍ୱନିଷ୍ଠମନନ, ବିଶ୍ୱର ବହୁ ଉଚ୍ଚକୋଟୀର ସାହିତ୍ୟକୃତି ଓ ଦର୍ଶନ ସଂପର୍କୀୟ ଅବଗାହନ, ବେଦ ଉପନିଷଦଠୁଁ ସାଂପ୍ରତିକ ଜଗତର ବୈଜ୍ଞାନିକ ଓ ଦାର୍ଶନିକ ଭାବସତ୍ୟର ଅନୁଶୀଳନ ଆଦିର ପରିଚୟ ପର୍ଯ୍ୟାପ୍ତ ଭାବରେ ମିଳିଥାଏ। କିନ୍ତୁ ସେ ସବୁ ଗଳ୍ପରେ ପ୍ରତିଫଳିତ ମୌଳିକ ଦୃଷ୍ଟି ଓ ଚଟକତାକୁ ବ୍ୟାହତ କରିନାହିଁ। ଏହା ଅଧିକଂତୁ ତାଙ୍କର ଦୃଷ୍ଟିଭଂଗୀକୁ ବିଜ୍ଞାନସମ୍ମତ, ଦର୍ଶନକୁ ତତ୍ତ୍ୱନିଷ୍ଠ ଓ ସୌନ୍ଦର୍ଯ୍ୟ ଦୃଷ୍ଟିକୁ ଅଧିକ ରସଗ୍ରାହୀ କରିଛି। ସ୍ୱକୀୟ ଚିନ୍ତନ ଓ ମନନ ଦ୍ୱାରା ସେ ସତେକି ନିଜର ଏକ ଦର୍ଶନ ବା ମାର୍ଗ ପ୍ରସ୍ତୁତ କରିଥିବା ମନେହେବ। ଏପରି ଅବଗାହନ ଓ ମନନଶୀଳତା ସହ ଗଳ୍ପରେ ତତ୍ତ୍ୱ ଓ ରସର ସମ୍ମିଶ୍ରଣ, ବୌଦ୍ଧିକତା ଓ ହୃଦୟାବେଗର ସମନ୍ୱୟ, ପାରମ୍ପରିକ ମୂଲ୍ୟବୋଧ ଓ ସାଂପ୍ରତିକ



Digitized by srujanika@gmail.com

ଅଭିରୁଚିର ସମ୍ମେଳନ ତାଙ୍କ ସମସାମୟିକ କ୍ୱଚିତ କଥାଶିଳ୍ପୀଙ୍କ ଠାରେ ପରିଲକ୍ଷିତ ହୁଏ। ଅତି ସାଧାରଣ ତୁଚ୍ଛାଦିତୁଚ୍ଛ ଘଟଣା ଏବଂ ତଦ୍‌ଜନିତ କ୍ରିୟା ପ୍ରକ୍ରିୟା ଓ ଅନୁଭୂତିଠୁଁ ଆରମ୍ଭ କରି ଜ୍ଞାନ ବିଜ୍ଞାନର ସଦ୍ୟତମ ସିଦ୍ଧାନ୍ତର ପ୍ରୟୋଗ ଓ ପ୍ରାସଙ୍ଗିକତା ପର୍ଯ୍ୟନ୍ତ ତଥ୍ୟକୁ ସେ ଗଳ୍ପର ନିର୍ମାଣ କରିଥାନ୍ତି। ଆଞ୍ଚଳିକ ଘଟଣା ନେଇ ଗଳ୍ପର କଥାବସ୍ତୁର ସୂତ୍ରପାତ ଘଟିଥିଲେ ମଧ୍ୟସେଥିରେ କେବେ କେବେ ଏକ ଅନ୍ତର୍ଜାତୀୟ ପରିମଣ୍ଡଳର ପ୍ରତିଫଳନ ଏବଂ ଏକ ବୃହତ୍ତର ବିଶ୍ୱଦୃଷ୍ଟିର ପରିଚୟ ମିଳିଥାଏ। ମୌଳିକ ଜୀବନ ଦୃଷ୍ଟି, ଉପସ୍ଥାପନରେ ଏକ ଅକୃତ୍ରିମ ସ୍ୱତଃସ୍ଫୁର୍ତ୍ତତା ଓ ପ୍ରାଣବନ୍ତ ବର୍ଣ୍ଣନାଚାତୁର୍ଯ୍ୟ ବାମାଚରଣଙ୍କ ନିଆରା ଶକ୍ତିମତ୍ତାକୁ ସାବ୍ୟସ୍ତ କରେ। ଗଭୀର ଜୀବନବୋଧ, ମାଟି ଅନୁରକ୍ତି ଅନ୍ତରାଳରେ ଏକ ଅପାର୍ଥିବ ଓ ମହତ୍ତର କିଛି ସ୍ପନ୍ଦନ ପ୍ରତି ଆକୁଳତା ବାମାଚରଣଙ୍କ ଗଳ୍ପ ମଧ୍ୟରୁ ବାରି ହୋଇଯାଏ।

ବାମାଚରଣଙ୍କ ଗଳ୍ପର ଉପାଦାନ, କଥାବସ୍ତୁ ଓ ପରିସର ପାରିବାରିକ ପୃଷ୍ଠଭୂମିଠୁଁ ଚାକିରିଜୀବୀ ଜୀବନଧାରା ପର୍ଯ୍ୟନ୍ତ ପରିବ୍ୟାପ୍ତ। ବିଭିନ୍ନ ସମୟରେ ତାଙ୍କ ଗଳ୍ପପୁରୁଷଟି ଗୃହସ୍ଥ, ପିତା, ପୁତ୍ର, ଲେଖକ, ହାକିମ, ଚାକିରିଜୀବୀ ବା ସାଧାରଣ ମଣିଷର କା' ନେଇ ଉଭା ହୋଇଥାଏ। କେତେବେଳେ ପ୍ରଥମ ପୁରୁଷ ଓ ତୃତୀୟ ପୁରୁଷ ରୀତିରେ ଏବଂ କେତେବେଳେ ଏକ ଦ୍ରଷ୍ଟାର ଆଖି ନେଇ ସେ ଘଟଣାର ପରିବେକ୍ଷଣ ଓ ପର୍ଯ୍ୟବେକ୍ଷଣ କରିଥାନ୍ତି। ତାଙ୍କ ଗଳ୍ପରେ ବ୍ୟକ୍ତିର କର୍ମ, ପ୍ରବୃତ୍ତି, ଈଶ୍ୱର-ନିରୀଶ୍ୱର ଭାବ ଭାବନା ନେଇ ବିଶ୍ଲେଷଣ କେଉଁଠି ପ୍ରାଧାନ୍ୟ ପାଇଛି ତ ପୁଣି କେଉଁଠି ଯୁଦ୍ଧ, ପ୍ରେମ, ନାରୀ ସ୍ୱାଧୀନତା, ନାରୀର ଗାରିମା ବା ମାତୃତ୍ୱବୋଧ, ନୈତିକତା, ପାପପୁଣ୍ୟ, ପାରିବାରିକ ସଂପ୍ରୀତି ଓ ପ୍ରାଣୀଜଗତର ବୈଚିତ୍ର୍ୟ ମଧ୍ୟଗୁରୁତ୍ୱପୂର୍ଣ୍ଣ ହୋଇଉଠିଛି। ବ୍ୟକ୍ତି ମଧ୍ୟରେ ଥିବା ଦିବ୍ୟ ଓ ଆସୁରିକ ଚେତନାର ସଂଘର୍ଷ, ତଥାକଥିତ ଅପରାଧୀ ବ୍ୟକ୍ତି ଭିତରେ ଥିବା ମଣିଷପଣିଆ କଥା, ସର୍ବୋପରି ବ୍ୟକ୍ତିମଣିଷ ମଧ୍ୟରେ ଥିବା ପ୍ରବୃତ୍ତିଗତ ରୂପରାଗ, ଅହଂକାର, ଛଳନା, ଆଟୋପ ଏବଂ ତା'ସହିତ ମାନବିକ କରୁଣା ଓ ହୃଦୟବତ୍ତାର କଥାକୁ ମଧ୍ୟ ଗାଳ୍ପିକ ସୁନ୍ଦର ଭାବେ ରୂପାୟିତ କରିଛନ୍ତି। ମଳିନ ଓ ଅଧୋଗାମୀ, ଦ୍ୱନ୍ଦ୍ୱ ଓ ଦ୍ୱିଧାଗ୍ରସ୍ତ ମଣିଷ ମଧ୍ୟରେ ହୃଦୟବତ୍ତା ଓ ମଣିଷପଣିଆର ସ୍ଫୁରଣ ଆମେ ତାଙ୍କଠି ଲକ୍ଷ୍ୟ କରିଥାଉ। ପାରିବାରିକ ପୃଷ୍ଠଭୂମି, ପାରସ୍ପରିକ ଆଳାପ-ସଂଳାପ ବଳୟିତ ଘଟଣା ଅନେକ ଗଳ୍ପର କଥାବସ୍ତୁ ହୋଇଥିଲେ ବି ଏଥିରେ ବିବିଧତା ରହିଛି। ବେଳେ ବେଳେ ବିଷୟବସ୍ତୁର ସ୍ଫୀତିକରଣ ଗଳ୍ପକୁ ଆହତ କରେ। ତତ୍ତ୍ୱ, ଦର୍ଶନର ପରିପ୍ରକାଶ



Digitized by srujanika@gmail.com

ଟିକେ ଅଧିକ ହୋଇଥାଏ। ନିହାତି ସାଧାରଣ ଚରିତ୍ରକୁ ଛାଡ଼ିଦେଲେ ବହୁ ଚରିତ୍ରଙ୍କ ମଧ୍ୟରେ ବେଳେ ବେଳେ ଯେଉଁ ଧୀମତ୍ତା ଓ ପାଣ୍ଡିତ୍ୟ ପରିଦୃଷ୍ଟ ହୁଏ, ମନେହୁଏ ସେମାନଙ୍କୁ ସତେକି ଲେଖକଙ୍କ ସତ୍ତା ଆବୋରି ରହିଥାଏ। ସବୁ ସତ୍ତ୍ୱେ ବାମାଚରଣ ପାଠକଙ୍କ ହୃଦୟରେ ସହୃଦୟତାର ସ୍ଫୁରଣ ସହିତ ଆଉ କିଛି ମନରେ ସଦିଚ୍ଛା ଓ ସମ୍ଭାବନାର ପ୍ରତ୍ୟାଶା ଦେଇଥାନ୍ତି। ବାମାଚରଣଙ୍କ ଗଳ୍ପର ଭାବବିସ୍ତୃତି, ଚରିତ୍ରଚିତ୍ରଣ, ଆବେଦନ ଓ ମର୍ମକୁ ବିଚାର ବିଶ୍ଳେଷଣ କଲେ ତାଙ୍କ ଦୃଷ୍ଟିର ବହୁଧା ଦିଗନ୍ତ ଉନ୍ମୋଚିତ ହୁଏ। ପ୍ରଥମତଃ ଶିଶୁ କିଶୋର ମନସ୍ତତ୍ତ୍ୱସଂପନ୍ନ ଗଳ୍ପ କଥା ନିଆଯାଉ। ଶିଶୁ ବା କିଶୋର କିଶୋରୀଙ୍କ ଅଦ୍ଭୁତ ଖିଆଲ, ଜିଜ୍ଞାସାସଂପନ୍ନ ମନୋଜଗତର ରୂପାୟନ ପରିପ୍ରେକ୍ଷୀରେ ବୟସ୍କ ମଣିଷଙ୍କ ପୃଥିବୀ ମଧ୍ୟଆଲୋକିତ ହୋଇଛି। ସୃଷ୍ଟି ଏବଂ ଐଶ୍ୱରୀୟ ଭାବର ରହସ୍ୟମୟତା ଫୁଟିଛିଉଠିଛି। ଏ ଧାରାରେ "ସ୍ୱପ୍ନସିଦ୍ଧ" ଓ ମିମିକୁ ଆଧାର କରି ତିନୋଟି ଗଳ୍ପ ବାମାଚରଣଙ୍କ ଏକାନ୍ତ ଲୋକପ୍ରିୟ ଗଳ୍ପ। "ମିମିର ସାହିତ୍ୟ ଶିକ୍ଷା" ମଧ୍ୟରେ ଶିଶୁର ଖିଆଲି ସ୍ୱପ୍ନ ଓ କଳ୍ପନାର ଜଗତ ଜୀବନ୍ତ ହୋଇଉଠିଛି। ଈଶ୍ୱରଙ୍କ ରୂପର ଏକ ଅନନ୍ୟ ବ୍ୟାଖ୍ୟା ତା' ଭିତରର ଜିଜ୍ଞାସାବୋଧକୁ ପ୍ରକାଶ କରିଛି। ତଥାକଥିତ ହିସାବୀ ରୀତିରେ କବି କଳ୍ପନାର ଈଶ୍ୱରଙ୍କୁ ଗ୍ରହଣ କରିବାକୁ ସେ ରାଜି ନୁହଁ। ବିଶ୍ୱର ପ୍ରତିଟି କୌତୁକପ୍ରବଣ ଶିଶୁ ମଧ୍ୟରେ ଆମେ ମିମିକୁ ଦେଖୁ। ଅନ୍ୟ ଗଳ୍ପରେ ତା'ର "ଭୂଗୋଳ" ଓ "ସଭ୍ୟତା" ଶିକ୍ଷାର ପ୍ରଚ୍ଛନ୍ନରେ ଶିଶୁ କିଶୋର ଜଗତର ରହସ୍ୟ ପ୍ରକାଶ ପାଇଛି। ଯାବତୀୟ ଈର୍ଷା, ଅସୂୟା, କ୍ରୋଧ ଓ ଭୟପ୍ରବଣତା ସତ୍ତ୍ୱେ ପ୍ରତିଟି ଶିଶୁ ଭିତରେ ଏକ ପ୍ରଗାଢ଼ ସ୍ନେହ ଓ ଆତ୍ମୀୟତା ସବୁକାଳେ ବିଦ୍ୟମାନ ରହିଛି- "ସ୍ୱପ୍ନସିଦ୍ଧ' ଗଳ୍ପ ତା'ର ଅପୂର୍ବ ରୂପାୟନ। ଶିଶୁ ଯେ ନିଷ୍ପାପ ଚେତନା ଓ ସ୍ୱର୍ଗୀୟ ଦ୍ୟୋତନାର ଏକ ସେତୁ - ଏଇ ଭାବ ତାଙ୍କ ଗଳ୍ପମାନଙ୍କର ଅନ୍ୟତମ ପ୍ରତିପାଦ୍ୟ।

ବ୍ୟକ୍ତି ଭିତରେ ଥିବା ଆଟୋପହୀନ ସରଳ ନିରୀହପଣକୁ ବାମାଚରଣ ଅତ୍ୟନ୍ତ ହୃଦ୍ୟ ଓ ନିଖୁଣ ଭାବରେ ବ୍ୟବଚ୍ଛେଦ କରିଛନ୍ତି। ପୁଣି ତା' ଭିତରର ଫମ୍ପା ଆଭିଜାତ୍ୟ ଅସହାୟତା ଓ ଉପଲବ୍ଧି ମଧ୍ୟବହୁ ଗଳ୍ପରେ ପରିସ୍ଫୁଟିତ ହୋଇଛି। "ମହାପୁରୁଷବାଗ" ଗଳ୍ପର ସରଳମନା ସଂଗୀତର ପୂଜାରୀ ମୋଚି ରାମାରାଓମାନେ ତେଣୁ ଭାରତବର୍ଷର ନିରୀହ ନିର୍ବୋଧ ଜନସାଧାରଙ୍କର ପ୍ରତୀକ ବୋଲି ପ୍ରତିଭାତ ହୁଅନ୍ତି। ବଡ଼ବଡ଼ିଆଙ୍କର ମିଥ୍ୟା ଭାଷଣରେ ପ୍ରଲୁବ୍ଧ ହୋଇ ପାଶ୍ଚାତ୍ୟ ବିଳାସ ପ୍ରମତ୍ତ ମହାପୁରୁଷବାଗ କ୍ଲବରେ ଅନୁପ୍ରବେଶ କରିବାର ବିଡ଼ମ୍ବିତ ପରିଣତି ତାଙ୍କୁ ଭୋଗିବାକୁ ପଡ଼ିଛି। ତଥାକଥିତ



Digitized by srujanika@gmail.com

କାମନା, ଶଠତା, ସ୍ୱେଚ୍ଛାଚାରରେ ମଦମତ୍ତ ଶାସନତନ୍ତ୍ରର ରାକ୍ଷସୀ ଲାଳସା ପାଖରେ ରାମାରାଓ ତାଙ୍କର ପତ୍ନୀ ସହଜାତ ଭାବେ ବଳିପଡ଼ିଛନ୍ତି। ରାମାରାଓଙ୍କ କାରୁଣ୍ୟ ଭିତରେ ଭାରତବର୍ଷର ନିପୀଡ଼ିତ ଓ ପ୍ରତାରିତ ମାନବାତ୍ମାର କାରୁଣ୍ୟ, ସୌନ୍ଦର୍ଯ୍ୟବୋଧ ଓ ନିରୀହତାର ମୃତ୍ୟୁ ପ୍ରକଟିତ ହୋଇଛି। "ଲଡୁ" ଗଳ୍ପରେ ନିମ୍ନ ମଧ୍ୟବିତ୍ତ ମଣିଷ ମଧ୍ୟରେ ଥିବା ଅଭାବ ଅନଟନରେ ଭୀଷଣତା ସହିତ "ଦିଲମୋହିନୀ" ନାମିତ ମିଠାଦୋକାନର ଲଡୁଟିଏ ଖାଇବାଜନିତ ପ୍ରବୃତ୍ତିର ତାଡ଼ନା ଏତେ ସୁନ୍ଦର ଭାବେ ରୂପ ପାଇଛି ଯେ ବ୍ୟକ୍ତିର ଆସକ୍ତି ଓ ଅସହାୟତା ପାଠକ ଚିତ୍ତରେ ସଂବେଦନା ଉଦ୍ରେକ କରେ। କିନ୍ତୁ "ପାଷାଣର ପ୍ରାଣ" ଗଳ୍ପର ନାୟକ ଯାଦବବାବୁ ଅଭାବ ଅନଟନର ନିଜ ଭିତରର ମଣିଷପଣିଆକୁ ବଳିପକାଇ ନାହାନ୍ତି। ଅଭାବଗ୍ରସ୍ତ ହେଲେ ବି ଅନ୍ୟକୁ ଠକିବାର ମାନସିକତା ସେ ପରିହାର କରିଛନ୍ତି। ଚେତନା ନିଷ୍ପାପ ରହିଲେ ଯେ ଚିତ୍ତ-ଲୋକରେ ମନ୍ଦିରର ପାଷାଣ ପ୍ରତିମା ଜୀବନ୍ତ ଦିଶନ୍ତି। ଯାଦବବାବୁଙ୍କର ଏ ଉପଲବ୍ଧି ବାମାଚରଣଙ୍କ ଈଶ୍ୱର ସଂପ୍ରୀତିର ପରିଚାୟକ।

ବାମାଚରଣଙ୍କ ବିବିଧ ଭାବଧାରାଶ୍ରୟୀ ଗଳ୍ପ ସମକାଳୀନ ସମାଜର ବହୁ ଦିଗ ମନସ୍ତତ୍ତ୍ୱର ବିବିଧ ଦିଗନ୍ତକୁ ଉନ୍ମୋଚିତ କରେ। ଏ ଦୃଷ୍ଟିରୁ ତାଙ୍କର "ନିମନ୍ତ୍ରଣ" ଗଳ୍ପ ସ୍ୱତନ୍ତ୍ର ସ୍ୱାଦର। ଦାରିଦ୍ର୍ୟର ବି ଆପଣା ସୌକର୍ଯ୍ୟ ଓ ସ୍ୱାଭିମାନ ଥାଏ। ସେଇ ଛଳନାମୁକ୍ତ ଜୀବନ ଚଳଣୀର କୃତ୍ରିମତା କବଳିତ ହେଲେ ବିଡ଼ମ୍ବନା ସୃଷ୍ଟି ହୁଏ। ଏଇ ବିଡ଼ମ୍ବନା ଓ ମୋହଭଂଗର ହୃଦ୍ୟଚିତ୍ର "ନିମନ୍ତ୍ରଣ"ରେ ପରିବେଷିତ। ଏ ଧାରାର "ସ୍ମୃତି ରତ୍ନାକର" ଗଳ୍ପରେ ସହରୀ ଧନାଢ଼୍ୟପଣିଆର ପତିଆରା, ପ୍ରାଚୁର୍ଯ୍ୟ ଭିତରର ଛଳନା ଓ ହୃଦୟହୀନତାକୁ ଗାଢ଼ିକ ସାଧାରଣ ଚରିତ୍ରଟିଏ ଜରିଆରେ ସହଜରେ ଭାଙ୍ଗି ଦେଇଛନ୍ତି। ଅକପଟ, ଅକୃତ୍ରିମ ଜୀବନଧାରା, ଅନ୍ତରଙ୍ଗ ଆତ୍ମୀୟତାବୋଧ, ସର୍ବୋପରି ମାନବିକତାବୋଧର ମହିମା ପ୍ରତି ଏ ଧାରାର ଗଳ୍ପମାନଙ୍କରେ ବାମାଚରଣ ପ୍ରଯତ୍ନ କରିଛନ୍ତି।

ଜାତିଧର୍ମ ନେଇ ସାଂପ୍ରଦାୟିକ ସଂଘର୍ଷରୁ ସାଂପ୍ରତିକ ବିଶ୍ୱ ଓ ଭାରତବର୍ଷ ମୁକ୍ତି ପାଇନାହିଁ। ସେଠି ମନ୍ଦିର, ମସ୍‌ଜିଦ ନେଇ ରକ୍ତରେ ହୋରିଖେଳ ଚାଲେ। ଆମ କୁଶଭଦ୍ରା ନଦୀର ଏ ପାରିର କୁଶୁପୁରର ରାଧାବଲ୍ଲଭଙ୍କ ଅନୁରକ୍ତ ରାମପ୍ରଧାନ ଓ ଆରପାରିର ଅହମଦପୁର ଗାଁର ରହିମ ଖାଁମାନଙ୍କ ଯୁଗଯୁଗର ସଂପର୍କ, ଘନିଷ୍ଠ ଆତ୍ମୀୟତା ଏଣୁ ରକ୍ତରଙ୍ଗା ହୁଏ। ସେମାନଙ୍କର ପୁଅ ନବ ଓ ଅବଦୁଲ୍ ପରସ୍ପର ହାତରେ ମୃତ୍ୟୁବରଣ କଲେ ବି ଆତ୍ମୀୟତାର ବଂଧନ ଏବଂ ସହାବସ୍ଥାର ସମ୍ଭାବନା



Digitized by srujanika@gmail.com

ତଥାପି ଶୋଷ ହୋଇଯାଏନି । ଗାଳ୍ପିକ ପରବର୍ତ୍ତୀ ଦାୟାଦଙ୍କୁ ପ୍ରେମ ଓ ମୈତ୍ରୀରେ ବାନ୍ଧିରଖନ୍ତି । ଏ ଧାରାରେ ଦୁଇଟି ଭାଗରେ ଲିଖିତ "ହୋଲି'' ଓ "ଧର୍ମକ୍ଷେତ୍ରେ'' ଗଳ୍ପଦ୍ୱୟ । କୁଶୁପୁର ଓ ଅହ୍ମଦପୁରକୁ ଆମେ ପୃଥିବୀର ଦୁଇଟି ଧର୍ମ ଅଧ୍ୟୁଷିତ ଭୂମି ବୋଲି ଗ୍ରହଣ କରିପାରିବା । ପୃଥିବୀ ଯେ ସହାବସ୍ଥାନ ଓ ସହୃଦୟତାର ମହତୀ ଭୂମି - ଏ ଭାବର ପ୍ରସ୍ଫୁଟନରେ, ସଂପର୍କ ଓ ଆତ୍ମୀୟତାର ବହୁଧା ଦିଗନ୍ତ ଉନ୍ମୋଚନରେ ଏହା ବାମାଚରଣଙ୍କର ଅନବଦ୍ୟ ଶକ୍ତଶାଳୀ ସୃଷ୍ଟି । "ମାନବ ଓ ଦାନବ'', "ଧରିତ୍ରୀ ଓ ଧରିତ୍ରୀ'' ପରି ଗଳ୍ପରେ ବାହ୍ୟପ୍ରକୃତି ଓ ମନୁଷ୍ୟର ଅନ୍ତଃପ୍ରକୃତିକୁ ଗାଳ୍ପିକ ସୁନ୍ଦର ଭାବରେ ଉତ୍‌ଖାତ କରିଛନ୍ତି । ମନୁଷ୍ୟ ଭିତରର ହିଂସାପ୍ରମତ୍ତ ପାଶବିକତା ଓ କାମନାର କଦାକାର ଭୀଷଣସ୍ୱରୂପ ତାକୁ ଆଜି ଧ୍ୱଂସ ପଥର ଅଭିଯାତ୍ରୀ କରିଛି । କିନ୍ତୁ ତା' ଭିତରର ଅମୃତମୟ ମହତୀ ସତ୍ତା ଓ ବିଶ୍ୱପ୍ରକୃତି ଯେ ତାକୁ ଉତ୍ତୀର୍ଣ୍ଣ କରାଇବ, ଏଇ ବିବେଚନା ଓ ମୁକ୍ତି ଅଭୀପ୍‌ସା ଏ ଗଳ୍ପଦ୍ୱୟର ଅସଲ ଅନ୍ତଃସ୍ୱର । ଆସୁରିକତାର ଉଦ୍‌ଘାଟନ ଓ ଦିବ୍ୟଭାବର ଉଦୟନରେ ବାମାଚରଣଙ୍କ ସ୍ୱର ଏକାନ୍ତ ସନ୍ନ୍ୟାସୀ ଓ ଦାର୍ଶନିକ ସୁଲଭ ମନେହୁଏ ।

ଜୀବନ ଓ ଜଗତର ବହୁବିଧ ବୈଚିତ୍ର୍ୟ ବାମାଚରଣଙ୍କ ପ୍ରଖର ଅନ୍ତଃଦୃଷ୍ଟିରେ ଆଲୋକିତ ହୋଇଛି । ମନୁଷ୍ୟ ଓ ପ୍ରାଣୀଜଗତର ଯାବତୀୟ କ୍ରିୟା-ପ୍ରକ୍ରିୟା ମଧ୍ୟରେ ଗାଳ୍ପିକ ଭିନ୍ନ ଏକ ଉପଲବ୍ଧି ଓ ଭାବସତ୍ୟର ଜଗତରେ ପହଞ୍ଚିଛି । "ଜୀବନ ଓ ଜୀବିକା'' ଗଳ୍ପରେ ଏକ ଏକ ସାଧାରଣ ଚନାଚୁର ବିକାଳୀର ଜୀବନଯାପନ ମଧ୍ୟରେ ଜୀବନ ଜିଇଁବାର ସ୍ପର୍ଦ୍ଧା, ଅର୍ଥମୟତା ଓ ସୃଜନଶୀଳତାକୁ ଗାଳ୍ପିକ ପ୍ରତ୍ୟକ୍ଷ କରିଛନ୍ତି । "ଅମୃତସ୍ୟ ପୁତ୍ରାଃ'' ଗଳ୍ପରେ ଏକ ପକ୍ଷରେ ମାତୃତ୍ୱର ବୈଚିତ୍ର୍ୟ ଓ ଜୟଗାନ ଏବଂ ଅନ୍ୟ ପକ୍ଷରେ ହାଇଡ୍ରୋଜେନ୍ ବୋମା ପ୍ରୟୋଗରେ ନିରୀହ ମାନବ ସନ୍ତାନର ଧ୍ୱଂସଲୀଳା- ଏ ବିରୋଧାଭାସ ଏକ ବୌଦ୍ଧିକ ଚିନ୍ତାଦ୍ୟୋତକ ଆବେଦନ ଦେଇଥାଏ । "କଷ୍ଟେ ପୁତ୍ରଃ'' ଗଳ୍ପରେ ପ୍ରଦର୍ଶିତ ନିରୀହ ଅସହାୟତା ଓ କାରୁଣ୍ୟ ଜୀବନ ଜିଇଁବାର ଆଉ ଏକ ଭିନ୍ନ ଫର୍ଦ୍ଦ ଉନ୍ମୋଚନ କରେ । "କୁକୁଡ଼ା ଚାଷ'' ବା "ଆଗନ୍ତୁକ'' ଗଳ୍ପରେ ପ୍ରାଣୀଜଗତର କୁକୁଡ଼ା ଭିତରେ ଗାଳ୍ପିକ ସ୍ନେହ ଓ ଅଭୟ ପ୍ରଦାନକାରୀ ମା' ସତ୍ତାର କମନୀୟ ଜଗତକୁ ଦେଖାଇପାରନ୍ତି । ପ୍ରାଣୀଜଗତ ଭିତରେ ବିଶ୍ୱଜନୀନ ମାତୃସତ୍ତାର ଅସ୍ତିତ୍ୱ ଉପଲବ୍ଧ ହୁଏ । ଏ ଦୁଇଟି ଗଳ୍ପ ଭିନ୍ନ ଅନ୍ୟ କେତେକ ଗଳ୍ପରେ ଏହି ମାତୃଶକ୍ତିର ମମତ୍ୱବୋଧ ଓ ଅଭୟପ୍ରଦାନକାରୀ ରୂପକୁ ଗାଳ୍ପିକ ଆଲୋକିତ କରିଛନ୍ତି । "ଗୋଟିଏ ମୂଷିକ ପରିବାରରେ ମୂଷା'' ଗଳ୍ପଟିରେ ମୂଷାକୁ ନେଇ ସୃଷ୍ଟିର ଅଦ୍ଭୁତ ଲୀଳାଖେଳା, ବ୍ୟକ୍ତିର ହିଂସ୍ରତା ଓ



Digitized by srujanika@gmail.com

ସ୍ନେହପ୍ରବଣତା, ଜୀବନ ଜିଇଁବା ଓ ମୃତ୍ୟୁର ବହୁ ପ୍ରସ୍ଥ ଏକ ନାଟକୀୟ ରୀତିରେ ଉଦ୍‌ଘାଟିତ ହୋଇଛି। ଏଇ ଧାରାର ଗଳ୍ପମାନଙ୍କରେ ମୁଖ୍ୟତଃ ଜୀବନର ବିବିଧତା, ଅସୁମାରୀ ବୈଚିତ୍ର୍ୟ କଳାସଂଗତ ରୂପ ପରିଗ୍ରହଣ କରିଛି।

ସ୍ୱାଧୀନତା ପରବର୍ତ୍ତୀ ଭାରତବର୍ଷର ଗାଁ ଭିତରର ଦୃଶ୍ୟ ବଦଳ ଗାଳ୍ପିକଙ୍କ ସନ୍ଧାନୀ ଦୃଷ୍ଟିରୁ ବାଦ ପଡ଼ିନାହିଁ। ବଟପୁରୁଷ ଆଖ୍ୟାୟିତ ଆମ ଧର୍ମ ଓ ବିଶ୍ୱାସର ପ୍ରତିଭୂ ବଟବୃକ୍ଷକୁ ଆଧାର କରି କ୍ଷମତା ଲଢ଼େଇ ଓ ସାମ୍ପ୍ରତିକ ସଂଘର୍ଷର ପ୍ରାଣସ୍ପର୍ଶୀ ଚିତ୍ର "ବଟ ମହାପୁରୁଷ'' ଗଳ୍ପରେ ପରିବେଷିତ। ଖାଲି ସଂସ୍କୃତିର ଓ ସହାବସ୍ଥାନର ଚେର ଯେ ଉପୁଡ଼ି ପଡୁଚି ତା ନୁହେଁ, ଧର୍ମ ଯେ ଆଜି ସ୍ୱାର୍ଥନ୍ୱେଷୀ ମଣିଷର ସ୍ୱର୍ଣକାତର ଆଧାର ବହୁ ବର୍ଷ ତଳେ ରଚିତ ଏ ଗଳ୍ପର ପ୍ରାସଙ୍ଗିକତା ଆଜି ସଜଳ ହୋଇଉଠି ନାହିଁ କି ? ଗାଁକୁ ନେଇ ବାମାଚରଣଙ୍କର ରହିଛି କିଛି ଭିନ୍ନ ଭାବାଶ୍ରୟୀ ଅନ୍ତରଙ୍ଗ ଗଳ୍ପ।

ବାମାଚରଣଙ୍କ ଗଳ୍ପର ଅନ୍ୟ ଏକ ସୁଦୃଶ୍ୟ ବିଭବ ବିମଳ ହାସ୍ୟରସ ଓ ବ୍ୟଙ୍ଗର ଅବତାରଣା। ସ୍ୱକୀୟ ଉପସ୍ଥାପନାକୁ ଅଧିକ ରମ୍ୟ, ରୋଚକ ଓ ରସଗ୍ରାହୀ କରିବା ହେଉଛି ତାଙ୍କ ହାସ୍ୟ ବ୍ୟଙ୍ଗର ଆଭିମୁଖ୍ୟ। ପୁନଶ୍ଚ, ଏକ ପକ୍ଷରେ ବ୍ୟକ୍ତିର ଅସହାୟତା, କାରୁଣ୍ୟ ଓ ଚଞ୍ଚଳତାର ସ୍ୱରୂପ ପ୍ରଦର୍ଶନ ଏବଂ ଅନ୍ୟ ପକ୍ଷରେ ଆନନ୍ଦ-ଅନୁରାଗ-ଆମୋଦର ପରିପ୍ରକାଶ, ଏହି ହାସ୍ୟବ୍ୟଙ୍ଗ ଯୋଗୁଁ ଅଧିକ ପ୍ରାଣବନ୍ତ ହୋଇପାରିଛି। ଏହା ଜରିଆରେ ବାମାଚରଣଙ୍କ ବାକ୍‌ବୈଦଗଧ, ବୁଦ୍ଧିଚାତୁର୍ଯ୍ୟ, ଶ୍ଳେଷ, ଆତ୍ମବ୍ୟଙ୍ଗ, କୌତୁକ ଓ ପରିହାସପ୍ରିୟତା ରୂପ ପାଇଛି। କେବେ କେବେ ଫା□ସିର ଅବତାରଣା ବାମାଚଣଙ୍କ ଅପୂର୍ବ କଳ୍ପନା ଓ ଶକ୍ତିମତ୍ତାକୁ ସୂଚାଇ ଥାଏ। "ମାନବ ଓ ଦାନବ'', "ଇଚ୍ଛା ପୂରଣ'', "ବାବା ଉଦ୍ଧରାନନ୍ଦଙ୍କ ବିବାହ ବୃତ୍ତାନ୍ତ' ଆଦି ଗଳ୍ପରେ ଏହି ପ୍ରୟୋଗ ଲକ୍ଷ୍ୟ କରିହେବ। "ଧରିତ୍ରୀ ଓ ଧରାତ୍ରୀ' ଗଳ୍ପରେ ବର୍ଣ୍ଣନା ମଧ୍ୟରେ ଏହି ପ୍ରୟୋଗ ଚମତ୍କାରିତାର ସୂଚନା ପ୍ରଦତ୍ତ- "ବିଲୁଆମାନେ ଶେଷ ପ୍ରାହରିକ ରାବିଲେ ହୁୟା ହୁୟା। ଥୋକେ ଦୂରରୁ ପଚାରିଲେ, କ୍ୟା ହୁୟା କ୍ୟା ହୁୟା... । ଆଉ ଥୋକେ ଉତ୍ତର ଦେଲେ ହତ୍ୟା ହୁୟା, ହତ୍ୟା ହୁୟା...।" ଗଳ୍ପର ଏକମୁଖୀ ପ୍ରଭାବ ପ୍ରତି ଏକାନ୍ତ ଯତ୍ନଶୀଳ। ବାମାଚରଣ ତତ୍ତ୍ୱ ଓ ତଥ୍ୟର, ପ୍ରଜ୍ଞା ଓ ଆବେଗର, ରସବୋଧ ଓ ଯୁକ୍ତିନିଷ୍ଠତାର ସମନ୍ୱୟ ଘଟାଇ ଗଳ୍ପର ଆବେଦନକୁ ବହୁପ୍ରସ୍ଥୀ ଓ ବୌଦ୍ଧିକ କରିପାରନ୍ତି। ବର୍ଣ୍ଣନାରେ କୌଣସି ତଥାକଥିତ ଅଳଙ୍କରଣ ବା ଉପମା-ଚିତ୍ରକଳ୍ପ ଚୟନ ପ୍ରତି ସେ କୌଣସି ଆଗ୍ରହ ଦେଖାଇ ନାହାନ୍ତି। ଲୋକପ୍ରଚଳିତ କଥିତ ଭାଷାର ବ୍ୟବହାର, ଗୀତା, ଉପନିଷଦ ବା ଲୋକ ସାହିତ୍ୟ ଆଦିର ପ୍ରସଙ୍ଗ ଓ



Digitized by srujanika@gmail.com

ଉଦାହରଣକୁ ଅନେକ ଭାବେ ସେ ଉଦ୍ଧୃତି ସ୍ୱରୂପ ଉପସ୍ଥାପନା କରିଛନ୍ତି । ଗଳ୍ପ କଳା ଦୃଷ୍ଟିରୁ ତଥାକଥିତ କୌଣସି ପରୀକ୍ଷା ପ୍ରତି ସେ ପ୍ରବଣତା ପୋଷଣ କରିନାହାନ୍ତି । କହିବାର ଏକ ଅନ୍ତରଙ୍ଗ ବିଦଗ୍ଧ ଯାଦୁକରୀ ଭଙ୍ଗୀ, ଗଭୀର ଆତ୍ମନିମଜ୍ଜନ, ଘଟଣାମାନଙ୍କର ସୂକ୍ଷ୍ମ ପର୍ଯ୍ୟବେକ୍ଷଣ ତାଙ୍କ ଗଳ୍ପକୁ ଆକର୍ଷଣୀୟ କରି ଗଢ଼ି ତୋଳେ ।

ବାମାଚରଣଙ୍କ ଗଳ୍ପରେ ପ୍ରତିଫଳିତ ସବୁ ଭାବ, ଦର୍ଶନ ଅନ୍ତରାଳରେ ମନୁଷ୍ୟର ପାରସ୍ପରିକ ସଂପର୍କ, ଆତ୍ମୀୟତା ଓ ଆଚରଣଗତ ବୈଚିତ୍ର୍ୟ ପ୍ରାଧାନ୍ୟ ପାଇଛି । ସବୁଠୁ ଗୁରୁତ୍ୱପୂର୍ଣ୍ଣ କଥା ହେଉଛି, ଏହି ଆତ୍ମୀୟତା ଜଗତ ସହିତ ମହାଜାଗତିକ ଘଟଣାମାନଙ୍କର ସମ୍ପର୍କ କିମ୍ବା ମନୁଷ୍ୟର ଅପରାଧ ଓ ବିକୃତି ସହିତ ମହାଯୁଦ୍ଧ ବା ପ୍ରଳୟର ଯୋଗାଯୋଗ କଥା ସେ ଘଟଣାପ୍ରବାହର ଅନ୍ତରାଳରେ ସୂଚାଇଥାନ୍ତି । ଏହି ବିଶେଷତ୍ୱ ପ୍ରକଟନରେ ସେ ସ୍ୱତନ୍ତ୍ର ଓ ଅନନ୍ୟ । ଅସୀମର ସ୍ୱର ବା ରହସ୍ୟବାଦ ପ୍ରତି ଉନ୍ମୁଖତା ତାଙ୍କ ଗଳ୍ପରେ ପ୍ରତିଫଳିତ । ବ୍ୟକ୍ତିସତ୍ତାର ଉତ୍ତରଣ ସହିତ ତା'ମଧ୍ୟରେ ନୀତିବୋଧ ଓ ଶୁଚିବୋଧର ପ୍ରତିଷ୍ଠା ଉପରେ ସେ ପ୍ରାଧାନ୍ୟ ଦିଅନ୍ତି । ସମଧର୍ମୀ ଗାଳ୍ପିକଙ୍କ ମଧ୍ୟରେ ଏହା ବାମାଚରଣଙ୍କ ନିଆରାପଣ । ଏକ ଆଧ୍ୟାତ୍ମିକ ଭରତ ଓ ସନ୍ତ୍ରାସମୁକ୍ତ ବିଶ୍ୱର ପରିକଳ୍ପନାସ ବ୍ୟକ୍ତିର ଉତ୍ତରଣ-ପ୍ରତ୍ୟାଶା ପାଇଁ ଆକୁଳତା ତାଙ୍କ ଗଳ୍ପରେ ପ୍ରତିଫଳିତ ।

ସମକାଳୀନ ବାମାଚରଣଙ୍କ ଗଳ୍ପର କଥାବସ୍ତୁର ଆଧାର ହେଲେ ହେଁ ସମୟୋତ୍ତୀର୍ଣ୍ଣ ଆବେଦନ ଦେବାରେ ତାଙ୍କର ବହୁ ଗଳ୍ପ ସଫଳ । ସାମାଜିକ ପ୍ରତିବଦ୍ଧତା ପ୍ରତି ଉନ୍ମୁଖ ଗାଳ୍ପିକ ମନୁଷ୍ୟର ଶୋଧନପ୍ରତ୍ୟାଶୀ । ବ୍ୟକ୍ତି ମହତ୍ତମ ଓ ଆଲୋକଦୀପ୍ତ ସୋପାନକୁ ଉନ୍ନୀତ ହେବା, ସଂସ୍କୃତିବନ୍ତ ଓ ପୂର୍ଣ୍ଣତମ ହେବା ଅଭୀପ୍ସା ଗାଳ୍ପିକ ଅନେକତ୍ର ପୋଷଣ କରିଛନ୍ତି । ଉପକୂଳବର୍ତ୍ତୀ ଓଡ଼ିଶାର ସମାଜ-ରାଜନୀତିକ ପୃଷ୍ଠଭୂମି ଉପରେ ତାଙ୍କ ଗଳ୍ପଗୁଡ଼ିକ ସଂପୃକ୍ତ ହେଲେ ବି ବିଷୟ ବିନ୍ୟାସ, ଆବେଦନ ଦୃଷ୍ଟିରୁ ବାମାଚରଣଙ୍କୁ ଏକ ଭାରତୀୟ ପୃଷ୍ଠଭୂମିର ଗାଳ୍ପିକ ବୋଲି ଗ୍ରହଣ କରିବାକୁ ହେବ । ମାନବିକ କରୁଣା ଓ ଜୀବନ ପ୍ରତି ଗଭୀର ସଂପ୍ରତିବୋଧର ଉର୍ଜସ୍ୱଳ ବାମାଚରଣ ମିତ୍ରଙ୍କ ଗଳ୍ପ ଆଞ୍ଚଳିକ ରଙ୍ଗବାସ୍ନା ଓ ସ୍ଥାନକାଳପାତ୍ର ଉର୍ଦ୍ଧ୍ୱରେ ରହେ ।

(ରାଜ୍ୟ ଅଭିଲେଖାଗାର ପରିସରରେ ବାମାଚରଣ ମିତ୍ରଙ୍କ ଶତବାର୍ଷିକ ସେମିନାର ୧୯ ଜୁଲାଇ ୨୦୧୫ ରେ ଉପସ୍ଥାପିତ ଲେଖକଙ୍କର ଭିତ୍ତିପ୍ରବନ୍ଧ (Keynote address)

ପତ୍ରିକା : ପ୍ରତିବେଶୀ

ଅକ୍ଟୋବର-ଡିସେମ୍ବର - ୨୦୧୫





Digitized by srujanika@gmail.com

# ପ୍ରଥମ ଭେଟ

ଶ୍ରୀ ରାମନାଥ ପଣ୍ଡା

ବାମା ବାବୁଙ୍କ ସହିତ ମୋର ପ୍ରଥମ ଭେଟ ହୋଇଥିଲା, ଭବାନିପାଟଣାରେ । ସେତେବେଳେ ଉପାନ୍ତ ଅଞ୍ଚଳରେ ଓଡ଼ିଆ ଭାଷା, ସାହିତ୍ୟ ଓ ସଂସ୍କୃତିକ ଜାଗରଣ ସୃଷ୍ଟି କରିବା ପାଇଁ ଆମେ କେତେଜଣ ଜୟପୁରରୁ ଜଗଦଳପୁର ଓ ନାରାୟଣପାଟଣାରୁ ଭବାନିପାଟଣା ପର୍ଯ୍ୟନ୍ତ ଖେଦି ବୁଲୁଥିଲୁ । ସେହି ଅବକାଶରେ ଭବାନିପାଟଣା ଠାରେ ବାମାବାବୁଙ୍କ ସହିତ ମୋର ଭେଟ ହୋଇଗଲା । ଅବଶ୍ୟ ଏ ଭେଟ ଆକସ୍ମିକ ନଥିଲା । ମୁଁ ତାଙ୍କୁ ଅନେକ ଦିନୁ ମନେ ମନେ ଖୋଜୁ ଥିଲି । କିନ୍ତୁ ସୁବିଧା ପାଉନଥିଲି ।

ଆଗେ କହିଦିଏ, କାହିଁକି ତାଙ୍କୁ ମୁଁ ଖୋଜୁଥିଲି ।

ସେ ସମୟରେ 'ବିକାଶ ପ୍ରତିଷ୍ଠାନ' ନୂଆ ଲେଖକ ମାନଙ୍କର ବହି ପ୍ରକାଶ କରିବାରେ ଯଥା ସମ୍ଭବ ଉଦ୍ୟମ କରୁଥିଲା । ଏହି ଅବକାଶରେ ପ୍ରତିଷ୍ଠାନ ଅନ୍ୟତମ ବିଶିଷ୍ଟ ଶୁଭେଚ୍ଛୁ ସହଯୋଗୀ ଔପନ୍ୟାସିକ ଶ୍ରୀ ଗୋପୀନାଥ ମହାନ୍ତି ପରାମର୍ଶ ଦେଲେ ଯେ ସୁଲେଖକ ଶ୍ରୀ କିଶୋରୀ ଚରଣ ଦାସ ଓ ଶ୍ରୀ ବାମାଚରଣ ମିତ୍ରଙ୍କର ବହି ଏ ପର୍ଯ୍ୟନ୍ତ କୌଣସି ପ୍ରକାଶନ ପ୍ରକାଶ କରିନାହାନ୍ତି । ତୁମେ ଯଦି ପାରିବ, ଦେଖ ।



Digitized by srujanika@gmail.com

ସେଇ ଦିନୁ ଏ ଦୁଇଜଣଙ୍କୁ ମୁଁ ଖୋଜୁଥିଲି । ଖୋଜୁଖୋଜୁ ଆଗେ ପାଇଗଲି ବାମାବାବୁଙ୍କୁ ଭବାନିପାଟଣାରେ ।

ପ୍ରଥମ ସାକ୍ଷାତରେ ଜାଣିଲି ଯେ ବାମାଚରଣ ମିତ୍ର କେବଳ ଜଣେ ଲେଖକମାତ୍ର ନୁହଁନ୍ତି, ସେ ଜଣେ ବିଜ୍ଞ ସାହିତ୍ୟିକ, ବିବେକବାନ ବିଚାରକ ଓ ସଂସ୍କାରକ ମଧ ।

ସେଦିନ ଭବାନିପାଟଣାରେ ସଭା ସରିଲା ବେଳକୁ ଅନେକ ରାତି ହୋଇଯାଇଥିଲା । ତେଣୁ ବନ୍ଧୁମାନଙ୍କୁ ଭେଟିବାର କାର୍ଯ୍ୟକ୍ରମଟି କାର୍ଯ୍ୟକାରୀ ହୋଇପାରିନଥିଲା । କିନ୍ତୁ ତହିଁ ଆରଦିନ ସକାଳେ ଡାକ ବଙ୍ଗଳା ବାହାରକୁ ଆସି ସକାଳୁଆ ଚାହା ଦୋକାନ ଖୋଜୁ ଖୋଜୁ ବାମା ବାବୁଙ୍କ ସନ୍ଧାନ ପାଇଗଲି । କାରଣ ଚାହା ଖିଆ ବେଳର ଗପସପ ଭିତରେ ଜଣେ ଶିକ୍ଷକ ବନ୍ଧୁ କହି ପକାଇଲେ ଯେ କାଲି ରାତିରେ ଆପଣଙ୍କ ଭାଷଣ ଶୁଣି ବାମା ବାବୁ ବହୁତ ପ୍ରଶଂସା କରୁଥିଲେ ।

ଅବଲୀଳାକ୍ରମେ ଅଥଚ ଅତି ଆଗ୍ରହ ସହକାରେ ପଚାରିଲି, କେଉଁ ବାମା ବାବୁ ?

ମାଷ୍ଟ୍ରେ କହିଲେ- ବାମା ଚରଣ ମିତ୍ର ମାଜିଷ୍ଟ୍ରେଟ୍ ।

ଉତ୍ସୁକତାର ସହିତ ପଚାରିଲି, ଯିଏ ଗପ ଲେଖନ୍ତି ?

ଟିକିଏ ମନେ ପକାଇ ସେ' କହିଲେ- ହଁ, ହଁ, ଲେଖା ଲେଖି କରନ୍ତି ତ ! ଭଲ ସାହିତ୍ୟିକ ଜଣେ ।

ଚଟ୍‌କିନା ପଚାରିଲି - କେଉଁଠି ରହନ୍ତି ?

ଆଙ୍ଗୁଠି ଦେଖାଇ ସେ କହିଲେ - ସେହି ଯେ ଆମ୍ବଗଛ - ଆଉ ଟିକିଏ ଆଗକୁ ଡାହାଣପଟ କଲୋନି ଭିତରେ ।

ଆଉ ତର ସହିଲା ନାହିଁ । ଚାହାଖିଆ ଗୋଟିଏ କପ୍‌ରେ ବନ୍ଦ । (ଆଉ କପେ ଖାଇଥାନ୍ତି) ଉଠି ଚାଲିଲି ।

ଯେମିତି ଶୁଣିଲେ ମୋ ନା, ଧାଇଁ ଆସିଲେ ଘର ଭିତରୁ । ଅଜାଡି ଦେଇଗଲେ ପ୍ରଶଂସାର ଧାରା । ମୁଁ ଲଜ୍ଜିତ ହେଲି ।

ପରେ ପରେ ତାଙ୍କର ପ୍ରଥମ ପ୍ରଶ୍ନ ଥିଲା, ବିକାଶ ପ୍ରତିଷ୍ଠାନ କିପରି ଚାଲିଛି ଆଗେ କୁହନ୍ତୁ ? ଜୟପୁର ଭଳି ଜାଗାରେ ଏତେ ବଡ ଅନୁଷ୍ଠାନ କଲେ କିପରି ? ଚାଲିଛି କିମିତି ?



Digitized by srujanika@gmail.com

କହିଲି, ମୋ' ବୟସର ଏବଂ ପାଖାପାଖି ସେହି ସମୟର ବା ତା ପୂର୍ବରୁ କୋରାପୁଟ ଜିଲ୍ଲାର ଯେତେଲୋକ, ଆମେ ସମସ୍ତେ ଜନ୍ମ ହୋଇଥିଲୁ ଓଡ଼ିଶା ବାହାରେ, ବିଚ୍ଛିନ୍ନାଞ୍ଚଳରେ ବା ମାଡ୍ରାଜ ପ୍ରଦେଶରେ । ଆମର ହାଇକୋର୍ଟ ଥିଲା, ମାଡ୍ରାସ ହାଇକୋର୍ଟ । ଆମର ଜିଲ୍ଲା ହେଡ୍ କ୍ୱାର୍ଟର ବିଶାଖାପାଟଣା । ଆମର ପ୍ରଧାନ ବ୍ୟବସାୟ କେନ୍ଦ୍ର ବିଜୟନଗରମ୍ । ତତ୍‌କାଳୀନ ଓଡ଼ିଶାର ରାଜଧାନୀ ତଥା ସାଂସ୍କୃତିକ ପୀଠ କଟକ ସହିତ ଆମ୍ଭମାନଙ୍କର କୌଣସି ସାର୍ବଜନୀନ ସମ୍ପର୍କ ହିଁ ନଥିଲା । ଚିହ୍ନା ଜଣା ବି ନଥିଲା ।

ସତ କହିବାକୁ ଗଲେ ଏହି ମୂଳ କାରଣରୁ ହିଁ ମାତୃଭାଷା, ଓଡ଼ିଆ ସାହିତ୍ୟ ସଂସ୍କୃତି ପ୍ରତି ଆମ୍ଭମାନଙ୍କ ମନ ପ୍ରାଣରେ ଜନ୍ମାବଧି ଗୋଟିଏ ସହଜାତ ଆବେଗ, ଉତ୍ସାହପୂର୍ଣ୍ଣ ଆକର୍ଷଣ ଓ ଆସକ୍ତି ରହି ଆସିଛି । ଫଳରେ ପିଲାଟି ଦିନରୁ ଆମେ କେତେଜଣ କେବଳ ବ୍ୟକ୍ତିଗତ ଜୀବନ ଯାପନ କ୍ଷେତ୍ରରେ ସବୁ ସମୟ ବ୍ୟୟ ନକରି ମାତୃଭାଷା, ସାହିତ୍ୟ, ସଂସ୍କୃତି ଆଦି ସର୍ବସାଧାରଣ ବା ସାମାଜିକ କ୍ଷେତ୍ରରେ କିଛି କିଛି ସାହସିକ କାର୍ଯ୍ୟ କରି ଚାଲିଛୁ ।

ଏହିଭଳି ଏକ ସହଜାତ ଉଦ୍ୟମ ପ୍ରବଣତା ଭିତରୁ ବିକାଶ ପ୍ରତିଷ୍ଠାନ ଯେହେତୁ ଜନ୍ମ ଲାଭ କରିଛି, ସେଥିପାଇଁ ତାହା ଚାଲିଛି ଏବଂ ଚାଲିବ ।

ଗୋଟିଏ ନିଃଶ୍ୱାସରେ ଏସବୁ କଥା ମୁଁ କହିଗଲି ଓ ସେ ମନ କାନ ଦେଇ ଶୁଣିଲେ ।

ଏହା ମଧ୍ୟରେ ଶ୍ରୀମତୀ ମିତ୍ରଙ୍କ ସହିତ ପରିଚୟ ହୋଇଯାଇଥିଲା ଓ ଅତି ଶ୍ରଦ୍ଧାରେ ଆଣି ଦୁଇଟି ଅଣ୍ଡା ପୋଚ୍ ଓ କପେ ଚାହା ସେ' ଟେବୁଲ ଉପରେ ଥୋଇଦେଇଗଲେ ।

ତାପରେ ପୁଣି ଅନେକ କଥା ପଡିଲା । ମନେ ମନେ ମୁଁ ତାଙ୍କୁ ଖୋଜୁଥିବା କଥା ବି କହିଲି । ସେ ଏହି କଥା ଶୁଣି ଏତେ ଆନନ୍ଦିତ ହେଲେ ଯେ କହିଲେ ନ ସରେ । ତଥାପି ପଚାରିଲେ ମୋତେ କାହିଁକି ଖୋଜୁଥିଲେ ?

କହିଲି, ଯେଉଁମାନେ ପ୍ରକୃତରେ ସୁଲେଖକ, ଓଡ଼ିଶାର ସୁପ୍ରତିଷ୍ଠିତ ପ୍ରକାଶକ ମାନେ ସେମାନଙ୍କର ପୁସ୍ତକ ପ୍ରକାଶ କରିନାହାନ୍ତି, ସେପରି ଲେଖକମାନଙ୍କୁ ମୁଁ ଖୋଜୁ ଖୋଜୁ ଆପଣଙ୍କୁ ଖୋଜୁଛି ।

ସେମିତି ଆଉ ଜଣକର ନା କହିଲେ ? ସହାସ୍ୟ ବଦନରେ କୌତୂହଳୀ ହୋଇ ସେ ପଚାରିଲେ । ସଙ୍ଗେ ସଙ୍ଗେ ନିର୍ବିକାର ମନରେ ଉତ୍ତର ଦେଲି କିଶୋରୀ ଚରଣ ଦାସ ।



Digitized by srujanika@gmail.com

ଏଥର ବୋଧହୁଏ ମୋ' ପ୍ରତି ତାଙ୍କର ପୂର୍ଣ୍ଣ ଆସ୍ଥା ଜାତ ହେଲା ଓ ସେ' ମୋତେ କୁଣ୍ଢେଇ ପକାଇଲେ ।

ଯେତେ ଦୂର ମନେ ପଡୁଛି, ଏବଂ ପ୍ରଥମ ଭେଟ ଅବକାଶରେ ସମୁଦାୟ ପ୍ରାୟ ଦେଢ଼ ଘଣ୍ଟା କାଳ ଆମେ ଏକତ୍ର କଟାଇଥିଲୁ ଓ ତାଙ୍କଘରୁ ବିଦାୟ ନେଇ ଆସିଲାବେଳେ ମୋର ମନେ ହେଲା, ଅନ୍ତତଃ କେତେ ଜନ୍ମ ହେଲା ଆମେ ଏକତ୍ର ନିବାସ କରିଆସିଛୁ ।

ବିସ୍ମୟକର ସେ ଅହେତୁକୀ ଅନୁଭୂତି, ସେ ଅନୁଭୂତି ଏତେ ନିବିଡ ଏତେ ଏକାନ୍ତ ଓ ଏତେ ସୂକ୍ଷ୍ମ ଯେ ତାକୁ ଭାଷାରେ ପକାଶ କରିହେବନାହିଁ । ଅନେକ ଲୋକଙ୍କ ଘରେ ଅନେକବାର ଜଳଖିଆ, ଚା' ଖିଆ ହୁଏ । କିନ୍ତୁ ମୋର ମନେ ଅଛି, ସେଦିନ ବାମା ବାବୁଙ୍କ ଘରେ ଯେଉଁ ଚା' ଜଳଖିଆ ଖାଇଥିଲି, ବା ପଛରେ ଯେଉଁ ସ୍ନେହ ଶ୍ରଦ୍ଧାର ଉଚ୍ଛ୍ୱାସ ଓ ସ୍ପର୍ଶ ପାଇଥିଲି, ତାହା ସର୍ବତ୍ର ମିଳିନଥାଏ ।

ଯାହା ହେଉ ସେହିଦିନ ମୁଁ ଅତ୍ୟନ୍ତ ଆନନ୍ଦିତ ହେଲି, ଯେଉଁଦିନ ବାମାବାବୁଙ୍କର ପ୍ରଥମ ଗଳ୍ପ ସଂଗ୍ରହ 'ପରାଗ' ଜୟପୁରରୁ ପ୍ରକାଶିତ ହେଲା । ବିକାଶ ପ୍ରତିଷ୍ଠାନର ଆର୍ଥିକ ସ୍ଥିତି ଦୃଷ୍ଟିରୁ ଏହି କାର୍ଯ୍ୟ ପଙ୍ଗୁପକ୍ଷେଗରି ଲଂଘିବା ଭଳି ମନେ ହେଉଥିଲା । କିନ୍ତୁ ହେଲା ତ ।

ତା'ପରେ ଅନେକ ଥର ବାମାବାବୁଙ୍କ ସହିତ ଭେଟ ହେଲା । ବନ୍ଧୁତ୍ୱ ଜମିଲା । ମୁଁ ଜୟପୁରରୁ କେବେ ଭୁବନେଶ୍ୱର ଗଲେ ଯେଉଁ ବନ୍ଧୁମାନଙ୍କ ଘରକୁ ନିୟମିତ ଯାଉଥିଲି, ସେହି ବନ୍ଧୁ ତାଲିକାରେ ବାମାବାବୁଙ୍କ ନାମଟି ନାଲି କାଳୀରେ ଲେଖା ହୋଇଗଲା ।

ମନେ ପଡୁଚି, ୟୁନିଟ୍-୨ରେ ଥିବାବେଳେ, ଯେଉଁଥର ମୁଁ ତାଙ୍କ ଘରକୁ ଯାଇଛି, ସବୁବେଳେ ପ୍ରାୟ ସେ' ମୋତେ ଦେଖିବା କ୍ଷଣି ସେହି ଭଳି ପିଣ୍ଡାରୁ ଡେଇଁ ଚାଲି ଆସିବେ ଦୁଆର ପାଖକୁ । ସତେ ଯେମିତି ଚିହ୍ନା ମଣିଷକୁ ଭେଟିବା ପାଇଁ ତାଙ୍କର କେତେବେଳେ ବି ତର ସହେନାହିଁ । ଆହା ! ସେ ହସ ହସ ବନ୍ଧୁ ବତ୍ସଳ ସରଳ ମୁହଁଟି ଆଉ କାହିଁ ?

କାଲି ପରି ଲାଗୁଛି- ସ୍ନେହ ବନ୍ଧନ ସମ୍ବଳିତ କେତେ ମଧୁର ନିବିଡ ସ୍ମୃତି ଜାଗି ଉଠୁଛି ମନ ପଟରେ ।



Digitized by srujanika@gmail.com

ବାମାବାବୁ ଚାଲି ଯାଇଛନ୍ତି, ଅଖିଳବାବୁ ଚାଲିଗଲେ - କ୍ରମଶଃ ସତେ ଯେମିତି ଏ ବସୁନ୍ଧରା ଆମ୍ଭମାନଙ୍କୁ ବନ୍ଧୁଶୂନ୍ୟ କରିଦେଉଛି । ଏମିତି ଲାଗୁଛି ।

ପତ୍ରିକା- "ଇସ୍ତାହାର" ସଂଖ୍ୟା ୩୭

ମାର୍ଚ୍ଚ ୧୯୮୭





Digitized by srujanika@gmail.com

# ବାମାଚରଣଙ୍କ ଗଳ୍ପରେ ଭାରତୀୟ ପରମ୍ପରା ଓ ମୂଲ୍ୟବୋଧ

ଶ୍ରୀ ପବିତ୍ର ପାଣିଗ୍ରାହୀ

ବାମାଚରଣ ମିତ୍ର, (୧୯୧୫-୧୯୭୫) ଓଡ଼ିଶା କଥା ସାହିତ୍ୟ ଇତିହାସରେ ଏକ ଦେଦୀପ୍ୟମାନ ନାମ । ରମ୍ୟରଚନା ଓ ଉପନ୍ୟାସ କ୍ଷେତ୍ରରେ ତାଙ୍କର ପାରଦର୍ଶିତା ଥିଲେ ମଧ୍ୟ ଗାଳ୍ପିକ ଭାବେ ସେ ଅଧିକ ଜନପ୍ରିୟ । ମାନବବାଦୀ ଚିନ୍ତାଧାରା ଓ ମନନଧର୍ମୀ ଚିନ୍ତନରେ ଋଦ୍ଧିମନ୍ତ ଭାବଧର୍ମୀ ତାଙ୍କ ଗଳ୍ପଗୁଡିକରେ ମୌଳିକ ଚିନ୍ତାର ଗଭୀରତା ପାଠକକୁ ଅଭିଭୂତ କରିଥାଏ । ତାଙ୍କର ଅଧିକାଂଶ ଗଳ୍ପର ଅନ୍ତଃସ୍ୱର କାରୁଣ୍ୟ ହେଲେ ମଧ୍ୟ ହାସ୍ୟରସର ବ୍ୟଞ୍ଜନା, ଅନୁଭୂତିର ତୀବ୍ରତା, ମାନବିକ ମୂଲ୍ୟବୋଧ ଓ ବୌଦ୍ଧିକ ବିଚାରର ସମ୍ମିଶ୍ରଣରେ ସେସବୁ ଖୁବ୍ ପ୍ରାଣବନ୍ତ । ମଣିଷର ସ୍ଖଳନ, ଅପକର୍ମ, ଅନ୍ୟାୟ, ଅନୀତି ଓ କୁସଂସ୍କାର ମଧ୍ୟରେ ତାଙ୍କପରି ଆତ୍ମକୁଣ୍ଠିତ, ନିରଭିମାନୀ କଥାଶିଳ୍ପୀ, ସହନଶୀଳତାର ସହ ସର୍ବଦା ଦେବତ୍ୱର ସଂଧାନ କରିଛନ୍ତି । ତାଙ୍କ ଗଳ୍ପରାଜିରେ କଥକତା ସହିତ ତତ୍ତ୍ୱ, ତଥ୍ୟ, ଦୃଷ୍ଟାନ୍ତ, ଲୋକଶ୍ରୁତି, ଆଖ୍ୟାୟିକା ପ୍ରଭୃତିର ସୁମଧୁର ସମନ୍ୱୟ ଦେଖିବାକୁ ମିଳେ । ଗୀତାଠୁ ବେଦ ଉପନିଷଦର, ମାର୍କ୍ସବାଦଠୁ ଫ୍ରଏଡ୍, ଫୁଟ୍‌ବଲ୍ ଠାରୁ ଶାସ୍ତ୍ରୀୟ ସଂଗୀତ ଯାଏ ସବୁଥିରେ ଗଭୀର ଅଧ୍ୟୟନର ପ୍ରତିଫଳନ ତାଙ୍କ ସୃଷ୍ଟିସମ୍ଭାରରେ ପ୍ରତ୍ୟକ୍ଷ କରିହୁଏ ।



Digitized by srujanika@gmail.com

କ୍ଷୁଦ୍ରଗଳ୍ପର ଆଙ୍ଗିକ ସମ୍ପର୍କରେ ବିଶେଷ ସଚେତନ ନଥିବାରୁ ତାଙ୍କ ଗଳ୍ପରେ ରମ୍ୟକଥକର ବକ୍ତବ୍ୟଧର୍ମିତା ଦେଖିବାକୁ ମିଳିଲେବି ବାମାଚରଣଙ୍କ ସ୍ୱକୀୟ ମୌଳିକ ଶୈଳୀ ପାଠକଙ୍କୁ ଗଳ୍ପସହ ଏକାତ୍ମ କରିଦିଏ । ବ୍ୟକ୍ତି ବ୍ୟକ୍ତି ମଧ୍ୟରେ ସମ୍ପର୍କ, ପାରିବାରିକ ବନ୍ଧନ, ସାମାଜିକ ସମସ୍ୟାର ବିନ୍ୟାସ ଓ ବିଶ୍ଳେଷଣ ତାଙ୍କର ଅନେକ ଗଳ୍ପର ପ୍ରମୁଖ ସ୍ୱର । ବିଭିନ୍ନ ଧର୍ମ ପ୍ରତି ଉଦାରଭାବ ପୋଷଣ କରୁଥିବା ମହାଭାରତୀୟ ଚେତନାରେ ଉଦ୍‌ବୁଦ୍ଧ କଥାଶିଳ୍ପୀ, ଆମର ସାମାଜିକ, ସାଂସ୍କୃତିକ, ବୈଚାରିକ ଓ ଆଧ୍ୟାତ୍ମିକ ଉତ୍ତରଣ ସହ ପାଠକଙ୍କର ହୃଦୟକୁ ଆଲୋକଦୀପ୍ତ କରିବା ପାଇଁ ମାର୍କ୍ସ, ଗାନ୍ଧୀ ଓ ବିବେକାନନ୍ଦ ପ୍ରମୁଖଙ୍କ ଆଦର୍ଶ ଓ ଆଭିମୁଖ୍ୟ ପ୍ରତି ଥିଲେ ଆସ୍ଥାବାନ । ଜୀବନ ଓ ଜଗତ ପ୍ରତି ବ୍ୟାପକ ଅନ୍ତରଙ୍ଗ ଦୃଷ୍ଟିଭଙ୍ଗୀ, ଗଭୀର ଜୀବନବୋଧ ସହ ମାଟି ମନସ୍କତା, ପାରମ୍ପରିକ ମୂଲ୍ୟବୋଧ ଓ ସାଂପ୍ରତିକ ଅଭିରୁଚି ପ୍ରତି ସଚେତନତା ତାଙ୍କ ଗଳ୍ପଗୁଡିକର ଅନ୍ୟତମ ବିଭବ । ସର୍ବୋପରି ବାମାଚରଣଙ୍କ ଗଳ୍ପ ସଂକଳନ 'ବଟମହାପୁରୁଷ', 'ସ୍ୱପ୍ନସିଦ୍ଧ', 'କୀର୍ତ୍ତିଯସ୍ୟ', 'ପରାଗ', 'ପାଷାଣର ପ୍ରାଣ', 'ମହାପୁରୁଷ ବାଗ', 'ନରଛଞ୍ଚାଣ', 'ଅସୀମ' ଓ 'ମିତ୍ରକଳ୍ପ' ଇତ୍ୟାଦିରେ ସ୍ଥାନିତ ଅନେକ ଗଳ୍ପରେ ଭାରତୀୟ ଚେତନା, ପରମ୍ପରା ଓ ମୂଲ୍ୟବୋଧ ପ୍ରତି ଲେଖକଙ୍କର ଦୁର୍ବାର ଆକର୍ଷଣ ଅନୁଭବ କରିହୁଏ ।

ଜାତି ଓ ଧର୍ମକୁ ନେଇ ସାଂପ୍ରଦାୟିକ ସଂଶୟ ଓ ସଂଘର୍ଷ ସାଂପ୍ରତିକ ବିଶ୍ୱର ପ୍ରମୁଖ ସମସ୍ୟା ଭାବେ ଉଭା ହୋଇଥିଲାବେଳେ, ଭାରତ ସର୍ବଦା ବିଭେଦତା ମଧ୍ୟରେ ଏକତା, ସାଂପ୍ରଦାୟିକ ପ୍ରୀତି, ସଦ୍‌ଭାବନା ଓ ଭାଇଚାରାର ବାର୍ତ୍ତା ଶୁଣେଇ ଆସିଚି ବିଶ୍ୱବାସୀଙ୍କୁ । ଏହି ମହାଭାରତୀୟ ଚେତନାରେ ଉତ୍କୀର୍ଣ୍ଣ ଦୁଇଟି ସୁନ୍ଦର ଗଳ୍ପ 'ହୋଲି' ଓ 'ଧର୍ମକ୍ଷେତ୍ରେ' । ଗଳ୍ପ ଦୁଇଟି ଯେମିତି ଗୋଟିଏ ମାଳାର ଦୁଇଟି ଫୁଲ, ଗୋଟିଏ ଉପନ୍ୟାସର ଦୁଇଟି ଅଧ୍ୟାୟ । 'ହୋଲି' ଗଳ୍ପର କବର ତଳୁ କୁଆଁ ମେଲିଚି 'ଧର୍ମକ୍ଷେତ୍ରେ' ଗପର ଖିଅ । କୁଶଭଦ୍ରା ନଦୀର ଗୋଟେପାଖେ କୁଶୁପୁରର ରାଧାବଲ୍ଲଭଙ୍କ ଅନୁରକ୍ତ ରାମ ପ୍ରଧାନ ଓ ଆରପାଖେ ଅହମଦପୁର ମସ୍‌ଜିଦର ଖଲିଫା ରହିମ୍ ଖାଁ ପରିବାରର ଦୀର୍ଘବର୍ଷର ସମ୍ପର୍କ ଓ ଘନିଷ୍ଠ ଆତ୍ମୀୟତାର ଶକ୍ତ ସେତୁ ମୁହୂର୍ତ୍ତକର ଅବୁଝାମଣା ଓ ବିଦ୍ୱେଷରେ ଭୁଷୁଡ଼ିଯାଏ, ରକ୍ତରଂଗା ହୁଏ । ସେମାନଙ୍କ ପୁଅ ନବ ଓ ଅବଦୁଲ ପରସ୍ପର ଦ୍ୱାରା ନିହତ ହେଲେବି ମୃତ୍ୟୁବରଣ କରନ୍ତି ପରସ୍ପରର ବାହୁବନ୍ଧନରେ, ଯାହା ପାଠକଙ୍କୁ ଶୁଣାଏ ସବୁସତ୍ତ୍ୱେ ସହାବସ୍ଥାନ ଓ ସଂଭାବନା ବାର୍ତ୍ତା । ସେଇଥିପାଇଁ



Digitized by srujanika@gmail.com

'ଧର୍ମକ୍ଷେତ୍ରେ' ଗଳ୍ପରେ ପରବର୍ତ୍ତୀ ଦାୟାଦ ଶ୍ୟାମଘନ ଓ ହସ୍‌ନୁ ଖାଲି ପରସ୍ପରର ପ୍ରେମରେ ପଡିନାହାନ୍ତି, ବରଂ ଅନୁରାଗକୁ ଚିରନ୍ତନ ବନ୍ଧନରେ ପରିଣତ କରି ସାମାଜିକ ବୈଷମ୍ୟର ଅଲଂଘ୍ୟ ପାଚେରୀକୁ ଭାଙ୍ଗି ଏକ ନୂଆ ସୂର୍ଯ୍ୟୋଦୟର ଆବାହନ ପାଇଁ ବଦ୍ଧପରିକର ହୋଇଛନ୍ତି ।

'ହୋଲି' ଗଳ୍ପରେ ରାମ ପ୍ରଧାନ କଟୁରି ଧରି ରହିମ୍‌କୁ ମାରି ପୁତ୍ରହତ୍ୟାର ପ୍ରତିଶୋଧ ନେବା ପାଇଁ ନଈ ଆଡକୁ ଦୌଡୁ ଦୌଡୁ ତାଙ୍କର ମନେ ପଡିଗଲା ମହାଭାରତ କଥା । "ଶ୍ୱାନ ରୂପୀ ଇନ୍ଦ୍ର କହିଛନ୍ତି- ଯେଉଁ ଧର୍ମ ଅନ୍ୟଧର୍ମକୁ ଘୃଣାକରେ ତାକୁ ଧର୍ମ କୁହାଯାଇନପାରେ । ରହିମ୍ କହୁଥିଲା କୋରାନ୍‌ରେ ଅଛି, ଧର୍ମ ବିଷୟରେ ଜବରଦସ୍ତି ପାପ । ମନେପଡିଗଲା ତାଙ୍କର, ସର୍ବଧର୍ମାନ୍ ପରିତ୍ୟଜ୍ୟ । ରହିମ୍ ଓ ମୁଁ ନିରାସକ୍ତ ହେବାପାଇଁ କେତେ ପ୍ରାର୍ଥନା କରିଛୁ । ସେସବୁ କଅଣ ଏଇ ଚରମ ପରୀକ୍ଷାବେଳେ ବ୍ୟର୍ଥ ହୋଇଯିବ... ହେ ରାଧାବଲ୍ଲଭ ! ମୋତେ ଶକ୍ତି ଦିଅ, ଶକ୍ତି ଦିଅନ୍ତୁ ସେମିତି 'ଧର୍ମକ୍ଷେତ୍ରେ'ର ନାୟକ ଶ୍ୟାମଘନ କହିଛି, "ହଁ ହସ୍‌ନୁ, ଆଜି ମୁଁ ବି ବୁଝିପାରୁଚି ଆଲ୍ଲା ବି ମୋର ।... ଏ ପୃଥିବୀର ଇତିହାସ ଘୃଣା ଓ ଭୟରୁ ଜାତ ହତ୍ୟାର ଇତିହାସ ନୁହେଁ, ପ୍ରେମରୁ ଜାତ ଐକ୍ୟର ଇତିହାସ । ଯୁଦ୍ଧଖୋରମାନେ ମଣିଷକୁ ଗଢ଼ିନାହାନ୍ତି; ବୁଦ୍ଧ, ଯୀଶୁ, ମହମ୍ମଦ, ଚୈତନ୍ୟ, ଜୋରାଥୃଷ୍ଟଙ୍କ ଭଳି ପ୍ରେମିକମାନେ ଗଢ଼ିଛନ୍ତି । ଏହି ଗଳ୍ପଦ୍ୱୟ ମହାଭାରତୀୟ ଚେତନା ଓ ମୂଲ୍ୟବୋଧର କୈତ୍ରଗୀତି ଶୁଣାଇଛନ୍ତି, ଯାହା ଆର୍ଦ୍ର କରିଦିଏ ପାଠକର ମନ ଓ ପ୍ରାଣକୁ ।

ତାଙ୍କର ଶିଶୁ-କିଶୋର ମନସ୍ତତ୍ତ୍ୱ ସଂପନ୍ନ ଗଳ୍ପ 'ମିମିର ସାହିତ୍ୟ ଶିକ୍ଷା', 'ଭୂଗୋଳ' ଓ 'ସଭ୍ୟତା' ଶିକ୍ଷା ଏବଂ 'ସ୍ୱପ୍ନସିଦ୍ଧ'ରେ ଜିଜ୍ଞାସା ସମ୍ପନ୍ନ ଶିଶୁ-କିଶୋର ମାନସିକତାର ସଫଳ ରୂପାୟନ ଘଟିଛି । 'ମିମିର ସାହିତ୍ୟ ଶିକ୍ଷା'ରେ ସୃଷ୍ଟି ଓ ଐଶ୍ୱରୀୟ ଭାବର ରହସ୍ୟମୟତା ଉଦ୍‌ଭାସିତ ହେଲାବେଳେ ବୟସ୍କମାନେ କିପରି ପିଲାଙ୍କ ଜିଜ୍ଞାସା ସୁଲଭ ମାନସିକତାକୁ ବୁଝିବାରେ ଅସାମର୍ଥ୍ୟତା ସତ୍ତ୍ୱେ ନିଜର ଇଛାକୁ ତାଙ୍କ ଉପରେ ଲଦିଦିଅନ୍ତି, ତାହା କଳାତ୍ମକ ଢ଼ଙ୍ଗରେ ପ୍ରକାଶ ପାଇଛି । କଳ୍ପନା ପ୍ରବଣ ଶିଶୁ ନିଷ୍ପାପ ଚେତନା ଓ ସ୍ୱର୍ଗୀୟ ଚେତନାର ଦ୍ୟୋତକ, ଏକଥା କହେ ଆମ ଭାରତୀୟ ପରମ୍ପରା । ଯାବତୀୟ ଈର୍ଷା, ଅସୂୟା, କ୍ରୋଧ ଓ ଭୟ ପ୍ରବଣତା ସତ୍ତ୍ୱେ ଶିଶୁ ଭିତରେ ଯେ ଛପି ରହିଥାଏ ପ୍ରଗାଢ଼ ସ୍ନେହ ଓ ଆତ୍ମୀୟତା, ଏହି ବାର୍ତ୍ତାଦିଏ ଗଳ୍ପ 'ସ୍ୱପ୍ନସିଦ୍ଧ' ।



Digitized by srujanika@gmail.com

'ମିମିର ସଭ୍ୟତା ଶିକ୍ଷା' ପାଶ୍ଚାତ୍ୟ ଦର୍ଶନ ଓ ବିଶ୍ୱାସ ପ୍ରତି ଏକ ଚମତ୍କାର ସାଟାୟାର, ଯାହା ଉଦ୍‌ଘୋଷଣ କରେ ଭାରତୀୟ ପରମ୍ପରା ଓ ମୂଲ୍ୟବୋଧର ମହାନତା । ଆମେରିକା ଓ ବିଲାତ ଫେରନ୍ତା ଜୀବନବାବୁ ସରଳ ମିମିକୁ ସୌଜନ୍ୟ ଓ ଶୃଙ୍ଖଳା ଶିକ୍ଷା ଦେବାର ପ୍ରୟାସରେ ଗୁଡ୍‌ମର୍ଣ୍ଣିଂ ଓ ଥେଙ୍କ୍ ୟୁ ଉଚ୍ଚାରଣ, ଦାନ୍ତଘଷା ପାଇଁ ଟୁଥ୍‌ପେଷ୍ଟ ଓ ବ୍ରୁସ୍‌ର ବ୍ୟବହାର, ଟେବୁଲ୍ ଓ ଚୌକିରେ ବ୍ରେକ୍‌ଫାଷ୍ଟ କରାଇବା ଆଦି ଉଦ୍ୟମରେ ବିଫଳ ହୋଇଛନ୍ତି । ବନ୍ଧୁ ବିଜୟବାବୁ କହିଛନ୍ତି, ବୁଝିଲୁ ଜୀବନ, ଅନୁଷ୍ଠାନିକ ଭାବରେ ବାହାରର ଶୃଙ୍ଖଳାରେ କିଛି ଲାଭ ତ ନାହିଁ, ବରଞ୍ଚ ଘୋର କ୍ଷତି । ଗୀତାରେ ପଢ଼ିନାହୁଁ, କର୍ମେନ୍ଦ୍ରିୟକୁ ସଂଯତ କରି ଇନ୍ଦ୍ରିୟ ବିଷୟ ସବୁକୁ ଯିଏ ଭାଳୁଥାଏ ସେ ମିଥ୍ୟାଚାରୀ । ...ଆରେ ଜୀବନ, ବୈଜ୍ଞାନିକମାନେ କୁହନ୍ତି, ଯେଉଁ ବସ୍ତୁ ଯେତେ କ୍ଷିପ୍ରଗତିରେ ଯାଏ, ତାହାର ଜଡତା ସେତେ ବୃଦ୍ଧି ପାଇଥାଏ । ବିଜୟବାବୁଙ୍କ ବକ୍ତବ୍ୟ ମାଧ୍ୟମରେ ପ୍ରକାଶ ପାଇଛି ଆମର ମହାନ ଭାରତୀୟ ଚେତନା ଓ ବିଶ୍ୱାସ ।

'ନିର୍ବାଚନ' ଗଳ୍ପରେ ଅଗମ୍ୟ ଗାଁ ମଙ୍ଗଳପୁରର ଅଶିକ୍ଷିତ, ଦରିଦ୍ର ଅଥଚ ସବୁ ବୁଝି ପାରୁଥିବା ଲୋକମାନଙ୍କ ପାଇଁ ଅଧିଷ୍ଠାତ୍ରୀ ଦେବୀ ମା' ହିଂଗୁଳା ଉଭା ହୋଇଛନ୍ତି ଆମ ଐତିହ୍ୟ, ପରମ୍ପରା ଓ ବିଶ୍ୱାସର ପ୍ରତୀକ ଭାବେ । 'ମହାପୁରୁଷବାଗ' ଗଳ୍ପର ସରଳମନା ସଂଗୀତର ପୂଜାରୀ ମୋଚି ରାମାରାଓ ଭାରତବର୍ଷର ନିରୀହ ନିର୍ବୋଧ ଜନସାଧାରଣଙ୍କର ପ୍ରତୀକ । ପାଶ୍ଚାତ୍ୟ ବିଳାସ ପ୍ରମତ୍ତ ମହାପୁରୁଷ ବାଗ୍ କ୍ଲବ୍‌ରେ ଅନୁପ୍ରବେଶ କରିବାର ଦୁଃଖଦ ପରିଣତି ଭୋଗିବାକୁ ପଡିଚି ତାକୁ ଓ ତା' ପତ୍ନୀଙ୍କୁ । ରାମାରାଓଙ୍କ କାରୁଣ୍ୟ ଭିତରେ ଭାରତର ନିପୀଡିତ, ପ୍ରତାଡିତ ମାନବାତ୍ମାର କାରୁଣ୍ୟ, ସୌନ୍ଦର୍ଯ୍ୟବୋଧ ଓ ନିରୀହତାର ମୃତ୍ୟୁର ଚିତ୍ର ଉଦ୍‌ଭାସିତ ହୋଇଛି । 'ପାଷାଣର ପ୍ରାଣ' ଗଳ୍ପରେ ନାୟକ ଯାଦବ ବାବୁ ଅଭାବ ଅନଟନର କଷାଘାତ ଭିତରେ ବି ବଳି ପକାଇ ନାହାନ୍ତି ନିଜ ଭିତରର ମଣିଷ ପଣିଆକୁ । ଗଳ୍ପନାୟକଙ୍କ ଜରିଆରେ ମନୋଜ୍ଞ ଢ଼ଙ୍ଗରେ ପ୍ରକାଶ ପାଇଛି ବାମାଚରଣଙ୍କ ଐଶ୍ୱରୀୟ ଉପଲବ୍ଧି । 'ସ୍ମୃତି ରତ୍ନାକର' ଗଳ୍ପରେ ସହରୀ ଚାକଚକ୍ୟ ମଧ୍ୟରେ ଧନାଢ଼୍ୟପଣିଆର ଅହଙ୍କାର, ପ୍ରାଚୁର୍ଯ୍ୟ ଭିତରେ ହୃଦୟହୀନତା ଓ ଛଳନାର ମୁଖାକୁ କଥାଶିଳ୍ପୀ ଖୋଲିଦେଇଛନ୍ତି ସାଧାରଣ ଚରିତ୍ରଟିଏ ଜରିଆରେ ।

'ମାନବ ଓ ଦାନବ' ଏବଂ 'ଧରିତ୍ରୀ ଧରିତ୍ରୀ' ଗଳ୍ପରେ ବାହ୍ୟପ୍ରକୃତି ଓ ମଣିଷର ଅନ୍ତଃପ୍ରକୃତିର ସ୍ୱରୂପ ସୁନ୍ଦର ଭାବେ ପ୍ରକଟିତ ହୋଇଛି । ମଣିଷ ଭିତରର



Digitized by srujanika@gmail.com

ହିଂସାପ୍ରମତ୍ତ ପାଶବିକତା ଓ କାମନାର ଭୀଷଣ କଦାକାର ରୂପ ତାକୁ ସଂପ୍ରତି ଧ୍ୱଂସପଥର ଯାତ୍ରୀ କରିଥିଲେବି, ବିଶ୍ୱପ୍ରକୃତି ଓ ତା' ଭିତରର ଅମୃତମୟ ଚେତନା ଆସୁରିକତାର ବିନାଶ କରି ଦିବ୍ୟଭାବର ଉଦୟ କରାଇବ, ଏ ବାବଦରେ ବାମାଚରଣ ଥିଲେ ଗଭୀର ଆଶାବାଦୀ । 'ମାନବ ଦାନବ'ରେ ଗାଳ୍ପିକ କହନ୍ତି, "ବୁଦ୍ଧ, ଯୀଶୁ, ମହମ୍ମଦ, ଚୈତନ୍ୟ, ପରମହଂସ, ବିବେକାନନ୍ଦ, ରବୀନ୍ଦ୍ର ନାଥ, ଗାନ୍ଧିଜୀ" ଆଦି ମହାବିପ୍ଳବୀମାନେ କହନ୍ତି, ଭଗବାନଙ୍କ ଉପଲବ୍ଧି ଜୀବନର ଚରମ ପରିଣତି; କାରଣ କେବଳ ସେଇହିଁ ସବୁଠାରୁ ଉତ୍କୃଷ୍ଟ । ... କୁରୁକ୍ଷେତ୍ର ଭଳି ମହାଯୁଦ୍ଧ ବେଳେ କଠିନ ଦର୍ଶନ ବିଷୟରେ ଦୀର୍ଘ ବକ୍ତୃତା ଯିଏ ଦେଇଥିଲେ ତାଙ୍କ ପକ୍ଷରେ ବିଚିତ୍ର କଣ ! ପୁଣି 'ଧରିତ୍ରୀ ଧରିତ୍ରୀ'ରେ ଅନୁରଣିତ ହୁଏ ସେଇ ସ୍ୱର "ସନ୍ନ୍ୟାସୀ ବିରାଟ ବିପ୍ଳବୀ... ଯିଏ ଶାନ୍ତକାମୀ ସେଇ କେବଳ ବିପ୍ଳବୀ... କି ନିର୍ଭୟ ସେମାନେ ? ତେଣୁ ସେମାନଙ୍କର କୂଟନୈତିକ ବା ରାଜନୈତିକ ଶଠତା ଚାଲବାଜି ନାହିଁ । ଧର୍ମ ସେମାନଙ୍କ ପକ୍ଷରେ ରାଜନୀତି କୂଟନୀତି ଠାରୁ ବଡ ଶ୍ରେୟ... କ୍ଷୁଦ୍ରତାର ଇତିହାସ ଅନ୍ୟ ଯାହାର ଜୟଗାନ କରୁନା କାହିଁକି, ମାନବିକତାର ଇତିହାସ ଜୟଗାନ କରିଛି ଓ କରିବ କେବଳ ଏମାନଙ୍କର ଜୟଗାନ ।

ସ୍ୱାଧୀନତା ପରବର୍ତ୍ତୀ ଭାରତବର୍ଷର ଗ୍ରାମୀଣ ଜୀବନରେ ଦେଖାଦେଇଥିବା ଅବକ୍ଷୟ ଓ ମୂଲ୍ୟବୋଧର ସଙ୍କଟ, ଧାର୍ମିକ ବିଶ୍ୱାସ ଆଳରେ ରାଜନୀତି ଓ କ୍ଷମତା ପାଇଁ ଛକାପଞ୍ଝା ଖେଳର ମନୋଜ୍ଞ ଚିତ୍ର ଉପସ୍ଥାପିତ ହୋଇଛି 'ବଟମହାପୁରୁଷ' ଗଳ୍ପରେ । ଆମ ଐତିହ୍ୟ, ପରମ୍ପରା, ସଂସ୍କୃତି ଓ ସହବସ୍ଥାନର ଚେର ଉପୁଡି ପଡୁଛି ଠିକ୍ ବଟମହାପୁରୁଷଙ୍କ ଭଳି । ଗଳ୍ପ ପ୍ରାରମ୍ଭରେ ଠାଏ ତାଙ୍କ ବର୍ଣ୍ଣନା ଦେଖନ୍ତୁ- "ଯିଏ ମଲା ସିଏ ଗଲା । ... ଆଉ ତା'ର ଆତ୍ମା ? କ୍ଷୀରସ୍ଥାନ ମାନେ କହିବେ, ସବୁ ଆତ୍ମାଯାକ ଯାଇ ପ୍ରକାଣ୍ଡ ଗୋଟିଏ ଘରେ ଅପେକ୍ଷା କରି ରହିବେ । କିନ୍ତୁ ଶେଷରେ ସେମାନଙ୍କ ବିଚାର ପରେ କିଏ ନରକ ଯିବ ବା ସ୍ୱର୍ଗ । ନାସ୍ତିକମାନେ କହିବେ, ଭସ୍ମୀଭୂତସ୍ୟ ଦେହସ୍ୟ । ଆତ୍ମା କୁଆଡୁ ଆସିଲା ? ଗୀତା କହେ, ଆତ୍ମା ଅମର । ନଡିପୁର ଲୋକେ କିନ୍ତୁ ପ୍ରତ୍ୟକ୍ଷ ପ୍ରମାଣ ପାଇଛନ୍ତି ଯେ ଅନେକ ଭସ୍ମୀଭୂତ ଦେହ ଭୂତ ହୋଇ ନିଜ ଘରେ ବା ଘର ଲୋକଙ୍କର ମାୟା ଛାଡିନପାରି ଏଇ ବଟ ମହାପୁରୁଷଙ୍କ ଦେହରେ ଆଶ୍ରାକରି ରହିଯାଆନ୍ତି । ଏହାହିଁ ଆମର ବିଶ୍ୱାସ ଓ ପରମ୍ପରା । 'ଅମୃତସ୍ୟ ପୁତ୍ର' ଗଳ୍ପରେ ବାମାଚରଣ ବୈଚିତ୍ର୍ୟମୟ ମାତୃତ୍ୱର



Digitized by srujanika@gmail.com

ଜୟଗାନ କରିଥିଲାବେଳେ 'କୁକୁଡା ଚାଷ' ବା 'ଆଗନ୍ତୁକ'ରେ ପ୍ରାଣୀଜଗତ ଭିତରେବି ବିଶ୍ୱଜନୀତ ମାତୃସତ୍ତାର ଅସ୍ତିତ୍ୱର ଉଦ୍‌ଘୋଷଣା କରିଛନ୍ତି ।

ଭାରତୀୟ ପରମ୍ପରା ଓ ମୂଲ୍ୟବୋଧକୁ ତାଙ୍କ ଗଳ୍ପ ମାଧମରେ ବାରମ୍ବାର ସେ ସ୍ମରଣ କରାଇବାର ପ୍ରାୟାସ କରିଛନ୍ତି । କେବେ ମୂଲ୍ୟବୋଧ ଭିତ୍ତିକ ପ୍ରାଚୀନ ଗଳ୍ପର ଅବତାରଣା କରିଛନ୍ତିତ, କେବେ ବର୍ଣ୍ଣବୋଧର ସ୍ମରଣୀୟ ଧାଡି ପୁଣି କେବେ ପରସିଛନ୍ତି ଶ୍ରୀ ରାମକୃଷ୍ଣ, ରବୀନ୍ଦ୍ର ନାଥଙ୍କ ଦର୍ଶନ ବା ମହାଭାରତର ପ୍ରସଙ୍ଗ । ତାଙ୍କର କେତୋଟି ଗଳ୍ପର ବର୍ଣ୍ଣନା ମଧରେ ଏହା ଅନ୍ୱେଷଣ କରାଯାଇପାରେ । "ପାଟନାରେ ପହଞ୍ଚି ଦିନେ ଗଙ୍ଗାକୂଳରେ ବୁଲୁ ବୁଲୁ ସେ ଭାବୁଥିଲେ, ଏଇ ସେ ଗଙ୍ଗା ନଦୀ । ଆର୍ଯ୍ୟ ସଭ୍ୟତା ଦିନରୁ କେତେ ସ୍ମୃତି ଏହା ସହ ଜଡିତ । ଆର୍ଯ୍ୟ ସଭ୍ୟତାର, ଭାରତ ଇତିହାସର ନଦୀ କହିଲେ ଚଳେ । ଭାରତ ଇତିହାସରେ ଏହାର ସ୍ଥାନ କେତେ ଉଚ୍ଚରେ, କେତେ ପବିତ୍ର ଏହି ନଦୀ ତେଣୁ । (ଛାଡପତ୍ର) "ମଣିଷର ବୋଧହୁଏ ଦୁଇଟି ମନ ଅଛି । ଗୋଟିଏ ଦେହଜ ମନ ଓ ଅନ୍ୟଟି ଦେହାତୀତ ମନ । ଦେହଜ ମନ ଦେହକୁ ନେଇ ପଡିଥାଏ । ଧନ, ଜନ, ମାନ, ପ୍ରତିପତ୍ତି, ସୁଖ, ସମ୍ଭୋଗ ପଛରେ ଦୌଡୁଥାଏ । ... ଦେହାତୀତ ମନ ସେସବୁ ଭିତରେ ଲୁଚିଥାଏ ସତ, ମଝିରେ ମଝିରେ ଏ ଦେହକୁ ସେଇ ସର୍ବତ୍ର ପରିବ୍ୟାପ୍ତ ମହାନ୍ ଶକ୍ତି ଆଡକୁ ଟାଣିନିଏ । ସେତେବେଳେ ମଣିଷ ନିଜର ଇନ୍ଦ୍ରିୟ ପରିବେଷ୍ଟିତ କ୍ଷୁଦ୍ର ସଂକୀର୍ଣ୍ଣ ଗଣ୍ଡିଛାଡି ବାହାରକୁ ଦୃଷ୍ଟି ପକାଏ । ସବୁ ତାକୁ ସୁନ୍ଦର ଦିଶେ । ଘାସ ଗଛଟି ବି ଅପୂର୍ବ ସୃଷ୍ଟି ବୋଲି ମନେହୁଏ । ସେତେବେଳେ 'ମୂରଲି ତାର ନାମ ଧରି, ଡାକଇ ଆସ ବେଗ କରି' । ସେ ମୂରଲୀର ସ୍ୱର ଶୁଣି 'ମନ ହୁଅଇ ଛନ୍ନଛନ୍ନ, ବ୍ୟାପାରେ ନଲାଗଇ ମନ' । ସର୍ବଦା ସଂଯୁକ୍ତ ନାମତୁଲ୍ୟ ଦୁଇଟି ପକ୍ଷୀ ଗୋଟିଏ ବୃକ୍ଷକୁ ଆଶ୍ରୟ କରି ଅଛନ୍ତି, ସେମାନଙ୍କ ମଧ୍ୟରୁ ଗୋଟିଏ ବିଚିତ୍ର ଆସ୍ୱାଦଯୁକ୍ତ ଫଳ ଭକ୍ଷଣ କରେ, ଅପରଟି ଭକ୍ଷଣ ନକରି କେବଳ ଦର୍ଶନ କରେ । ଦେହାତୀତ ମନ ଯାହାର ଅଧିକ ପ୍ରବଳ, ସେ ହୋଇଛି ପ୍ରକୃତ ନେତା, ପ୍ରକୃତ ବିପ୍ଳବୀନ୍ତ (ଧ୍ୱନି) "ମନଟା ତାଙ୍କର ପୁଣି କାନ୍ଦୁରା ହୋଇଯାଏ । ଗୋଟାଏ କୋହ ତାଙ୍କ ଛାତି ଭିତରୁ ଉଠିଆସି କହେ– 'ହେ ଗୋବିନ୍ଦ, ମୋତେ ଉଦ୍ଧାର କର– ମୋତେ ଅତି ସାଧାରଣ ହେବାର ସାହସ ଦିଅ... ପ୍ରଭୁ, ମୁଁ ତୁମର ମହାନ୍ ବ୍ୟାପ୍ତି ପାଖରେ ନିଜର କ୍ଷୁଦ୍ରତା ଉପଲବ୍‌ଧି କରି ଆନନ୍ଦ ପାଏ, ସାହସ ପାଏ... ଏ ଦାରିଦ୍ର୍ୟ ହିଁ ଭଲ ପ୍ରଭୁ... ମୋ ବୁକୁରେ ତୀବ୍ର ଦହନ ଜ୍ୱାଳ... । ... ଜଗନ୍ନାଥେ



Digitized by srujanika@gmail.com

କିଛି ମାଗୁନାହିଁ ତୋତେ... ମାଗୁଚି ଶରଧା ବାଲିରୁ ହାତେ... ଏମିତିତ ସମସ୍ତେ ବାହାରେ ନିଜକୁ ଯେତେ ବାସ୍ତବବାଦୀ ବା ବୈଜ୍ଞାନିକ ଭାବାପନ୍ନ କୁହନ୍ତୁ ନା କାହିଁକି ଭିତରେ ଭିତରେ ଅଲୌକିକ ଦେଖିବାକୁ ବ୍ୟାକୁଳ । ... ଏ ଅଲୌକିକକୁ ବୁଝିବାକୁ ଦରକାର ଜ୍ଞାନ, ବୁଦ୍ଧି, ଭକ୍ତି, ପ୍ରେମ ଯାହା ଆତ୍ମାକୁ ବିକଶିତ କରେ ଓ ଯାହାପାଇଁ ପୁଣି ଦରକାର ସାଧନା । କିନ୍ତୁ ସାଧାରଣ ମଣିଷ ବଞ୍ଚେ ଇନ୍ଦ୍ରିୟଗ୍ରାହ୍ୟ ଜ୍ଞାନ ଉପରେ ନିର୍ଭର କରି । ଦେହର ସୁଖ ସମ୍ଭୋଗ ପାଇଁ ନାନା କାମନା ତାକୁ ଚାଳିତ କରେ, ଖଟାଏ । ସେ ପ୍ରକୃତ ଆନନ୍ଦ ପ୍ରେମ ପାଏ ନାହିଁ, କାହିଁକି ନା ତାହାଦ୍ୱାରା ବିରାଟ ସହିତ ତାହାର ସଂଯୋଗ ହୁଏନାହିଁ । ... ଯୋଗୀ ମନ ତ ପ୍ରେମୀ ମନ । ସେ ସବୁ ଗ୍ରହଣ କରେ, ପୁଣି ସବୁ ଛାଡି ବି ଦିଏ । ଶ୍ରୀ ରାମକୃଷ୍ଣ କହିଛନ୍ତି, ମଣିଷର ମହାଭାବ ବା ପ୍ରେମ ହେବା ବଡ କଷ୍ଟ । କୋଟିକେ ଗୋଟିଏରେ ହୁଏ କି ନା । ସାଧାରଣ ଲୋକର କେବଳ ଭାବ ହୁଏ । ... ନାନା ଭାବର ଏକୀକରଣ ହୁଏ ପ୍ରେମ ଦ୍ୱାରା । (ଗଳ୍ପ ଗୋଟିଏ ମଧ୍ୟବିତ୍ତ ପରିବାରରେ ମୃଷା) ଏହି ବର୍ଣ୍ଣନା ସବୁରୁ ଲେଖକୀୟ ଚେତନା ଓ ଦର୍ଶନ, ଭାରତୀୟ ପରମ୍ପରା ଓ ମୂଲ୍ୟବୋଧ ପ୍ରତିଭାତ ହୁଏ ।

ତାଙ୍କ ବର୍ଣ୍ଣନା ଶୈଳୀ ଖୁବ୍ ସରଳ ଓ ସାଦାସିଧା, ସେଥିରେ ଉପମା ଚିତ୍ରକଳ୍ପର ପ୍ରୟୋଗ ଦେଖିବାକୁ ମିଳେନା । ପ୍ରଚଳିତ କଥିତ ଭାଷାର ବ୍ୟବହାର ସହ ଅନେକତ୍ର ଗୀତା, ଉପନିଷଦ ବା ଲୋକ ସାହିତ୍ୟ ଆଦିର ଉଦାହରଣକୁ ପ୍ରାସଙ୍ଗିକତା କ୍ରମେ ସେ ଉଦ୍ଧୃତି ରୂପେ ବ୍ୟବହାର କରିଛନ୍ତି । ସବୁ ଭାବ, ଦର୍ଶନ ନେପଥ୍ୟରେ ମଣିଷର ପାରସ୍ପରିକ ସମ୍ପର୍କ, ଆତ୍ମୀୟତା ଓ ବୈଚିତ୍ର୍ୟମୟ ଆଚରଣ ସହ ଆଧ୍ୟାତ୍ମିକ ଚେତନାକୁ ସେ ଗୁରୁତ୍ୱ ଦେଇଛନ୍ତି । ଭାରତ ଯେ ଏକ ତ୍ୟାଗର ଦେଶ, ଭୋଗର ଦେଶ ନୁହେଁ ଏହା ଉଦ୍‌ପୋଷଣ କରିଛନ୍ତି । ବ୍ୟକ୍ତିସତ୍ତାର ଉତ୍ତରଣ ସହ ତା'ଭିତରେ ନୀତିବୋଧ ପ୍ରତିଷ୍ଠା ଉପରେ ଗୁରୁତ୍ୱ ଦେଇଛନ୍ତି । ବ୍ୟକ୍ତିକୁ ମହତ୍ତର ଆଲୋକଦୀପ୍ତ କରି ଉତ୍ତରିତ କରିବାର ସ୍ୱପ୍ନ ଦେଖିଛନ୍ତି । ଅନେକ ଗପରେ ସେ କମନ୍‌ମ୍ୟାନ୍‌ର କଥା କହିଛନ୍ତି । ଯାହା ଖୁବ୍‌କମ୍ ସୃଜନ ସ୍ରଷ୍ଟାଙ୍କ ସୃଷ୍ଟିରେ ଦେଖିବାକୁ ମିଳେ । ମାନବିକ କରୁଣା, ଜୀବନ ପ୍ରତି ଗଭୀର ପ୍ରତ୍ୟୟ ଓ ସଂପ୍ରୀତି, ବିଷୟବସ୍ତୁ ଓ ଆବେଦନରେ ଭିନ୍ନତା ଯୋଗୁଁ ବାମାଚରଣ ପ୍ରକୃତରେ ଭାରତୀୟ ପୃଷ୍ଠଭୂମିର ଜଣେ ନିଆରା କଥାଶିଳ୍ପୀ । ଚିନ୍ତା ଚେତନାରେ ସେ ଥିଲେ ମହାଭାରତୀୟ । ଆମର ସାମାଜିକ, ସାଂସ୍କୃତିକ ଓ ଆଧ୍ୟାତ୍ମିକ ଉତ୍‌ଥାନ ପାଇଁ ସେ ଭାରତୀୟ



Digitized by srujanika@gmail.com

ଚିନ୍ତାନାୟକ ମାନଙ୍କ ଦର୍ଶନ, ଆଦର୍ଶ ଓ ଆଭିମୁଖ୍ୟ ପ୍ରତି ଥିଲେ ସଚେତନ । ଏକ ଆଧ୍ୟାତ୍ମିକ ଭାରତ ଓ ସଂତ୍ରାସମୁକ୍ତ ବିଶ୍ୱର ପରିକଳ୍ପନା ସହ ବ୍ୟକ୍ତିସତ୍ତାରେ ସଂସ୍କାର ଆସିବ ବୋଲି ସେ ଆଶାବାଦୀ ଥିଲେ । ସେଥିପାଇଁ ତାଙ୍କର ଅନେକ ଗଳ୍ପର ଅନ୍ତଃସ୍ୱର ଭାରତୀୟ ପରମ୍ପରା ଓ ମୂଲ୍ୟବୋଧ ଭିତ୍ତିକ । ତାଙ୍କପରି ଜଣେ ନିଆରା କଥାକାରଙ୍କ ସୃଷ୍ଟି ସମ୍ଭାରର ପୁନଃପ୍ରକାଶନ ସହ ସେଗୁଡ଼ିକର ଆଲୋଚନା ପର୍ଯ୍ୟାଲୋଚନାର ଆବଶ୍ୟକତା ରହିଛି ନିଶ୍ଚୟ ।

ପତ୍ରିକା - ବାଟୋଇ<br>ପାର୍ବଣ ବିଶେଷାଙ୍କ - ୨୦୧୫





Digitized by srujanika@gmail.com

# ଗାଳ୍ପିକ ବାମାଚରଣ

## ଶ୍ରୀ ବିଜୟ କୁମାର ମହାପାତ୍ର

ସ୍ୱାଧୀନୋତ୍ତର ଓଡ଼ିଆ ଗଳ୍ପ ସାହିତ୍ୟରେ ସ୍ୱର୍ଗତ ବାମାଚରଣ ମିତ୍ର ଜଣେ ସ୍ମରଣୀୟ ସ୍ରଷ୍ଟା । ଜଣେ ସୁଦକ୍ଷ ପ୍ରଶାସନିକ ଅଫିସର ଏବଂ ପରେ ଆଇନଜ୍ଞ ଭାବରେ ସୁପ୍ରତିଷ୍ଠିତ ହୋଇ ମଧ୍ୟ ସେ ଓଡ଼ିଆ ଗଳ୍ପ ସାହିତ୍ୟକୁ ଯେଉଁ ଅମୂଲ୍ୟ ଦାନ ଦେଇଛନ୍ତି ତାହା ପ୍ରଶଂସନୀୟ । ୧୯୫୦ ମସିହାରେ ତାଙ୍କର ପ୍ରଥମ ପୁସ୍ତକ "କିର୍ତ୍ତୀଯସ୍ୟ" ପ୍ରକାଶିତ ହୋଇଥିଲା । କଟକର ରେଭେନ୍ସା କଲେଜ୍‌ରେ ଅଧ୍ୟୟନ କରିବା ସମୟରେ ବାମାଚରଣ "ମହାଯୁଦ୍ଧ" ଗଳ୍ପଟି ଲେଖିଥିଲେ । ପରେ ପରେ ଏହି ଗଳ୍ପଟି ଆନ୍ତର୍ଜାତିକ କ୍ଷୁଦ୍ରଗଳ୍ପ ପ୍ରତିଯୋଗିତାରେ ପୁରସ୍କୃତ ହୋଇଥିଲା । ତାଙ୍କର ପ୍ରଥମ ଲେଖା "ଧର୍ମକ୍ଷେତ୍ର" ପାଠକ ମାନଙ୍କୁ ମୁଗ୍ଧ କରିଥିଲା ଏବଂ ଏହା ବିଭିନ୍ନ ଭାରତୀୟ ଭାଷାରେ ଅନୁଦିତ ହୋଇ "ଆଦାନ ପ୍ରଦାନ" ପୁସ୍ତକରେ ପ୍ରକାଶିତ ହୋଇଥିଲା । ୧୯୭୧ ମସିହାରେ ସରକାରୀ ଚାକିରୀରୁ ଅବସର ଗ୍ରହଣ କଲାପରେ ବାମାଚରଣ ଆଇନ ବ୍ୟବସାୟ ଆରମ୍ଭ କରିଥିଲେ ଏବଂ ଏହି ସମୟ ମଧ୍ୟରେ ଓଡ଼ିଆ ସାହିତ୍ୟର ବିକାଶ ନିମନ୍ତେ ନିଜକୁ ଉତ୍ସର୍ଗ କରିଥିଲେ ।



Digitized by srujanika@gmail.com

୧୯୭୧ ମସିହା ଠାରୁ ୧୯୭୫ ମସିହା ମଧ୍ୟରେ ତାଙ୍କର ଗଳ୍ପ ପ୍ରତିଭା ପୂର୍ଣ୍ଣ ମାତ୍ରାରେ ପରିସ୍ଫୁଟ ହୋଇପାରିଥିଲା । ୧୯୭୩ ମସିହାରେ "ଏଣୁଣ୍ଠ ତେଣୁଣ୍ଠ" ଗଳ୍ପ ପୁସ୍ତକ ପାଇଁ ଓଡ଼ିଆ ସାହିତ୍ୟ ଏକାଡେମୀ ପୁରସ୍କାର ଲାଭ କରିଥିଲେ । ଏତଦ୍ ବ୍ୟତୀତ ତାଙ୍କର "ନିମନ୍ତ୍ରଣ" ଗଳ୍ପଟି ସୋଭିଏଟ୍ ଭାଷାରେ ଅନୂଦିତ ହେଲାପରେ ଆନ୍ତର୍ଜାତିକ କ୍ଷେତ୍ରରେ ଉଚ୍ଚ ପ୍ରଶଂସିତ ହୋଇ ପାରିଥିଲା । ବାମାଚରଣ ଝଙ୍କାର ବିଷୁବ ମିଳନ ପୁରସ୍କାର ମଧ୍ୟ ଲାଭ କରିଥିଲେ ।

ବାମାଚରଣ ଏକାଧାରରେ ଥିଲେ ଜଣେ ଲେଖକ, ଦାର୍ଶନିକ ଏବଂ ସମାଲୋଚକ । ତାଙ୍କର କ୍ଷୁଦ୍ର ଗଳ୍ପରୁ ହିଁ ତାଙ୍କର ଆଦର୍ଶ ଜୀବନ ଦର୍ଶନର ସମ୍ୟକ ପରିଚୟ ମିଳିଥାଏ । ଆଧୁନିକ ଜଞ୍ଜାଳ ଦଗ୍ଧ ଜୀବନକୁ ସରସ ଓ ସୁନ୍ଦର କରିବା ପାଇଁ କ୍ଷୁଦ୍ରଗଳ୍ପ ଯେ ଏକମାତ୍ର ମାଧ୍ୟମ ତାହା ସେ ଭଲଭାବରେ ବୁଝି ପାରିଥିଲେ । ଏଣୁ ସେ ଓଡ଼ିଆ ସାହିତ୍ୟର ଅନ୍ୟାନ୍ୟ ବିଭାଗ ଅପେକ୍ଷା କ୍ଷୁଦ୍ରଗଳ୍ପ ପ୍ରତି ଅଧିକ ଗୁରୁତ୍ୱ ଆରୋପ କରିଥିଲେ । ସତେ ଯେପରି ଓଡ଼ିଆ କ୍ଷୁଦ୍ରଗଳ୍ପ ପ୍ରତି ଜୀବନରେ ତାଙ୍କର ଗୋଟାଏ ବଡ ଆସକ୍ତି ଆସି ଯାଇଥିଲା । ମନୁଷ୍ୟ ଜୀବନର କେତେଗୋଟି ସ୍ମରଣୀୟ ମୁହୂର୍ତ୍ତ ବା ଅନୁଭୂତିକୁ ନେଇ କ୍ଷୁଦ୍ରଗଳ୍ପ ରଚନା କରାଯାଇଥାଏ । ବାମାଚରଣଙ୍କ କ୍ଷୁଦ୍ରଗଳ୍ପରେ ମଧ୍ୟ ଏହାର ସମ୍ୟତା ପ୍ରମାଣତିତ ହୋଇଛି । ତାଙ୍କରି ଗଳ୍ପରୁ ଲେଖକ ଯେ ଜଗତର ଅତି ସାମାନ୍ୟ ସାମାନ୍ୟ ଘଟଣା ସହିତ କେତେଟା ପରିଚିତ ଥିଲେ ତାହା ଖୁବ୍ ସହଜରେ ଜାଣିହୁଏ ।

ବାମାଚରଣ ଜଣେ ପ୍ରଜ୍ଞାବାନ ବ୍ୟକ୍ତି ଥିଲେ । ତାଙ୍କର ଜ୍ଞାନଥିଲା ଅସୀମ । ପ୍ରାଚୀନ ବେଦଠାରୁ ଆରମ୍ଭ କରି ଟଏନ୍‌ବି'ଙ୍କ ପର୍ଯ୍ୟନ୍ତ କାମ୍ୟୁ (Camus) ଏବଂ ସାର୍ତ୍ରେ (Satre)ଙ୍କ ଠାରୁ ଆରମ୍ଭ କରି ଶ୍ରୀ ଅରବିନ୍ଦଙ୍କ ପର୍ଯ୍ୟନ୍ତ ତାଙ୍କର ଜ୍ଞାନ ସାଗର ବିସ୍ତାର ଲାଭ କରିଥିଲା । ସେ ତାଙ୍କ କ୍ଷୁଦ୍ରଗଳ୍ପରେ ଫ୍ରଏଡ୍, ଆଡ୍‌ଲର ଏବଂ ୟୁଙ୍ଗ ଆଦି ମନୋସ୍ତତ୍ୱବିତ୍‌ଙ୍କ ଦ୍ୱାରା ଯଥେଷ୍ଟ ଭାବରେ ପ୍ରଭାବିତ ହୋଇଥିଲେ ।

ବାମାଚରଣଙ୍କ କ୍ଷୁଦ୍ରଗଳ୍ପର ଚରିତ୍ର ଗୁଡିକ ଏକ ନିମ୍ନ ମଧ୍ୟବିତ୍ ପରିବାରର ପ୍ରତିନିଧି । ଏମାନେ ସମସ୍ତେ ଜୀବନର ନିର୍ମମ ବାସ୍ତବତା ଭିତରେ ସନ୍ତୁଳିତ । ସେମାନଙ୍କ ସ୍ଥିତିହିତ ଜୀବନର ମର୍ମାନ୍ତିକ ଅଭିବ୍ୟକ୍ତି ଲେଖକ ନିଜ ଗଳ୍ପରେ ରୂପାୟିତ କରିଅଛନ୍ତି । ଆଧୁନିକ ଯୁଗରେ ଏକ ନିମ୍ନ ମଧ୍ୟବିତ୍ ପରିବାରର ନିଷ୍ପେଷିତ ଜୀବନର ସମସ୍ୟାବଳୀ ଯେ କେତେ ଜଟିଳ ତାହା ତାଙ୍କର ଗଳ୍ପରୁ ଅନୁମାନ କରିହୁଏ ।



Digitized by srujanika@gmail.com

"ନିମନ୍ତ୍ରଣ" ଗଳ୍ପରେ ଏହିଭଳି ଏକ ପରିବାରର ସ୍ତ୍ରୀ ରେଣୁର ମାନସିକ ଅବସ୍ଥାକୁ ଗାନ୍ଧିକ ବାମାଚରଣ ଅତି ସୁନ୍ଦର ଭାବରେ ମୂଲ୍ୟାୟନ କରି ଅଛନ୍ତି । ଏକ ଗରୀବ କିରାଣୀର ପତ୍ନୀ ହୋଇ ରେଣୁ ନିଜର ଦାରିଦ୍ର୍ୟକୁ ଘୋଡାଇବାକୁ ଯାଇ ପଡିଶାଘରୁ ଅଳଙ୍କାର, ପାଟ ଓ ମଠା ଇତ୍ୟାଦି ମାଗି ନିଜକୁ ସଜେଇ ସାନଭଉଣୀ ବିବାହ ବାର୍ଷିକୀରେ ଯୋଗ ଦେବାକୁ ଯାଇଛି । ଏବଂ ପରେ ପରେ ତାର ଛୋଟ ଝିଅଟି ମା'କୁ ଅଚିହ୍ନା ବାରି ରେଣୁକୁ ସେପରି ହଟହଟା କରିଛି ତାହା ବାସ୍ତବିକ୍ ଅତ୍ୟନ୍ତ ମର୍ମସ୍ପର୍ଶୀ ହୋଇପାରିବ । ଏହି ଗଳ୍ପରେ ଲେଖକ ନିମ୍ନ ମଧ୍ୟବିତ୍ ପରିବାରର ସ୍ତ୍ରୀ ମାନଙ୍କର ଅଯଥା ଗର୍ବ ଏବଂ ଫମ୍ପା ଆତ୍ମବଡିମାକୁ ବ୍ୟଙ୍ଗ କରିଅଛନ୍ତି ।

ସଂସାରରେ ମନୁଷ୍ୟ ଯେ ମନୁଷ୍ୟ ପରି ରହୁ ଏବଂ ଯେତେ ଅଭାବ ଅନାଟନରେ ପେଶି ହେଲେ ମଧ୍ୟ ତାର ସାଧୁତା ଏବଂ ଆତ୍ମବିଶ୍ୱାସ ଯେ ତା ଠାରେ ଅତୁଟ ରହୁ ଏହା ଥିଲା ବାମାଚରଣଙ୍କର ଇଚ୍ଛା । "ପାଷାଣର ପ୍ରାଣ" ଗଳ୍ପରେ ଲେଖକ ମନୁଷ୍ୟର ସାଧୁତାକୁ ଅତି ଉଚ୍ଚସ୍ଥାନ ଦେଇ ଅଛନ୍ତି । ଏହି ଗଳ୍ପରେ ଧନୀ ଓ ଦରିଦ୍ର ମଧ୍ୟରେ ଥିବା କ୍ରମାଗତ ପାର୍ଥକ୍ୟ ଦର୍ଶାଇବା ସଙ୍ଗେ ସଙ୍ଗେ ଏହାର ପରିଣାମରେ ଦର୍ଶାଇବା, ଆଜି ଯେ ସମାଜର ଦରିଦ୍ର ଲୋକମାନେ ହା ହୁତାଶ ହୋଇ ଅବିରାମ ଅଶ୍ରୁ ଢ଼ାଳୁଛନ୍ତି ତାହା ଲେଖକ ସୂଚାଇ ଦେଇଛନ୍ତି । ସମ୍ଭ୍ରାନ୍ତ ପଡୋଶୀର ଟଏଲେଟ୍ ପେପର "କ୍ଷେପଣ" ଗଳ୍ପରେ ସଙ୍କେତ (Symbol) ରୂପେ ବ୍ୟବହାର କରାଯାଇଛି । ବାରମ୍ବାର ଥର୍ମୋମିଟର ଭାଙ୍ଗିବା ଦ୍ୱାରା ମନେହେଉଛି ସତେଯେପରି ପ୍ରତିଧ୍ୱନିତ ହେଉଛି ସେହି ନିଷ୍ଠୁର ପଡୋଶୀର କେଇପଦ କଥା । "ମନେରଖ, ଯଦି ତୁମେ ତୁମ ପିଲାମାନଙ୍କୁ ପାଳିବାକୁ ଅସମର୍ଥ ତେବେ ସେମାନଙ୍କୁ ଜନ୍ମ ଦେବାର ଅଧିକାର ତୁମର ନାହିଁ" । ଏବଂ ଆହୁରି ଅନେକ କଥା । ଅବସ୍ଥା ଚକ୍ରରେ ପଡି ଯାଦବବାବୁ ମିଥ୍ୟାର ଆଶ୍ରୟ ନେଇଛନ୍ତି ଏବଂ ପର ମୁହୂର୍ତ୍ତରେ ତାହାକୁ ସଂଶୋଧନ କରିଅଛନ୍ତି । ପରିଶେଷରେ ଗୋପାଳଜୀଉଙ୍କ ଠାରେ ପ୍ରାର୍ଥନା କରିଛନ୍ତି ଯେ ହେ ଭଗବାନ୍ ମୋତେ ସାରାଜୀବନ ଏହିପରି ଦରିଦ୍ର କରି ପଛେ ରଖ କିନ୍ତୁ ଅସାଧୁ କରନାହିଁ ।

ଗାନ୍ଧିକ ବାମାଚରଣ ଥିଲେ ଜଣେ ଈଶ୍ୱର ବିଶ୍ୱାସୀ ଏବଂ ଈଶ୍ୱରଙ୍କ ପ୍ରତି ତାଙ୍କର ଆସ୍ଥା ଶେଷପର୍ଯ୍ୟନ୍ତ ଅତୁଟ ରହିଥିଲା । ତାଙ୍କ ମତରେ ମନୁଷ୍ୟ ନିଜକୁ ଯେତେ ନାସ୍ତିକ ବୋଲାଉଥିଲେ ମଧ୍ୟ ତାର ଅବଚେତନ ମନରେ ଯେ ଭଗବତ୍ ପ୍ରେମ ରହିଥାଏ ଏଥିରେ ସନ୍ଦେହ ନାହିଁ । ଲେଖକଙ୍କର "ଜଳସ୍ତମ୍ଭ" ଗଳ୍ପରେ ନିଷ୍ଠୁରତାର ଅବତାର "ବ୍ରିଗେଡିଅର ସାଭେଜ" ସାରା ଜୀବନ ନିଜକୁ ଯେତେ ନାସ୍ତିକ



Digitized by srujanika@gmail.com

ବୋଲି କହି ଆସୁଛନ୍ତି ମାତ୍ର କୌଣସି ଏକ ମୁହୂର୍ତ୍ତରେ ହଠାତ୍ "ହେ ଭଗବାନ" ବୋଲି କହି ପକାଇଛନ୍ତି । ନିଷ୍ଠୁରତାର ଅବତାର ହେଲେ ମଧ୍ୟ ତାଙ୍କର ଅଧସ୍ତନ କର୍ମଚାରୀକୁ କ୍ଷମା କରିଅଛନ୍ତି ଯେ କି ନିଜର ନବବିବାହିତା ପତ୍ନୀର ଅନୁରୋଧକୁ ଏଡାଇ ନପାରି କର୍ତ୍ତବ୍ୟରେ ଅବହେଳା ପ୍ରଦର୍ଶନ କରିଛି । ସଂସାରରେ ପ୍ରତ୍ୟେକ ବ୍ୟକ୍ତି ବିଶେଷର ହୃଦୟରେ ଦୟା ବା ଧର୍ମଭାବ ରହିଛି । ମାତ୍ର ପରିସ୍ଥିତିରେ ପଡି ସେ ସମୟେ ସମୟେ ନିଜର ବିବେକ ହରାଇ ବସେ ।

ସଂସାର ଦୁଃଖମୟ । ଏହି ଦୁଃଖମୟ ଦୁନିଆଁରେ କ୍ଷଣିକ ସୁଖ ବା ଆନନ୍ଦ ଲାଭ କରିବାକୁ ହେଲେ, ହାସ୍ୟରସର ଆବଶ୍ୟକତା ଯଥେଷ୍ଟ ବେଶୀ । ଏହାଫଳରେ ମନୁଷ୍ୟର ସଂସାରିକ ବିଷାଦ କିଛି ମାତ୍ରାରେ ଲାଘବ ହୋଇଥାଏ । ଏହା ମନୁଷ୍ୟର ଅବଚେତନ ମନରୁ ଜାତ ଏବଂ ହୃଦୟସ୍ପର୍ଶୀ ବାମାଚରଣଙ୍କ ବିଶେଷତ୍ୱ ଏହି ଯେ ସେ ଏପରିକି ଜୀବନର ଏକ କରୁଣ ମୁହୂର୍ତ୍ତକୁ ନେଇ ହାସ୍ୟରସ ସୃଷ୍ଟିକରି ପାରୁଥିଲେ । ଚାର୍ଲସ୍ ଲ୍ୟାମ୍ବ ଏବଂ ସର ଭାଣ୍ଟେସ୍‌ଙ୍କ ଭଳି ବାମାଚରଣଙ୍କ ଗଳ୍ପରେ ଏହି କରୁଣ ରସ (Pathos) ଏବଂ ହାସ୍ୟରସର (Humour) ମିଶ୍ରଣ ପରିଲକ୍ଷିତ ହୁଏ । 'ଲେଖା ଓ ଲେଖକ' ଗଳ୍ପରେ ବାମାଚରଣ ଏକ ଦୁଃଖଜନିତ ଘଟଣାକୁ କେନ୍ଦ୍ରକରି କିପରି ହାସ୍ୟରସ ସୃଷ୍ଟି କରି ପାରିଛନ୍ତି ତାହା ଉଲ୍ଲେଖଯୋଗ୍ୟ । ଜଣେ ଲେଖକ ଭାବରେ ବିପିନ୍ ବାବୁଙ୍କ ଖ୍ୟାତି ବଢ଼ିଚାଲିଲା । ସମୟ ଅଭାବରୁ ଘରର ସମସ୍ତ ଦାୟିତ୍ୱକୁ ନିଜର ସ୍ତ୍ରୀ ଉପରେ ଛାଡିଦେଇ ଲେଖାରେ ଲାଗି ପଡିଲେ । ଏପରିକି ଏକମାତ୍ର କନ୍ୟାର ନାଳରକ୍ତ ଝାଡା ପାଇଁ ଔଷଧ ଟିକେ ଆଣିଦେବାକୁ ସମୟ ହେଲାନାହିଁ । ପିତାଙ୍କ ଅବହେଳାର ଶିକାର ହୋଇ ଝିଅଟି ଇହଧାମ ତ୍ୟାଗ କଲା । ଏହା ସତ୍ତ୍ୱେ ବି ବିପିନ ବାବୁଙ୍କର ମାନସିକା ପରିବର୍ତ୍ତନ ପରିଲକ୍ଷିତ ହେଲାନାହିଁ । ବରଂ ସେ ଧୈର୍ଯ୍ୟର ସହ ବିଚାର କଲେ ଯେ ପ୍ରଥମେ ସେ ଜଣେ ଲେଖକ ଏବଂ ପରେ ନିଜ ମୃତା କନ୍ୟାର ପିତା, ଏହି ଘଟଣା ଯେ ତାଙ୍କ ଗଳ୍ପ ପାଇଁ ଏକ ସୁନ୍ଦର ପ୍ଲଟ୍ ହେବ ଏଥିରେ ସନ୍ଦେହ ନାହିଁ ।ଏହା ଭାବି ସେ ଗଳ୍ପଲେଖା ଆରମ୍ଭ କରିଦେଲେ ଏବଂ ଏହା ଏକ ସୁନ୍ଦର ଗଳ୍ପ ରୂପେ ପ୍ରଶଂସନୀୟ ହୋଇପାରିଲା । ମାତ୍ର ଠିକ୍ ପର ମୁହୂର୍ତ୍ତରେ ତାଙ୍କର ପରିବର୍ତ୍ତନ ଲକ୍ଷ୍ୟ କରାଗଲା ଏବଂ ତାଙ୍କ ନୋଟ୍‌ବୁକ୍‌ରୁ ଦେଖିବାକୁ ମିଳିଲା–

'ପିଲାମାନଙ୍କର ନାଳରକ୍ତ ଝାଡା ପାଇଁ ଅଧତୋଳେ ପିଜୁଳିପତ୍ର ଏବଂ ୧/୮ ତୋଳା ଅଦାକୁ ଏକାଠି ବାଟି ଘଣ୍ଟାକୁ ତିନିଥର ଖାଇବାକୁ ହେବ' ।



Digitized by srujanika@gmail.com

ବାମାଚରଣ ସରଭାଣ୍ଟେସ୍‌ଙ୍କର "ଡନ୍ କୁଇକ୍‌ସୋଟ୍" ପୁସ୍ତକଟି ହ୍ୟୁମର ଦୃଷ୍ଟିରୁ ଅତି ଉଚ୍ଚକୋଟୀର ବୋଲି ତାଙ୍କର ପୁସ୍ତକ "ଜୀବନ, ସାହିତ୍ୟ ଓ କଳା'ରେ ବର୍ଣ୍ଣନା କରିଅଛନ୍ତି ।

ଗାଳ୍ପିକ ବାମାଚରଣ ଆଧୁନିକ କ୍ଷୁଦ୍ରଗଳ୍ପର ଅଧିନାୟକ ଫକୀରମୋହନଙ୍କ ଦ୍ୱାରା ପ୍ରଭାବିତ ହୋଇଥିଲେ । ଫକୀରମୋହନ ତତ୍‌କାଳୀନ ସମାଜରେ ପ୍ରଚଳିତ ଅନ୍ୟାୟ, ଅତ୍ୟାଚାର ବିରୁଦ୍ଧରେ ସ୍ୱର ଉତ୍ତୋଳନ କରି ଏକ ବିପ୍ଳବାତ୍ମକ ପରିବର୍ତ୍ତନ ଆଣିବାକୁ ଚେଷ୍ଟା ପ୍ରକାଶ କରିଥିଲେ । 'ରେବତୀ' ଗଳ୍ପରେ ନାରୀ ଶିକ୍ଷାର ବିକାଶ, 'ଧଳିଆ ବାବା' ଏବଂ 'ମଉନାମଉନୀ'ରେ ଧର୍ମ ନାମରେ ଧର୍ମର ଅପବ୍ୟବହାର, 'ମଧୁ ମହାନ୍ତିଙ୍କ କନ୍ୟାସୁନା' ଏବଂ 'ବିରୋଇ ବିଶାଳ'ରେ ଅର୍ଥପାଇଁ ଏପରିକି ନିଜର କନ୍ୟାକୁ ଝାସ ଦେବା, 'ପେଟେଣ୍ଟ ମେଡିସିନ୍' ଗଳ୍ପରେ ଆଧୁନିକ ସଭ୍ୟତା ନାମରେ ମଦ ଏବଂ ସ୍ତ୍ରୀ ପ୍ରତି ଆସକ୍ତି, 'ଡାକମୁନ୍ ସୀ' ଗଳ୍ପରେ ଅର୍ଦ୍ଧଶିକ୍ଷିତ ପୁତ୍ରର ଅଶିକ୍ଷିତ ପିତା ପ୍ରତି ଘୃଣା ଇତ୍ୟାଦି ଅତି ସୁନ୍ଦର ଭାବେ ବର୍ଣ୍ଣିତ ହୋଇଛି । ଫକିର ମୋହନଙ୍କ ଭଳି ବାମାଚରଣ ମଧ୍ୟ ଏହି କଳୁଷିତ ସମାଜରେ ପ୍ରଚଳିତ ଅନ୍ୟାୟ, ଅନୀତିକୁ ନିଜ ଗଳ୍ପ ମାଧ୍ୟମରେ ପ୍ରକାଶ କରିଅଛନ୍ତି । ଏହି କ୍ଷଣସ୍ଥାୟୀ ଦୁନିଆଁରେ ମନୁଷ୍ୟ ନିଜର ଆଦର୍ଶ ଏବଂ ଚାରିତ୍ରିକ ମୂଲ୍ୟବୋଧ ବଳରେ ମୃତ୍ୟୁପରେ ମଧ୍ୟ ବଞ୍ଚି ରହିଥାଏ, ମାତ୍ର ଯେଉଁ ଲୋକ ଅନ୍ୟାୟ, ଅନୀତି, ଠକାମି ବା ଭଣ୍ଡାମୀର ପଥ ଅନୁସରଣ କରି ସମାଜରେ ପ୍ରତିଷ୍ଠିତ ହେବାର ସ୍ୱପ୍ନ ଦେଖେ ତାକୁ ଜୀବନ ମଧ୍ୟରେ ଦୁଇଥର ମୃତ୍ୟୁବରଣ କରିବାକୁ ପଡେ । ଗୋଟିଏ ହେଉଛି ନୈତିକ ବା ଆଧ୍ୟାତ୍ମିକ ମୃତ୍ୟୁ ଏବଂ ଦ୍ୱିତୀୟଟି ହେଉଛି ସାଂସାରିକ ମୃତ୍ୟୁ । ସଂସାରରେ ଏହିଭଳି ଜୀବନ ଅର୍ଥହୀନ । 'ଜନସଂଖ୍ୟା' ଗଳ୍ପରେ ବାମାଚରଣ ସମାଜରେ ପ୍ରଚଳିତ ଭଣ୍ଡାମୀକୁ ବ୍ୟଙ୍ଗ କରିଅଛନ୍ତି । ଏହି ଗଳ୍ପରେ ଗେରୁଆ ବସ୍ତ୍ର ପରିଧାନ କରିଥିବା ଜଣେ ସନ୍ୟାସୀ ଯେ କି ସଂସାରକୁ ପୁରାପୁରି ତ୍ୟାଗ କରି ଏକ ଆଧ୍ୟାତ୍ମିକ ଜୀବନର ଅଧିକାରୀ ବୋଲି ଚାରିଆଡେ ପରିଚିତ କୌଣସି ଏକ କାରଣରୁ ଡାକ୍ତରଖାନାର ପ୍ରସୂତୀ ବିଭାଗର ବାରଣ୍ଡା ଉପରେ ଦଣ୍ଡାୟମାନ ହୋଇ ମସ୍ତକ ଅବନତ କରି ବିଡି ଟାଣୁଛନ୍ତି । ସତେ ଯେପରି ମା' ମାନଙ୍କ ପ୍ରସବ ବେଦନାର କରୁଣ ଚିତ୍କାର ତାଙ୍କ ତପସ୍ୟା ଭଙ୍ଗ କରିଛି ଏବଂ ସେ ସେଠାକୁ ଆସିଛନ୍ତି ସେମାନଙ୍କ ଯନ୍ତ୍ରଣାକୁ ଲାଘବ କରିବା ପାଇଁ । ମାତ୍ର ବିଚିତ୍ର ଏ ଛଦ୍ମବେଶୀ ଦୁନିଆଁ । ଠିକ୍ ପର ମୁହୂର୍ତ୍ତରେ ଦେଖା ଯାଉଛି ସନ୍ୟାସୀ ଜଣଙ୍କ ପ୍ରସୂତୀ ଭବନରେ ପ୍ରବେଶକରି ଖଟ ଉପରେ



Digitized by srujanika@gmail.com

ଶିଶୁପୁତ୍ରକୁ କୋଳରେ ଧରି ବସିଥିବା ଏକ ସନ୍ୟାସିନୀକୁ ନିଜ ପୁଟୁଳିରୁ ଫଳ ବାହାରକରି ଖାଇବାକୁ ଦେଉଛନ୍ତି ।

ବାମାଚରଣ ଗଳ୍ପରେ ବେଳେ ବେଳେ ଦ୍ୱନ୍ଦ୍ୱର ସୃଷ୍ଟି ହୋଇଥାଏ । ମାତ୍ର ଏହି ଦ୍ୱନ୍ଦ୍ୱର ସମାଧାନ ପୂର୍ବରୁ ହଠାତ୍ ଗଳ୍ପର ପରିସମାପ୍ତି ଘଟେ । ମନେହୁଏ ସତେଯେପରି ଲେଖକ, ପାଠକ ମାନଙ୍କ ଉପରେ କୌଣସି ପ୍ରଭାବ ବିସ୍ତାର କରିବାକୁ ଚାହୁଁ ନଥିଲେ । ବରଂ ପାଠକମାନଙ୍କ ଉପରେ ବହୁ ଜିନିଷ ଛାଡି ଦେଉଥିଲେ । ଲେଖକଙ୍କର 'ଆଗନ୍ତୁକ' ଗଳ୍ପଟି ଏକ ସୁନ୍ଦର ଉଦାହରଣ । ଏହି ଗଳ୍ପରେ ଜଣେ ଭଦ୍ରଲୋକ ନିଜର ଅନ୍ତଃସତ୍ତ୍ୱା ସ୍ତ୍ରୀଙ୍କୁ ସୁଷମ ଖାଦ୍ୟ ଦେବା ଉଦ୍ଦେଶ୍ୟରେ ଏକ କୁକୁଡା ପାଳିଛନ୍ତି । ମାତ୍ର ଦୁର୍ଭାଗ୍ୟ ବଶତଃ କୁକୁଡାଟି କେଉଁ ଏକ ଅଜଣା ଜାଗାରେ ଅଣ୍ଡା ଦେଇ ଗୃହିଣୀଙ୍କ ପ୍ରସବ ବେଦନା ସମୟରେ ନିଜର ଛୁଆ ଗୁଡିକୁ ଧରି ଗର୍ବର ସହିତ ଗୃହ ପ୍ରବେଶ କରିଛି । ଲେଖକ ସେମାନଙ୍କୁ ଏକ ଶ୍ରେଣୀହୀନ ଦୁନିଆଁରେ ଅଗ୍ରଦୂତ ଭାବରେ ଗ୍ରହଣ କରିଅଛନ୍ତି ।

ଫକିରମୋହନଙ୍କ ସରଳ, ସୁଲଳିତ ଭାଷାଶୈଳୀ ବାମାଚରଣଙ୍କୁ ମୁଗ୍ଧ କରିଥିଲା । ବାକ୍ୟରେ ଅଳଙ୍କାର ବ୍ୟବହାର କରିବା ପରିବର୍ତ୍ତେ ସେ ଦୈନନ୍ଦିନ ଜୀବନର କଥାବାର୍ତ୍ତାକୁ ନିଜ ଗଳ୍ପରେ ସ୍ଥାନ ଦେଇଥିଲେ । ସୁରେନ୍ଦ୍ର ମହାନ୍ତିଙ୍କ ସମ୍ଭ୍ରାନ୍ତ ସହରୀ ଭାଷା (Urban Style)କୁ ସେ ପସନ୍ଦ କରୁନଥିଲେ । ବରଂ ଗୋପୀନାଥ ମହାନ୍ତି ଏବଂ ମହାପାତ୍ର ନୀଳମଣି ସାହୁଙ୍କ ଭଳି ଗାଉଁଲି ଭାଷାକୁ ନିଜ ଗଳ୍ପର ମାଧ୍ୟମଭାବରେ ଗ୍ରହଣ କରିଥିଲେ । ଏହି ହେତୁ ତାଙ୍କ ଗଳ୍ପରେ ବହୁ ଗାଉଁଲି ଶବ୍ଦ (Slangs), ଘରକରଣା କଥା ଏବଂ ଲୋକକ୍ତି (Proverb) ଆଦି ପରିଲକ୍ଷିତ ହୋଇଥାଏ । ଏହିଥିରୁ ଜଣାପଡେ ବାମାଚରଣ ଏକ ନିରାଡମ୍ବର ଦୁନିଆଁର ଦୈନନ୍ଦିନ ଜୀବନଯାତ୍ରା ସହିତ କେତେଦୂର ପରିଚିତ ଥିଲେ । ବାମାଚରଣଙ୍କ ଗଳ୍ପରୁ ଲେଖକ ଯେ ପାଠକମାନଙ୍କ ଠାରେ କେତେ ନିକଟ ତାହା ସହଜରେ ଅନୁମେୟ । ୧୯୭୬ ମସିହା ଫେବୃଆରୀ 'ମାନସ'ରେ ମହାପାତ୍ର ନୀଳମଣି ସାହୁ ଲେଖିଥିଲେ ଯେ ବାମାଚରଣଙ୍କ ଲେଖାଶୈଳୀ ତାଙ୍କର କ୍ଷୁଦ୍ରଗଳ୍ପ ଏବଂ ପ୍ରବନ୍ଧରେ ପ୍ରାୟ ସମାନ । ତାଙ୍କ କ୍ଷୁଦ୍ରଗଳ୍ପ ପାଠକଲେ ଜଣାଯାଏ ସତେଯେପରି ଲେଖକ ନିଜେ ପାଠକମାନଙ୍କ ସହ ଗୋଟିଏ ସ୍ଥାନରେ ରହି କଥାବାର୍ତ୍ତା କରୁଅଛନ୍ତି । ମୋଟମୋଟି କହିବାକୁ ଗଲେ ବାମାଚରଣଙ୍କ ଗଳ୍ପରେ ଲେଖକ ଏବଂ ପାଠକମାନଙ୍କ ମଧ୍ୟରେ ଏକ ପ୍ରକାର ଆନ୍ତରିକତା ସୃଷ୍ଟି ହୋଇଥାଏ ।



Digitized by srujanika@gmail.com

ବାମାଚରଣଙ୍କ ଲେଖାରେ ଆହୁରି ଗୋଟିଏ କଥା ପରିଲକ୍ଷିତ ହୁଏ । ବେଳେବେଳେ ଗୋଟିଏ ଗଳ୍ପ ମଧ୍ୟରେ ଏକ ବା ତତୋଧିକ ଗଳ୍ପର ଆବିର୍ଭାବ ହୁଏ । ପ୍ରଥମେ ପ୍ରଥମେ ତାହା ପ୍ରସଙ୍ଗ ବହିର୍ଭୁତ ମନେ ହେଲେ ମଧ୍ୟ ପରେ ପରେ ତାର ଯଥାର୍ଥତା ଉପଲବ୍ଧ କରିହୁଏ । ଉଦାହରଣ ସ୍ୱରୂପ 'ସ୍ୱପ୍ନସିଦ୍ଧ' ଗଳ୍ପରେ ଲେଖକ ସୁଦାମବାବୁଙ୍କ ଦୁଇ ପୁଅ ଏବଂ ଝିଅ ମଧ୍ୟରେ ଲାଗୁଥିବା ଭୟଙ୍କର କଳିକଯ୍ୟାକୁ ଯାଇ ହଠାତ୍ ପଦ୍ମାନାମୀ ଏକ ଗାଉଁଲି ଝିଅର ବିବାହଜନିତ କରୁଣ କାହାଣୀ ବର୍ଣ୍ଣନା କରିଅଛନ୍ତି ।

ବାମାଚରଣଙ୍କ ଗଳ୍ପରେ ବେଳେବେଳେ ରଙ୍ଗରସ (Wit)ର ବ୍ୟବହାର କରାଯାଇଥାଏ । ଏହା ଲେଖକଙ୍କର ବୁଦ୍ଧିମତାର ପରିଚୟ ପ୍ରଦାନ କରେ । ଜଣେ ଗରୀବ କିରାଣୀ ଅତ୍ୟନ୍ତ କ୍ରୋଧାନ୍ୱିତ ହୋଇ ତାର ପୁତ୍ରକୁ ଘରଛାଡି ଚାଲିଯିବାକୁ ନିର୍ଦ୍ଦେଶ ଦେଲା । ମାତ୍ର ତାର ଉତ୍ତରରେ ପୁଅ କହିଲା, 'ମୁଁ ଯିବିନାହିଁ, କାରଣ ଏହା ମୋର ବାପର ଘର । ତୁମର ନୁହେଁ' ।

ଜଣେ ନୀତିବାନ୍ ବ୍ୟକ୍ତି ଭାବରେ ବାମାଚରଣ ନଗ୍ନତା (obscene literaturc)କୁ ଗଳ୍ପ ମାଧ୍ୟମରେ ସ୍ଥାନ ଦେଉନଥିଲେ । ତାଙ୍କ ମତରେ ଏହା ସମାଜଉପରେ ଯଥେଷ୍ଟ କୁ-ପ୍ରଭାବ ପକାଇଥାଏ । ମନୁଷ୍ୟ ତାର ଏହି ପ୍ରକାର ଦୁର୍ବଳତା ପ୍ରତି ସର୍ବଦା ସଚେତନ, ଏଣୁ ଏହାକୁ ଲେଖା, ମାଧ୍ୟମରେ ପ୍ରକାଶ କରିବା ଅନାବଶ୍ୟକ ।

ବାମାଚରଣ ତାଙ୍କ ଗଳ୍ପରେ ଏକ ସର୍ବଜ୍ଞାଣ (omniscient narrater) ରୂପେ ପ୍ରତୀୟମାନ ହୁଅନ୍ତି । ବେଳେବେଳେ ନିଜର ଚିନ୍ତାଧାରାକୁ ସାବ୍ୟସ୍ତ କରିବାକୁ ଯାଇ କେତେକ ଘଟଣାକୁ ଅତିରଞ୍ଜିତ କରିଅଛନ୍ତି ବା କେତେକ ନୂତନ ଚରିତ୍ର ସୃଷ୍ଟି କରିଅଛନ୍ତି ଏବଂ ଆହୁରି କେତେବେଳେ ତାଙ୍କର ଗଳ୍ପ ଏକ ନାଟକ ଆକାର ଧାରଣ କରିଥାଏ । ମାତ୍ର ଏହା ସତ୍ତ୍ୱେ ଲେଖକ ତାଙ୍କ ଲେଖାରେ କଳାଜନିତ ତ୍ରୁଟିକୁ କଦାପି ପ୍ରଶ୍ରୟ ଦେଇନାହାନ୍ତି ।

ଗଳ୍ପ ରଚନା ସମୟରେ ନିଜର ଆଭିମୁଖ୍ୟ ପ୍ରକାଶ କରିବାକୁଯାଇ ଲେଖକ ହାସ୍ୟରସ, ରଙ୍ଗରସ ବା ବ୍ୟଙ୍ଗର ବ୍ୟବହାର କରିଥିଲେ ମଧ୍ୟ ତାଙ୍କର ଲେଖାଶୈଳୀ ବା ଉପଯୁକ୍ତ ଭାଷାର ବ୍ୟବହାରରେ ଯେ କୌଣସି ପ୍ରକାରର କୃତ୍ରିମତା ପରିଲକ୍ଷିତ ହୁଏନାହିଁ, ଏହା ଅଛେ ବହୁତେ ପ୍ରାୟ ସମସ୍ତ ପାଠକ ଉପଲବ୍ଧି କରନ୍ତି ।



Digitized by srujanika@gmail.com

ଏ ସମଗ୍ର ଜିନିଷ ପଛରେ ଲେଖକଙ୍କର ମହତ୍ ଉଦ୍ଦେଶ୍ୟ ଥିଲା ଯାହାକି ତାଙ୍କର ସାମାଜିକ ଚେତନା । ବାମାଚରଣ ତାଙ୍କ ଗଳ୍ପ ଜରିଆରେ ଏକ ଆଦର୍ଶ ଦୁନିଆଁର ସ୍ୱପ୍ନ ଦେଖିଥିଲେ । 'ସର୍ବେ ସୁଖୀନଃ ଭବନ୍ତୁ' ଏହାଥିଲା ବାମାଚରଣଙ୍କର ଈଶ୍ୱରଙ୍କ ଠାରେ ପ୍ରାର୍ଥନା ।

ପତ୍ରିକା - 'ଇସ୍ତାହାର' ସଂଖ୍ୟା - ୩୭
ମାର୍ଚ୍ଚ - ୧୯୮୭





Digitized by srujanika@gmail.com

# କଥାକାର ବାମାଚରଣ ମିତ୍ରଙ୍କ ଆଙ୍ଗିକ ବିଚାର

ଡ. ପ୍ରକାଶ କୁମାର ପରିଡ଼ା

ଲେଖାର ଆଙ୍ଗିକ ପ୍ରକାଶ ଭଙ୍ଗୀ ଦୃଷ୍ଟିରୁ ପ୍ରଥମତଃ ପଦ୍ୟ ହୁଏ କିମ୍ବା ଗଦ୍ୟ ହୁଏ । ପଦ୍ୟ ଓ ଗଦ୍ୟରେ ପୁଣି ନାନା ପ୍ରକାର ଥାଏ, ଯେପରି ମହାକାବ୍ୟ । କାବ୍ୟ/କବିତା-ଉପନ୍ୟାସ, ଗଳ୍ପ, ନାଟକ, ପ୍ରବନ୍ଧ ଇତ୍ୟାଦି । ଏଣୁ ଲେଖାକୁ ଦେଖି ଆମେ ତାର ଧରଣ ଜାଣୁ ।

ଧରଣ ଯାହା ହେଉ ଲେଖକ ଭିନ୍ନରେ ପ୍ରକାଶଭଙ୍ଗୀ ସ୍ୱତନ୍ତ୍ର ହୋଇଥାଏ । ଏହି ସ୍ୱତନ୍ତ୍ର ପ୍ରକାଶଭଙ୍ଗୀକୁ ଆମେ ଲେଖକର ଶୈଳୀ କହୁ । ସେହି କାରଣରୁ ସେ ସମବିଷୟକ ସମସାମୟିକ ଓ ସମଧରଣର ଲେଖକଙ୍କ ଠାରୁ ସ୍ୱତନ୍ତ୍ର ହୋଇଥାନ୍ତି । ତାଙ୍କର ସ୍ୱାତନ୍ତ୍ର୍ୟ ଖୁବ୍ ପ୍ରତିପାଦିତ ହୋଇଥିଲେ ତାଙ୍କୁ ସେହି ଶୈଳୀର ଲେଖକ ଭାବେ ଆମେ ବିଶିଷ୍ଟତା ଦେଇ ତ କହୁ ପ୍ରକାଶଭଙ୍ଗୀ ବଙ୍ଗୀୟ କି ରାଧାନାଥୀୟ ଅବା ଫକୀରମୋହନୀୟ କି ସୁରେନ୍ଦ୍ରୀୟ କି ମୋନଜୀୟ ।

ପ୍ରକାର ଓ ଧରଣର ଅନୁଶାସନ ସତ୍ତ୍ୱେ ଲେଖକର ଜୀବନଦୃଷ୍ଟି, ବିଷୟ ପ୍ରତି ଆଭିମୁଖ୍ୟ ଗୃହୀତ ଚରିତ୍ରର ଚେତନା, ଅଧ୍ୟୟନ ବ୍ୟାପକତା, ଅଭିଜ୍ଞତା



Digitized by srujanika@gmail.com

ସମୃଦ୍ଧି ଓ ନିଜସ୍ୱ ଭାଷାଭଣ୍ଡାର ତା'ର ଶୈଳୀ ନିର୍ମାଣ କରିଥାଏ । ବାମାଚରଣଙ୍କ ଶୈଳୀ ଅନନ୍ୟ ।

ବାମାଚରଣ ଜଣେ ଖ୍ୟାତନାମା ଗଦ୍ୟ ଲେଖକ । ଏହି ଧାରାରେ ତାଙ୍କର ଉପନ୍ୟାସ (୩ଖଣ୍ଡ) ଗଳ୍ପଗ୍ରନ୍ଥ (୫ଖଣ୍ଡ) ପ୍ରବନ୍ଧ ଓ ରମ୍ୟରଚନା (୨ଖଣ୍ଡ) ଗ୍ରନ୍ଥ ରୂପରେ ଅଛି । ସେ ଜଣେ ବହୁପାଠୀ ଓ ବେଦ, ପୁରାଣ, ଧର୍ମଗ୍ରନ୍ଥ ସମେତ ବିଶ୍ୱର ନାନା ଦର୍ଶନ ସଂପର୍କରେ ଅବଗାହୀ ବ୍ୟକ୍ତିଭାବେ ମଧ୍ୟ ପରିଚିତ ।

ତାଙ୍କର 'ଚନ୍ଦ୍ର ଓ ଚମ୍ପା' ଉପନ୍ୟାସର ବିଷୟବସ୍ତୁ ବୌଦ୍ଧଦର୍ଶନ ଭିତ୍ତିକ । ଉପନ୍ୟାସର କଥାଭାଗ ପ୍ରଥମ ଓ ଦ୍ୱିତୀୟ ଶତାବ୍ଦୀ କାଳର । ଚରିତ୍ରଗଣ କେତେକ ଐତିହାସିକ କେତେକ କାଳ୍ପନିକ । କଥାଭାଗର ପରିସର କେତେବେଳେ ରାଜପ୍ରାସାଦ, କେତେବେଳେ ଗୁରୁକୁଳ ଓ କେତେବେଳେ ଜନପଦ । ଲେଖକ ଆଧୁନିକ କାଳର ।

ଏହି କାରଣ ସମୂହରୁ ଉପନ୍ୟାସର ବର୍ଣ୍ଣନାପାଟବ କିଞ୍ଚିତ ଗମ୍ଭୀର, ଉଦାତ୍ତ ଏବଂ ବ୍ୟବହୃତ ଭାଷାରେ ତତ୍ସମ, ତଦ୍ଭବ ପଦାବଳୀର ପ୍ରାଧାନ୍ୟ ଥାଇ ଜାନପଦିକ ଭାଷା ତଥା ଲେଖକଙ୍କ କଥନ ଭଙ୍ଗୀର ଭାଷା ଆନୁପାତିକ ।

ତାହା ଦେଖାଯାଉ ।

ଲେଖକଙ୍କ ନିରପେକ୍ଷ ବର୍ଣ୍ଣନାକାରୀ ଭୂମିକାର ଭାଷା-

"ବୌଦ୍ଧରାଜ୍ୟର ସୁଖୀ ପଲ୍ଲୀରେ ଆଜି ମହୋତ୍ସବ । କିନ୍ତୁ ଏହାର କାରଣ, ଯାହାକି ଏହି ଆଖ୍ୟାୟିକାର ବିଷୟବସ୍ତୁ, କହିବା ପୂର୍ବରୁ ବୌଦ୍ଧରାଜ୍ୟର ଅତୀତ ଇତିହାସର କେତେକ ପୃଷ୍ଠ ଓଲଟାଇବାକୁ ପଡିବ" ।

ରାଜାଙ୍କ ସଂଳାପ-

"ଦେବୀ ହଠାତ୍ ଦୁଃଖୀ ହେଲ କାହିଁକି ? ଯୁବରାଜ କଅଣ ତୁମକୁ ମାତାର ଉପଯୁକ୍ତ ସମ୍ମାନ ଦେଉନାହିଁ ? ମୁଁ ଜାଣେ ବିଦେଶିନୀ ବୋଲି ଏ ଦେଶରେ ଅନେକେ ମୋର ଏ ବିବାହକୁ ଅନୁମୋଦନ କରିନାହାନ୍ତି" ।

ସୁଖୀ ପଲ୍ଲୀରେ ସାଧାରଣ ମଣିଷ ପ୍ରତି ଲେଖକଙ୍କ ବର୍ଣ୍ଣନାକାରୀ ସତ୍ତାର ଭାଷା- "ଚମ୍ପାର ରୂପ ଯେତେବେଳେ ଦିନକୁଦିନ ବଢ଼ିବାକୁ ଲାଗିଲା ଓ ଚମ୍ପାର ମା' ଯେତେବେଳେ କାମଧନ୍ଦା କରିବାକୁ ଅକ୍ଷମ ହେଲା, ସେତେବେଳେ ସେ ତା'ର ମୃତ ସ୍ୱାମୀର ଦୂର ସମ୍ପର୍କୀୟ ଭାଇ ମଧୁକରକୁ ଆଣି ଘରେ ରଖିଲା; କିନ୍ତୁ ମଧୁକର ସାହାଯ୍ୟ ପରିବର୍ତ୍ତେ ବୋଝ ଉପରେ ନଳିତାବିଡା ହୋଇ ରହିଲା"



Digitized by srujanika@gmail.com

ସୁଖୀପଲ୍ଲୀର ସାଧାରଣ ମଣିଷର ସଂଳାପ-

"ମା ! ମଧୁକକା କାହିଁ ?

- ଆଉ କେଉଁଠି ଥିବ, ଶୁଣ୍ଠୀଘରେ ପଡ଼ିଥିବ, ଠିକ୍ ଭୋଜନବେଳକୁ ଆସିବ ।

(୪)

ଉଦାହରଣ / ଉଦ୍ଧୃତି ଗୁଡିକରୁ ଦେଖିବା । ରାଜା ଚନ୍ଦ୍ରଗୁପ୍ତ ରାଣ୍ଣୀ ହେଲେନାଙ୍କ ଚିନ୍ତାର କାରଣ ପଚାରିବାକୁ ଯାଇ ରାଜକୀୟ ମର୍ଯ୍ୟାଦାର ଭାଷା ବ୍ୟବହାର କରୁଛନ୍ତି । ଯେପରି ସମ୍ବୋଧନରେ ଦେବୀ, ନିରବତା ଅର୍ଥରେ ତୁଷ୍ଣୀ, ମା' ସ୍ଥାନରେ ମାତା, ତୁମ ସ୍ଥାନରେ ତୁମ୍ଭଙ୍କୁ ଇତ୍ୟାଦି । (ଉ.୨)

ଏହି ଭାଷା ପ୍ରୟୋଗରେ ସିଦ୍ଧ ଔପନ୍ୟାସିକ ଜାନପଦିକ ଚରିତ୍ରଟିକୁ ଚିହ୍ନାଇବାକୁ ଯାଇ ଏକ ଦୀର୍ଘ ଜଟିଳ ବାକ୍ୟ ସରଳ କଥିତ ଭାଷାରେ ସ୍ୱଚ୍ଛନ୍ଦରେ ପ୍ରକାଶ କରୁଛନ୍ତି ତଥା ସେହି ଗୋଟିଏ ବାକ୍ୟରେ ଏକାଧିକ ପରିସ୍ଥିତି, ଅବସ୍ଥା, ମନୋଭାବ ମଧ୍ୟ ପ୍ରକଟ କରିପାରିଛନ୍ତି । (ଉ.୩)

ଉଦ୍ଧୃତି ନାହିଁ ମାତ୍ର ପାଠକ ଅନାୟାସ ଦେଖିପାରେ ମହାକାଞ୍ଚନ, ମହାଶାଳ, ମହାସାରଙ୍କ ପରିଚୟ ବାଢିଲାବେଳେ, ମହାକାଞ୍ଚନ ଓ ଅଦ୍ଭୁତ ଯୁବକଙ୍କ ଆଲୋଚନାରେ, ମହାଶାଳଙ୍କ ଉଚ୍ଚାକାଙ୍‌କ୍ଷା ଓ ଶକ୍ତିମତ୍ତା ପ୍ରସଙ୍ଗରେ; ଲେଖକ ଐତିହାସିକ ଉପନ୍ୟାସର ଚରିତ୍ରମାନଙ୍କ ଶିକ୍ଷାଦାତା-କୁଳମାନ ଓ ପଦବୀ ସମୁଚିତ ଭାଷା ବ୍ୟବହାର କରିଛନ୍ତି । ଅନ୍ୟପକ୍ଷରେ ସୁଖୀପଲ୍ଲୀର ଚମ୍ପାର ପରିବାର, ତା'ର ମନୋଦଶା, ମଧୁକରର ଜୀବନଶୈଳୀ, ବିନୀତାଙ୍କ ଈର୍ଷା ପ୍ରସଙ୍ଗରେ ଲେଖକ କହନ୍ତୁ କି ଚରିତ୍ର ପାଇଁ ସଂଳାପ ଖଞ୍ଜନ୍ତୁ ସବୁଠାରେ ସରଳ ସୁନ୍ଦର ସହଜ କଥନଧର୍ମୀ ଭାଷା ପ୍ରୟୋଗ କରିଛନ୍ତି ।

ଉପନ୍ୟାସଟି ଐତିହାସିକ-ଦାର୍ଶନିକ-ସାମାଜିକ ପୁଣି କାଳ୍ପନିକ ଏପରି ମିଶ୍ରିତ ବର୍ଗର ହୋଇଥିବାରୁ ଏହାର ଶୈଳୀ ଓ ଭାଷା ତଦନୁରୂପ କରିବାକୁ ଲେଖକ ଚେଷ୍ଟା କରି ସଫଳ ହୋଇଛନ୍ତି । ଭାଷା ପ୍ରୟୋଗଜନିତ ସ୍ୱାଚ୍ଛନ୍ଦ୍ୟ ଯୋଗୁଁ ହିଁ ଦୂର ଇତିହାସର ଚରିତ୍ର, ତହୁଁ ଦୂରକାଳ୍ପୁରୁ ପ୍ରତିଷ୍ଠାପ୍ରାପ୍ତ ଧର୍ମ ତିନୋଟିର (ବୌଦ୍ଧ, ଜୈନ, ହିନ୍ଦୁ) ବିଶେଷତ୍ୱ, ସେହି ଧର୍ମତ୍ରୟର ଉଦ୍‌ଗାତା- ପ୍ରଚାରକ ମୀମାଂସକ ଓ ଧର୍ମଧ୍ୱଜୀଙ୍କ ଅନୁରାଗ-ପ୍ରେମ-ପ୍ରଣୟ ଏବଂ ଅହଙ୍କାର ଓ ଆତ୍ମସମ୍ମାନ ଇତ୍ୟାଦି ବିବିଧ ପ୍ରସଙ୍ଗରେ ସଂଗୃହୀତ ହୋଇ ମଧ୍ୟ ଉପନ୍ୟାସଟି ସବୁ ବର୍ଗ ଓ ବୟସର ପାଠକଙ୍କ ଅକୁଣ୍ଠ ପ୍ରିୟତା ଅର୍ଜନ କରିପାରିଅଛି ।



Digitized by srujanika@gmail.com

ଶ୍ରୀଯୁକ୍ତ ମିତ୍ରଙ୍କୁ ଜଣେ ଗଳ୍ପ ଲେଖକ ଅପେକ୍ଷା ଗଳ୍ପକଥକ କହିବା ଯଥାର୍ଥ ହେବ । ତାଙ୍କର ଗଳ୍ପଗୁଡ଼ିକ ବର୍ଣ୍ଣନାଧର୍ମୀ ଓ ଆଦ୍ୟନ୍ତ ପ୍ରାନ୍ତ ଏକ ରୈଖିକ ଗତିଶୀଳ । ଗଳ୍ପରେ ଆଙ୍ଗିକ କ୍ଷେତ୍ରରେ ସେ ମିନି କିମ୍ବା ମ୍ୟାକ୍ସି ଏପରି ଆକାର ଧର୍ମ ଅନୁସାରୀ ଗପ ଲେଖିନାହାନ୍ତି । କବିତା କିମ୍ବା ପ୍ରବନ୍ଧ ଆଙ୍ଗିକରେ ପୂର୍ଣ୍ଣ ଗପଟିଏ ଲେଖିବାର ଅପଚେଷ୍ଟା କରିନାହାନ୍ତି । ଗପକୁ ଅକାହାଣୀଧର୍ମୀ ମଧ୍ୟ କରିନାହାନ୍ତି ପ୍ରାୟ । ସେପରି ଗଳ୍ପର ଆକାର ପ୍ରକାରକୁ ଖୁବ୍ ନିୟନ୍ତିତ ମଧ୍ୟ କରିବାକୁ ଚେଷ୍ଟା କରିଥିବା ପରି ଅନୁଭୂତ ହୁଏନାହିଁ । ଏଇଥିପାଇଁ ତାଙ୍କୁ ଜଣେ ଖୁବ୍ ସ୍ୱାଭାବିକ କାହାଣୀଧର୍ମୀ ଗଳ୍ପକଥକ ଭାବେ ଗ୍ରହଣ କରିପାରିବା ।

ଲେଖକ-ଗାଳ୍ପିକ ତାଙ୍କ ଗଳ୍ପକୁ ପରିମିତ- ଆନୁପାତିକ-ପ୍ରଭାବଶାଳୀ-ବାର୍ତ୍ତାପ୍ରସାରୀ- ଚରିତ୍ର ଚେତନା ସୃଷ୍ଟିକାରୀ କରିବାକୁ ଚେଷ୍ଟା କରିଥାଏ । କଥକ-ଗାଳ୍ପିକ ମୁଖ୍ୟତଃ ଗପଟି କହିବାକୁ କହୁକହୁ ବୁଝାଇବାକୁ- ପରିବେଶ ଚିତ୍ର ଦେବାକୁ- ବାତାବରଣ ସୃଷ୍ଟି କରିବାକୁ- ଚରିତ୍ରର କଥା ଓ କାମରୁ ତାକୁ ଚିହ୍ନାଇବାକୁ ଏବଂ କୌଣସି ନିଷ୍କର୍ଷ ନବାଢ଼ି- କଥାର ଇତି ଆଣିବାକୁ ପସନ୍ଦ କରିଥାଏ । ଏପରି କଥକ-ଗାଳ୍ପିକ ନାନା ବିଷୟରେ, ପ୍ରସଙ୍ଗରେ, ନାନା ଧରଣର ଗଳ୍ପ ରଚନାରେ ରୁଚି ରଖନ୍ତି । ନାନା ବୟସ, ବୃତ୍ତି, ରୁଚି, ଅବସ୍ଥାର ମଣିଷ ତାଙ୍କ ଗଳ୍ପରେ ଚରିତ୍ର ହୋଇ ଆସିଥାନ୍ତି । ବେଳେବେଳେ ଏକା ଚରିତ୍ର ଓ ପରିବେଶକୁ ନେଇ ଏକାଧିକ ଗଳ୍ପ ସୃଷ୍ଟି କରିପାରନ୍ତି ।

ଏହା କରୁଥିବାରୁ ତାଙ୍କ ଗଳ୍ପରେ ନିର୍ଦ୍ଦିଷ୍ଟ ଶୈଳୀ ବା ଧରଣ ଘନୀଭୂତ ହୁଏ ନାହିଁ । ଅନୁସଂଧାନ କଲେ ଅନେକ ଶୈଳୀ ଧର୍ମ ସେହି ଗଳ୍ପରେ ପାଇହୁଏ ।

ବାମାଚରଣଙ୍କ କେତୋଟି ପାଠକ ପରିଚିତ ଗଳ୍ପ ଭିତ୍ତିରେ ତାଙ୍କ କଥାଶୈଳୀ ଓ ଭାଷାଭାବନା କିପରି କଥକଗାଳ୍ପିକ ସୁଲଭ ଏବଂ ପୂର୍ବରୁ ଯାହା କହୁଥିଲି ଲେଖକଙ୍କ ଜୀବନଦୃଷ୍ଟି, ଗଳ୍ପଭୂମି, ଚୟନିତ ଚରିତ୍ରର ସାମାଜିକ ସ୍ଥିତି ଓ ଘଟଣାର ପରିବେଶ ଦ୍ୱାରା ତାହା କିପରି ନିୟନ୍ତିତ ତାହା ଗଳ୍ପରେ ସାବ୍ୟସ୍ତ କରିବା ।

ଗଳ୍ପଟି ଯଦିଓ ଆରମ୍ଭ ହୋଇଛି ସାଧାରଣ ବର୍ଣ୍ଣନାରେ, ଯଦିଓ ଗଳ୍ପ ଭିତରେ ହାସ୍ୟକର ଉତ୍ତେଜିତ ବିସ୍ମୟକର କିଛି କଥାମାନ ଘଟୁଛି, ସେତେବେଳର ପରିବେଶ ଓ ପରିସ୍ଥିତିକୁ ଚାହିଁ ବର୍ଣ୍ଣନାର ଭାଷା ଓ ଚରିତ୍ରର ଭାଷା ପ୍ରୟୋଗ ଯଥାଯଥ ହୋଇଛି ତଥାପି ଗଳ୍ପ ପରିଣତିରେ ଆକସ୍ମିକ ବିଷାଦ ସୃଷ୍ଟିକରି ବାମାଚରଣ ସେହି ଗଳ୍ପକୁ ଏକ ଗମ୍ଭୀର ବାତାବରଣରେ ପହଞ୍ଚାଇ ଦେବାର ଶୈଳୀ-



Digitized by srujanika@gmail.com

ବେଶ୍ କେତେକ ଗଳ୍ପରେ ପ୍ରୟୋଗ କରିଛନ୍ତି । ଯେମିତି ହାସ୍ୟରସାତ୍ମକ ଗଳ୍ପଟି ଏକ କରୁଣାଉଦ୍ରେକୀ ଗଳ୍ପରେ ପରିଣତ ହୋଇଯାଇଛି । ଏପରି ଗଳ୍ପ ମଧ୍ୟରେ ମହାପୁରୁଷ ବାଗ୍, ମିମିର ସାହିତ୍ୟ ଶିକ୍ଷା, ଲାଡଡୁ ଆଦି କେତୋଟି ଅନ୍ତର୍ଗତ ହୋଇପାରେ ।

"ମହାପୁରୁଷ ବାଗ୍" ଗଳ୍ପରେ ଗଳ୍ପ ଘଟଣା ପୂର୍ବରୁ ଗାଳ୍ପିକ ଏକ ଅବତରଣିକା ରଖିଛନ୍ତି ଦୁଇପୃଷ୍ଠା ବ୍ୟାପୀ ଯାହାଦ୍ୱାରା ଘଟଣାର ପୃଷ୍ଠଭୂମି, ପରିବେଶର ପ୍ରଚାରିତ ଓ ପ୍ରକୃତ ସ୍ଥିତି ଏବଂ ଚରିତ୍ରର ଚେହେରା-ବୃତ୍ତି-ସ୍ୱଭାବ- ପୋଷାକ- ମନୋଭାବ ଆଦି ପାଠକ ଠାରେ ଏକ ମାନସିକ ପ୍ରସ୍ତୁତି ସୃଷ୍ଟି କରୁଛି ଗଳ୍ପ ଘଟଣାକୁ ଗ୍ରହଣ କରିବାକୁ । ସେହି ଅଂଶରେ ଗାଳ୍ପିକ ନିରପେକ୍ଷ ତଟସ୍ଥ ନୁହନ୍ତି ସେ ପାଠକକୁ ସୂତ୍ର ଧରାଇ ଦେବାକୁ ଚାହାନ୍ତି ଯେ ନେତାଙ୍କ ବକ୍ତୃତା ଓ ଆଦର୍ଶ କେବଳ ପ୍ରଚାରଧର୍ମୀ ଅସଲ ନୁହେଁ । ସେ ଆହୁରି ମଧ୍ୟ ପାଠକକୁ ବୁଝାଇଦେବାକୁ ଚାହାଁନ୍ତି ଯେ ବକ୍ତୃତାର ପ୍ରଭାବରେ ସାଧାରଣ ମଣିଷ କିପରି ନିଜର ସ୍ୱଭାବଧର୍ମ ପର୍ଯ୍ୟନ୍ତ ପରିବର୍ତ୍ତିତ କରିବସିଛି ମାତ୍ର ତାଙ୍କ ଗଳ୍ପ ଚରିତ୍ରଟି ସେହି ମାନସିକତାରେ ନୁହେଁ ନିଜର ସରଳ ବିଶ୍ୱାସ ଓ ବୋକାମୀ ପାଇଁ ଗଳ୍ପଘଟଣାର କେନ୍ଦ୍ର ପାଲଟିଛି । ଏବେ ଏଇଠୁ ଗଳ୍ପ ଆରମ୍ଭ ହେଉଛି ।

ସର୍ବସାଧାରଣ ପାଇଁ ଉଦ୍ଦିଷ୍ଟ ଓ ଉନ୍ମୁକ୍ତ ଘୋଷିତ ମହାପୁରୁଷ ବାଗ୍ ସହରରେ ପ୍ରତିଷ୍ଠିତ ଏକ ପ୍ରମୋଦ ଉଦ୍ୟାନ ଓ ରଙ୍ଗଶାଳା ପରିସରକୁ ସସ୍ତ୍ରୀକ ଗଳ୍ପଚରିତ୍ର ରାମାରାଓ ପ୍ରବେଶ କଲେ ।

ବାଗ୍ ପରିସରରେ ଚରିତ୍ରର ଦୟନୀୟତା, ଅସହାୟତା, ଅପମାନ-ଲାଞ୍ଛନା ଭୋଗ ଏବଂ ସେଠାରୁ ବିତାଡିତ ହେବାର ଦୁର୍ଭୋଗଗୁଡିକ ହିଁ ଗଳ୍ପ ଘଟଣା । ତାହାର ପାର୍ଶ୍ୱପ୍ରତିକ୍ରିୟାରେ ଚରିତ୍ରର ଜେଲ୍ ଯିବା ଓ ବର୍ଷକ ପରେ ଜେଲ୍‌ରୁ ଫେରିବା ବାଟରେ ସେହି ଉଦ୍ୟାନର ବାର୍ଷିକଉତ୍ସବରେ ସେହି ମନ୍ତ୍ରୀଙ୍କ ସେହି ଭାଷଣବାଜି ଓ ଭଙ୍ଗୀକୁ ଉପହାସ କରିବା ଆଦି ଦୁଇଚାରିଟି ପାରାଗ୍ରାଫରେ ବର୍ଣ୍ଣିତ ।

ଘରେ ପହଞ୍ଚି ସେ ଏଇ ପରିସ୍ଥିତି ଭେଟନ୍ତି ଯେ, ପୋଲିସ୍ ତାଙ୍କ ସ୍ତ୍ରୀକୁ ପୁଲିସ୍ ସାହେବଙ୍କ ନିକଟକୁ ଧରିନେଇଥିଲା ଓ ସେଦିନୁ ସେ ଘରକୁ ଫେରି ନାହିଁ ।

ଏହିଠାରେ ଯେଉଁଠି ପାଠକ ରାମାରାଓ ଚରିତ୍ରର ପ୍ରତିକ୍ରିୟାରେ ବିଳାପ, କ୍ରୋଧ, ବିଦ୍ରୋହ, ଆସ୍ଫାଳନ, ଅଭିଶାପ, ପାଗଳପଣ ଆଦିର ପ୍ରକାଶ ଘଟୁବୋଲି ଅପେକ୍ଷା ରଖୁଛି । ସେଇଠି ଗାଳ୍ପିକ ଗଳ୍ପ ଯବନିକା ଘଟାଉଛନ୍ତି ମାତ୍ର ଦୁଇଟି ବାକ୍ୟରେ ଏହିପରି-



Digitized by srujanika@gmail.com

"ଘରକୋଣରେ ତାଙ୍କ ଦଦରା ହାରମୋନିୟମ୍, କବିତା ଖାତା ଓ ଯୋତା ମରାମତି ଯନ୍ତ୍ରପାତି ସବୁ ସାଇତା ହୋଇ ଥୁଆହୋଇଛି । ଗଲାବେଳେ ତାଙ୍କ ସ୍ତ୍ରୀ ସେସବୁ ସଜାଡି ସାଇତି ରଖିଦେଇଛନ୍ତି" ।

ପାଠକ ହତାଶ ହୁଏ, ଅତୃପ୍ତ ହୁଏ ମାତ୍ର ସ୍ୱାଧୀନତା ପାଏ ଚରିତ୍ର ସହିତ ଏକାତ୍ମ୍ହୋଇ ଗଳ୍ପ ଘଟଣାର କଦର୍ଥନା ଭୋଗୁଥିବା ବେଳେ ପରିଣତିର ଯେଉଁ ପ୍ରତିକ୍ରିୟା ସେ ନିଜଠାରେ ଉକୁଟାଉଥିଲା ତାହା ଏବେ ନିଜ ହୃଦୟରେ ଘଟାଇବାକୁ ।

ଉପସ୍ଥାପନାକୁ ପ୍ରଲମ୍ବିତ, ଗଳ୍ପ ଘଟଣାକୁ ଉତ୍କଣ୍ଠାପୂର୍ଣ୍ଣ ଏବଂ ଗଳ୍ପ ପରିଣତିକୁ ଆକସ୍ମିକ ଅନାକାଂକ୍ଷିତ ତଥା ପ୍ରତିକ୍ରିୟାଶୂନ୍ୟ କରିବାର ଶୈଳୀ- ବାମାଚରଣୀୟ ।

ସେମିତି ଆଉ ଏକ ଗଳ୍ପ "ବଟମହାପୁରୁଷ" । ଆରମ୍ଭରେ ବରଗଛଟିଏର ଇତିହାସ ତାହା ପ୍ରତି ଜନତାର ସମ୍ମାନ ଓ ସମ୍ଭ୍ରମ ଏବଂ ତାକୁ କେନ୍ଦ୍ରକରି ଘନୀଭୂତ ପ୍ରତ୍ୟୟ ବର୍ଣ୍ଣିତ । କାହାଣୀର କ୍ରମଗତିରେ ବରଗଛର ପ୍ରସାରିତ ପ୍ରତିଷ୍ଠାକୁ ଉପଯୋଗକରି ଦଳେ ଓ ପ୍ରତିଷ୍ଠାକୁ ଆଘାତ କରି ଆଉ ଦଳେଙ୍କ କ୍ରିୟାପ୍ରତିକ୍ରିୟାର ଉତ୍ତେଜନା-ଉଦ୍‌ବେଗ-ଉତ୍କଣ୍ଠା ଆଦି ପ୍ରକାଶିତ ଯାହାହିଁ ଗଳ୍ପର ଅସ୍ପଷ୍ଟ ଘଟଣା । ପରିଣତିରେ କିନ୍ତୁ କୌଣସି ଚମକ ନାହିଁ, ଅଲୌକିକତା ନାହିଁ, ହତାଶା ନାହିଁ, ଏପରିକି ବ୍ୟକ୍ତିକି ସମୁଦାୟ କାହାର ପ୍ରତିକ୍ରିୟା ନାହିଁ । ଅଛି ଛାଇଛାଇର କାଳ୍ପନିକ ବୋଧମାତ୍ର ।

ପରିଣତି ଅଂଶଟି ଏହିପରି-

"ସରକାର ସେ ଗଛକୁ ନିଲାମ କରାଇଦେଲେ । ନରିପୁର, ହଳଦିଆ ଆଦି ଗ୍ରାମର ଲୋକମାନଙ୍କ କ୍ଷମତା ନାହିଁ ସେ ବିରାଟ ଗଛକୁ ନିଲାମ ଧରିବାକୁ । ସବୁ ପଇସା ତ ନିଆଁପୁଆଁରେ ଯାଇଛି । ଅହମ୍ମଦପୁରିଆ ପଠାଣମାନେ କିନ୍ତୁ ନିଲାମ ଧରିଲେ । ବାକିତକ ଗାଁ ବାଲା ମାନେ ଘୁଷ୍‌ଘାଷ୍ ଦେଇ ଚୋରେଇ ବୋହିନେଇ ଜାଳିଲେ । ଦୁଇଦିନ ଭିତରେ ସବୁ ସଫା । ବଟ ମହାପୁରୁଷଙ୍କ ଆସ୍ଥାନ ଶୂନ୍‌ଶାନ୍ । ଗୋଟିଏ ସଭ୍ୟତା ଗଲା, ଆଉ ଗୋଟିଏ ସଭ୍ୟତା ଆସିଗଲା । କିଛି ଡରିବାର ନାହିଁ । ମହାକାଳ ସଦା ଜାଗ୍ରତ" ।

ତେବେ ଗଳ୍ପର ସବୁ ଗଳ୍ପାୟଣ, ଗଳ୍ପଚମକ ଅଛି ଗଳ୍ପ ଘଟଣା କ୍ରମରେ ଓ ତାହାକୁ ପରିପୁଷ୍ଟ କରୁଛି ଲେଖକଙ୍କ ବିଶ୍ଳେଷଣ ଶକ୍ତି, ବ୍ୟକ୍ତିଗତ ଜ୍ଞାନସୀମା, ଅକୃତିମ ଶବ୍ଦଭଣ୍ଡାର ଏବଂ ତାହାର ପ୍ରୟୋଗରେ ସନ୍ତୁଳନ । ତାହା ହିଁ ଲେଖକଙ୍କ



Digitized by srujanika@gmail.com

କଥାକତା ଯାହା ପାଇଁ ଏହି ଗଳ୍ପଟି ଦୀର୍ଘ ହେଲେ ହେଁ କ୍ଲାନ୍ତିକର ହୋଇନାହିଁ । ଗୋଟିଏ ଉଦ୍ଧୃତିରୁ ତାହା ଦେଖାଯାଇପାରେ ।

'ସଡ଼କ ଉତ୍ତରପଟକୁ ଲାଗି ନରିପୁର ଗାଁ ମଶାଣି । ସେଠି ସାନବଡ କେତେ ମଣିଷମୁଣ୍ଡ, କେତେ ଛିଣ୍ଡା ମସିଣା ତକିଆ ଆଦି ପଡିଛି । ଆହୁରି ପଡିବ । ମଝିରେ ମଝିରେ ବୋଲହରି ହରିବୋଲ କୁହାଟରେ ମଶାଣି କମ୍ପି ଉଠେ । ଦାଉ ଦାଉ ଚିତା ଜଳିଉଠେ । ତାପରେ ଶୁନ୍‌ଶାନ୍ କିଛିକ୍ଷଣ ପାଇଁ । ଗାଁ ମାଇପିମାନେ କାନ୍ଦବୋବାଳି ଛାଡୁଛାଡୁ ହାଣ୍ଡିମାଠିଆ ଧରି ସେଠି ଗୁଣ୍ଡ ହୁଅନ୍ତି । ହାଣ୍ଡିଫାଣ୍ଡି ଫୋପାଡି ଦେଇ ପାଖ ପୋଖରୀରେ ଗାଧୋଇପାଧୋଇ ପୁଣି କାନ୍ଦିକାନ୍ଦି ଫେରିଯାଆନ୍ତି ଯେ ଯାହା ଘରକୁ । ଦିନେ ଦି'ଦିନ କାନ୍ଦନ୍ତି । କାନ୍ଦଣା ଥମିଆସେ । କିଛି ଦିନ ପରେ ପୁଣି ହସଖୁସି । ଯିଏ ମଲା ସିଏ ଗଲା ତା'ର ଦେହ ନରିପୁର ମଶାଣିରେ ମାଟିହେଇ ମିଶି ଘାସ ବା ଗଇସ ଗଛକୁ ସାର ଯୋଗାଇଲା । ଆଉ ତା'ର ଆତ୍ମା ? କିରସ୍ତାନମାନେ କହିବେ, ସବୁ ଆତ୍ମାଯାକ ଯାଇ ପ୍ରକାଣ୍ଡ ଗୋଟାଏ ଘରେ ଅପେକ୍ଷା କରି ରହିବେ । କଳ୍ପଶେଷରେ ସେମାନଙ୍କ ବିଚାର ହେବ । ତା'ପରେ କେହି ଅନନ୍ତ କାଳ ପାଇଁ ନରକ ଯିବେ । କେହି ବା ସ୍ୱର୍ଗ । ନାସ୍ତିକମାନେ କହିବେ ଭସ୍ମୀଭୂତସ୍ୟ ଦେହସ୍ୟ ଆତ୍ମା କୁଆଡୁ ଆସିଲା ? ଗୀତା କହେ, ଆତ୍ମା ଅମର । ପଣ୍ଡିତେ ଯିଏ ଯାହା କହନ୍ତୁ ନରିପୁର ଲୋକେ ପ୍ରତ୍ୟକ୍ଷ ପ୍ରମାଣ ପାଇଛନ୍ତି ଯେ ଅନେକ ଭସ୍ମୀଭୂତ ଦେହ ଭୂତ ହେଇ ନିଜ ଘର ବା ଘର ଲୋକ ମାୟା ଛାଡିନପାରି ଏଇ ବଟମହାପୁରୁଷଙ୍କ ଦେହରେ ଆଶ୍ରା କରି ରହିଯାଆନ୍ତି । ସ୍ୱର୍ଗକୁ ଯିବାକୁ ବି ଇଚ୍ଛା କରନ୍ତି ନାହିଁ..." ।

ପ୍ରସଙ୍ଗତଃ ଏହି ଗଳ୍ପ ପରିସରରେ ଅଛି ଓଡ଼ିଆଲିପିରେ ସଂସ୍କୃତଶ୍ଳୋକ ଭାଗବତବାଣୀ ପଦେ, ଗାଉଁଲି ଢ଼ଗଟିଏ, କେତେଗୁଡ଼ିଏ ମକଦ୍ଦମା ଦଫା ନମ୍ବର ଯାହା ସଂପୃକ୍ତ ଚରିତ୍ର ? ସ୍ୱଭାବ-ପ୍ରକୃତି, ଗ୍ରାମ ମଣିଷର ଚାରିତ୍ରିକତା ଓ ପ୍ରକୃତିର ଚିରନ୍ତନତା ଆଦି ସ୍ପଷ୍ଟ କରିବାରେ ସାହାଯ୍ୟ କରୁଛି ସବୁ ମିଶି ଗଳ୍ପର ଏକ ନିର୍ଦ୍ଦିଷ୍ଟ ବା ନିର୍ଦ୍ଧାରିତ ଶୈଳୀ ବାହାରେ ସ୍ୱତନ୍ତ୍ର ଧରଣ ଉଭାହେଉଛି । ତାକୁ କଥାକତା ହିଁ ନାମଦେବା ଭଲ ।

ବାମାଚରଣ ଗଳ୍ପ ଶୈଳୀର ଆଉ ଏକ ପ୍ରକାର ମଧ୍ୟ ଦେଖି ହୁଏ । ଗଳ୍ପଟିଏ ମାତ୍ର ଗୋଟିଏ ସେଟିଂରେ ଅଳ୍ପ କେଇଘଣ୍ଟାର ଅବଧିରେ ଘଟିଥିବା ଘନୀଭୂତ କଥାଭାଗ ବୁଝିବା ତାହା ସତ୍ତ୍ୱେ ଗପଟି ହୋଇଥିବ ପାଠକର ଚିତ୍ତପ୍ରସାରି, ଚିନ୍ତା



Digitized by srujanika@gmail.com

ଉଦ୍ରେକକାରୀ ଓ ବିନୋଦଦାୟୀ ମଧ୍ୟ । ତିନୋଟି ଯାକ ମିମିର ଶିକ୍ଷା ବିଷୟକ ଗଳ୍ପ ଏହି ଧରଣର ।

"ମିମିର ସାହିତ୍ୟ ଶିକ୍ଷା" ବାଳକ-କିଶୋରଠାରୁ ପ୍ରବୀଣ-ବୃଦ୍ଧଙ୍କ ଯାଏ ସବୁ ସ୍ତରରେ ପାଠକଙ୍କ ସବୁଠୁ ଅଧିକ ପ୍ରିୟ ଗଳ୍ପ । ଏ ଗଳ୍ପ ଘଟଣା ଆରମ୍ଭ ହୋଇଛି ସଂଜବୁଡ ପରେ- ଶେଷ ହୋଇଛି ରାତିଖିଆ ପୂର୍ବରୁ । ମୋଟ ତିନିଘଣ୍ଟା ପ୍ରାୟ ।

"ଗଳ୍ପର ପ୍ରସଙ୍ଗ ଝିଅକୁ ବାପା ସାହିତ୍ୟ ବହିର ପଦଟିଏ ବୁଝାଇଦେଇ ତାହାର ଭାବାର୍ଥ ଆଦାୟ କରୁଅଛନ୍ତି । ଭାବାର୍ଥ ପ୍ରକାଶରେ ଝିଅର ଅକ୍ଷମତା, ଅକ୍ଷମତା ସୃଷ୍ଟିରେ ବିଲେଇ, କବି ବାପୁଡା, ବାପାଙ୍କ ରୋଷ ଆଦିର ଭୂମିକା ତା ମନରେ ଯେଉଁ ଭାବାନ୍ତର ସୃଷ୍ଟି କରୁଅଛି ତା ମାଫିକ୍ ତା'ର ମୁଖମୁଦ୍ରା- ଚକ୍ଷୁବିସ୍ତାର ଆଦିର ବର୍ଣ୍ଣନା ପାଠକକୁ କୁତୁହଳୀ କରାଏ । ସବୁ ପାଠକର ବାଲ୍ୟାବସ୍ଥାରେ ଏପରି ଦୁର୍ଦ୍ଦଶାର ଊଣାଧିକ ଅଭିଜ୍ଞତା ଥିବାରୁ ପରିସ୍ଥିତି ସହିତ ତାହା ତଦାତ୍ମ୍ୟ ସୃଷ୍ଟି ହୋଇଯାଏ । ଗପଟି ଶିଶୁ ମନସ୍ତତ୍ୱଧର୍ମୀ ଗଳ୍ପଭାବେ ବହୁ ଚର୍ଚ୍ଚିତ ଓ ପ୍ରଶଂସିତ । ମାତ୍ର ବାମାଚରଣୀୟ ପରିଣତି ବିଧାନ ଶୈଳୀ ହିଁ ତାହାକୁ ସବୁ ବର୍ଗ, ସ୍ତର କାଳଉତ୍ତୀର୍ଣ୍ଣ ନିଚୋଳ ଗପଭାବେ ପ୍ରତିଷ୍ଠା ଦିଏ । ଗପର ସବାଶେଷ ଦୁଇଧାଡି ଏହିପରି-

"ହୃଦୟକୁ କେମିତି ଢ଼ାଳନ୍ତି ସେ କଥା ମୁଁ ଏପର୍ଯ୍ୟନ୍ତ ବୁଝିପାରି ନାହିଁ, ତୋତେ କ'ଣ ବୁଝାଇବି ? ଆଉ ସେ କବିତା ବୁଝିଚି ବୋଲି ମୁଁ ଭାବୁନାହିଁ" ।

ବାପାଙ୍କ ଭୟରେ ବଡ଼ବାପାଙ୍କ କୋଳରେ ଥାଇ ଭାବାର୍ଥ ପ୍ରସାରଣ କରିବାକୁ ଚେଷ୍ଟା କରୁକରୁ ଯେତେବେଳେ ମିମି ପଚାରୁଛି- ଜଗନ୍ନାଥଙ୍କର ପାଦ ନାହିଁ ମୁଁ ଦେଖିଛି । ଆଉ ହୃଦୟଟାକୁ କବିତା ଢ଼ାଳିଦେଲା । ଆଚ୍ଛା ବଡ଼ବାପା, ହୃଦୟ ଢ଼ାଳିଲା କେମିତି" ? ସେତିକିବେଳେ ଉଦ୍ଧୃତ ବାକ୍ୟ ଦୁଇଟି ବଡ଼ବାପା କହିଛନ୍ତି ଓ ଗଳ୍ପର ଇତି ଘଟିଛି ।

ମିମିର ସାହିତ୍ୟ, ଭୂଗୋଳ ଓ ବିଜ୍ଞାନ ଶିକ୍ଷା ଶିରୋନାମିତ ଗଳ୍ପତ୍ରୟୀ ସହିତ ଏପରି ଗୋଟିଏ/ଦୁଇଟି ସେଟିଂରେ ତଥା ଅଳ୍ପ ସମୟରେ ବିଖଣ୍ଡ ଗଳ୍ପଗିଡିକ ମଧ୍ୟରେ ଲେଡ୍ଡୁ, ନାରୀ ଓ କବି, ସ୍ମୃତି ରତ୍ନାକର, ପକ୍ଷାଘାତ ଇତ୍ୟାଦି ଅନ୍ତର୍ଗତ ହୋଇପାରେ । ଏହି ଗପଗୁଡିକର ପ୍ରସଙ୍ଗ ଭିନ୍ନ ହୋଇଥିବାରୁ ପରିସ୍ଥିତି ଭିନ୍ନ ହୋଇଥିବାରୁ ଭାଷା ପ୍ରୟୋଗ ଓ ଗଳ୍ପ ଉପସ୍ଥାପନା ଶୈଳୀ ମଧ୍ୟ ପରସ୍ପରଠାରୁ ଭିନ୍ନ । ତେବେ ଏହି ଗପଗୁଡିକରେ କିଛି ମନସ୍ତାତ୍ତ୍ୱିକ ଓ ତାତ୍ତ୍ୱିକ ଚର୍ଚ୍ଚା ଲେଖକଙ୍କ



Digitized by srujanika@gmail.com

ଆଡୁ ରହିଛି ଯାହା ଗଳ୍ପର ଚମକ ସୃଷ୍ଟି କରୁ ନାହିଁ ମାତ୍ର ଚରିତ୍ର ସହିତ ପାଠକର ମହାତ୍ମ୍ୟ ସୃଷ୍ଟି କରୁଛି ।

ଗଳ୍ପ ପରିସରରେ ବ୍ରହ୍ମାଣ୍ଡତତ୍ତ୍ୱ, ଖଗୋଳ, ଭୂଗୋଳ, ଇତିହାସ, ଧର୍ମ, ଦର୍ଶନର ବିଶ୍ଳେଷଣ ଗୀତା, ଭାଗବତ, ବାଇବେଲ କୁରାନ୍‌ର ପଂକ୍ତି, ମାର୍କ୍ସ-ଆଇନ୍‌ଷ୍ଟାଇନ୍-ଫ୍ରୟେଡ୍‌ଙ୍କ ମତମନ୍ତବ୍ୟ, ଗାନ୍ଧୀ ଆଦର୍ଶ ଓ ବାଣୀ ଇତ୍ୟାଦି ସହିତ ଢ଼ଗ-ଢ଼ମାଳି ଆଦିର ପର୍ଯ୍ୟାପ୍ତ ପ୍ରୟୋଗ ଗଳ୍ପର ପ୍ରସଙ୍ଗରେ କେତେବେଳେ ଉଦ୍ଧୃତି କେତେବେଳେ ଚର୍ଚ୍ଚା ସୂତ୍ରରେ ପ୍ରୟୋଗ କରି ବାମାଚରଣ ତାଙ୍କ ଗଳ୍ପକୁ ନିଖିଳ କାଳ୍ପନିକ କାହାଣୀଟିଏ କହି ପାଠକକୁ ଆମୋଦ ମାତ୍ର ଦେଇ ଠକିଦେବାପରି ମାଧ୍ୟମଟିଏ କରିନାହାନ୍ତି । ଗଳ୍ପପାଠ କରିଆରେ ପାଠକଠାରେ ଜୀବନ ଖୋଜି, ଜଗତ ଚିହ୍ନଟ ଏବଂ ଜୀବନ ଜିଇଁବାର କଳା ପ୍ରବଣତା ସୃଷ୍ଟି କରାଇବାର ସାରସ୍ୱତ ସଦିଚ୍ଛା ବାମାଚରଣଙ୍କ ଗଳ୍ପରେ ଅବଶ୍ୟଥାଏ । ତାହା ହିଁ ବାମାଚରଣଙ୍କ ଗଳ୍ପକୁ ସମକାଳୀନ ଲେଖକଙ୍କଠାରୁ ପୃଥକ୍ ରୂପେ ପ୍ରତିଷ୍ଠା ଦିଏ ।

ଏହାକୁ ବାମାଚରଣଙ୍କ ଶୈଳୀ ହିଁ ବୁଝିବା ।

ଯେତେବେଳେ ତତ୍ତ୍ୱ ଓ ଦର୍ଶନ ଗୁଣପାଇଁ ଗୁଣବୁଝିବା ଉପଲକ୍ଷଂରେ ଗୁଣଗ୍ରାହୀଭାଷାରେ ପ୍ରକାଶ ପାଏ- ସେତେବେଳେ ତାହାହିଁ ସାହିତ୍ୟ ହୁଏ । ସେହି ଦୃଷ୍ଟିରୁ ବାମାଚରଣଙ୍କ ଗଳ୍ପ ସାହିତ୍ୟ ଆତ୍ମିକ ଦିଗରେ ନହେଉ ପ୍ରକାଶ ଶୈଳୀରେ ଅନ୍ତତଃ ତାହାହିଁ କରିବାର ସୁଯୋଗ ନିଏ ।

କେହି କେହି ଏହାକୁ ଗଳ୍ପରେ ରମ୍ୟରଚନା ଧର୍ମର ଉପସ୍ଥିତି, ଲେଖକ ଏବଂ ଅନାବଶ୍ୟକ ଅନୁପ୍ରବେଶ, ଲଗାମହୀନ ବର୍ଣ୍ଣନା ପ୍ରବଣତା ଏପରିକି ଆଂଶିକ ଗଳ୍ପରଚନା ବିଫଳତା କହିପାରନ୍ତି ମାତ୍ର ବାମାଚରଣଙ୍କ ଗଳ୍ପ ପଢ଼ି ପାଠକ ପ୍ରସାରିତ ହୁଏ- ବିସ୍ତାରିତ ହୁଏ- ଉତ୍‌ଗମିତ ମଧ୍ୟ ହୋଇଯାଏ ।

ମୋଟ ଉପରେ ଖୁବ୍ ପରୀକ୍ଷାଧର୍ମୀ, ଆଙ୍ଗିକ ବୈଚିତ୍ର୍ୟଯୁକ୍ତ କିମ୍ବା ନିର୍ଦ୍ଦିଷ୍ଟ ଶୈଳୀଟି ଭାଷାରୀତି ପ୍ରବର୍ତ୍ତକ କଥାକାରଭାବେ ବାମାଚରଣ ଗଣାହୁଅନ୍ତି ନାହିଁ । ମାତ୍ର ମୁକ୍ତ ପ୍ରଥାବଦ୍ଧଭାବେ ମୁକ୍ତଆଙ୍ଗିକ ପ୍ରୟୋଗ କରିଥିବା ଗଳ୍ପକାର ଭାବେ ବାମାଚରଣଙ୍କୁ ସମ୍ମାନ ଦିଆଯାଇପାରେ । ସେ ଦୃଷ୍ଟିରୁ ସେ ଜଣେ ପୃଥକ୍ ଓ ସ୍ୱତନ୍ତ୍ର କଥାକାର ।

ପତ୍ରିକା : ସାରସ୍ୱତ ସାରାଂଶ

ଶାରଦୀୟ ବିଶେଷାଙ୍କ - ୨୦୧୫





Digitized by srujanika@gmail.com

# ଚନ୍ଦ୍ର ଓ ଚମ୍ପା; ଇତିହାସ ଓ କଳ୍ପନାର ଏକ ସମନ୍ୱୟ ସଂରଚନା

ଡ. ଭାଗ୍ୟଲିପି ମଲ୍ଲ

ଜୀବନବୋଧ, ରସବୋଧ, ପ୍ରଜ୍ଞା-ପାଣ୍ଡିତ୍ୟ ସହ ଚଟୁଳ ହାସ୍ୟରସର ପ୍ରୟୋଗ କରି ଓଡ଼ିଆ ଗଦ୍ୟ ସାହିତ୍ୟକୁ ନାନା ଭାବେ ରଞ୍ଜିତ କରିଥିବା ବାମାଚରଣ ମିତ୍ରଙ୍କ ସଂପର୍କରେ ପର୍ଯ୍ୟାପ୍ତ ଆଲୋଚନା ଏଯାବତ୍ ହୋଇଥିବା ମନେ ହୁଏନାହିଁ । ସରଳଭାଷା, ଅସାମାନ୍ୟ ଶୈଳିକ ସିଦ୍ଧି, ମାନବ ପ୍ରେମ ତଥା ବହୁଶାସ୍ତ୍ର ଦର୍ଶିତା, ବାମାଚରଣଙ୍କ ସୃଜନର ମୂଳଭୂମି । ତାଙ୍କ ସୃଷ୍ଟି ବାଙ୍ମୟ, ହୃଦୟବତ୍ତାର ପ୍ରସାରିତ ଦିଗନ୍ତର ସ୍ପର୍ଶରେ ଅନୁରଣିତ । ଜୀବନର ବହୁମୁଖୀତାର ପ୍ରକାଶ ହିଁ ତାଙ୍କ ରଚନାର ବର୍ଣ୍ଣିଳ ବିଭବ ।

ଓଡ଼ିଆ ଗଦ୍ୟସାହିତ୍ୟରେ ପ୍ରାୟ ସବୁ ବିଭାଗରେ ବାମାଚରଣ କଲମ ଚାଳନା କରିଛନ୍ତି । ଯଦିଓ ଗାଳ୍ପିକ ଭାବେ ତାଙ୍କର ଆଦର ବେଶୀ, ତଥାପି ଉପନ୍ୟାସ, ପ୍ରବନ୍ଧ, ନାଟକ ଇତ୍ୟାଦିରେ ସିଦ୍ଧି ଯଥେଷ୍ଟ । ଶିଶୁମନସ୍ତତ୍ୱକୁ ନେଇ ତାଙ୍କର 'ମିମିର ସାହିତ୍ୟ ଶିକ୍ଷା' ବା 'ମିମିର ସଭ୍ୟତା ଶିକ୍ଷା' ଏଯାଏ ଓଡ଼ିଆ ଗଳ୍ପ ସାହିତ୍ୟରେ ଅନତିକ୍ରମ ଗଳ୍ପ ଓ ଅନେକ ବିଶ୍ୱ ସାହିତ୍ୟର ପ୍ରସିଦ୍ଧ ଗଳ୍ପକୁ ମଧ୍ୟ ଅନୁବାଦ କରିଛନ୍ତି ।



Digitized by srujanika@gmail.com

ଏହା ବ୍ୟତୀତ ଶାସ୍ତ୍ରୀୟ ସଙ୍ଗୀତରେ ମଧ୍ୟ ତାଙ୍କର ଅଗାଧ ଜ୍ଞାନକୁ ଅସ୍ୱୀକାର କରାଯାଇ ନପାରେ । ଏଣୁ ସାହିତ୍ୟ, ସଙ୍ଗୀତ, ମନସ୍ତତ୍ତ୍ୱ ତଥା ଚରିତ୍ର ମାନଙ୍କର ନିବିଡ ଅଧ୍ୟୟନ, ବାମାଚରଣଙ୍କୁ ଦେଇଥିଲା ଏକ ଅନନ୍ୟ କାହାଣୀ ରଚନାର ବିଶ୍ୱାସ ଓ କ୍ଷମତା । ତାଙ୍କ ରଚନାରେ ତେଣୁ ଅନନୁଭୂତ ଅନୁଭୂତି ଓ ଘଟଣା ପ୍ରବାହର ଧାରା ଏକ ସାଙ୍ଗୀତିକ ପ୍ରବାହରେ ହେଉଥିଲା ପ୍ରବାହିତ । ସମାଜ ଓ ସଂସ୍କୃତିର ଅପୂର୍ବ ସଂଶ୍ଳେଷଣ ମାଧ୍ୟମରେ ନୂତନ ମାନବିକ ମୂଲ୍ୟବୋଧର ପ୍ରତିଷ୍ଠା ତଥା ଜୀବନାନୁଭୂତିରେ ରସାଣିତ ଆଧ୍ୟାତ୍ମିକତାରେ ସିକ୍ତ ମହନୀୟ ପ୍ରାଣପ୍ରବାହ ହିଁ ତାଙ୍କ ସୃଜନର ଭାବବସ୍ତୁ ।

ପାରମ୍ପରିକ ବିଶ୍ୱାସବୋଧ, ବୃହତ୍ତର ମାନବଗୋଷ୍ଠୀର ସତ୍ୟାନୁସରଣ, ଅନ୍ତର୍ନିହିତ ସୌନ୍ଦର୍ଯ୍ୟର ଉର୍ଦ୍ଧ୍ୱାୟନ, ଇତିହାସର ପୁର୍ନମୂଲ୍ୟାୟନ, ଚିରନ୍ତନତା ଓ ଶାଶ୍ୱତ ଜୀବନର ଦୀପ୍ତିମୟ ଆବାହନ ହିଁ ବାମାଚରଣଙ୍କ ସାରସ୍ୱତ ବିଭବ । ଇତିହାସ ଭିତରେ ଜୀବନର ଅନ୍ୱେଷଣ କରିବାକୁ ଯାଇ ସେ ରଚନା କରିଛନ୍ତି 'ଚନ୍ଦ୍ର ଓ ଚମ୍ପା ଉପନ୍ୟାସ । ଏହା ଏଯାବତ୍ ଏକ ବହୁଚର୍ଚ୍ଚିତ ଗଦ୍ୟକାବ୍ୟ । ଏହି ଉପନ୍ୟାସ ପ୍ରଥମେ 'ଝଙ୍କାର' ପତ୍ରିକାର ସପ୍ତମ ବର୍ଷ ଦଶମ ସଂଖ୍ୟାର ଧାରାବାହିକ ଭାବେ ଆରମ୍ଭ ହୋଇ ଅଷ୍ଟମ ବର୍ଷ ଦ୍ୱାଦଶ ସଂଖ୍ୟାରେ ଶେଷ ହୋଇଛି ୧୯୫୭ ମସିହାରେ । ଆପଣମାନେ ଜାଣନ୍ତି ଏହା ସମରସେଟ୍ ମାମ୍‌ଙ୍କ ଛାୟାରେ ରଚିତ ହୋଇଥିବାର ସୂଚନା ରହିଛି । ପରେ ପରେ ୧୯୫୮ ମସିହାରେ 'ପରାଗ' ଶୀର୍ଷକରେ ଏହା ପୁସ୍ତକର ଆକାରରେ ପ୍ରକାଶ ପାଏ । ଡାକ୍ତର ମହୀନ୍ଦ୍ରଲାଲ୍ ବୋଷଙ୍କ ପରାମର୍ଶ କ୍ରମେ ଏହି ଶୀର୍ଷକ ଦେଇଥିଲେ ବୋଲି ନିଜେ କହିଛନ୍ତି । ଏତିକି ଛଡା ଆଉ କିଛି କାରଣ ଜଣାଯାଏ ନାହିଁ । 'ପରାଗ' ପ୍ରକାଶିତ ହେବାପରେ ପୁନର୍ବାର 'ଚନ୍ଦ୍ର ଓ ଚମ୍ପା' ନାଁରେ ପ୍ରକାଶିତ ହୋଇଥିବା ପୁସ୍ତକରେ ସାମାନ୍ୟ ପରିବର୍ତ୍ତନ ପରିଲକ୍ଷିତ ହୁଏ । ଏହି ପରିବର୍ତ୍ତନ ଗୁଡିକ କେବଳ କ୍ରିୟାପଦ ଓ ବାକ୍ୟଗଠନର ଭିତରେ ସୀମିତ । କାହାଣୀରେ କୌଣସି ଉଲ୍ଲେଖନୀୟ ପରିବର୍ତ୍ତନ ହୋଇନାହିଁ ।

ଏହାର ସଂଶୋଧିତ ଓ ପରିବର୍ତ୍ତିତ ୨ୟ ସଂସ୍କରଣ ୧୯୬୮ରେ କଟକ ଷ୍ଟୁଡେଣ୍ଟସ୍ ଷ୍ଟୋର ଦ୍ୱାରା ପ୍ରକାଶିତ ହୋଇଛି । ୧୯୬୮ରେ ପାଠକୁ ପରବର୍ତ୍ତୀ ସଂସ୍କରଣ ତଥା ବାମାଚରଣ ରଚନା ସମଗ୍ର-୩ରେ ସ୍ଥାନିତ ହୋଇଛି । 'ଚନ୍ଦ୍ର ଓ ଚମ୍ପା'ର ୩ୟ ସଂସ୍କରଣ (କଟକ ଷ୍ଟୁଡେଣ୍ଟସ୍ ଷ୍ଟୋର- ୧୯୮୦)ର ସୂଚନାରେ



Digitized by srujanika@gmail.com

ବାମାଚରଣ ଏଥିରେ ଏକ ଉପନ୍ୟାସର ଆରମ୍ଭରେ ସୂଚନା ପ୍ରଦାନ କରିଥିଲେ । ତାହା ଏମିତି କଥାକୁହ... ହେ ଅନାଦି ! ହେ ଅତିତ । ନବବଧୂ ପରି ତୁମେ ଚିରଦିନ ନୀରବ । ସାହିତ୍ୟିକମାନେ ସେମାନଙ୍କ କଳ୍ପନା ସାହାଯ୍ୟରେ ତୁମକୁ କଥା କୁହାଇବାକୁ ଚେଷ୍ଟା କରିଛନ୍ତି, ତୁମେ କେବଳ ସ୍ମିତହାସ୍ୟ କରିଛ । ମୁଁ ଜଣେ ଅପଟୁ ସାହିତ୍ୟିକ ମାନେ ସେମାନଙ୍କ କଳ୍ପନା ସାହାଯ୍ୟରେ ତୁମକୁ କଥା କୁହାଇବାକୁ ଚେଷ୍ଟା କରୁଛି, ଜାଣେନା ଏ ଚେଷ୍ଟା ତୁମ ଅଧରରେ କି ଭାବ ଫୁଟାଇବ ? ଉପନ୍ୟାସ ପଢ଼ିଲାବେଳେ ବୈଦିକ କାଳରୁ ଖ୍ରୀ; ପୂ ଦ୍ୱିତୀୟ ଶତାବ୍ଦୀ ପର୍ଯ୍ୟନ୍ତ ବା ଖାରବେଳଙ୍କ ପର୍ଯ୍ୟନ୍ତ ଆମେ ଭାରତୀୟ ଦର୍ଶନ ଓ ଧର୍ମ ବିଚାର ସଂପର୍କରେ ସୂଚନା ପାଉ । ବୈଦିକ ବ୍ରାହ୍ମଣ୍ୟବାଦର ପ୍ରଭାବ, ପରବର୍ତ୍ତୀ କାଳରେ ଜୈନ, ବୌଦ୍ଧଙ୍କ ବେଦ ବିରୋଧୀ ମାନସିକତା, ଭାରତୀୟ ବିଚାରର ପ୍ରତୀକ । ଯେଉଁଥିପାଇଁ ଜୈନ ଓ ବୁଦ୍ଧଙ୍କୁ ନାସ୍ତିକ ଭାବରେ ଗ୍ରହଣ କରାଯାଇଛି । ସମକାଳୀନ ଦର୍ଶନ, ରାଜନୀତି ଓ ଧର୍ମାଚାର କିପରି ସମାଜ ଜୀବନକୁ ସଂକ୍ରମିତ କରିଛି ବାମାଚରଣ ମିତ୍ରଙ୍କ 'ଚନ୍ଦ୍ର ଓ ଚମ୍ପା' ତାହାର କଥାୟନ ।

'ଚନ୍ଦ୍ର ଓ ଚମ୍ପା' ସେହି ଅତୀତର କଥା ଇତିହାସ ଏହାର ମର୍ମଭୂମି । ଏହି କାହାଣୀ ଭାଗକୁ ସ୍ପଷ୍ଟକରିବା ପାଇଁ ସୂଚନାଟିଏ ଯୋଡିଛନ୍ତି ଔପନ୍ୟାସିକ । ଖ୍ରୀ:ପୂ ପ୍ରଥମ ଶତାବ୍ଦୀଠୁ ଖ୍ରୀଷ୍ଟୀୟ ପ୍ରଥମ ଶତାବ୍ଦୀର ଉତ୍କଳର ଇତିହାସର କଥା କୁହାଯାଇଛି ।

ମହାମେଘବାହାନ ଐର ଖାରବେଳଙ୍କ ରାଜତ୍ୱ ସମୟରେ କଳିଙ୍ଗ ସୀମା ଉତ୍ତରରେ ଗଙ୍ଗାଠାରୁ ଦକ୍ଷିଣରେ କାବେରୀ ଏବଂ ପଶ୍ଚିମରେ ପଞ୍ଜାବଠୁ ପୂର୍ବରେ ବଙ୍ଗ ପର୍ଯ୍ୟନ୍ତ ବିସ୍ତାର ଲାଭ କରିଥିଲା । କରିଙ୍ଗର ଏହି ସୁବର୍ଣ୍ଣ ଯୁଗରେ ଅନେକ ସାଂସ୍କୃତିକ, ରାଜନୈତିକ ଓ ଆଧାତ୍ମିକ ଉତ୍କର୍ଷ ସାଧିତ ହୋଇଥିଲା ।

ହାତୀଗୁମ୍ଫା ଶିଳାଲେଖରୁ ଖାରବେଳଙ୍କ ଶାସନର କ୍ଷମତା ଓ ଦକ୍ଷତା ପ୍ରତିପାଦିତ ହୁଏ । ଖାରବେଳଙ୍କ ଧର୍ମନିରପେକ୍ଷତା ସପକ୍ଷରେ ବହୁ ପ୍ରମାଣ ଏଥିରୁ ମିଳେ । ସେଥିପାଇଁ ତାଙ୍କ ରାଜତ୍ୱ ସମୟରେ ସାଂପ୍ରଦାୟିକ ହିଂସା ପ୍ରଶମିତ ହୋଇ ବିଭିନ୍ନ ଧର୍ମର ସମ୍ମିଳିତ ଶକ୍ତି ଉତ୍କଳର ସାଂସ୍କୃତିକ ପରିମଣ୍ଡଳକୁ ମହୀୟାନ୍ ଓ ଗରୀୟାନ୍ କରିଥିଲା ।

ଆଲୋଚକମାନଙ୍କ ମତରେ ୪୦୦୦ ବର୍ଷ ତଳେ ବେଦ ରଚିତ ହୋଇଥିଲା । ଶେଷରେ ହେଲା ବ୍ରାହ୍ମଣ୍ୟ ଯୁଗର ସୃଷ୍ଟି । ଏହି ସମୟରେ



Digitized by srujanika@gmail.com

ନାରୀମାନଙ୍କ ସ୍ୱାଧୀନତା ହ୍ରାସ ପାଇଲା । ଶୁଦ୍ରମାନେ ଦଳିତ ହୋଇ ରହିଲେ । ଯଜ୍ଞ ପାଇଁ ପଶୁବଳିକୁ ପ୍ରୋତ୍ସାହନ ଦିଆଗଲା । ବ୍ରାହ୍ମଣଧର୍ମର ଏକଚ୍ଛତ୍ରବାଦୀ ଶାସନ ଫଳରେ ସମାଜ ଜୀବନ ବିପର୍ଯ୍ୟସ୍ତ ହୋଇଉଠିଲା ।

ଏହି ସମୟରେ ଆବିର୍ଭାବ ହେଲା ବୁଦ୍ଧଦେବଙ୍କର, ମହାବୀରଙ୍କର । ଏମାନଙ୍କର ଉଦାରଧର୍ମବାଦ ଜନସାଧାରଣଙ୍କୁ ଆକୃଷ୍ଟ କରିଥିଲା । ପରବର୍ତ୍ତୀ ସମୟରେ ସମ୍ରାଟ ଅଶୋକ ବୌଦ୍ଧ ଧର୍ମର ନୂତନ ନୀତି ସଂଯୋଜିତ କରି ଏହାକୁ ଗାର୍ହସ୍ଥ୍ୟ ଧର୍ମରେ ପରିଣତ କରିଥିଲେ । ବୁଦ୍ଧଙ୍କ ମହାନିର୍ବାଣର ଶହେବର୍ଷ ପରେ ମତଭେଦ ଦେଖାଦେଲା । ମହାଯାନ ଓ ହୀନଯାନ ପରି ଦୁଇଦଳରେ ବିଭକ୍ତ ହେଲା ବୌଦ୍ଧ ସଂପ୍ରଦାୟ । ଏଥିରେ ପୁନଶ୍ଚ ଅନେକ ନିୟମ ପରିବର୍ତ୍ତନ ହେଲା ଓ ସଂଯୋଜିତ ହେଲା । ଅଶୋକଙ୍କ କଳିଙ୍ଗ ଅଧିକାରର ୫୦ ବର୍ଷ ପରେ ସମ୍ରାଟ ଖାରବେଳଙ୍କ ଆବିର୍ଭାବ । ଖାରବେଳଙ୍କ ନେତୃତ୍ୱରେ କଳିଙ୍ଗ, 'କଳିଙ୍ଗାଃ ସାହାସିକାଃ' ନାମରେ ବିଖ୍ୟାତ ହେଲା । କଳିଙ୍ଗକୁ ସ୍ୱାଧୀନ କରିବା ପରେ ସମ୍ରାଟ ଖାରବେଳ ଅନେକ ରାଜ୍ୟ ଜୟକରି କଳିଙ୍ଗର ସୀମାକୁ ବିସ୍ତାର କରିଥିଲେ । ଖାରବେଳଙ୍କ ସମୟରେ ପୁଷ୍ୟମିତ୍ର ବ୍ରାହ୍ମଣ୍ୟବାଦର ପ୍ରଚାର ଓ ପ୍ରସାର ନିମନ୍ତେ ମୌର୍ଯ୍ୟବଂଶର ଶେଷ ସମ୍ରାଟଙ୍କୁ ହତ୍ୟା କରିଥିଲେ । ଖାରବେଳଙ୍କ ସମୟରେ ସମାଜରେ ଧର୍ମକୁ ନେଇ ଯେଉଁ ନାରକୀୟ ଲୀଳା ସଂଗଠିତ ହୋଇଥିଲା, ତାହାକୁ ଭିତ୍ତି କରି 'ଚନ୍ଦ୍ର ଓ ଚମ୍ପା' ଉପନ୍ୟାସ ଗତିଶୀଳ । ଦୁଇହଜାର ବର୍ଷ ତଳର ଓଡ଼ିଶାର ଇତିହାସ, ତଥା ତତ୍କାଳିକ ସାମାଜିକ ଓ ସାଂସ୍କୃତିକ ଜୀବନର ପ୍ରତିଫଳନ ଘଟିଛି ଆଲୋଚ୍ୟ ଉପନ୍ୟାସର ।

'ଚନ୍ଦ୍ର ଓ ଚମ୍ପା' ଉପନ୍ୟାସର କାହାଣୀ ପକ୍ଷଟି କାଳ୍ପନିକ । ଉପନ୍ୟାସର ମୁଖବନ୍ଧରେ ନିଜେ ଔପନ୍ୟାସିକ ଲେଖିଛନ୍ତି: "ଏ ଆଖ୍ୟାୟିକାଟି କାଳ୍ପନିକ ହେଲେ ହେଁ ଏହାର ଭିତ୍ତି ଇତିହାସ ଉପରେ । ସେ ଇତିହାସ ପୁଣି ଅନ୍ଧକାରର ଗହ୍ୱରରେ । ଯେଉଁ ଦୁଇ ତିନୋଟି ଆଲୋକରେଖା ଅନ୍ଧକାର ଭେଦକରି ସେ ଇତିହାସ ଉପରେ ପଡିଛି, ତାହା ହିଁ ଏ ଆଖ୍ୟାୟିକାର ଭିତ୍ତି" ।

ସେତେବେଳେ ସମଗ୍ର ଭାରତବର୍ଷରେ ଇତିହାସ, ଧର୍ମ, ଦର୍ଶନ ଭିତ୍ତିକରି ଅନେକ କାଳଜୟୀ ଉପନ୍ୟାସ ସୃଷ୍ଟି ହୋଇଥିଲା । ରାହୁଲ ସାଂସ୍କୃତ ବିଷ୍ଣୁରାମ ଖଣ୍ଡେକର, ଗୁରୁଦତ୍ତ, ହଜାରୀ ପ୍ରସାଦ ଦ୍ୱିବେଦୀଙ୍କ ଉପନ୍ୟାସକୁ ଏହି ପ୍ରସଙ୍ଗରେ ସ୍ମରଣ କରାଯାଇପାରେ । ଇତିହାସକୁ ବାସ୍ତବତାର ଭିତ୍ତିଭୂମିରେ ଠିଆକରି



Digitized by srujanika@gmail.com

କ୍ଲାସିକ ପର୍ଯ୍ୟାୟକୁ ଉନ୍ନୀତ କରିବା ପାଇଁ ଯେଉଁ କେତେଜଣ ଔପନ୍ୟାସିକ ସଫଳ ହୋଇଛନ୍ତି ସେମାନଙ୍କ ମଧ୍ୟରୁ ବାମାଚରଣ ଓ ତାଙ୍କ ଚନ୍ଦ୍ର ଚମ୍ପା ସେହି ସିଦ୍ଧି ପ୍ରାପ୍ତ ବୋଲି ମନେହୁଏ ।

ଚାର୍ବାକ୍‌ଙ୍କୁ କ୍ଷମତାର ଅମାନୁଷିକ ଆଚରଣରେ ପୃଥିବୀ ଛାଡିବାକୁ ପଡିଛି । ବେଦ ଓ ବ୍ରାହ୍ମଣ୍ୟବାଦକୁ ଅସ୍ୱୀକାର କରି ଏକ ନାସ୍ତିକ ଦର୍ଶନର ପ୍ରତିଫଳନ ହୋଇଛି ଆଲୋଚ୍ୟ ଉପନ୍ୟାସରେ । ଚାର୍ବାକ୍‌ଙ୍କର ଜୀବନବାଦୀ ଦର୍ଶନ ଓ ଚିନ୍ତାଧାରାର ଅନୁପମ ବ୍ୟାଖ୍ୟାନ ଘଟିଛି ଏଥିରେ । ବେଦକୁ ଅସ୍ୱୀକାର କରିଛନ୍ତି ସେ । ପ୍ରତ୍ୟକ୍ଷବାଦୀ । ସଂସାର ଯାତ୍ରାରେ ପରସ୍ପର ପରସ୍ପର ପାଖରେ ଋଣୀ । ମାତ୍ର ଋଣଂ କୃତ୍ୱା ଘୃତଂ ପିବତେ, ଯାବତ୍ ଜୀବେତ ସୁଖଂ ଜୀବେତ୍‌ର ପରିପନ୍ଥୀ । ସଂସାର ଯାତ୍ରାରେ ପ୍ରତ୍ୟେକ ବ୍ୟକ୍ତି ସ୍ୱୟଂ ସଂପୂର୍ଣ୍ଣ ନୁହେଁ । ଆ-ମୃତ୍ୟୁ ଋଣଗ୍ରସ୍ତ । ପ୍ରତି ମୁହୂର୍ତ୍ତରେ ବିଭିନ୍ନ ବ୍ୟକ୍ତିଙ୍କ ପାଖରେ ଏହି ଋଣଗ୍ରସ୍ତତାକୁ ଯଦି ସ୍ୱୀକାର କରିବ, ସେ ସ୍ୱାର୍ଥପରତା ପରି ଏକ ଶହାବ୍ୟାଧିରେ ସଂକ୍ରମିତ ହେବନାହିଁ । ଅନ୍ୟ ସକଳଙ୍କ ଭିତରେ ନିଜକୁ ଦେଖିପାରିବ ଏବଂ ସକଳଙ୍କୁ ନିଜ ଭିତରେ ଦେଖିବ । ସଂସାର ସହିତ ଯୋଡି ହୋଇଯିବ ଚାର୍ବାକ୍‌ଙ୍କ ଏହି ଦର୍ଶନକୁ ସେ ସମୟରେ ଅନ୍ୟମାନେ ଗ୍ରହଣ କରିନାହାନ୍ତି । କ୍ଷମତା, ତାଙ୍କ ବିଚାରରେ ପ୍ରତିଶୋଧ ନେଇଛି । ଚାର୍ବାକ୍‌ଙ୍କ ହତ୍ୟା କରାଯାଇଛି । ବାମାଚରଣ ମିତ୍ର ଏହି ଦର୍ଶନକୁ ନିଜ ଶୈଳୀରେ ଉପସ୍ଥାପନା କରିଛନ୍ତି । ପ୍ରେମ, କ୍ଷମତା, ଧର୍ମ ଓ ତ୍ୟାଗ କଥା କହିଛନ୍ତି । ସେ ପୁଣି କହିଛନ୍ତି- ଋଣୀ ବ୍ୟକ୍ତି ସବୁଠାରୁ ଦୁଃଖୀ । କାରଣ ସମ୍ପର୍କ ସବୁବେଳେ ଆର୍ଥଆଧାରିତ ନୁହେଁ । ସଂସାରରେ ଅନେକ ବ୍ୟକ୍ତି ଅନ୍ୟଠୁ ଋଣ କରି ପୁର୍ଣ୍ଣଗର୍ଭ ହୋଇଛନ୍ତି ଏବଂ ଭୁଲି ଯାଇଛନ୍ତି । ମାତ୍ର ବାସ୍ତବତା ତାହା ନୁହେଁ । ବାସ୍ତବତା-ମୁଁ ବଞ୍ଚିବା ଦରକାର, ମୋର ସୁଖ ଦରକାର । ମାତ୍ର 'ମୁଁ' କେବଳ ବଞ୍ଚିବା ଏକମାତ୍ର ସତ୍ୟ ନୁହେଁ । ଜଣେ ଅନ୍ୟମାନଙ୍କ ଭିତରେ ବଞ୍ଚିବାରେ ହିଁ ତାର ପୂର୍ଣ୍ଣତା ଅଛି । ମୁଁ କେବଳ ବଞ୍ଚିବି ହେଉଛି- ଏକ ନକରାତ୍ମକ ବିଚାର ମାତ୍ର ଏଠି ଚମ୍ପାର ଉଦାରତା, ପରିସ୍ଥିତି ଭିତରେ, ପାପ ପୁଣ୍ୟର ଉର୍ଦ୍ଧ୍ୱରେ ହିଁ ଜୀବନ ଅଛି । ସଂସାରରେ ପାପ ବୋଲି କିଛି ନାହିଁ । ଏକ ମାତ୍ର ସତ୍ୟ ଜୀବନ । ଚନ୍ଦ୍ର ଓ ଚମ୍ପାରେ ପ୍ରତିଫଳିତ ହୋଇଛି ପ୍ରେମ ଶାସନ ଓ ଧର୍ମର ଦର୍ଶନ । ଖାଲି ଚାର୍ବାକ ନୁହଁନ୍ତି ଚାଣକ୍ୟଙ୍କ ଦର୍ଶନକୁ ମଧ୍ୟ ଉପନ୍ୟାସର ଅନୁରୂପ ଗୁରୁତ୍ୱ ଦେଇଛନ୍ତି । ରାଷ୍ଟ୍ରୀୟ ସମ୍ପତ୍ତି କରିବାର



Digitized by srujanika@gmail.com

ମାନସିକତାକୁ ବିରୋଧ କରିଛନ୍ତି । ଲାଗେ, ଏଠି ଉପନ୍ୟାସର ଅନ୍ୟତମ ନାୟକ ଯେମିତି ଚାଣକ୍ୟ । ଏକ ଆଦର୍ଶ ରାଷ୍ଟ୍ରର ସ୍ୱରୂପ ସଂକ୍ରାନ୍ତରେ ବକ୍ତବ୍ୟ ମଧ୍ୟ ଏହି ଉପନ୍ୟାସରେ ସ୍ପଷ୍ଟ ହୋଇଛି । ତା' ସହିତ କ୍ଷମତା ଏବଂ ରାଷ୍ଟ୍ର ଚିନ୍ତକର ଚିନ୍ତା ଭିତରେ ଦେଖାଦେଇଛି ଦ୍ୱନ୍ଦ୍ୱ । ନାରୀ ତା'ର କ୍ଷମତା ଜାହିର କରିବାକୁ ଚେଷ୍ଟା କରିଛି । ଏଣୁ ଏହା ଇତିହାସକୁ ଆଧାର କରି ବି କାଳ୍ପନିକ ଏବଂ କଳ୍ପନାର ପଲ୍ଲବ ନ ଥାଇ ବି ସାମାଜିକ । ତତ୍କାଳୀନ ପ୍ରେକ୍ଷାରେ ବ୍ୟକ୍ତିତ୍ୱର ଅସ୍ମିତା ପ୍ରକଟନ ହିଁ ଏହି ଉପନ୍ୟାସର ମୂଳଲକ୍ଷ୍ୟ ଏବଂ ବ୍ୟକ୍ତିତ୍ୱର ପ୍ରତିଷ୍ଠା ପାଇଁ ଧର୍ମର ଦୁରୁପଯୋଗ, ତଥା ଏହି ଧର୍ମର ପ୍ରତିଷ୍ଠା ପାଇଁ ବିଭିନ୍ନ ଧର୍ମ ସଂପ୍ରଦାୟ ଚକ୍ରାନ୍ତ । ଧର୍ମ ନାମରେ ଯୌନ ବ୍ୟଭିଚାରର ଚିତ୍ର ଏଥିରେ ସ୍ପଷ୍ଟଭାବେ ଅଙ୍କିତ ହୋଇଛି । ବୌଦ୍ଧଧର୍ମର କ୍ରମଃବିଲୁପ୍ତି ତଥା ବ୍ରାହ୍ମଣ୍ୟବାଦର ଆବିର୍ଭାବ ପୃଷ୍ଠଭୂମି ଉପରେ ଗତିଶୀଳ ଚନ୍ଦ୍ର ଓ ଚମ୍ପା ଉପନ୍ୟାସ ।

ଚମ୍ପା ଉପନ୍ୟାସର ନାୟିକା । ଯିଏ ଏକ ଦୁର୍ଘଟଣାରେ ଚଳତ୍‌ଶକ୍ତି ହରାଏ । ସେ ପଙ୍ଗୁ ହୋଇଯିବାରୁ ତାକୁ ପ୍ରେମ କରୁଥିବା ଚନ୍ଦ୍ର ତା'ଠାରୁ ଦୂରେଇଯାଏ । ଏକ ପ୍ରାଚୀନ ମନ୍ଦିର ପ୍ରାଙ୍ଗଣରେ, ଏକ ଉତ୍ସବ ମୁହୂର୍ତ୍ତରେ ଚମ୍ପା, ଏକ ସୁନ୍ଦର ବାଳକକୁ ଭେଟେ । ସେ ବାଳକ ଚମ୍ପାକୁ କୁହେ; ସୋମଦତ୍ତଙ୍କ ତିନିପୁଅଙ୍କ ଭିତରୁ ଯେଉଁ ପୁଅ ସବୁଠୁ ଧାର୍ମିକ ସେ ଯଦି ତୁମକୁ ଆଶାବାଡି ଫିଙ୍ଗି ଚାଲିବାକୁ ଆଦେଶ ଦିଏ, ତେବେ ତୁମର ଗୋଡ ତୁମେ ଫେରିପାଇବ" । ବାଳକର ଏହି କଥାକୁ ଭଗବାନଙ୍କ ଆଦେଶ ମନେ କରି ଚମ୍ପା, ମା ଓ ମଧୁକରଙ୍କ ଆଗେ ପ୍ରକାଶ କରେ । ସୋମଦତ୍ତ, ସୁଖୀପଲ୍ଲୀର ଜଣେ ଦରିଦ୍ର ବ୍ରାହ୍ମଣ । ଜ୍ୟେଷ୍ଠ ପୁତ୍ର ମହାକାଞ୍ଚନ, ପାତଞ୍ଜଳି ଶିଷ୍ୟ ବେଦବିତ୍ ତା ପରବର୍ତ୍ତୀ ପର୍ଯ୍ୟାୟରେ ରାଜା ପୁଷ୍ୟାମିତ୍ରଙ୍କର ପ୍ରଧାନ ଅମାତ୍ୟ । ସେ ହିଁ ବୌଦ୍ଧଧର୍ମର ପତନ ଘଟାଇ ବ୍ରାହ୍ମଣଧର୍ମ ପରିବର୍ତ୍ତନରେ ସଫଳ ହୋଇଥିଲେ । ସୋମଦତ୍ତଙ୍କ ଦ୍ୱିତୀୟ ପୁତ୍ର, ଏକଦା ସମ୍ରାଟ ଖାରବେଳଙ୍କୁ ସିଂହ କବଳରୁ ବଞ୍ଚାଇ ମହାସେନାଧ୍ୟକ୍ଷ ପଦରେ ନିଯୁକ୍ତି ହୋଇଛନ୍ତି । ତୃତୀୟପୁତ୍ର ମହାସାର ଅନ୍ୟ ଜାତିର କନ୍ୟାକୁ ବିବାହ କରି ବ୍ରାହ୍ମଣ ଜାତିରୁ ବିତାଡିତ ହୋଇଛନ୍ତି । ଚମ୍ପା ଦେଖିଥିବା ସେହି ଚମତ୍କାର, ସୁନ୍ଦର ବାଳକକୁ ବିଭିନ୍ନ ସଂପ୍ରଦାୟ ନିଜ ଧର୍ମର ଆରାଧ୍ୟ ଦେବତା ଭାବେ ପ୍ରମାଣ କରିବାକୁ, ପ୍ରତିଯୋଗିତା ଆରମ୍ଭ କରିଛନ୍ତି । ମହାସିଦ୍ଧ ମହାକାଞ୍ଚନ, ବା ମହାଶକ୍ତିଶାଳୀ ମହାକାଳ ଉପଦେଶ ଦେବାପରେ ବି ଚମ୍ପାର ବିଡମ୍ବିତ ଭାଗ୍ୟରେ କୌଣସି ପରିବର୍ତ୍ତନ ହୋଇନାହିଁ,



Digitized by srujanika@gmail.com

ମାତ୍ର ସମସ୍ତଙ୍କ ଘୃଣାର ପାତ୍ର, କଳଙ୍କିତ ମହାସାରଙ୍କ ଆଦେଶରେ ଚମ୍ପା ନିଜ ଚଳତ୍ ଶକ୍ତି ଫେରିପାଇଛି । ପରେ ପରେ ଚନ୍ଦ୍ର ଭଲପାଇଛି ଚମ୍ପାକୁ । ମାନବିକତା ହିଁ ଶ୍ରେଷ୍ଠ ଧର୍ମ ଭାବେ ପ୍ରତିପାଦିତ ହୋଇଛି ।

ଚାର୍ବାକଙ୍କର ମାନବବାଦୀ ଚିନ୍ତାଧାରା ଓ ମୌଳିକ ଚିନ୍ତନ ଦ୍ୱାରା ମହାକାଞ୍ଚନଙ୍କ ମୋହଭଙ୍ଗ ହୋଇଛି । ଚାର୍ବାକଙ୍କ ମତରେ "ସମଗ୍ର ବିଶ୍ୱରେ ଗୋଟିଏ ନିୟମ ନିଶ୍ଚୟ ଅଛି । ଯାହାଦ୍ୱାରା ଗ୍ରହ ଉପଗ୍ରହ, ସୂର୍ଯ୍ୟଚନ୍ଦ୍ର ତାରାଠାରୁ ଆରମ୍ଭକରି ଜୀବାଣୁ ଜଡ ପର୍ଯ୍ୟନ୍ତ ସୃଷ୍ଟି ଏକ ପର୍ଯ୍ୟାୟଭୁକ୍ତ । ସେହି ନିୟମ ଦ୍ୱାରା ବା ଶକ୍ତି ଦ୍ୱାରା ମନୁଷ୍ୟ ସୃଷ୍ଟି ହେବାପରେ, ତାହାର ନିଜ ଇଚ୍ଛା ପ୍ରାପ୍ତ ହୋଇଛି । ତା'ର ପ୍ରତ୍ୟେକ କର୍ମ, ପ୍ରତ୍ୟେକ ଭାବନା, ଯେତେ ସାମାନ୍ୟ ହେଉନା କାହିଁକି, ସବୁ ସେହି ଶକ୍ତି ଦ୍ୱାରା ଚାଳିତ" । ମାନବିକତାର ପ୍ରତିଷ୍ଠା ପାଇଁ ବୌଦ୍ଧ ସଂଘର ବିଚାର ବୈକଲ୍ୟ, ଗୁହ୍ୟ ସମାଜର ଅଶ୍ଳୀଳ ଉପାସନା, ବ୍ରାହ୍ମଣ୍ୟଧର୍ମର ସ୍ୱାର୍ଥ ସର୍ବସ୍ୱ ପ୍ରଚାର, ଜୈନଧର୍ମର ଔଦ୍ଧତ୍ୟ ନିମିଷକେ ଭାଙ୍ଗିଯାଇଛି । ଚାର୍ବାକଙ୍କ ଦର୍ଶନ ଯେଉଁ ମାନସିକ ବିପ୍ଳବ ସୃଷ୍ଟି କରିଛି, ସେଥିରେ ହିଁ ଆବିଷ୍କୃତ ହୋଇଛି ଚରମ ସତ୍ୟ ।

ଏହିପରି ଏକ ଦାର୍ଶନିକ ଭାବଭୂମିରେ ଆଧାତ୍ମିକତା ତଥା ମାନସିକତାର ନିର୍ଯ୍ୟାସକୁ ସୁନ୍ଦର ଭାବେ ଚିତ୍ରଣ କରିଛନ୍ତି ବାମାଚରଣ, ଚନ୍ଦ୍ର ଓ ଚମ୍ପାରେ । ଅଳୀକତା, ବଳିପଡିଛି ସମୟର ଯୂପକାଠରେ । ଚିରନ୍ତନ ମାନବିକତା ପ୍ରକାଶପାଇଛି ଶେଷରେ ମାନବୀୟ ସଂବେଦନ ପ୍ରତିଷ୍ଠା ପାଇଛି ଚନ୍ଦ୍ର ଓ ଚମ୍ପାରେ ।

ସମରସେଗ୍‌ମାମ୍‌ଙ୍କର 'କାଟାଲିନା' ଯଦି ଓ ବାମାଚରଣଙ୍କ 'ଚନ୍ଦ୍ର ଓ ଚମ୍ପା' ରଚନାର ଉତ୍ସ, ତଥାପି ବାମାଚରଣଙ୍କ ସ୍ୱକୀୟତା ବେଶ୍ ଲକ୍ଷଣୀୟ, କେବଳ କାହାଣୀ ଭାଗର କେତେକାଂଶ ଦ୍ୱାରା ବାମାଚରଣ ପ୍ରଭାବିତ । କାହାଣୀ ଓ ପରିବେଶ ଦୃଷ୍ଟିରୁ ଚନ୍ଦ୍ର ଓ ଚମ୍ପା କାଟାଲିନିଠାରୁ ବହୁଳାଂଶରେ ଅଲଗା ଓ ସ୍ୱତନ୍ତ୍ର । କାଟାଲିନାର ଆହରଣ ପ୍ରକ୍ରିୟାକୁ ମର୍ଯ୍ୟାଦାବନ୍ତ କରିବାପାଇଁ ବାମାଚରଣ ଓଡ଼ିଶାର ପ୍ରାଚୀନ ଗଳ୍ପ, କିମ୍ବଦନ୍ତୀ ଓ ଲୋକ କଥାକୁ ଉପଜୀବ୍ୟ କରିଛନ୍ତି । ବୈଦିକ ସଂସ୍କୃତ, ବ୍ରାହ୍ମଣଧର୍ମ, ବୌଦ୍ଧ ଓ ଜୈନଧର୍ମର ଆଚାର ଭିତରେ ଚନ୍ଦ୍ର ଚମ୍ପାକୁ ଅତ୍ୟନ୍ତ ମର୍ଯ୍ୟାଦାବନ୍ତ ଭାବେ ଆରୋପିତ କରିଛନ୍ତି ଔପନ୍ୟାସିକ । ଏବଂ ତାହାର ଯଥାର୍ଥ ସୌନ୍ଦର୍ଯ୍ୟନିଷ୍ଠ ପ୍ରକାଶ, ଉପନ୍ୟାସଟିକୁ ମହାନ୍ କରିଛି, ଏହା ନିଃସନ୍ଦେହ । ମାନବୀୟ ଗୁଣାବଳୀର ପରୀକ୍ଷା କ୍ଷେତ୍ର ରୂପେ ଚନ୍ଦ୍ର ଓ ଚମ୍ପା ଉପନ୍ୟାସ ସିଦ୍ଧିପ୍ରାପ୍ତ । ଔପନ୍ୟାସିକଙ୍କ ଭାଷାରେ:



Digitized by srujanika@gmail.com

ଯେଉଁ ସମୟରେ ଏକ ଦିଗରେ ନାନାମତବାଦ ସୃଷ୍ଟି ହୋଇ ସବୁଧର୍ମରେ ଜଡତା ଆସିଛି ଏବଂ ଅନ୍ୟଦିଗରେ ନୂତନ ଭାବଧାରା, ନୂତନ ଆଶା ଓ ଶାନ୍ତି, ସାମ୍ୟର ଆଲୋକ ଉଦୟ ହୋଇଛି; ଏହି ଆଖ୍ୟାୟିକାଟି ସେହି ସମୟରେ ।

ବାସ୍ତବରେ ଚନ୍ଦ୍ର ଚମ୍ପା ଉପନ୍ୟାସର ସୌନ୍ଦର୍ଯ୍ୟ ଓ ପାଠକୀୟତା ଯୁଗାନ୍ତକାରୀ ଓ ସର୍ବକାଳିକ ।

ପତ୍ରିକା : ସାବିତ୍ରୀ

ପୂଜା ସଂଖ୍ୟା - ୨୦୧୫





Digitized by srujanika@gmail.com

# ବାମାଚରଣଙ୍କ ଜୀବନ ଓ ତାଙ୍କ ସମୟ

ଶ୍ରୀ ବାଞ୍ଛନିଧି ଦାସ

*(ବାମାଚରଣଙ୍କ ଶତବାର୍ଷିକ ଉପଲକ୍ଷେ କେନ୍ଦ୍ର ସାହିତ୍ୟ ଏକାଡେମୀ ଦ୍ୱାରା ଆୟୋଜିତ ଜାତୀୟ ସେମିନାରରେ, ଭୁବନେଶ୍ୱରଠାରେ ପଠିତ)*

କଥାକାର ବାମାଚରଣ ମିତ୍ର ଯାଜପୁର ଜିଲ୍ଲାର ପୁରୁଷୋତ୍ତମପୁର ଅଞ୍ଚଳର ବରୁଆଁ ଗ୍ରାମରେ ଏକ ପ୍ରାଚୀନ କାୟସ୍ଥ ପରିବାରରେ ଜନ୍ମ ଗ୍ରହଣ କରିଥିଲେ । ବରୁଆଁ ଗ୍ରାମର ଏହି ପରିବାର ବହୁ ପ୍ରାଚୀନ ତଥା ବୁନିୟାଦ ପରିବାର ଥିଲା । ଆଜକୁ ପାଞ୍ଚଶହ ବର୍ଷ ପୂର୍ବରୁ ଶ୍ରୀ ଚୈତନ୍ୟଙ୍କ ସମୟରେ ଏ ପରିବାରର ପୂର୍ବଜମାନେ ଉତ୍କଳକୁ ଆସିଥିଲେ । କଥାକାର ବାମାଚରଣ ରେଭେନ୍‌ସା କଲେଜରୁ ଅଧ୍ୟୟନ ସମାପ୍ତ କରି ଓଡ଼ିଶା ପ୍ରଶାସନିକ ସେବାରେ ଯୋଗଦେଲେ । ସ୍ୱାଧୀନତା ପରେ ତାଙ୍କର ସବୁ ଗଳ୍ପ ବହି ପ୍ରକାଶିତ ହୋଇଥିଲା । ୧୯୬୦ରେ 'ସ୍ୱପ୍ନସିଦ୍ଧ', ୧୯୬୧ରେ 'ଆସାମି', ୧୯୬୧ରେ 'ପାଷାଣର ପ୍ରାଣ', ୧୯୬୩ରେ 'ବଟମହାପୁରୁଷ' ଓ ୧୯୬୩ରେ 'ମହାପୁରୁଷ ବାଗ୍' ପ୍ରକାଶ ପାଇଥିଲା ।



Digitized by srujanika@gmail.com

ମୃତ୍ୟୁପରେ ଏ ସମସ୍ତ ଗଳ୍ପ ମିତ୍ର ଗଳ୍ପ, ମିତ୍ର କଳ୍ପ ଓ ମିତ୍ର ସ୍ୱଳ୍ପ ନାମକ ତିନୋଟି ଗ୍ରନ୍ଥାକାରରେ ପ୍ରକାଶ ପାଇଥିଲା । ଗତ ଶତକର ପଞ୍ଚମ ଓ ଷଷ୍ଠ ଦଶକର ଜାତିପ୍ରାଣର ବ୍ୟଥା ଓ କଥା ସହଜ ସୁନ୍ଦର ଭାବ, ଭାଷା ଓ ବର୍ଣ୍ଣନାରେ ଏ ଗଳ୍ପଗୁଡ଼ିକରେ ଗୁମ୍ଫିତ ହୋଇଥିଲା । ସେ 'ଚନ୍ଦ୍ର ଓ ଚମ୍ପା' ଶୀର୍ଷକ ଏକ ଉପନ୍ୟାସ ରଚନା କରିଥିଲେ । ତା' ବ୍ୟତୀତ ବେଶ୍ କେତୋଟି ପ୍ରବନ୍ଧ ଓ ରମ୍ୟରଚନା ମଧ୍ୟ ଲେଖିଥିଲେ ।

ସ୍ୱାଧୀନ ଓଡ଼ିଶାର ପ୍ରଥମ ମୁଖ୍ୟମନ୍ତ୍ରୀ ତଥା ଗାନ୍ଧିବାଦୀ ନେତା ନବକୃଷ୍ଣ ଚୌଧୁରୀ ସେତେବେଳେ ଯୁବ ସମାଜକୁ ଆହ୍ୱାନ ଦେଇ କହିଥିଲେ- "ରାଜ୍ୟକୁ ପୁନର୍ଗଠିତ କରିବା ଭଳି କ୍ଲେଶକର କାର୍ଯ୍ୟ ସାଧନାରେ ଶାସନକାଳର ଗୁରୁଦାୟିତ୍ୱ ବହନ ଆଜି ଶିକ୍ଷିତ ଯୁବସମାଜର ରହିଛି । ମୋର ଆଶା ଓ ବିଶ୍ୱାସ ଯେ ନୂଆ ନୂଆ ଚାକିରିରେ ଯୋଗ ଦେଉଥିବା ସରକାରୀ ଯୁବକ କର୍ମଚାରୀମାନେ ପରିସ୍ଥିତିର ଯୋଗ୍ୟ ହୋଇ ଉଠିବେ ଓ ଶାସନକାଳ ଭିତରେ ଦକ୍ଷତା ତଥା ସାଧୁତାର ନୂତନ ଆଦର୍ଶ ଦେଖାଇବେ" । ବାମାଚରଣ କାୟମନୋବାକ୍ୟରେ ଏହି ଆହ୍ୱାନକୁ ଗ୍ରହଣ କଲେ ।

୧୯୫୫ ମସିହାରେ ବାମାଚରଣ ଚାକିରି ଅତୀବ ଚ୍ୟାଲେଞ୍ଜିଂ ହୋଇ ଉଠିଲା । ସେଇ ବର୍ଷ ଏପ୍ରିଲ୍ ମାସରେ 'ଷ୍ଟେଟ୍ ରିଅର୍ଗାନାଇଜିଂ କମିଟି ରିପୋର୍ଟରେ ଷଢ଼େଇ କଳା ଓ ଖରସୁଆଁ ବିହାରରେ ମିଶିବାର ସିଦ୍ଧାନ୍ତ ହେଲା । ପୁଣି ସେଇ ବର୍ଷ ସେପ୍ଟେମ୍ବର ମାସରେ କାଠଯୋଡ଼ିରେ ପ୍ରଳୟଙ୍କରୀ ବନ୍ୟା ଆସି ତାହାର ଶାଖାନଦୀରେ ଦଳେଇ ଘାଇ ଭାଙ୍ଗିଗଲା । ତାହା କଟକ ଜିଲ୍ଲାର ତଳମାଳ ଅଞ୍ଚଳରେ ତାଣ୍ଡବ ଲୀଳା ସୃଷ୍ଟି କଲା ।

ଷ୍ଟେଟ୍ ରିଅର୍ଗାନାଇଜେସନ୍ ପ୍ରସଂଗରେ ଓଡ଼ିଶାର ଜନମତ ଅତୀବ ଉତ୍ତାଳ ହୋଇଉଠିଲା । ସେତେବେଳେ କଟକ ଥିଲା ଓଡ଼ିଶାର ପ୍ରାଣକେନ୍ଦ୍ର ଓ ସାଂସ୍କୃତିକ ରାଜଧାନୀ । ସୀମା ଆନ୍ଦୋଳନରେ ସେ ସହର ନେତୃତ୍ୱ ନେବାପାଇଁ ଠିଆ ହେଲା । ପ୍ରବଳ ଉତ୍ତେଜନା ଓ ସରକାରୀ ବିରୋଧୀ ଜନମତରେ କଟକର ସାହି ବସ୍ତି ବଜାର ଓ ପେଣ୍ଠସ୍ଥଳୀ ସୁଦ୍ଧା ଫାଟି ପଡିଲା । ସେତେବେଳେ ବାମାଚରଣ ଥିଲେ କଟକର ଶାନ୍ତି ଶୃଙ୍ଖଳା ଦାୟିତ୍ୱରେ । ଗଣ୍ଡଗୋଳ, ସରକାରୀ ଅଫିସ୍ ପୋଡାଜଳା ଏତେ ଭୟଙ୍କର ପରିସ୍ଥିତି ସୃଷ୍ଟି କଲା ଯେ, ଶେଷକୁ ତାଙ୍କ ନିଜର ଓ ଅନ୍ୟାନ୍ୟ ସହକର୍ମୀଙ୍କର ଜୀବନ ସଂଶୟ ଉପନୀତ ହେଲା । ପୁଲିସ୍ ଏସ୍.ପି.



Digitized by srujanika@gmail.com

ତାଙ୍କୁ ଫାୟାରିଂ ଅର୍ଡର ଦେବାକୁ ବହୁବାର ଅନୁରୋଧ କରୁଥାନ୍ତି । ବାମାଚରଣ ସମସ୍ତଙ୍କ ମଙ୍ଗଳପାଇଁ ଶାନ୍ତିପୂର୍ଣ୍ଣ ପନ୍ଥା ଦୃଢ଼ଚିତ୍ତରେ ଅନୁସରଣ କରୁଥାନ୍ତି । ଯେଉଁ ବାମାଚରଣଙ୍କର କେବେ କୌଣସି ଜନସଭାରେ ଭାଷଣ ଦେବାର ଅଭ୍ୟାସ ନଥିଲା, ସେ ଉତ୍କ୍ଷିପ୍ତ ଜନଗଣଙ୍କ ସମ୍ମୁଖୀନ ହେଲେ ଓ ସେମାନଙ୍କୁ ଶାନ୍ତି ରକ୍ଷା ସପକ୍ଷରେ ବୁଝାଇବାକୁ ଲାଗିଲେ । ଜନଗଣଙ୍କ ମଙ୍ଗଳ ଚିନ୍ତା ତଥା ସାଂପ୍ରଦାୟିକ ସଦ୍‌ଭାବ ସୁରକ୍ଷା ତାଙ୍କୁ ଏତେ ମାନସିକ ଶକ୍ତି ଯୋଗାଇ ଦେଲା ଯେ, ସେ ଜନତାଙ୍କୁ ଶାନ୍ତିପୂର୍ଣ୍ଣ ରୀତିରେ ଆନ୍ଦୋଳନ କରିବାକୁ ବୁଝାଇଲେ ଓ ବୁଝାଇଲେ ତାଙ୍କର ଆନ୍ଦୋଳନ କରିବାର ଅଧିକାର ବିଷୟରେ । ନେତାମାନେ ତାଙ୍କ ହୃଦୟ ତଳୁ ଆସୁଥିବା ବଜ୍ର ଗମ୍ଭୀର ଭାଷାକୁ ବୁଝିଲେ ଓ ଶାନ୍ତ ପଡିଲେ ।

ବାମାଚରଣ ବାବୁଙ୍କ ପରିବାର ଥିଲା ମଧ୍ୟମ ଧରଣର- ପତ୍ନୀ ପ୍ରତିଭାମୟୀ ଓ ତିନିପୁଅ-ଦୁଇଝିଅ । ଅଫିସ୍ ତରଫରୁ ଦୁଇଜଣ ଅର୍ଦ୍ଦଲୀ, ଜଣେ ପିଅନ ତାଙ୍କ ଘରକୁ କାମ କରିବାପାଇଁ ଆସନ୍ତି । ପ୍ରତିଭାମୟୀ ଦେବୀ ସେମାନଙ୍କୁ କୌଣସି ଘରକାମ କରାଉ ନଥିଲେ । ସ୍ୱାମୀଙ୍କର କଡା ନିର୍ଦ୍ଦେଶ ଥିଲା ଯେ, ସେମାନେ ସରକାରଙ୍କ ଚାକିରିଆ- ତମ ଘର କାମ ତାଙ୍କ ଦ୍ୱାରା କରାଇବ ନାହିଁ । ତେଣୁ ପତ୍ନୀ ସ୍ୱାମୀଙ୍କ ଆଦେଶକୁ ଅକ୍ଷରେ ଅକ୍ଷରେ ପାଳନ କରୁଥିଲେ ।

କଥାକାର ବାମାଚରଣଙ୍କ ଜୀବନଦର୍ଶନ ହେଲା (Plain Living & high thinking) ସୁପର ଫାଇନ୍ ବା ମିଡିୟମ୍ ଧୋତି ଉପରେ ଧଳା ପଞ୍ଜାବୀ ତାଙ୍କର ପତଳା ଲମ୍ବା ଚେହେରାକୁ ବେଶ୍ ମାନୁଥିଲା । ଲମ୍ବା ମୁହଁ, ଲମ୍ବା ନାକ, ମୁହଁକୁ ଦୁଇ ପାଖେ ଆବୃତ୍ତ କଲାଭଳି ଦୀର୍ଘ କାନ, କୁଞ୍ଚିତ କେଶ ଏବଂ ଦୁଇଟି ବୁଦ୍ଧିଦୀପ୍ତ ଆଖିରେ ଥିବା ଶାଣିତ ବ୍ୟଙ୍ଗ ତାଙ୍କର ବ୍ୟକ୍ତିତ୍ୱ ପ୍ରତି ଏକ ସମ୍ମାନ ସୃଷ୍ଟି କରୁଥିଲା ତାଙ୍କ ସଂସ୍ପର୍ଶରେ ଆସୁଥିବା ପ୍ରତ୍ୟେକ ବ୍ୟକ୍ତି ମନରେ । ତାଙ୍କ ରମ୍ୟରଚନାର ଶାଣିତ ବ୍ୟଙ୍ଗ ଓ ବୌଦ୍ଧିକତା ସାଧାରଣ ଆଲୋଚନା ବେଳେ ମଧ୍ୟ ତାଙ୍କ କଥାରେ ପ୍ରକାଶ ପାଇଥାଏ । (ହରିହର ଦାସ-ସ୍ମୃତିଚାରଣ-ଇସ୍ତାହାର ୧୯୮୭-ନଂ-୩୭, ପୃ.୪୭) ।

ବାମାଚରଣ ଓଡ଼ିଶାରେ ସେତେବେଳେ ଜଣେ ଉଚ୍ଚକୋଟୀର ବୁଦ୍ଧିଜୀବୀ ଥିଲେ । ଦର୍ଶନ, ଅର୍ଥଶାସ୍ତ୍ର, ରାଜନୀତି ତତ୍ତ୍ୱ, ମନୋବିଜ୍ଞାନ, ସମାଜ ବିଜ୍ଞାନ ତଥା ବିଭିନ୍ନ ଧର୍ମଶାସ୍ତ୍ରରେ ତାଙ୍କ ଜ୍ଞାନ ଥିଲା ପ୍ରଚଣ୍ଡ । ବେଦଠାରୁ ଆରମ୍ଭ କରି ଟଏନ୍‌ବି ପର୍ଯ୍ୟନ୍ତ । କାମ୍ୟୁ, କାଫ୍‌କା ଓ ସାର୍ତ୍ରେଙ୍କଠାରୁ ଆରମ୍ଭ କରି ଶ୍ରୀ ଅରବିନ୍ଦଙ୍କ ପର୍ଯ୍ୟନ୍ତ ତାଙ୍କର ଜ୍ଞାନର ସାଗର ବିସ୍ତୃତ ଥିଲା । ସେ ତାଙ୍କର ଅନେକ କ୍ଷୁଦ୍ର ଗଳ୍ପରେ



Digitized by srujanika@gmail.com

ଫ୍ରୟେଡ୍, ଆଡଲର ଓ ୟୁଙ୍ଗ୍‌ଙ୍କ ମନସ୍ତାତ୍ତ୍ୱିକ ବିଶ୍ଳେଷଣରେ ଓଡ଼ିଆ ସାହିତ୍ୟାୟନ କରିଥିଲେ । ବ୍ୟକ୍ତିଗତ ଜୀବନରେ ସେ ଥିଲେ ଧର୍ମପ୍ରାଣ କିନ୍ତୁ ସେ ଥିଲେ ଏକାଧାରାରେ ଧର୍ମନିରପେକ୍ଷ ଓ ଧାର୍ମିକ । ମହାପାତ୍ର ନୀଳମଣି ସାହୁ ତାଙ୍କ ଧର୍ମଧାରଣା ସମ୍ପର୍କରେ ଲେଖିଛନ୍ତି- "ମାତ୍ର ଧର୍ମାଚରଣର ଗଡ୍‌ଡାଳିକା ପ୍ରବାହ, କ୍ରିୟାକାଣ୍ଡ ସର୍ବସ୍ୱତା ଓ କୁସଂସ୍କାର ଗ୍ରସ୍ତ ବିଶ୍ୱାସ ଉପରେ ଖୁବ୍ ବିରକ୍ତି ପ୍ରକାଶ କରୁଥିଲେ । ସେ କହୁଥିଲେ ସମାଜ ପ୍ରଥମେ ସବୁ ମଣିଷକୁ ଖାଇବା, ପିଇବା ଓ ରହିବାକୁ ସୁଯୋଗ ଦେଉ । ତା'ର ଜ୍ଞାନ, ବୁଦ୍ଧି ଓ ବିବେକର ବିକାଶ ପାଇଁ ସୁଯୋଗ ସୁବିଧା ଦେଉ । ମଣିଷକୁ ପ୍ରଥମେ ଅର୍ଥନୈତିକ, ନୈତିକ ଓ ମନସ୍ତାତ୍ତ୍ୱିକ ସ୍ୱାସ୍ଥ୍ୟ ଓ ସ୍ୱାଧୀନତା ପାଇଁ ରାଷ୍ଟ୍ର ସୁଯୋଗ ସୁବିଧା ଦେଉ । ତା'ପରେ ଯାଇ ଧର୍ମ ବା ଆଧ୍ୟାତ୍ମିକତାର ପ୍ରଶ୍ନ ଉଠିବ । ସେ ଚାହୁଁଥିଲେ ଆଗେ ଯେ କୌଣସି ଉପାୟରେ ଲୋକଙ୍କ ଦୁଃଖ ଦୁର୍ଦ୍ଦଶା ଦୂର ହେଉ । ଏଥିପାଇଁ କମ୍ୟୁନିଜିମ୍ ବା ମାର୍କସଲେଲିନ୍‌ଙ୍କ ସାମ୍ୟବାଦ ଆସିବ ତ ଆସୁ । କିଛିଦିନ ପାଇଁ ଭଗବାନ, ଗଡ୍, ଆଲ୍ଲା ଓ ତେତିଶ କୋଟି ଦେବାଦେବୀଙ୍କୁ ଅନ୍ତର୍ହିତ କରାଯିବ ତ କରାଯାଉ । ଏକଥା କହିଲାବେଳେ ସେ ଅତ୍ୟନ୍ତ ଉତ୍ତେଜିତ ହୋଇ ଉଠୁଥିଲେ । ତଥାପି ବି, ଶେଷ ପର୍ଯ୍ୟନ୍ତ ଭିତରେ ଭିତରେ ସେ ସଂପୂର୍ଣ୍ଣ ଗାନ୍ଧିବାଦୀ ଥିଲେ । ଅହିଂସା ଓ ବ୍ୟକ୍ତି ସ୍ୱାଧୀନତା ଉପରେ ପ୍ରତିଷ୍ଠିତ୍ ଗଣତାନ୍ତ୍ରିକ ସମାଜବାଦ ଉପରେ ସେ ଗଭୀର ଆସ୍ଥା ରଖୁଥିଲେ । (ଇସ୍ତାହାର- ସେଇ ସଂଖ୍ୟା)

ମାତ୍ର ବାମାଚରଣ ତାଙ୍କ ଅନ୍ତକରଣରେ ନାସ୍ତିକ ନଥିଲେ- ସେ ଥିଲେ ଗଭୀର ଭାବେ ଈଶ୍ୱର ବିଶ୍ୱାସୀ । ତାଙ୍କ ମତରେ, ମଣିଷ ନିଜକୁ ଯେତେ ନାସ୍ତିକ ବୋଲାଉଥିଲେ ମଧ୍ୟ ତା'ର ଅବଚେତନ ମନରେ ଭଗବତ୍ ପ୍ରେମ ରହିଥାଏ । ଲେଖକଙ୍କ 'ଜଳସ୍ତମ୍ଭ' ଗଳ୍ପରେ ନିଷ୍ଠୁରତାର ଅବତାର 'ବ୍ରିଗେଡିୟର ସାଲ୍ ଭେଜ୍' ସାରା ଜୀବନ ନିଜକୁ ନାସ୍ତିକ ବୋଲି କହିଆସିଛନ୍ତି, ମାତ୍ର କୌଣସି ଏକ ମୁହୂର୍ତ୍ତରେ ହଠାତ୍ 'ହେ ଭଗବାନ' ସେ କହି ପକାଇଛନ୍ତି । ନିଷ୍ଠୁରତାର ଅବତାର ହେଲେ ମଧ୍ୟ ତାଙ୍କର ଅଧସ୍ତନ କର୍ମଚାରୀଙ୍କୁ କ୍ଷମା ଦେଇଛନ୍ତି, ଯେ କି ନିଜର ନବବିବାହିତା ପତ୍ନୀର ଅନୁରୋଧରେ କର୍ତ୍ତବ୍ୟରେ ଅବହେଳା ପ୍ରଦର୍ଶନ କରିଛି । ସଂସାରରେ ପ୍ରତ୍ୟେକ ବ୍ୟକ୍ତିର ହୃଦୟରେ ଦୟା ବା ଧର୍ମ ଭାବ ରହିଛି । ମାତ୍ର ପରିସ୍ଥିତିରେ ପଡି ସେ ଥରେ ଥରେ ନିଜର ବିବେକ ହରାଇ ବସେ । ବାମାବାବୁ ଏଇ ସଂଦେଶ 'ଜଳସ୍ତମ୍ଭ' ଗଳ୍ପରେ ଦେଇଛନ୍ତି ।



Digitized by srujanika@gmail.com

ବାମାଚରଣଙ୍କ ମଧ୍ୟ ଥିଲା ହିମାଦ୍ରୀ ପରି ଉତ୍ତୁଂଗ ସ୍ୱାଭିମାନ । ଜୀବନର ଶେଷ କାଳରେ ସେ ନିର୍ଦ୍ଧନ ହେଇ ଯାଇଥିଲେ । ପେନ୍‌ସନ୍ ଗଣ୍ଡାକରେ ନିଜର ସଂସାର ଚଳାଇବା କଷ୍ଟକର ହେଉଥିଲା । ନିଜ ପାଇଁ ଘରଟିଏ ମଧ୍ୟ ସେ ତିଆରି କରି ପାରିନଥିଲେ । ତାଙ୍କର ଅନ୍ତରଙ୍ଗ ବନ୍ଧୁ ମହାପାତ୍ର ନୀଳମଣି ସାହୁ ସେତେବେଳେ ମୁଖ୍ୟମନ୍ତ୍ରୀ ଶ୍ରୀମତୀ ନନ୍ଦିନୀ ଶତପଥୀଙ୍କୁ ସାକ୍ଷାତ୍ କରି ବାମାଚରଣ ବାବୁଙ୍କୁ ଚିକିତ୍ସା ପାଇଁ କିଛି ସରକାରୀ ସାହାଯ୍ୟ ମଞ୍ଜୁର କରିବାକୁ ଅନୁରୋଧ କରିଥିଲେ । ନନ୍ଦିନୀ ଦେବୀଙ୍କ ଆଦେଶାନୁସାରେ ତତ୍‌କାଳୀନ ଶାସନ ସଚିବ ରମାକାନ୍ତ ରଥ ଆଇ.ଏ.ଏସ୍ ଦଶହଜାର ଟଙ୍କାର ଚେକ୍‌ଟିଏ ନେଇ ବାମାଚରଣଙ୍କୁ ପ୍ରଦାନ କରିବାକୁ ଯାଇଥିଲେ । ବାମାଚରଣବାବୁ ସେ ଚେକ୍‌ଟି ନେଲେନାହିଁ । ବିନୟର ସହ କହିଲେ, "ମୁଁ ତ ପେନ୍‌ସନ୍ ପାଉଛି । ଚଳିଯାଉଛି କୌଣସି ମତେ । ମୋ ପାଇଁ ଏତେ ବ୍ୟବସ୍ଥା କାହିଁକି ? ଯେଉଁମାନେ ଦି' ଓଳିରେ ମୁଠାଏ ସୁରୁଖୁରୁରେ ଖାଇବାକୁ ନ ପାଇ, ଦେଶପାଇଁ, ଜାତିପାଇଁ, ସାହିତ୍ୟ ସଂସ୍କୃତିପାଇଁ ଦାନ କରିଗଲେ ଅଜସ୍ର । ସେମାନଙ୍କ କଥା ତମଭଳି ସାହିତ୍ୟିକମାନେ ବୁଝିବ ନାହିଁ ? ମୁଁ ଏ ଟଙ୍କା ରଖି ପାରିବିନି, ରମାକାନ୍ତ ବାବୁ ? ପାଇବା ପାଇଁ ଏହା ମୁଁ ହକ୍‌ଦାର ହୋଇନାହିଁ" ।

ବାମାଚରଣ ଅଗାଧ ପାଣ୍ଡିତ୍ୟ, ବହୁଶାସ୍ତ୍ର ଦର୍ଶିତା, ବିସ୍ତୃତ ଅଧ୍ୟୟନ ଓ ବୌଦ୍ଧିକତା ଯେମିତି ତାଙ୍କର ରମ୍ୟରଚନାଗୁଡ଼ିକରୁ ପ୍ରକାଶିତ ହୋଇଥାଏ, ସେଭଳି ଏକ ମାନବଦରଦୀ, ସଂବେଦନଶୀଳ ଏବଂ ସମାଜପ୍ରତି ଅଙ୍ଗୀକାରବଦ୍ଧ ଦରଦୀ ହୃଦୟ ତାଙ୍କର କ୍ଷୁଦ୍ର ଗଳ୍ପଗୁଡ଼ିକରୁ ସହଜରେ ବାରି ହୋଇପଡେ । ସେ କେବେ ନିଷ୍ଠୁର ଭାବେ କୌଣସି ଚରିତ୍ରକୁ ଉପସ୍ଥାପିତ କରି ନାହାନ୍ତି ତାଙ୍କ ଗଳ୍ପମାନଙ୍କରେ- ଏହା ହିଁ ତାଙ୍କ ବାସ୍ତବ ଜୀବନର ଆଦର୍ଶ ଥିଲା ।

ତାଙ୍କ ଗଳ୍ପଗୁଡ଼ିକରେ ବିଷୟବସ୍ତୁ ଖୁବ୍ ସାଧାରଣ । ବେଳେବେଳେ ଖୁବ୍ ପରିଚିତ ବା ଆମ ଘରମାନଙ୍କରେ ନିତିପ୍ରତି ଘଟୁଥିବା ନଗଣ୍ୟ ଘଟଣା ପରି । ବେଳେବେଳେ ତାଙ୍କ ଗଳ୍ପର ନାୟକ ନାୟିକା ହୁଏତ ସେ ନିଜେ ବା ତାଙ୍କର ପତ୍ନୀ । କେତେବେଳେ ଗପର ଚରିତ୍ରଗୁଡ଼ିକ ତାଙ୍କ ନିଜର ପୁଅ, ଝିଅ ବା ବିଲେଇଟିଏ କି କୁକୁରଟିଏ ବା ଗୁଣ୍ଡୁଚିମୂଷାଟିଏ ଅଥବା ଏଣ୍ଡୁଅଟିଏ । କିନ୍ତୁ ସେହି ନଗଣ୍ୟ ସାଧାରଣ ଭିତରୁ ସେ ଆବିଷ୍କାର କରନ୍ତି ଅସାଧାରଣ ନୈତିକ ଉପଲବ୍ଧିଟିଏ ବା ନିଗୂଢ଼ ଅର୍ଥଟିଏ । କିନ୍ତୁ ସେହି ନଗଣ୍ୟ ସାଧାରଣ ଭିତରୁ ସେ ଆବିଷ୍କାର କରନ୍ତି ଅସାଧାରଣ ନୈତିକ ଉପଲବ୍ଧିଟି, ବା ନିଗୂଢ଼ ଅର୍ଥଟିଏ ବା ବୌଦ୍ଧିକ



Digitized by srujanika@gmail.com

ବ୍ୟଞ୍ଜନାଟିଏ । ସେ ଗପଟି ଜମା ବନେଇ ଚୁନେଇ ଲେଖନ୍ତି ନାହିଁ । କେଉଁ ଅନ୍ତରଙ୍ଗ ବନ୍ଧୁ ଆଗରେ ବାସ୍ତବ ଅଭିଜ୍ଞତାଟିଏ କହିଲା ଭଳି କହନ୍ତି । ଲେଖୁଲେଖୁ ଏଣେ ତେଣେ ବି ସ୍ୱଚ୍ଛନ୍ଦରେ ମାଡି ଯାଆନ୍ତି । କେବେ କେବେ ଯୁକ୍ତିତର୍କ, ବିଚାର ବିମର୍ଶ ବା ବିଶ୍ଳେଷଣ ଭିତରକୁ ପଶିଯାନ୍ତି । ଫଳରେ ତାଙ୍କ ଗଳ୍ପଟି ବେଳେବେଳେ ରମ୍ୟରଚନା ପାଲଟି ଯାଏ ଓ ରମ୍ୟ ରଚନାଟି ସେଇ ଧାରାରେ ଗଳ୍ପ ପାଲଟିଯାଏ । କିନ୍ତୁ ସେ ଯାହା ଲେଖନ୍ତି ତା' ଭିତରେ ସାହିତ୍ୟର ରସଥାଏ । ସେଥିରୁ ଭାବ, ଭାଷା, ଅର୍ଥ, ଧ୍ୱନୀ, ବ୍ୟଞ୍ଜନା ସବୁକିଛି ଆତ୍ମପ୍ରକାଶ କରେ । ତାଙ୍କର 'ବଟ ମହାପୁରୁଷ' ଗପଟି ହେଉ ବା 'ଧରିତ୍ରୀ ଓ ଧରିତ୍ରୀ' ଗପଟି ହେଉ- ସବୁ ଗପରେ ଆମେ ବାମାଚରଣଙ୍କ ଅନ୍ତରଙ୍ଗ ଗଭୀର ସ୍ୱରଟି ଶୁଣିବା । ସେଥିରେ ମଧ ପାଇବା ତାଙ୍କ ପ୍ରାଣ ଓ ମନର ସ୍ପର୍ଶ । ସବୁ ଗପରେ ସେ ମାନବିକତାର ଜୟଗାନ କରିଛନ୍ତି । ମଣିଷର କ୍ଷୁଦ୍ରପଣିଆକୁ ଭୂମାର ଉତ୍ସଙ୍ଗ ଭିତରେ ମୁକ୍ତି ଦେଇଛନ୍ତି । କ୍ଷମାଶୀଳ ଓ ଉଦାର ମନନେଇ ସେ ମଣିଷକୁ ଦେଖୁଛନ୍ତି । ତାଙ୍କ ଚରିତ୍ରମାନେ ଜାତି, ଧର୍ମ, ବର୍ଣ୍ଣ ଓ ଆଞ୍ଚଳିକତାର ଊର୍ଦ୍ଧ୍ୱରେ । ସେମାନେ ଏଇ ବାସ୍ତବ ଜଗତରେ ରକ୍ତମାଂସର ମଣିଷ, କିନ୍ତୁ ସେମାନେ ସମସ୍ତେ ଭାବ ରସରେ ସ୍ନାନ କରନ୍ତି ।

ବାମାଚରଣ ନର-ନାରୀର ପ୍ରଣୟ ବ୍ୟାପାରକୁ ନେଇ ବେଶି କିଛି ଲେଖିନାହାନ୍ତି । ମୋଟାମୋଟି ସେ ଜଣେ ଆଣ୍ଟି-ରୋମାଣ୍ଟିକ୍ ଲେଖକ । ବ୍ୟକ୍ତିଗତ ଜୀବନରେ ସେ ମଧ ଥିଲେ ଖୁବ୍ ନୀତିବାଦୀ । ତାଙ୍କ ରଚନାରେ ସେ ରୁଚିବୋଧ କର୍ଷଣ କରିଥିଲେ ।

ବାମାବାବୁଙ୍କ ଗଳ୍ପର ପ୍ରକୃତ ସ୍ୱାଦ କରିବା ପାଇଁ ଏଠାରେ ତାଙ୍କର କେତୋଟି ଗଳ୍ପର ତର୍ଜମା କରାଯାଉ ।

ଏକ ସାନଝିଅ ମିମି ଉପରେ ବାମାଚରଣ ବାବୁ ତିନୋଟି ଗଳ୍ପ ଲେଖିଛନ୍ତି । 'ମିତ୍ରକଳ୍ପ' ସଂକଳନର ପ୍ରଥମ ଗଳ୍ପ ହେଲା- 'ମିମିର ସଭ୍ୟତା ଶିକ୍ଷା' । ହାକିମ ଜୀବନ ବାବୁଙ୍କର ମିମି ହେଉଛି ଗେଲବସରର ଝିଅ । ଜୀବନବାବୁ କେତେ ଦେଶ ବିଦେଶ ଭ୍ରମଣ କରିଛନ୍ତି । ସେ କହନ୍ତି 'କମ୍ ହିଅର' କହିଲେ ମିମି ଆସୁ । କିଛି ଦେଲେ 'ଥାଙ୍କ୍ ୟୁ' କହୁ । ଗୁଡ୍‌ମର୍ଣ୍ଣିଂ, ଗୁଡ୍‌ନାଇଟ୍ କହି ଶିଖୁ । ଟେବୁଲ୍‌ରେ ବସି ଖାଇ ଶିଖୁ । ଟୁଥ୍‌ପେଷ୍ଟ ନେଇ ଦାନ୍ତ ଘଷୁ, ପୋଷାକ ଆପେ ପିନ୍ଧି ଶିଖୁ, ଶୃଙ୍ଖଳା ମାନି ଚଳୁ । ମିମି ବାପାଙ୍କ କହିବାନୁସାରେ ଅନେକ ଚାଲିଚଳନ



Digitized by srujanika@gmail.com

କରିପାରେନା । ଏଥିରେ ବାପା ଧୈର୍ଯ୍ୟ ହରାନ୍ତି, ରାଗନ୍ତି, ପିଟନ୍ତି ଓ ନିରାଶ ମଧ ହୁଅନ୍ତି । ମିମି ତାହାର ବାଳ ସୁଲଭ ବୟସ ଉପଯୋଗୀ ସ୍ୱଭାବିକ ବ୍ୟବହାର ଦେଖାଏ । ଲେଖକଙ୍କ ଆଖିରେ ମିମିଙ୍କ ଏପ୍ରକାର ବ୍ୟବହାର ଯଥାର୍ଥ । ଲେଖକଙ୍କ ମତରେ ଜୀବନ ବାବୁଙ୍କ ଧାରଣା ଓ ପ୍ରୟାସ ଭୁଲ୍ । ହାସ୍ୟସ୍ପଦ ମଧ । ସଭ୍ୟତା ଶିକ୍ଷାର କ୍ଲାସ୍ ଚାଲିଥିବା ବେଳେ ଘର ଭିତରକୁ ଜୀବନ ବାବୁଙ୍କ ବନ୍ଧୁ ବିଜୟ ବାବୁ ପଶି ଆସିଲେ । ବିଜୟ ବାବୁଙ୍କ ମୁହଁରେ ବାମାଚରଣ ବାବୁ କୁହାଇଲେ- ଆନୁଷ୍ଠାନିକ ଭାବରେ ବାହାରର ଶୃଙ୍ଖଳାରେ କିଛି ଲାଭ ନାହିଁ । ବରଂ ଘୋର କ୍ଷତି । 'ଗୀତା' କହି ନାହିଁକି- 'କର୍ମେନ୍ଦ୍ରିୟକୁ ସଂଯମ କରି ଯିଏ ଇନ୍ଦ୍ରିୟ ବିଷୟବସ୍ତୁ ସବୁକୁ ସର୍ବଦା ଭାବୁଥାଏ, ମିଥ୍ୟାଚାରୀ' ।

ଏ ଗଳ୍ପରେ ବିଦେଶୀ ଆଚାର ବିଚାର ଓ ଆଦବ୍‌କାଇଦାର ଅନୁକରଣକୁ ବାମାବାବୁ ଘୋର ବିଦ୍ରୁପ କରିଛନ୍ତି ।

'ମିମିର ସାହିତ୍ୟ ଶିକ୍ଷା' ଗଳ୍ପରେ ଜୀବନବାବୁ କଚେରୀର ଜଣେ ସାଧାରଣ କିରାଣୀ- ମିମି ତାଙ୍କର ଏକମାତ୍ର ସନ୍ତାନ । ପଞ୍ଚମ ଶ୍ରେଣୀରେ ବର୍ଷେ ଫେଲ୍ ହେଲାଣି । ବାପା ଜୀବନ ବାବୁ ତାକୁ ଖେଳ ଛଡାଇ ବହୁ ମାଡଗାଳି ଦେଇ ସାହିତ୍ୟ ପଢ଼ାଉଛନ୍ତି । ମିମି କିଛି ମନେ ରଖୁନାହିଁ, ଅଙ୍କ ପ୍ରଶ୍ନରେ ଥିବା ଶବ୍ଦମାନଙ୍କର ଅର୍ଥ ବୁଝିପାରୁନାହିଁ । ଗତାନୁଗତିକ ଶିକ୍ଷା ଭୁଲ, ନିରର୍ଥକ, ପିଲାମାନଙ୍କ ବୟସ ସ୍ୱଭାବ, ଅଭିଜ୍ଞତା, ରୁଚି ଓ ବୋଧଶକ୍ତି ଅନୁସାରୀ ନୁହେଁ । ଆଜିର ଶିକ୍ଷା ପ୍ରଣାଳୀରେ ଏକ ବୈପ୍ଳବିକ ପରିବର୍ତ୍ତନ ଆଣିବା ସପକ୍ଷରେ ଏ ଗଳ୍ପରେ ଯୁକ୍ତି କରିଛନ୍ତି ଲେଖକ ।

'ବହୁମୁଖୀ' ଗଳ୍ପରେ ଜଣେ ଗରିବ କିରାଣୀର ବ୍ୟକ୍ତିତ୍ୱ, ଆଚାର ବ୍ୟବହାର ବିଭିନ୍ନ ପାର୍ଶ୍ୱେ ଗାଳ୍ପିକ ଦେଖାଇଛନ୍ତି । ଘୋର ଅଭାବଗ୍ରସ୍ତ ଜୀବନର ଦିନକର ନାନା ଘଟଣା ଓ ତହିଁରେ ଲୋକଟିର ଭିନ୍ନ ଭିନ୍ନ ରୂପକୁ ଗାଳ୍ପିକ ଚିତ୍ରଣ କରିଛନ୍ତି । ସକାଳୁ ଉଠିଲାବେଳେ ସେ ଲାଗୁଛନ୍ତି ଜଣେ ପଣ୍ଡିତ ବା ଦାର୍ଶନିକ ପରି । ସ୍ତ୍ରୀର ବିରକ୍ତି ସତ୍ତ୍ୱେ ସେ ବିଭିନ୍ନ ପ୍ରସଙ୍ଗରେ ଲେକ୍‌ଚର ଦେଉଛନ୍ତି । ପର୍ଶୁନାମକ ଜଣେ ବନ୍ଧୁ ପହଞ୍ଚିଥିଲେ, ତାଙ୍କ ସହିତ ହଠାତ୍ ବଡ ବଡ ରାଜନୀତିକ ଘଟଣାର ଆଲୋଚନା କରୁଛନ୍ତି । ରାଜନୀତିକ ଚିନ୍ତାରେ ବୁଡି ରହୁଛନ୍ତି । ତା'ପରେ ପରିବା ବାଲାର ଧାର ବାକି ସୁଝି ନଥିବାରୁ ଘରକୁ ଆସିଥିବା ପରିବାବାଲା ତାଙ୍କୁ ଅପମାନ ଦେଇଛି, ତାଙ୍କ ଦରିଦ୍ର୍ୟକୁ ଉଲଗୁଣା ଦେଇଛି । ସେତେବେଳେ ସେ ନିରୂପାୟ, ନିଃସହାୟ



Digitized by srujanika@gmail.com

ସେ ଜଣେ ଗରିବ ଲୋକ । ଗୋଟିଏ କାଙ୍ଗାଲୁଣୀକୁ ଦେଖିଲେ ସ୍ତ୍ରୀଙ୍କୁ ଲୁଚେଇ ତାକୁ ଆଠଣିଟିଏ ଦେଇଛନ୍ତି ସେତେବେଳେ ସେ ମହାନୁଭବ ବ୍ୟକ୍ତି ସାଜୁଛନ୍ତି । ତୁଚ୍ଛା ଡାଲିଭାତ ଖାଇ ଅଫିସ୍ ଯାଉଥିବାବେଳେ ତାଙ୍କ ହାବଭାବ ସତେ ଜଣେ ଦରିଦ୍ର ଓ ଜଞ୍ଜାଳଗ୍ରସ୍ତ ମଣିଷ । ଡେରିରେ ଅଫିସ୍‌ରେ ପହଞ୍ଚିଲେ, ହାକିମ୍‌ଙ୍କ ପାଖରେ ଦାନ୍ତ ନିକୁଟି ଠିଆ ହେଲେ, ବହେ ଗାଳି ଖାଇଲେ ସବୁ ସହିଲେ, କାରଣ ସେ ଗରିବ ଅଧସ୍ତନ, ଦାନା ପାଣି ପାଇଁ ସବୁ ସହିଯିବେ । ଅଫିସ୍‌ରେ ସହକର୍ମୀଙ୍କ ସଙ୍ଗେ କଥା ଭାଷାବେଳେ ମିଛ ମୁଖା ପିନ୍ଧି ଅଭିନୟ କରୁଛନ୍ତି ଯେ, ସେ ଧନ ପାଇଁ ଖୁସାମତ୍ କରିବାକୁ ଘୃଣା କରନ୍ତି । ବଡ ବଡ ଶାସ୍ତ୍ରରୁ ନୀତିକଥା କହି ହାମ୍‌ବଡା ନୀତି ଦେଖାନ୍ତି । ଅଫିସ୍ ଛୁଟି ହେଲା ପିଲା ଖେଳିବ ବୋଲି କଣ୍ଢେଇ ଦୋକାନରୁ ମୋଟରକାର୍‌ଟିଏ ନେଇ ଘର ବାହୁଡା ହେଲେ । ଜଣାଗଲା, ଦୋକାନରେ ସେ ହୋଇଥିଲେ ଗୋଟାଏ ନୀଚ୍ଛକ୍ ଧୂର୍ତ୍ତ ଭଦ୍ର ବେଶୀ ଚୋର ଯେମିତି ସମାଜରେ ଅନେକ । ସକାଳେ ଯେଉଁ ଗୃହ ମାଲିକ ସ୍ତ୍ରୀଙ୍କ ଆଗରେ ପରିବାବାଲା ପାଖରେ ଲାଞ୍ଛିତ, ଅପାରଗ ମଣିଷଟିଏ ସାଜିଥିଲା, ସନ୍ଧ୍ୟାକୁ ସେ ଜଣେ ପାରଗ ଶ୍ରଦ୍ଧାଶୀଳ ସ୍ୱାମୀ । ସ୍ତ୍ରୀ ତାଙ୍କୁ ସନ୍ଧ୍ୟାରେ ଖୁବ୍ ଶ୍ରଦ୍ଧା ସ୍ନେହ ପ୍ରଦର୍ଶନ କରୁଛନ୍ତି । ଭଲ ଭଲ ତରକାରୀ ରାନ୍ଧି ରାତ୍ରିଭୋଜନ ପରଷି ଦେଉଛନ୍ତି । ରାତିରେ ସେ ସ୍ତ୍ରୀ ସମ୍ଭୋଗରେ ସୁଖୀ ପୁରୁଷଟିଏ ବା ସୁସ୍ଥ ଜନ୍ତୁଟିଏ ପାଲଟି ଯାଉଛନ୍ତି ? ଲେଖକ ପ୍ରଶ୍ନ ଉଦ୍ରେକ କରିଛନ୍ତି ତେବେ ନାୟକଟି ପ୍ରକୃତରେ କାହାର ? ସେ ଭଗବାନଙ୍କର, ନାଁ ଭାରିଯାର, ନାଁ ଛୁଆଟାର, ନାଁ ହାକିମଙ୍କର, ନାଁ ଯାନ୍ତବ ପ୍ରବୃତ୍ତିର, ନାଁ ଆଦର୍ଶର - ସତରେ କାହାର ?

ସମସାମୟିକ ମଣିଷର ମାନସିକ ଓ ବ୍ୟବହାରିକ ଅବସ୍ଥାକୁ ସହାନୁଭୂତି ସହିତ ବାମାଚରଣ ଦେଖୁଥିଲେ । ଗପରେ ତାହାକୁ ହିଁ ରୂପ ଦେଉଥିଲେ । ସ୍ଥିତାବସ୍ଥା କାଟି ଏକ ମୁକ୍ତ ଦୁନିଆରେ ଯାଇ ଠିଆ ହେବାକୁ ସେ ସତେ ଯେପରି ପାଠକଙ୍କୁ ତାଙ୍କ ଗପ ମାଧମରେ ପ୍ରକାରାନ୍ତରେ ପ୍ରବୋଧିତ କରୁଥିଲେ ।

ପତ୍ରିକା : ଆଧୁନିକ

ଶାରଦୀୟ ବିଶେଷାଙ୍କ - ୨୦୧୫





Digitized by srujanika@gmail.com

# ସ୍ୱପ୍ନ ସାଧକର ସିଦ୍ଧି

ଶ୍ରୀ ଯତୀନ୍ଦ୍ର କୁମାର ନାୟକ

ଜୀବନରେ ସଂସ୍କୃତିକୁ ଏତେ ଦାନ ଦେଇଯିବା ପରେ ମଧ୍ୟ ମନହେଲା ସତେ ଯେପରି ସେ ବହୁତ କୃପଣ, ଅନେକ କିଛି ନ ଦେଇ, ନେଇ ଯିବାର ମିଥ୍ୟା ପ୍ରତିଶ୍ରୁତି ଦେଇ ସେ ଚାଲିଗଲେ । ଯୌବନରେ ବଳିଷ୍ଠ ଦୁଃସାହସୀ ଖେଳୁଆଡ଼ ଓ ପରିଣତ ବୟସର ନୀରବ ସାଧକ ବାମାଚରଣଙ୍କ ଜୀବନର ଅବସାନ ଘଟିଲା । ଚାଲିଯିବାର କିଛି ବର୍ଷ ପୂର୍ବରୁ ଗଳ୍ପ ଲେଖା ପ୍ରାୟ ଛାଡିଦେଇ ସେ ରମ୍ୟରଚନା ଲେଖିବା ଆରମ୍ଭ କରି ଦେଇଥିଲେ । ଏକ ଚମତ୍କାର, ଅଭୁତପୂର୍ବ ଲେଖନୀଭଙ୍ଗୀ ଧୀରେ ଧୀରେ ପାଠକ ସମାଜ ଆଗରେ ଚେତନାର ନବ ଦିଗନ୍ତ ଉନ୍ମୋଚନ କରି ଆଣୁଥିଲା । କିଛି ବିଶେଷ ଦେଇଯିବା ପୂର୍ବରୁ ସେ ହଠାତ୍ ଛାଡି ଚାଲିଗଲେ ।

ବାମାଚରଣଙ୍କ ପାଇଁ ସାହିତ୍ୟ ଜୀବନରୁ ପଳାୟନ ନଥିଲା । ବରଂ ଜୀବନକୁ ଗଭୀର ଭାବରେ ଅନୁଭବ କରିବାର, ଜିଜ୍ଞାସା କରିବାର ସୁଯୋଗ ଦେଉଥିଲା । ବ୍ୟକ୍ତିଗତ ଜୀବନରେ ନିଷ୍ପାପର ନ୍ୟାୟବାନ୍ ବାମାଚରଣ ସାହିତ୍ୟରେ ଜୀବନର ଏକ ପବିତ୍ରତାର ସଙ୍କେତ ଦେଉଥିଲେ । ଜୀବନ ଜଞ୍ଜାଳ ଭିତରେ ମଧ୍ୟ ସମୁଦ୍ର



Digitized by srujanika@gmail.com

ଦେଖୁଥିଲେ । କୃଷ୍ଣଲୀଳାର ବିଭୋର ଉପାସକ ବାମାଚରଣ ଦିବ୍ୟଦ୍ରଷ୍ଟା, ଅସୀମର ପୂଜାରୀ, ସୀମିତ ପୃଥିବୀ ତାଙ୍କୁ କେତେଦିନ ଧରି ରଖିଥାନ୍ତା ?

ବାମାଚରଣଙ୍କର ସମସ୍ତ ଗଳ୍ପ ଭିତରେ ଏହି ଗଭୀର ଜୀବନ ପ୍ରୀତି ହିଁ ଦେଖିବାକୁ ମିଳେ । ସବୁ ହିଂସା, ଦ୍ୱେଷ, ଈର୍ଷା ଭିତରେ ତଥାପି ବି ଅମୃତର ସନ୍ଧାନ ଅଛି, ସୁଖର ସଙ୍କେତ ଅଛି, ପ୍ରତିଟି ଗଳ୍ପ ତାଙ୍କର ପ୍ରକାଶ୍ୟ ଭାବରେ ଏହାହିଁ ଇଙ୍ଗିତ ଦିଅନ୍ତି । ଅଧିକାଂଶ ଗଳ୍ପରେ ମଧ୍ୟବିତ୍ତ, ନିମ୍ନମଧ୍ୟବିତ୍ତ ଜୀବନର ରୂପ ଦେଖିବାକୁ ମିଳେ । ଦୁଃଖ, ଦୁର୍ଦ୍ଦଶା, ତେଲ-ଲୁଣର ଜଞ୍ଜାଳ ଭିତରେ ତଥାପି ଆନନ୍ଦାନୁଭୂତି, ସ୍ନେହ, ପ୍ରେମ ଆପେ ଆପେ ଫୁଟି ଉଠନ୍ତି । ତାଙ୍କର "ସ୍ୱପ୍ନ ସିଦ୍ଧ" ଗଳ୍ପଟିକୁ ଅନୁଧ୍ୟାନ କଲେ ଏହି ମହନୀୟ ଜୀବନ ଦୃଷ୍ଟି ଅନୁଭବ କରିହୁଏ । ନିମ୍ନ ମଧ୍ୟବିତ୍ତ ପରିବାରରେ ଗୋଟିଏ ଦିନର କାହାଣୀ । ଛୋଟ ଭାଇ ଛୋଟ ଭଉଣୀର ବିଭାଘରରେ ବରଯାତ୍ରୀ ହୋଇ ଯିବାକୁ ନାମଙ୍ଗ । ଏହିଥିରୁ ଦୁହିଁଙ୍କ ଭିତରେ କନ୍ଦଳ, ମାଡପିଟ ଓ କାନ୍ଦକଟା । ଏତେ ଛୋଟ ଛୋଟ ପିଲାଙ୍କ ମନରେ ଏତେ ଦ୍ୱେଷ, ଏତେ ତିକ୍ତତା କିଏ ଭରିଦେଲା ଭାବି ବିସ୍ମିତ ହେଉଥିବା ପିତା ହଠାତ୍ ରାତିର ଅନ୍ଧାରରେ ଆହୁରି ବିସ୍ମିତ ହୋଇଛନ୍ତି ଯେତେବେଳେ ଛୋଟ ପୁଅ ତାଙ୍କର ନିଦରୁ ବିଳିବିଳେଇ ଉଠୁଛି- ବୋଉ ମୋତେ ଗୋଟାଏ ବନ୍ଧୁକ ଦେ । ମୀ ାକୁ ବାଘ ନେଇ ଯାଉଛି, ମୁଁ ତାକୁ ମାରି ପକାଇବି । ଜାଗ୍ରତ ଦୁନିଆର ସବୁ ବାଦଛିଦ୍ର, ତିକ୍ତତା ତଳେ ତଳେ ନୀରବ ଭାବରେ ବହିଯାଉଥିବା ଶ୍ରଦ୍ଧା ପ୍ରୀତିର ଫଲ୍‌ଗୁ ହଠାତ୍ ଯେପରି ଶିଶୁର ବିଚ୍ଛିନ୍ନ ସଂଳାପ ଭିତରେ ଉଚ୍ଛୁଳି ଉଠିଛି । ଯେଉଁଠି ଅନ୍ୟ କେହି ନିରାଶ ହୋଇ ଅଟକି ଯାଏ ମଣିଷକୁ ଅବିଶ୍ୱାସ କରି ପଶୁ ବୋଲି ଭାବି ବିତସ୍ପୃହ ହୋଇପଡେ, ବାମାଚରଣ ସେଇଠାରେ କ୍ରାନ୍ତଦର୍ଶୀ କବି ଭାବରେ ଅମୃତର ସନ୍ଧାନ ଦିଅନ୍ତି । ସେଇଠି ତାଙ୍କର ଦିବ୍ୟଦୃଷ୍ଟି ଜୀବନର ବିଚିତ୍ର ସ୍ୱାଦ ସମ୍ପର୍କରେ ସଚେତନ କରେଇ ଦିଏ । "ଆଗନ୍ତୁକ" ଠିକ୍ ଏଇଭଳି ଅମୃତର ସ୍ୱାଦ ଦେଇଥାଏ । ନାୟକ ନିଜର ଆସନ୍ନପ୍ରସବା ସ୍ତ୍ରୀଙ୍କୁ ସ୍ୱାସ୍ଥ୍ୟକର ଖାଦ୍ୟ ଦେବାପାଇଁ କୁକୁଡା ରଖିଛନ୍ତି । କିନ୍ତୁ କୁକୁଡା ବାହାରେ ତାର ଅଣ୍ଡା ଲୁଚାଇ ରଖି ଆସୁଛି । ଶେଷରେ ପତ୍ନୀ ସନ୍ତାନ ଜନ୍ମ ହେଲାବେଳେ କୁକୁଡା ସଗର୍ବେ ତାର ସନ୍ତାନମାନଙ୍କୁ ମଧ୍ୟ ସମୁଦ୍ରରେ ଉଦ୍‌ବେଳିତ ପୃଥିବୀର ଆଗନ୍ତୁକ ଭାବରେ ଗ୍ରହଣ କରିଛନ୍ତି । ବାମାଚରଣଙ୍କର ଭାଷା ଓଡ଼ିଆ ସାହିତ୍ୟର ଅମୂଲ୍ୟ ସମ୍ପଦ । ଫକୀର ମୋହନ ଯେଉଁ ସହଜ ସାବଲୀଳ କିନ୍ତୁ ରସାଣିତ ଭାଷାର ଅୟମାରମ୍ଭ କରିଥିଲେ ବାମାଚରଣ ପାଦେ ଆଗେଇଯାଇ ସେ



Digitized by srujanika@gmail.com

ଭାଷାକୁ ଦର୍ଶନ ଠାରୁ ଆରମ୍ଭ କରି ବିମଳ ହାସ୍ୟ ପର୍ଯ୍ୟନ୍ତ ସବୁକିଛି ପ୍ରକାଶ କରିବାର କ୍ଷମତା ଦେଇ ଯାଇଛନ୍ତି । ଜଣେ ବନ୍ଧୁ ଆଉଜଣେ ବନ୍ଧୁ ସହ ମନ ଖୋଲି କଥା କହିବାର ଅନୁଭୂତି କେବଳ ବାମାବାବୁଙ୍କର ଗଳ୍ପ, ରମ୍ୟ ରଚନାରୁ ମିଳିଥାଏ । ସ୍ୱତଃସ୍ଫୁର୍ତ୍ତ ଭାବରେ ଚିନ୍ତା ପ୍ରକାଶ ପାଇଯାଏ, ଧରାବନ୍ଧା କିଛି ନୀତି ନିୟମ ଭିତରେ ବାନ୍ଧି ହୋଇ ରହେନାହିଁ । ଗୋଟାଏ ଉଦାହରଣ ଯଥେଷ୍ଟ ହେବ । କ୍ରୋଧାନ୍ଧ କିରାଣୀ ବାପ ପୁଅକୁ କହୁଛି- ମୁଁ କହୁଛି ତୁ ମୋ ଘରୁ ବାହାରି ଯା । ପୁଅ କିନ୍ତୁ ଉତ୍ତର ଦେଉଛି- ଏ ଘର ମୋ ବାପାର । ତମ ବାପାର ନୁହେଁ । ତେଣୁ ମୁଁ କାହିଁକି ବାହାରି ଯିବି । ମଧ୍ୟବିତ୍ତ ଜୀବନର ଏହି ସ୍ୱାଦ ଟିକକ ଏଠି ଯେତେ ହୃଦ୍ୟ ଭାବରେ ପରିବେଷିତ ହୋଇଛି ତାହା ଅନ୍ୟ କେଉଁଠି ହୋଇଥିଲା ଭଳି ଲାଗେନାହିଁ ।

ପରିଣତ ବୟସରେ ବାମାଚରଣ ପ୍ରାୟ ଗଳ୍ପ ଲେଖା ଛାଡି ଦେଇଥିଲେ । ଏଥର କିନ୍ତୁ ସେ ଯେଉଁଥିରେ ହାତ ଦେଲେ ସେଥିରେ ସେ ଏକ ନୂତନ ଜୀବନ ଭରିଦେଲେ । ଗାଳ୍ପିକର ଅନୁପମ କଥନ ଭଙ୍ଗୀ, ଦାର୍ଶନିକର ଜୀବନ ଜିଜ୍ଞାସା, ଜୀବନ-ପ୍ରେମିକର ହାସ୍ୟମୟ ଅନୁରାଗ, ଜ୍ଞାନୀର ଗଭୀର ଅଧ୍ୟୟନ ସବୁକିଛିକୁ ଏକତ୍ର କରି ସେ ଏକ ଭିନ୍ନ ସ୍ୱାଦର ସୃଷ୍ଟିର ସନ୍ଧାନ ନେଲେ । ଅନୁଚିନ୍ତା ଓ ଅଧ୍ୟୟନ ଉଭୟ ମିଳିତ ଭାବରେ ଦେଖାଯାନ୍ତି । ତାଙ୍କର ପ୍ରସିଦ୍ଧ ପ୍ରବନ୍ଧ, "ଜୀବନ ସାହିତ୍ୟ ଓ କଳା"ରେ । ଯେଉଁ ସମସ୍ୟା ଗଭୀର ତାତ୍ତ୍ୱିକ ବିଶ୍ଳେଷଣ ଆବଶ୍ୟକ କରେ ତାକୁ ଏତେ ସହଜ ଉଦାହରଣ ଦେଇ ବୁଝାଇଦେବାର ଶକ୍ତି ଖୁବ୍ ଅଳ୍ପ ଲୋକଙ୍କର ଥାଏ । ତାଙ୍କ ମତରେ ସାହିତ୍ୟିକ ସୃଷ୍ଟି ପାଠକକୁ ଏକ ନିର୍ଦ୍ଦିଷ୍ଟ ଗଭୀରତା ଆଡକୁ ନେଇଯିବାର ଚେଷ୍ଟା କରେ । ଅନ୍ତତଃ ସେହି ଗଭୀରତାର ନିକଟବର୍ତ୍ତୀ ହୋଇପାରିଲେ ସାହିତ୍ୟ ସୃଷ୍ଟି ସାର୍ଥକତା ଲାଭକରେ । ତାର ପରେ ପରେ ତାଙ୍କର ଅନ୍ୟତମ ବିଶିଷ୍ଟ ପ୍ରବନ୍ଧ "ପରିକ୍ରମା" ଚିନ୍ତା ଜଗତରେ ଆଲୋଡନ ଆଣେ । ସାହିତ୍ୟ, ସଙ୍ଗୀତ ଓ ଚିତ୍ରକଳାର ଏକ ସାମଗ୍ରୀକ ବିଶ୍ଳେଷଣ କରି ବାମାଚରଣ ଏହି ଧାରାବାହିକ ପ୍ରବନ୍ଧରେ ନିଜର ମୌଳିକ ଚିନ୍ତାଗୁଡିକୁ ସରସ ଭାବରେ ଉପସ୍ଥାପିତ କରିଛନ୍ତି । ଭାବ ଏକ ନିର୍ଦ୍ଦିଷ୍ଟ ଉଚ୍ଚତାରେ ପହଁଚିଲେ ଭାଷା ସେଠାରେ ତାକୁ ରୂପ ଦେବାକୁ ଅକ୍ଷମ ହୋଇପଡେ । ସେହିଠାରୁ କେବଳ ଶବ୍ଦ ହିଁ ତାର ପ୍ରକାଶ କରେ । ସ୍ପଷ୍ଟ (articulare) ଭାଷାଦେଇ ତାକୁ ପ୍ରକାଶ ଅସମ୍ଭବ । ହିନ୍ଦୁସ୍ଥାନୀ ଶାସ୍ତ୍ରୀୟ ସଙ୍ଗୀତଠାରୁ ଆରମ୍ଭ କରି ଶରତଚନ୍ଦ୍ରଙ୍କର "ଟ୍ୟାଙ୍ଗଡିଆ ଟ୍ୟାଙ୍ଗହିଆ", ପର୍ଯ୍ୟନ୍ତର ଉଦାହରଣ ଦେଇ ବାମାଚରଣ କି ସୁନ୍ଦର ଭାବରେ ଏହି ସୁନ୍ଦର ତଥ୍ୟଟିକୁ ବୁଝାଇ ଦେଇଛନ୍ତି ? ଅଭିସାରିକା ତାର ପ୍ରିୟତମ ସହିତ ମିଳିତ



Digitized by srujanika@gmail.com

ହେବ ନିରାଭରଣ ଭାବରେ । ନ ହେଲେ କଙ୍କଣର ଶବ୍ଦରେ ସେ ଧରା ପଡ଼ିଯିବ । ଏହି ଉଦାହରଣଟିକୁ ନେଇ ସେ ଯେଉଁଭଳି ଭାବରେ ରୀତିଧର୍ମୀ ସାହିତ୍ୟର ବିପଦ ସୂଚେଇ ଦେଇଛନ୍ତି ତାହା ଅନନ୍ୟ । ଶେଷରେ ବ୍ୟାକୁଳ ଭାବରେ ତାଙ୍କର ଜିଜ୍ଞାସା-ଅହଂର ଜଗଦ୍ଦଳ ପଥର କାହିଁକି ମଣିଷର ମନ ଉପରେ ପ୍ରଭୁ ଚପେଇ ଦେଇଛନ୍ତି" ।

ପରେ ପରେ ପ୍ରକାଶିତ ହୋଇଥିବା "ଅନୁବାଦ ବିଭ୍ରାଟ" ଓ "ଅଭିନେତା ଅଭିନୟ" ଆହୁରି ପ୍ରାଞ୍ଜଳ ଭାବରେ ଜୀବନର ଜଟିଳ ଦିଗକୁ ଉନ୍ମୋଚିତ କରିଛନ୍ତି । ଅନୁଭୂତିର ଅନ୍ଧାରି ଇଲାକାରୁ ନୂତନତାର ସନ୍ଧାନ ଦେଇଛନ୍ତି । ଭାଷାର ପ୍ରୟୋଗ ସେଇଭଳି ଚମତ୍କାର । "ପ୍ରଜାପତିଟିଏ ତୁରୁଙ୍ଗ ତୁରୁଙ୍ଗ ହୋଇ ବାୟୋନେଟ୍‌ର ଆଗରେ ବସୁଛି । ତାର ଶ୍ରୁରାମ ଭୂମିକାରେ ଅଭିନୟ କରୁଥିବା ବାମାବାବୁଙ୍କର ସାର୍ ବିଚଳିତ ହୋଇ କମ୍ପି ଉଠୁଛନ୍ତି । ସବୁ ଭିତରେ ସେହି ରସାଣିତ ଜୀବନ ଦୃଷ୍ଟି ଫୁଟି ଉଠୁଛି । ଭାଷା ତାର ଅବରୋଧ କରୁନାହିଁ, ବରଂ ତା ସହ ମିଶି ଲୀନ ହୋଇଯାଉଛି । ବାମାବାବୁଙ୍କ "ଏଣ୍ଡୁଷ ତେଣ୍ଡୁଷ" ପଢ଼ିଲାବେଳେ ଫ୍ରଷ୍ଟଙ୍କ କବିତା ସମ୍ପର୍କରେ କୁହାଯାଉଥିବା ଗୋଟିଏ କଥା ମନେପଡେ । ଫ୍ରଷ୍ଟଙ୍କ କବିତା ଆରମ୍ଭ ହୁଏ ଆନନ୍ଦରୁ, ଶେଷ ହୁଏ ବିଜ୍ଞତାରେ । "ଏଣ୍ଡୁଷ ତେଣ୍ଡୁଷ"ର ପ୍ରତ୍ୟେକ ପ୍ରବନ୍ଧ ତିନୋଟି ସ୍ତର ଦେଇ ଗତିକଲା ଭଳି ମନେହୁଅନ୍ତି । ପ୍ରଥମଟି ନିହାତି ସାଂସାରିକସ୍ତର, ବନ୍ଧୁଙ୍କ ସହ ଆଳାପ, ପୁଅର ପରୀକ୍ଷା ପ୍ରଶ୍ନର ଉତ୍ତର, ଘରଣୀଙ୍କ ମିଠାଖଟା ସମ୍ଭାଷଣ । ଦ୍ୱିତୀୟଟି ବୌଦ୍ଧିକ ସ୍ତର । ଏଠାରେ ଯୁକ୍ତିତର୍କ ଜ୍ଞାନଦୀପ୍ତ ଆଲୋଚନା, ସମାଲୋଚନା, ଟେବୁଲ ବାଡିଆ ଯେ ନହୁଏ ଏକଥା ନୁହେଁ, ତୃତୀୟ ସ୍ତରଟି ଏକାବେଳେକେ ଅନୁଭୂତିର ଶୀର୍ଷତମ ସ୍ତର । ଏଠାରେ ପାଠକ ବିଭୋର ନ ହେବାକୁ ବାଟ ନାହିଁ । ଫୈୟାଦ୍ ଖାଙ୍କର ସଙ୍ଗୀତ ଏହି ସ୍ତରର ଭିତରେ ବର୍ଷା ଆରମ୍ଭ କରିଦିଏ । ବିଚଳିତ ଜନତା କୋହ କୋହ ହୋଇ ପରସ୍ପରକୁ ଚାହିଁ ରହନ୍ତି । ପ୍ରକାଶ କରିବାର ସାମର୍ଥ୍ୟ ଟିକେ ବି ଚାଲିଯାଏ ।

ବାମାଚରଣ ଚାଲିଯିବାପରେ ଏହି ଆନନ୍ଦାନୁଭୂତି ଓଡ଼ିଆ ପାଠକ ଆଉ ପାଇ ପାରିବ କି ନା ତାହା ସନ୍ଦେହ । ତାଙ୍କ ସାହିତ୍ୟର ମୂଲ୍ୟାଙ୍କନ ହୋଇନାହିଁ । ଉଦାସୀନ ଓଡ଼ିଆ ସମାଲୋଚନା ସାହିତ୍ୟର ନିଦ କେବେ ଭାଙ୍ଗିବ । ଅତିନ୍ଦ୍ରିୟ ଅନୁଭୂତିର ନୀରବ ଉପାସକ ବାମାଚରଣ କେବେ ତାଙ୍କର ଉପଯୁକ୍ତ ମୂଲ୍ୟାଙ୍କନ ପାଇ ପାରିବେ ସେ ଦିନର ଅପେକ୍ଷା ରହିଲା ।

ପତ୍ରିକା - 'ମାନସ'



ଫେବୃଆରୀ ୧୯୭୬



Digitized by srujanika@gmail.com

# ସନ୍ନ୍ୟାସୀ ବାମାଚରଣ ମିତ୍ର

ମୂଳ ରଚନା : ଶ୍ରୀମତୀ ମୈତ୍ରୀ ଶୁକ୍ଳ

ଭାଷାନ୍ତର : ମେଜର ପ୍ରାଣନାଥ ଘୋଷ

ମିତ୍ରବଂଶର ସଂକ୍ଷିପ୍ତ ଇତିହାସ ହେଲା ବାମାଚରଣଙ୍କ ପୂର୍ବପୁରୁଷଙ୍କ ମଧ୍ୟରୁ ଅନେକ ଶ୍ରୀଚୈତନ୍ୟ ଦେବଙ୍କର ଅନୁଚର ହୋଇ ଓଡ଼ିଶାକୁ ସପରିବାର ଆସିଥିଲେ ଏବଂ ସେମାନଙ୍କ ମଧ୍ୟରୁ କେହି କେହି ଏ ଦେଶର ନାରୀଙ୍କୁ ବିବାହ କରି ଏଠାରେ ବସବାସ ଆରମ୍ଭ କରିଥିଲେ । ଏହି ମାନଙ୍କ ମଧ୍ୟରୁ ଏକ ମଧ୍ୟବିତ୍ତ ପରିବାରରେ ବାମାଚରଣଙ୍କର ଜନ୍ମ । ପିତା କୃଷ୍ଣପ୍ରସାଦ ମିତ୍ର ଯାଜପୁର ଜିଲ୍ଲାର ବରୁହାଁ-ପୁରୁଷୋତ୍ତମପୁର ଗ୍ରାମରେ ବସବାସ ସ୍ଥାପନ କରିଥିଲେ । ବାମାଚରଣ ତାଙ୍କର ଦ୍ୱିତୀୟ ପୁତ୍ର, ଡାକନାମ ବାଉଲା ବାମାଚରଣଙ୍କର ଜନ୍ମ ଇଂରାଜୀ ଡିସେମ୍ବର ୧୭ ତାରିଖ ୧୯୧୫ ମସିହାରେ ଏବଂ ମୃତ୍ୟୁ ଫେବୃଆରୀ ୨୧ ତାରିଖ ୧୯୭୫ ମସିହାରେ ।

ବାମାଚରଣ ଓଡ଼ିଶାବାସୀ ବଙ୍ଗାଳୀ । ତାଙ୍କର ଶିକ୍ଷାର ମାଧ୍ୟମ ଥିଲା ଓଡ଼ିଆ । ମାତୃଭାଷା କେରା । ଖାଣ୍ଟି ବଙ୍ଗାଳୀମାନେ ନିମ୍ନ ଦୃଷ୍ଟି ଯୋଗେ ଉକ୍ତ ସମ୍ପ୍ରଦାୟ ସମ୍ପର୍କରେ ଏହା ପ୍ରୟୋଗ କରିଥାନ୍ତି । ସବୁ ଦେଶରେ ସ୍ତ୍ରୀ ଶିକ୍ଷା ଅନେକ ଡେରିରେ



Digitized by srujanika@gmail.com

ଆରମ୍ଭ ହୋଇଥିଲା । ସନ୍ତାନ ଭାଷା ଶିଖିବାକୁ ଆରମ୍ଭ କରେ ତା ମା' ପାଖରେ । ସେଥିପାଇଁ ମଣିଷର ଭାଷାକୁ ମାତୃଭାଷା କୁହାଯାଏ । ବଙ୍ଗାଳୀଙ୍କର ସ୍ୱଳ୍ପ ଶିକ୍ଷିତ ବିବାହିତା ନାରୀ, ବଙ୍ଗାଳୀ ଓ ଓଡ଼ିଆ ଗୃହିଣୀ, ସନ୍ତାନର ଜନନୀ ହେବା ପରେ ନିଜର ଭାଷାର ବୈଶିଷ୍ଟ୍ୟ ରଖି ନ ପାରିବା ଫଳରେ ଓଡ଼ିଆ ସହିତ ମିଶ୍ରିତ ଏହି ବଙ୍ଗଳା ଭାଷାଟି 'କେରା' ନାମରେ ଅଭିହିତ । 'କେରା' ଭାଷାରେ ପ୍ରତି ଶବ୍ଦ ସହିତ କରେ ବ୍ୟବହାର କରାହୁଏ ଯେପରିକି 'ଖେୟେ ନିୟେ"କୁ କେରା ଭାଷାରେ କହନ୍ତି 'ଖାୟେ କରେ' । ବାମାଚରଣଙ୍କର ଭାଷା 'କେରା' ହେଲେ ମଧ୍ୟ ସେ ବିଶୁଦ୍ଧ ବଙ୍ଗଳା ଭାଷାରେ ବଙ୍ଗାଳୀମାନଙ୍କ ସହିତ କଥାବାର୍ତ୍ତା କରିପାରୁଥିଲେ । ତାଙ୍କର ଓଡ଼ିଆ ଭାଷାରେ ଦଖଲର ପ୍ରମାଣ ତାଙ୍କର ସାହିତ୍ୟ ସୃଷ୍ଟି । ଥରେ ମୋ ସହିତ ସେ ବହୁତ ସମୟ ଧରି ବିଶୁଦ୍ଧ ବଙ୍ଗଳା ଭାଷାରେ କଥାବାର୍ତ୍ତା କରିବା ପରେ କହିପକାଇଲେ, 'ମୋ ପେଟ ଫାମ୍ପି ଉଠିଲାଣି, ଏବେ ଟିକେ 'କେରା' କଥା ନ କହିଲେ ବହୁତ ଅସ୍ୱସ୍ତି ଲାଗୁଛି' । ଇଂରେଜ ସରକାରଙ୍କ ସମୟରେ ଏହି କେରାମାନଙ୍କର ଏକ ବିଶେଷ ପଦମର୍ଯ୍ୟାଦା ଥିଲା ।

କଟକରେ ଆମ ସାହି ବାଖରାବାଦ ପାଖରେ ସନ୍‌ସାଇନ୍ ଖେଳପଡିଆକୁ ଲାଗି ବାମାଚରଣଙ୍କର ଘର ଥିଲା । ବାମାଚରଣଙ୍କ ସହିତ ମୋର ପରିଚୟ ଅତି ବାଲ୍ୟକାଳରୁ । ସାହିପିଲା ହିସାବରେ କୈଶୋର କାଳର ସଙ୍କୋଚ ବଶତଃ ପରିଚୟ ମଧ୍ୟରେ ଘନିଷ୍ଠତା ନଥିଲା । କିନ୍ତୁ ଏହି ଦୂରତ୍ୱର ମଧ୍ୟ ଦେଇ ବାମାଚରଣଙ୍କ କାର୍ଯ୍ୟକଳାପ ମୁଁ ଲକ୍ଷ୍ୟ କରୁଥିଲି । କାଠଯୋଡି ନଦୀରେ ପହଁରିବା ଓ ଦେହରେ ଓଦାଗାମୁଛା ପକାଇ କାଠଯୋଡି ନଦୀବନ୍ଧରେ ବୁଲିବା ଦେଖେ । ବାମାଚରଣ ଥିଲେ ଜଣେ ଦକ୍ଷ ସନ୍ତରଣକାରୀ । ରେଭେନ୍‌ସା କଲେଜରେ ସେ ଛାତ୍ର ଥିବା ସମୟରେ କଲେଜର ବାର୍ଷିକ ସନ୍ତରଣ ପ୍ରତିଯୋଗିତାରେ ସେ ଶ୍ରେଷ୍ଠ ବିବେଚିତ ହୋଇଥିଲେ । ସେ ଉକ୍ତ କଲେଜରେ ୧୯୩୩ ମସିହାରେ ଅନୁଷ୍ଠିତ ୪୪୦ ଗଜ ସନ୍ତରଣ ପ୍ରତିଯୋଗିତାରେ ୪ ମିନିଟ ୩୬ ସେକେଣ୍ଡ ସମୟରେ ପହଁରି ସର୍ବୋଚ୍ଚ ରେକର୍ଡ କରିଥିଲେ । ରେଭେନ୍‌ସା କଲେଜ କ୍ୟାଲେଣ୍ଡର ୧୯୪୮-୪୯, ୧୩୮ ପୃଷ୍ଠାରେ ଏ ବିଷୟ ପ୍ରକାଶିତ ହୋଇଛି । ସେତେବେଳେ ୪୪୦ ଗଜ ସନ୍ତରଣ ପ୍ରତିଯୋଗିତା ବିଶ୍ୱ ରେକର୍ଡ ଥିଲା ୪ ମିନିଟ୍ ୩୮.୫ ସେକେଣ୍ଡ । ମୋର ଜାଣିବାର ବାମାଚରଣଙ୍କ ସୃଷ୍ଟ ଉକ୍ତ ରେକର୍ଡ ରେଭେନ୍‌ସା କଲେଜର ସନ୍ତରଣ ପ୍ରତିଯୋଗିତା ଇତିହାସର ଏପର୍ଯ୍ୟନ୍ତ ବଳବତ୍ତର ରହିଛି । ବାମାଚରଣ



Digitized by srujanika@gmail.com

ହକି ଖେଳରେ ମଧ ଖୁବ୍ ପାରଦର୍ଶିତା ଲାଭ କରିଥିଲେ । ସେ ରେଭେନ୍‌ସା କଲେଜ ହକି ଟିମ୍‌ରେ ସ୍ଥାନ ପାଇ ବିଭିନ୍ନ ହକି ପ୍ରତିଯୋଗିତାରେ ଅଂଶଗ୍ରହଣ କରି ଖ୍ୟାତି ଅର୍ଜନ କରିଥିଲେ ।

ବାମାଚରଣ ଓଡ଼ିଶା ସେକ୍ରେଟେରିଏଟରେ ଚାକିରି ପାଇବା ମୂଳରେ ଥିବା ଇତିହାସ ଚିତ୍ତାକର୍ଷକ ଘଟଣା । ବ୍ରିଟିଶ ଅମଳର କଥା, ବର୍ଷାକାଳ, କାଠଯୋଡି କୂଳ ଉଛାର ତରଙ୍ଗସଙ୍କୁଳା ଇଂରେଜ କଲେକ୍ଟର ନଦୀବନ୍ଧରେ ବୁଲୁଛନ୍ତି ଓ ନଦୀର ଏହି ଭୈରବୀ ମୂର୍ତ୍ତି ଉପଭୋଗ କରୁଛନ୍ତି । ସେହି ସମୟରେ ଦେଖାଗଲା ଦୂର ନଦୀବନ୍ଧରେ ଗୋଟିଏ ଜୀବନ୍ତ ମହିଁଷି ଭାସିଯାଉଛି । ଦୃଶ୍ୟଟି ଆଖିରେ ପଡିବା ମାତ୍ରେ ଯୁବକଟିଏ ତତ୍‌କ୍ଷଣାତ୍ ଡେଇଁପଡିଲେ ଖରସ୍ରୋତା ନଦୀ ବକ୍ଷରେ, ମହିଁଷିଟିକୁ ଟାଣି ଟାଣି ନେଇଆସିଲେ ନଦୀ କୂଳକୁ । ଏହି ସାହସୀ ଯୁବକଟି ଉଚ୍ଚଶିକ୍ଷିତ ସାହିତ୍ୟିକ ବାମାଚରଣ ମିତ୍ର, ଏମ୍.ଏ.ବି.ଏଲ୍ । ଗୁଣଗ୍ରାହୀ ଇଂରେଜ କଲେକ୍ଟର ତାଙ୍କୁ ଡାକି ପରିଚୟ ଜିଜ୍ଞାସା କଲେ ଏବଂ ଗୁଣଗ୍ରାହୀତାର ନିଦର୍ଶନ ସ୍ୱରୂପ ସରକାରୀ ଚାକିରିରେ ନିଯୁକ୍ତି ଦେଲେ ।

ସ୍ୱଚ୍ଛନ୍ଦ ଗତି ଏହି ଦୀର୍ଘଦେହୀ ସୁପୁରୁଷଙ୍କ ସାନ୍ଧ୍ୟ ଭ୍ରମଣର ପ୍ରିୟ ସ୍ଥାନ ଥିଲା କାଠଯୋଡି ବନ୍ଧ । ବନ୍ଧୁମହଲରେ ତାଙ୍କର ବିପୁଳ ପ୍ରତିଷ୍ଠା ଥିଲା; ସ୍ନେହପ୍ରବଣତା ହେତୁ ସେ ଥିଲେ ସର୍ବଜନପ୍ରିୟ । ମୋର ବାଲ୍ୟବନ୍ଧୁ ଜ୍ୟୋତିରିନ୍ଦ୍ର ମୋହନ ଢୋଆର୍ଦାର ଓ ଶିଳ୍ପୀ ଅସିତ ମୁଖାର୍ଜୀଙ୍କ ନିକଟରୁ ବାମାଚରଣଙ୍କର ଅନେକ ସୁଖ୍ୟାତି ମୁଁ ଶୁଣିଛି ।

ବାମାଚରଣ ସହିତ ମୋର ପରିଚୟରେ ଘନିଷ୍ଠତା ଆସିଲା ୧୯୪୫ ମସିହା ବେଳକୁ । ସେତେବେଳକୁ ସେ ବିବାହିତ; ସୁନ୍ଦରୀ ସ୍ତ୍ରୀ "ପ୍ରତିଭାମୟୀ'ଙ୍କର ସ୍ୱାମୀ ଓ ପ୍ରଥମ କନ୍ୟା ସନ୍ତାନ 'ଶଙ୍କରୀ'ର ପିତା । ଶଙ୍କରୀ ସେତେବେଳେ ଶିଶୁ । ଏହି ଶିଶୁର ଚିକିତ୍ସା ସୂତ୍ରେ ବାମାଚରଣଙ୍କ ସହିତ ମୋର ଘନିଷ୍ଠତା ହୁଏ । ସେତେବେଳେ ସେ ଓଡ଼ିଶା ସେକ୍ରେଟେରିଏଟରେ ନିଯୁକ୍ତ ଥିଲେ । ତାଙ୍କ କଥାବାର୍ତ୍ତାରେ ଲକ୍ଷ୍ୟ କରିଛି କନ୍ୟା ପ୍ରତି ତାଙ୍କର କି ଅପରିମେୟ ସ୍ନେହ । ମନେପଡେ ଶଙ୍କରୀର ପ୍ରଥମ ସନ୍ତାନ ପ୍ରସବ ସମୟ- ରାତି ପାହାନ୍ତା ବେଳକୁ ମତେ ଡାକରା ପଡିଲା, ଡାକ୍ତର ହିସାବରେ । ଭୁବନେଶ୍ୱରର ୟୁନିଟ ୨ ସ୍ଥିତ ସରକାରୀ ବାସଭବନରେ ସେ ସେତେବେଳେ ରହୁଥିଲେ । ଆସି ଦେଖେ ସର୍ବନାଶ, ବାମାଚରଣଙ୍କର ପ୍ରିୟ ଲେଖାପଢ଼ା ଘରର ଚେଆର ଟେବୁଲ ଲେଖା ସରଞ୍ଜାମ ସବୁ ଜମା ହୋଇଛି



Digitized by srujanika@gmail.com

ବାରଣ୍ଡାରେ- ସେ ନିଜେ ମଧ୍ୟ ସେହି ବାରଣ୍ଡାରେ ଲମ୍ବମାନ । ଶୁଣିଲି ଶଙ୍କରୀ ପ୍ରସୂତି ଘର ଭାବରେ ବାମାଚରଣଙ୍କର ପଢ଼ାଘରଟିକୁ ମନୋନିତ କରିଛି । ସୁତରାଂ ତାଙ୍କର ପ୍ରଥମ ନାତିର ଉଦୟ ହେଲା ତାଙ୍କର ସେହି ଲେଖାପଢ଼ା ଘରଟିରେ ।

ଘରର ଅନ୍ଦର ମହଲରେ କିନ୍ତୁ ଗୋଟିଏ କୋଠରୀ ଖାଲି ଥିଲା । ବାମାଚରଣ କନ୍ୟାର ମନୋରଞ୍ଜନ ପାଇଁ ତାଙ୍କର ସାହିତ୍ୟ ସୃଷ୍ଟିର ପ୍ରିୟ ଘର ମଧ୍ୟରୁ ସାମୟିକ ଭାବରେ ବିଚ୍ୟୁତ ହେଲେ । କମ୍ ଆତ୍ମତ୍ୟାଗ ନୁହେଁ । ନାତିଟି ଯେତେବେଳେ ଗୁରୁଣ୍ଡିବାକୁ ଆରମ୍ଭ କରେ ତାଙ୍କୁ ଥରେ ଦେଖିଲି ତାଙ୍କର ଲେଖା ବନ୍ଦ କରି ସ୍ମିତମୁଖରେ ନାତିର ନବ ନବ ଉଦ୍ୟମ ନିରୀକ୍ଷଣ କରୁଛନ୍ତି ।

ଲେଖକ ହିସାବରେ ତାଙ୍କର ପ୍ରତିଷ୍ଠା ହେଲା ସେ ଯେତେବେଳେ କର୍ମକ୍ଷେତ୍ରରେ ନିଯୁକ୍ତ । ତାଙ୍କର ସାହିତ୍ୟିକ ଜୀବନର ପ୍ରଥମ ପୁରସ୍କାରର ଟଙ୍କା ଦେଇ ମା'ଙ୍କ ପାଇଁ ସେ ଥାନ ଧୋତି କିଣିଥିଲେ । ପ୍ରଥମେ ସେ ପାଇଥିଲେ ପ୍ରଜାତନ୍ତ ପୁରସ୍କାର ଓ ପରେ ମରଣୋତ୍ତର ଓଡ଼ିଶା ସାହିତ୍ୟ ଏକାଡେମୀ ପୁରସ୍କାର । ପ୍ରଖ୍ୟାତ ଓଡ଼ିଆ ସାହିତ୍ୟିକ ଓ ଏମ୍.ପି. ଶ୍ରୀ ସୁରେନ୍ଦ୍ର ମହାନ୍ତିଙ୍କର ଲିଖିତ ଐତିହାସିକ ଉପନ୍ୟାସ 'ନୀଳଶୈଳ' ବାମାଚରଣ ଓ ଶ୍ରୀ ଜ୍ୟୋତିରିନ୍ଦ୍ର ମୋହନ ଜୋଆର୍ଦାର ଏକତ୍ର ବଙ୍ଗଳା ଭାଷାରେ ଅନୁବାଦ କରିଥିଲେ ଏବଂ ନ୍ୟାସନାଲ ବୁକ୍ ଟ୍ରଷ୍ଟ ଇଣ୍ଡିଆ ବହିଟି ୧୯୭୬ ମସିହାରେ ଦିଲ୍ଲୀରୁ ପ୍ରକାଶ କରିଥିଲେ ।

ମୁଁ ତାଙ୍କର ଲେଖା ସହିତ ଖୁବ୍ ବେଶି ପରିଚିତ ନୁହେଁ । ତାଙ୍କର ଯେଉଁ କେତୋଟି ଲେଖା ସେ ମୋତେ ପଢ଼ି ଶୁଣାଇଥିଲେ ତାହା ଅପୂର୍ବ । ମାନବ ମନର ଗହନ ବନରେ ବିଚରଣ- ସେ ଅରଣ୍ୟ ନିଶୀଥର ତିମିସ୍ରାରେ ଆଚ୍ଛନ୍ନ । ସତେ ଯେପରି ଲେଖକ ଧୀରେ ଧୀରେ ଆଲୋକ ବର୍ତ୍ତିକା ଦେଖାଇ ବିଚରଣ କରୁଛନ୍ତି । ଜଗତର ନିଦାରୁଣ ସତ୍ୟ ପ୍ରତିଭାତ ହେଉଛି- କଣ୍ଟକିତ ଗୁଳ୍ମ ଗୁଚ୍ଛ ସମୀପରୁ ହେନାର ସୁଗନ୍ଧ ମନକୁ ଆମୋଦିତ କରୁଛି । ଅନେକ ସମୟରେ ଭାବପ୍ରବଣତା ବିହୀନ ଲେଖା ସୃଷ୍ଟି- ଶଲ୍ୟ ଚିକିତ୍ସକଙ୍କର ଅସ୍ତ୍ରୋପଚାର ପରି ପ୍ରତିଭାତ ହୁଏ । ଏହି ମନୋବିଜ୍ଞାନ ପରି ରସାଳ ଗଦ୍ୟ ରଚନା ମଧ୍ୟରେ ନାରୀର ସ୍ଥାନ ନାହିଁ ।

ମୁଁ ପରେ ବାମାଚରଣଙ୍କୁ ପ୍ରଶ୍ନ କରିଥିଲି, "ଅତି ପୁରାତନ ଓ ଚିର ନୂତନ ମାନବ ଜୀବନର ସୁନ୍ଦରତମ ଶ୍ରେଷ୍ଠ ଅନୁଭୂତି ନାରୀର ପ୍ରେମ କି ଆପଣଙ୍କର ଚିତ୍ତାକାଶ କେବେ ଆଲୋକିତ କରିନାହିଁ ?" ସେ ନିର୍ବିକାର ଭାବରେ କହିଲେ,



Digitized by srujanika@gmail.com

"ମୋର ସାହିତ୍ୟରେ ନାରୀର ସ୍ଥାନ ନାହିଁ" । ତାଙ୍କର ମନୋଭାବରୁ ମନେହେଲା ସେ ଯେପରି କହିବାକୁ ଚାହୁଁଛନ୍ତି ସେହି ଅନାଘ୍ରାତ ସୁବାସିତ ପୁଷ୍ପ ଦେଇ କଳ୍ପନାରେ ମାଳା ଗୁନ୍ଥିବା ମୋର କର୍ମ ନୁହେଁ । ହାୟ ଦୁର୍ଭାଗ୍ୟ! ଏହି ଆକାଂକ୍ଷିତ ଶ୍ରେଷ୍ଠ ସୁପୁରୁଷର ହୃଦୟ ସ୍ପର୍ଶ କୌଣସି ନାରୀର ଅନୁଭୂତ ହେଲାନାହିଁ । ମୁଁ ଆଶ୍ଚର୍ଯ୍ୟ ହୋଇ ପଚାରିଲି, "ଥରଟିଏ ପାଇଁ କ'ଣ ଆପଣଙ୍କ ଜୀବନରେ ସେହି ଶୁଭ ମୁହୂର୍ତ୍ତ ଆସିନାହିଁ ?" ସେ ଜଣାଇଲେ ଥରେ ମାତ୍ର ଜଣେ ଯୁବକ ଅଗ୍ରସର ହେବାର କ୍ଷିପ୍ରତା ଫଳରେ ସେ ସେହି ନାରୀଙ୍କର ଚିତ୍ତ ଜୟ କରିନେଇଥିଲେ । ଏହାହିଁ ତାଙ୍କର ପ୍ରଥମ ଓ ଶେଷ ଚେଷ୍ଟା ବୋଲି ସେ କହିଥିଲେ ।

ମୁଁ ଜାଣେ ବାମାଚରଣ ତାଙ୍କ ସ୍ତ୍ରୀଙ୍କୁ ଗଭୀର ଭାବରେ ଭଲପାଉଥିଲେ ଓ ଶ୍ରଦ୍ଧା ମଧ୍ୟ କରୁଥିଲେ । ଥରେ ସେ ମତେ କଥା ପ୍ରସଙ୍ଗରେ କହିଥିଲେ ସ୍ତ୍ରୀଙ୍କ ନିକଟରେ ନିଜ ବ୍ୟକ୍ତିତ୍ୱର ବିଦ୍ୟା ଦେଖେଇହେଲେ ସ୍ତ୍ରୀର ମନ କିନ୍ତୁ ମିଳେନା । ସ୍ତ୍ରୀର ମନ ପାଇବାକୁ ହେଲେ ନିଜକୁ ତାଙ୍କର ସମସ୍ତଙ୍କୁ ନେଇ ଆସିବାକୁ ହୁଏ । ପ୍ରତିଭାମୟୀ ଥରେ ମୋ ଭଉଣୀଙ୍କୁ କହିଥିଲେ, "ସେ ଯେ ମୋ ଭିତରେ କ'ଣ ଦେଖିଥିଲେ ଜାଣେନା, ସେ ସର୍ବଦା ମୋ ପ୍ରତି ଗଭୀର ଶ୍ରଦ୍ଧା ପୋଷଣ କରନ୍ତି" । ମୁଁ ବାମାଚରଣଙ୍କର ଏପରି ମନୋଭାବ ଦେଖି ବିସ୍ମୟାଭିଭୂତ ହୋଇଥିଲି । ନିଜ ସ୍ତ୍ରୀଙ୍କ ମଧ୍ୟରେ ସେ କ'ଣ ନାରୀକୁ ପାଇନାହାନ୍ତି ? ବିବାହିତା ସ୍ତ୍ରୀଙ୍କୁ କେବଳ ଭଲପାଇବା କି କେବଳ କର୍ତ୍ତବ୍ୟ, ଗୋଟିଏ ଆଦର୍ଶ ମାତ୍ର! ନାରୀର ହୃଦୟ ଜୟ କରିବା ମଧ୍ୟରେ ଯେ ଆନନ୍ଦ, ସ୍ତ୍ରୀ କ'ଣ ତାହା ଦେଇପାରେ, ସେତ ଦେବା ପାଇଁ ସର୍ବଦା ପ୍ରସ୍ତୁତ । ନିଜ ସ୍ତ୍ରୀଙ୍କ ପ୍ରତି ଏକ ନିଷ୍ଠତା ତାଙ୍କର ଅତୁଟ ଥିଲା । ସେ ଥରେ କହିଥିଲେ ସ୍ୱାମୀ ହୋଇ ସେ ଯେତେବେଳେ ସ୍ତ୍ରୀଙ୍କର ଏକନିଷ୍ଠ ପ୍ରେମ ଆଶା କରନ୍ତି, ତାଙ୍କର ମଧ୍ୟ ସ୍ତ୍ରୀଙ୍କ ପ୍ରତି ଏକନିଷ୍ଠ ହେବା ନ୍ୟାୟତର ପ୍ରତ୍ୟାଶିତ। ସୁତରାଂ, ବିପଥକୁ ଯାଇ ନାରୀର ପ୍ରେମ ତାଙ୍କର କାମ୍ୟ ନୁହେଁ । ରୋମାନ୍‌ସର ବିପୁଳ ପୁଲକର ଚାପ୍ଟର କ୍ଲୋଜ୍‌ଡ୍ ।

ବାମାଚରଣଙ୍କ ସାହଚର୍ଯ୍ୟ ସମୁଦ୍ର କୂଳରେ ସୁଶୀତଳ ବାୟୁ ପରି ସ୍ନିଗ୍ଧକର । ମନ ଯେତେବେଳେ ଜୀବନ ସଂଗ୍ରାମରେ କ୍ଳାନ୍ତ ହୋଇପଡେ ମୁଁ ଯାଏ ବାମାଚରଣଙ୍କ ନିକଟକୁ ମନର ଅବସାଦ ମେଣ୍ଟାଇବା ପାଇଁ । ବ୍ୟସ୍ତ ମଣିଷଟି, କିନ୍ତୁ ତାଙ୍କ ବ୍ୟବହାରରେ କେବେହେ ମୋର ମନ ହୋଇନି ଯେ ମୁଁ ତାଙ୍କର ସମୟ ନଷ୍ଟ କରୁଛି । ବନ୍ଧୁମାନଙ୍କୁ ଅଭ୍ୟର୍ଥନା କରିବାକୁ ତାଙ୍କର ସମୟ ଥିଲା ଅଫୁରନ୍ତ ।



Digitized by srujanika@gmail.com

ସବୁକାମ ପଛରେ ପକାଇ ରଖି ଖୁସି ମନରେ ଅଭ୍ୟର୍ଥନା କରୁଥିଲେ । ପୁଷ୍କରିଣୀର ତଳ ଦେଶର ସ୍ୱଚ୍ଛ ଜଳପରି ତାଙ୍କର ମନ ଥିଲା ପରିଷ୍କାର, ସେଠାରେ କୌଣସି ବିକାରର ଚିହ୍ନମାତ୍ର କେବେହେଁ ଦେଖିନାହିଁ । ବିନୀତ ସ୍ୱଭାବ, ଗର୍ବିତ ଉନ୍ନାଦିକତାର କୌଣସି ଚିହ୍ନ ତାଙ୍କ ବ୍ୟବହାରରେ ନଥିଲା । ଈର୍ଷାହୀନ ମନ ସମବେଦନାରେ ପୂର୍ଣ୍ଣ । ତାଙ୍କ ଲେଖାରେ ମଧ୍ୟ ସେହି ସମବ୍ୟଥା ପରିଲକ୍ଷିତ ହୁଏ ।

ଥରେ ତାଙ୍କ ଘରକୁ ଯାଇଥିଲି ଅପରାହ୍ନରେ- ସେତେବେଳକୁ ସେ ତାଙ୍କର ସରକାରୀ ଉଚ୍ଚ ପଦବୀରୁ ଅବସର ଗ୍ରହଣ କରିସାରିଥାନ୍ତି । ମୁଁ ତାଙ୍କ ଘର ଭିତରେ ପଶିବା ମାତ୍ରେ ଏକ ଗୋଳମାଳ ଶୁଣିବାକୁ ପାଇଲି । ତାଙ୍କର ପୁଅର ସାଇକେଲଟି ତାଙ୍କ ଘରର ବାହାର ବାରଣ୍ଡାରୁ କିଛି ସମୟ ଆଗରୁ ଚୋରି ହୋଇଯାଇଥିଲା । ଘଟଣାଟି ଜାଣିବା ପରେ ବାମାଚରଣଙ୍କର ମନରେ କୌଣସି ବିରକ୍ତ ବା ଅଶାନ୍ତିର ଭାବ ଲକ୍ଷ୍ୟ କରିପାରିଲିନି । ଦେଖିଲି ଏହି ଆକସ୍ମିକ ଦୁର୍ଘଟଣାଟିକୁ ବେଶ୍ ସହଜ ଭାବରେ ହିଁ ସେ ଗ୍ରହଣ କରିଛନ୍ତି । ସେ ତାଙ୍କ ସ୍ତ୍ରୀଙ୍କୁ ସାଙ୍ଗେ ସାଙ୍ଗେ କହିଲେ ଯାହା ହେବାର ହୋଇଯାଇଛି । ତୁମେ ଏବେ ମନାଦିଦିଙ୍କ (ଲେଖିକାଙ୍କ ଡାକ ନାଁ) ପାଇଁ ଚା' ପାଣି ବସାଅ । ଏପରି ଅବିଚଳିତ ମନୋବଳ ସାଧାରଣରେ ବିରଳ । ତାଙ୍କର ଚରିତ୍ରର ସମତା ଦେବତୁଲ୍ୟ । ବୃହସ୍ପତି ଦେବଗୁରୁ, ବୃହସ୍ପତିଙ୍କର ଚରିତ୍ରରେ ବି୍ଶେଷ ଗୁଣ ହେଲା ଧୈର୍ଯ୍ୟ ଓ ସମତା । ସୌରଜଗତରେ ତାଙ୍କ ଅବସ୍ଥାନ ଶନି ଓ ମଙ୍ଗଳଙ୍କ ମଝିରେ । ଶନିଙ୍କର ଶୈତ୍ୟ ଓ ଶୁଷ୍କତା ଏବଂ ମଙ୍ଗଳଙ୍କର ଉଷ୍ଣଭାବ ଓ ତରଳତା, ଏହାର ମଧ୍ୟାବସ୍ଥା ହେଲା ବୃହସ୍ପତିଙ୍କର । ଶୁକ୍ର ଦୈତ୍ୟଗୁରୁ, ତିକ୍ଷ୍ଣବୁଦ୍ଧି ସମ୍ପନ୍ନ ଦେବତା, କଚ ଶୁକ୍ରଙ୍କର ଶିଷ୍ୟତ୍ୱ ଗ୍ରହଣ କରିଥିଲେ । ମୃତ ସଞ୍ଜିବନୀ ମନ୍ତ୍ର ଶିକ୍ଷାଲାଭ କରିବା ପାଇଁ । ବାମାଚରଣଙ୍କର ଚରିତ୍ରରେ ବୃହସ୍ପତି ଓ ଶୁକ୍ରଙ୍କର ସମାବେଶ। ତେଣୁ ତାଙ୍କର ସାହିତ୍ୟ ସୃଷ୍ଟି ଅବଶ ମନକୁ ସଞ୍ଜିବିତ କରେ । ତେଣୁ ତର୍କବିତର୍କ ଓ ଆଲୋଚନା ସମୟରେ ତାଙ୍କର ମନର ଭାରସାମ୍ୟ ନଷ୍ଟ ହେବାର କେବେହେଲେ ଦେଖିନାହିଁ । ଆଉ ଗୋଟିଏ ସନ୍ନ୍ୟାସୀତୁଲ୍ୟ ଗୁଣ ତାଙ୍କର ଥିଲା, ସେ କେବେହେଁ ପରଚର୍ଚ୍ଚା କରୁ ନଥିଲେ । ନିଜର କୌଣସି କଥା ସେ ପ୍ରାୟତଃ ଗୋପନ କରି ନଥିଲେ । ମୋ ଆଗରେ ତାଙ୍କର ସବୁ କଥା ସେ ନିଃସଙ୍କୋଚରେ ପ୍ରକାଶ କରୁଥିଲେ । ପ୍ରବାହମାନ ଜଳପ୍ରପାତ ପରି ବାଧାହୀନ ଓ ଦ୍ୱିଧାହୀନ ଭାବେ । ସନ୍ନ୍ୟାସୀ ଦୁଇ ପ୍ରକାରର- ଋଷି ଓ ମୁନି । ଋଷି ଚିରାଚରିତ ଧର୍ମକୁ ଅନୁସରଣ କରନ୍ତି । ମୁନି ସ୍ୱାଧୀନ ଚିନ୍ତା ଦେଇ ସବୁ ବିଚାର କରିଥାନ୍ତି । ବାମାଚରଣ ଥିଲେ ନିରାସକ୍ତ ମୁନି ।



Digitized by srujanika@gmail.com

"ମିମିର ସାହିତ୍ୟ ଶିକ୍ଷା" ତାଙ୍କର ଗୋଟିଏ ଛୋଟ ଓ ଶ୍ରେଷ୍ଠ ଗଳ୍ପ । ଜ୍ଞାନୀ, ଗୁଣି ବାମାଚରଣ ଶିଶୁର ମନରେ ଏପରି ଗଭୀର ଭାବରେ ତଳେଇ ଯାଇପାରିଛନ୍ତି । ନିଷ୍ପାପ ସରଳ ଶିଶୁମନ ବୟସ୍କ ମନର ଚିନ୍ତାଧାରାର ସନ୍ଧାନ ପାଇବାର ବୃଥା ଚେଷ୍ଟା କରିଛି ଓ ତାରି ମଧ୍ୟରୁ ସୃଷ୍ଟି ହୋଇଛି ହାସ୍ୟ ଓ ବ୍ୟଙ୍ଗ । ପ୍ରଭାତର ସ୍ନିଗ୍ଧ ସୂର୍ଯ୍ୟାଲୋକ ପରି ଶିଶୁର ଚିନ୍ତାଧାରା ମନକୁ ପୁଲକିତ କରେ । ପରିଣତ ବୟସରେ ଶିଶୁ ସହିତ ଶିଶୁ ହୋଇପାରିବା ସାଧାରଣ ମଣିଷର କ୍ଷମତାର ବାହାରେ ।

ତାଙ୍କର ଥିଲେ ତିନି ପୁଅ ଓ ଦୁଇ ଝିଅ । ସନ୍ତାନମାନଙ୍କ ନାମକରଣ ସେ ନିଜେ ହିଁ କରିଥିଲେ । ଏହି ନାମକରଣ ମଧ୍ୟରେ ତାଙ୍କର ସାହିତ୍ୟିକ ମନର ପରିଚୟ ମିଳେ । ତାଙ୍କର ତିନି ପୁଅ- ଚନ୍ଦ୍ରମୌଳି, ତିଷାନପତି ଓ ମନ୍ୟୁମାନ ଏବଂ ଦୁଇ ଝିଅ ସଂଘମିତ୍ରା ଓ ବସୁମିତ୍ରା ।

ଏହି ମହାପୁରୁଷଙ୍କ ତିରୋଧାନ ଅତି କରୁଣ । ସେ ସମସ୍ତଙ୍କର ଅଜ୍ଞାତରେ ରକ୍ତବମନ କରି ଦେହ ତ୍ୟାଗ କରିଥିଲେ । ମୋର ବୟସ ବର୍ତ୍ତମାନ ସତୁରୀ ବର୍ଷ । (ଦ୍ରଷ୍ଟବ୍ୟ ଯେ ଏହା ୬ ବର୍ଷ ତଳର ଲେଖା, ଲେଖିକାଙ୍କର ବର୍ତ୍ତମାନ ବୟସ ୭୬ ବର୍ଷ) । ବାମାଚରଣ ମୋଠାରୁ ତିନି ବର୍ଷ ସାନ । ୬୦ ବର୍ଷ ବୟସରେ ସେ ଇହଲୋକ ତ୍ୟାଗ କରିଥିଲେ । ଦୀର୍ଘ ଜୀବନର ଅଭିଶାପ ଆତ୍ମୀୟସ୍ୱଜନ, ବନ୍ଧୁବାନ୍ଧବ ଜଣକ ପରେ ଜଣେ ଚାଲିଯାନ୍ତି, ନିଃସଙ୍ଗ ହୋଇପଡେ ଦୀର୍ଘଜୀବୀ ମଣିଷ । କିନ୍ତୁ ଅନ୍ତରରେ ସଞ୍ଜୀବିତ ରହିଯାଏ ପ୍ରିୟଜନର ସ୍ମୃତି-ତଜ୍ଜନିତ ବେଦନା ।

'ପ୍ରଜାତନ୍ତ୍ର'

୦୯.୦୭.୧୯୮୮





Digitized by srujanika@gmail.com

# ବାମାବାବୁ

ଶ୍ରୀ ସୀତାକାନ୍ତ ମହାପାତ୍ର

ଛତ୍ରପୁରକୁ ଟ୍ରେନ୍‌ରେ ଯାଉଥାଏ । ମସୁରୀରୁ ଫେରି ଜିଲ୍ଲାସ୍ତରର ଟ୍ରେନିଂ ପାଇଁ । ଟ୍ରେନ୍ କମ୍ପାର୍ଟମେଣ୍ଟରେ ଜଣେ ସହଯାତ୍ରୀଙ୍କ ସହ ଏମିତି ସାଧାରଣ ଭାବରେ ପରିଚୟ, ଆଳାପ । କ୍ରମାନ୍ୱୟ ଭାବରେ ଜାଣୁ ପରସ୍ପରକୁ । ସେ ଛତ୍ରପୁରର ଏସ୍‌ଡିଓ, ଗାଳ୍ପିକ ବାମାଚରଣ ମିତ୍ର ।

ଛତ୍ରପୁରର ସେ ଛୋଟିଆ ସରକାରୀ କଲୋନୀରେ ଯୋଡିଏ ଘର । ମୁଁ ପ୍ରଥମେ ସର୍କିଟ ହାଉସ ଓ ପରେ ଗୋଟିଏ ଛୋଟ ଘରକୁ ଯାଇଥିଲି । ବନ୍ଧୁତାର ପରିବେଶ ବଢ଼ି ଯାଇଥିଲା । ବିଶେଷ କରି ଅନେକ ସଂଧ୍ୟା ଓ ଅପରାହ୍ଣରେ ଛତ୍ରପୁର ପାଖ ସମୁଦ୍ରକୂଳକୁ ଯାତ୍ରା । ସେଠି ବସି ବସି କେତେ ନା କେତେ ଗପ । ସରୁ ରାସ୍ତା, କିଆ ବଣ, ଯୋଉଥିରେ ଫୁଲଫୁଟି ଚାରିଆଡ ବାସ୍ନା ଚହଟୁଥିବ, କାଜୁବାଦାମ ବଗିଚା, ଖାଲଢ଼ିପ ଭୂଇଁ, ବାଲିଚର, ଛୋଟ ଗାଁ, ଅନେକ ଛୋଟ ଛୋଟ ଗପ । ଅସରନ୍ତି କବିତା, ଗପ, କବିତା । ଉଭୟର ମୂଳଉତ୍ସ ତ ଏକ ।

ତା'ପରେ ଦିନ ବହି ଚାଲେ ତା' ବାଟରେ । ସେ ଏଠି ସେଠି । ଆଉ ମୁଁ ବି । ସରକାରୀ ଜୀବନର ଚେସ୍ ବୋର୍ଡରେ ଗୋଟି ସବୁ ଆମେ ଯେତେବେଳେ ଯୋଉଠି ଆବାହନ, ସଂସ୍ଥାପନ । ଦୀର୍ଘ ୧ ୀର, ସାଧାରଣ ଭାବରେ ସରଳ ଓ ହସ ହସ ମୁହଁ,



Digitized by srujanika@gmail.com

ଦେଖା ହେଲେ ଖୁସିଟିଏ, ସାହିତ୍ୟ ଓ ସଂଗୀତ କଥା । ମଜି ଗଲାଭଳି ଲୋକ । ଯାହା ଭଲ ଲାଗିଲା ସେଥିରେ ହଜିଗଲାଭଳି ମଣିଷଟିଏ, ଅକୃତ୍ରିମ, ସ୍ନେହୀ ମଣିଷ । ପରିବାରଟି ବି ସେମିତି । ସାକ୍ଷାତ୍ ଲକ୍ଷ୍ମୀ ପରି ସ୍ତ୍ରୀ । ପିଲାମାନେ ଏକ ଆରେକେ ସ୍ନେହୀ ।

ସେଇ ପରିବେଶରୁ ରଚନା, ଗଳ୍ପ, ଯେଉଁଥିରେ ଜୀବନର ବର୍ଣ୍ଣାଢ୍ୟ ବିଭୂତି ଭରପୂର । କହିବା ଢ଼ଙ୍ଗ ନିଛକ ସରଳ, ବାସ୍ତବବାଦୀ କଳ୍ପନାର ଫୁଟ ଯେ ନାହିଁ ତା ନୁହେଁ କିନ୍ତୁ ଖୁବ୍ କମ୍ । ମନକୁ ଛୁଇଁଲା ପରି ବହୁ ଗପ । ଗପୁଡି ମଣିଷଟିଏ ବି ଏମିତି ।

ଅନ୍ୟମାନଙ୍କଠୁଁ ଶୁଣିଥିଲି କଲେଜରେ ସେ ଭଲ ଖେଳାଓ୍ୱାଡ ଥିଲେ । ଧୀରେ ଧୀରେ ଦୀର୍ଘ ଶରୀର ନଇଁ ଆସୁଥିଲା । ଯନ୍ତାରୂଢ଼ ଆତ୍ମାର ବାହନଟି ଶିଥିଳ ହୋଇ ଆସୁଥିଲା । କଳକବ୍ଜା ଏଠି ସେଠି ବିଗଡ ହୋଇ ମଝିରେ ମଝିରେ କେଉଁ କଟ କରୁଥିଲେ । ତଥାପି ହସ, ଅଖଳା ହସ । ପାରିବାରିକ ସୁବିଧା ଅସୁବିଧା, ନାନା ଦାୟିତ୍ୱ ଭିତରେ ସେଇ ଦାୟିତ୍ୱହୀନ ଲେଖକଟିଏ, ମୁକ୍ତ ଜୀବନଟିଏ । ଲେଖକକୁ କିଏ ବାନ୍ଧି ରଖିବ ? ସବୁଥିରେ ବନ୍ଧା ହୋଇ ବି ସେ ମୁକ୍ତ ।

ଯିବା ଆସିବାର ବେଳ ଆସୁଥାଏ । ଧୀରେ ଧୀରେ ବୋଧହୁଏ ସେ ଜାଣି ପାରୁଥାଆନ୍ତି । ସମୟର ପଦଧ୍ୱନି ବାରି ପାରୁଥାନ୍ତି । ଅଧିକରୁ ଅଧିକ ସିଆଡେ କାନେଉ ଥାନ୍ତି । ସ୍ତ୍ରୀ କୁଆଡେ ଟିକେ ପଡିଆ ଘରକୁ ଗଲେ ବି ମନଭିତରେ ଅନେଇ ବସନ୍ତି । ପାଖରେ ପୁରୁଣା ଲେଖକ ବନ୍ଧୁ ଥିଲେ ବହୁ ଖୁସି । ଶାନ୍ତନୁ, ନୀଳମଣି, କୃଷ୍ଣ, ଦୀପକ କେତେ ନା କେତେ, ଜୀବନର ସଂଗ୍ରାମରେ ସମସ୍ତେ ସେଠି ନାନା ଭାବରେ ବିପର୍ଯ୍ୟସ୍ତ । ତଥାପି ଯେତେବେଳେ ଯିଏ ।

ଅନ୍ଧାର ଓ ଛାଇ ଘେରି ଆସୁଥିଲା । ଆଖିରୁ ମୁହଁରୁ ବାରି ହୋଇପଡୁଥିଲା । ଦିନକର ସତକୁ ସତ ସେ ଅନ୍ଧାର କଳା ଘୁମର ହୋଇ ଘୋଟିଗଲା । ପଡିଶାଘରୁ ସେ ଫେରିଲା ବେଳକୁ ବି ତର ସହିଲା ନାହିଁ । ଲେଖକଟି ଚୁପ୍ ଚାପ୍ ଚାଲିଗଲା ।

ଆଜି ମଲେ କାଲିକି ଦି'ଦିନ । ପିଲାଏ ନିଜ ଗୋଡରେ ଛିଡା ହୋଇ ଶିଖିଲେଣି ଜୀବନକୁ ନିଜେ ସାମ୍ନା କଲେଣି । ସ୍ତ୍ରୀ ସେଇ ପିଲାଙ୍କ ଭିତରେ ହୁଏତ ତାଙ୍କୁ ପାଉଥିବେ । ବାକୀମାନେ- ଅର୍ଥାତ୍ ପାଠକଗଣ ଓ ତାଙ୍କର ବନ୍ଧୁ, ଆମେ ସବୁ ତାଙ୍କୁ ପାଉଥିବୁ ତାଙ୍କ ବହିର ପୃଷ୍ଠାରେ ଓ ସ୍ମୃତିରେ ।

ପତ୍ରିକା - "ଇସ୍ତାହାର"
ସଂଖ୍ୟା ୩୭, ମାର୍ଚ୍ଚ ୧୯୮୭





Digitized by srujanika@gmail.com

# ସମସାମୟିକ କଥାକାର ଓ ବାମାଚରଣ : ଏକ ନବ-ଉପନିବେଶବାଦୀ ଦୃଷ୍ଟିଭଙ୍ଗୀ

ଡକ୍ଟର କ୍ଷୀରୋଦ ଚନ୍ଦ୍ର ବେହେରା

୧. ବାମାଚରଣ ମିତ୍ର ୧୭ ଡିସେମ୍ବର ୧୯୧୫ ମସିହାରେ ଜନ୍ମଗ୍ରହଣ କରିଥିଲେ ଓ ୧୯୭୫ ମସିହା ଫେବୃୟାରୀ ୨୧ ତାରିଖରେ ଇହଧାମରୁ ବିଦାୟ ନେଇଥିଲେ । ୧୯୫୦ ମସିହାରୁ ୧୯୭୫ ମସିହା ପର୍ଯ୍ୟନ୍ତ ଥିଲା ତାଙ୍କ ସାହିତ୍ୟ ସାଧନାର ସମୟ । ରେଭେନ୍‌ସା ମହାବିଦ୍ୟାଳୟରେ ଅଧ୍ୟୟନ ସମୟରେ ସେ 'ମହାଯୁଦ୍ଧ' ନାମକ ଏକ କ୍ଷୁଦ୍ରଗଳ୍ପ ରଚନା କରିଥିଲେ ଯାହା ପ୍ରଜାତନ୍ତ୍ର ପ୍ରଚାର ସମିତି ଦ୍ୱାରା ୧୯୫୦ ମସିହାରେ ଅନୁଷ୍ଠିତ ହୋଇଥିବା କ୍ଷୁଦ୍ରଗଳ୍ପ ପ୍ରତିଯୋଗିତାରେ ପ୍ରଥମ ହେବାର ଗୌରବ କେବଳ ପ୍ରାପ୍ତ ହୋଇନଥିଲା, ଏହି ଗଳ୍ପଟି ମାଧ୍ୟମରେ ସେ ସମକାଳୀନ ଓଡ଼ିଆ ସାହିତ୍ୟର ପ୍ରବୀଣ ଲେଖକମାନଙ୍କର ଦୃଷ୍ଟି ଆକର୍ଷଣ କରିଥିଲେ । ୧୯୫୦ ବେଳକୁ ତାଙ୍କର 'କୀର୍ତ୍ତିଯସ୍ୟ' ଓ 'ନରଛଞ୍ଚାଣ' ନାମକ ଅପରାଧମୂଳକ ଗଳ୍ପ ସାହିତ୍ୟିକମାନଙ୍କ ଦୃଷ୍ଟି ଆକର୍ଷଣ କରିସାରିଥିଲା । ବାମାଚରଣ ଯେଉଁ ସମୟ ଖଣ୍ଡରେ ସାହିତ୍ୟ ସାଧନା କରିଥିଲେ; ସେହି ସମୟର ବିଶିଷ୍ଟ କଥାକାରମାନେ ହେଲେ ଗୋପୀନାଥ ମହାନ୍ତି, ସୁରେନ୍ଦ୍ର



Digitized by srujanika@gmail.com

ମହାନ୍ତି, ବସନ୍ତ କୁମାରୀ ପଟ୍ଟନାୟକ, ଅଖିଳମୋହନ ପଟ୍ଟନାୟକ, ମହାପାତ୍ର ନୀଳମଣି ସାହୁ, କମଳ ମିଶ୍ର, ରାଜକିଶୋର ମହାନ୍ତି, ଅଚ୍ୟୁତାନନ୍ଦ ପତି, ସୁନୀଲ ମିଶ୍ର, ସଚ୍ଚିଦାନନ୍ଦ ରାଉତରାୟ, ପ୍ରାଣବନ୍ଧୁ କର, ବିଭୂତି ଭୂଷଣ ତ୍ରିପାଠୀ, ଶାନ୍ତନୁ କୁମାର ଆଚାର୍ଯ୍ୟ, କିଶୋରୀ ଚରଣ ଦାସ, ଚୌଧୁରୀ ହେମନ୍ତ ମିଶ୍ର, ମନୋଜ ଦାସ, ଫତୁରାନନ୍ଦ, ରାଜକିଶୋର ରାୟ, ରାଜକିଶୋର ପଟ୍ଟନାୟକ, ନିତ୍ୟାନନ୍ଦ ମହାପାତ୍ର, ଚନ୍ଦ୍ରଶେଖର ରଥ, କୃଷ୍ଣପ୍ରସାଦ ମିଶ୍ର, ବୀଣାପାଣି ମହାନ୍ତି, ବସନ୍ତ କୁମାର ଶତପଥୀ, ସାତକଡି ହୋତା ଓ ରବି ପଟ୍ଟନାୟକ ପ୍ରମୁଖ । ଏମାନେ ସମସ୍ତେ ସ୍ୱାଧୀନତା ପରବର୍ତ୍ତୀ ଓଡ଼ିଆ କଥାସାହିତ୍ୟର ଜଣେ ଜଣେ ସୁଦକ୍ଷ ବିନ୍ଧାଣୀ ଓ ବାମାଚରଣ ମିଶ୍ରଙ୍କ ସମସାମୟିକ ।

୨. ୧୯୪୭ ମସିହା ଅଗଷ୍ଟ ପନ୍ଦର ତାରିଖରେ ଭାରତ ବ୍ରିଟିଶ ଔପନିବେଶିକ ସାମ୍ରାଜ୍ୟବାଦରୁ ଶାସନମୁକ୍ତ ହୋଇ ସ୍ୱାଧୀନତା ଲାଭ କରିବା କେବଳ ଭାରତବର୍ଷ ନିମିତ୍ତ ଏକ ଗୌରବପୂର୍ଣ୍ଣ ମୁହୂର୍ତ୍ତ ନଥିଲା, ସମଗ୍ର ବିଶ୍ୱରେ ଦ୍ୱିତୀୟ ବିଶ୍ୱଯୁଦ୍ଧ ପରେ ଏହା ଥିଲା ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ଐତିହାସିକ ଘଟଣା । ଭାରତୀୟ ସ୍ୱାଧୀନତା ସମଗ୍ର ବିଶ୍ୱରେ ବ୍ରିଟିଶ ଔପନିବେଶିକ ସାମ୍ରାଜ୍ୟବାଦର ଅଧଃପତନ କାହାଣୀର ଅୟମାରମ୍ଭ କରିଥିଲା । (୧) ତେବେ ଓଡ଼ିଶାବାସୀଙ୍କ ନିମିତ୍ତ ଭାରତୀୟ ସ୍ୱାଧୀନତା ଅଧିକ ଗୌରବପୂର୍ଣ୍ଣ ମର୍ଯ୍ୟାଦାବନ୍ତ ଘଟଣା ଭାବରେ ଗୃହୀତ ହୋଇଥିଲା । ଏହା ପୂର୍ବରୁ ବହୁ ସଂଗ୍ରାମ ପରେ ଓଡ଼ିଶା ଏକ ସ୍ୱତନ୍ତ୍ର ପ୍ରଦେଶ ଭାବେ ଗଠିତ ହେବା ଏବଂ ସ୍ୱାଧୀନତା ପରେ ସମ୍ବିଧାନରେ ଓଡ଼ିଆ ଭାଷାକୁ ଯଥାମାନ୍ୟ ସମ୍ମାନ ମିଳିବା ଓଡ଼ିଶାବାସୀଙ୍କ ନିମିତ୍ତ ଏକ ନବଜନ୍ମର କାହାଣୀ ଥିଲା । ଉପନିବେଶ ଶାସନରୁ ମୁକ୍ତ, ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନ ଓ ଭାଷାର ଜାତୀୟ ସ୍ୱୀକୃତି ଓଡ଼ିଆ ଅସ୍ମିତା ଅନ୍ୱେଷଣ ଓ ପ୍ରତିଷ୍ଠାର ମୌଳିକ କାରଣ ହେଲା । ଏପରିକି ଡକ୍ଟର ମାୟାଧର ମାନସିଂହ ଓ ପ୍ରଫେସର ଖଗେଶ୍ୱର ମହାପାତ୍ର, ନଗେନ୍ଦ୍ର ସଂପାଦିତ ଭାରତୀୟ ସାହିତ୍ୟ ପୁସ୍ତକରେ ଉତ୍କଳ ବିଶ୍ୱ ବିଦ୍ୟାଳୟରେ ସ୍ନାତକୋତ୍ତର ଓଡ଼ିଆ ଖୋଲିବା ବିଷୟକୁ ଓଡ଼ିଆ ଅସ୍ମିତାର ଅଂଶବିଶେଷ ଭାବରେ ଗ୍ରହଣ କରିଛନ୍ତି । (୨) । ଏଣୁ ୧୯୫୦ ବେଳକୁ ଓଡ଼ିଆ କଥାକାରଙ୍କ ସମ୍ମୁଖରେ ଦ୍ୱିତୀୟ ବିଶ୍ୱଯୁଦ୍ଧ, ଭାରତୀୟ ସ୍ୱାଧୀନତା ଓ ଓଡ଼ିଆ ଅସ୍ମିତାର ବିସ୍ତୃତ କଥା-କାନ୍‌ଭାସଟିଏ ପ୍ରସ୍ତୁତ ହୋଇ ରହିଥିଲା । ସ୍ୱାଧୀନତାପୂର୍ବ ଓ ସ୍ୱାଧୀନତାପର ଓଡ଼ିଆ କଥାକାରଙ୍କ ମଧ୍ୟରେ ଥିବା ଶିକ୍ଷାଗତ ଯୋଗ୍ୟତାର ପାର୍ଥକ୍ୟ ଓଡ଼ିଆ କଥାସାହିତ୍ୟର ଦିଗ ନିର୍ଣ୍ଣୟରେ ଏକ



Digitized by srujanika@gmail.com

ନିର୍ଣ୍ଣାୟକ ଭୂମିକା ଗ୍ରହଣ କରିଥିଲା । ସ୍ୱାଧୀନତା ପରବର୍ତ୍ତୀ ଓଡ଼ିଆ କଥାକାରମାନେ ଥିଲେ ଉଚ୍ଚଶିକ୍ଷିତ ଏଣୁ ବିଶ୍ୱସାହିତ୍ୟ ଏବଂ ବିଶ୍ୱ ଘଟଣାବଳୀ ସଂପର୍କରେ ଥିଲେ ସଂପୂର୍ଣ୍ଣ ସଚେତନ । ଏଥି ନିମିତ୍ତ ସ୍ୱାଧୀନତା ପୂର୍ବ କଥାସାହିତ୍ୟର ଦୃଷ୍ଟିକୋଣ ଓ ଉପସ୍ଥାପନଭଙ୍ଗୀ ଠାରୁ ସଂପୂର୍ଣ୍ଣ ଭିନ୍ନ ହେଲା ସ୍ୱାଧିନତା ପରବର୍ତ୍ତୀ ଓଡ଼ିଆ କଥାସାହିତ୍ୟ । ଏହି ସୀମାରେଖା ଟାଣିବାରେ ଯେଉଁ କଥା କୃତିଗୁଡ଼ିକ ସହାୟକ ହୁଅନ୍ତି; ସେଗୁଡ଼ିକ ହେଲେ 'ପରଜା' (୧୯୪୬), 'ଭୂମିକା' (୧୯୪୩), 'କଲେଜ ବୟ' (୧୯୪୭), 'ଭାରତ ଆବିଷ୍କାର' (୧୯୪୬), 'ପତାକା ଉତ୍ତୋଳନ' (୧୯୪୭), 'ରୁଟି ଓ ଚନ୍ଦ୍ର' (୧୯୪୮) ଆଦି ଉପନ୍ୟାସ ଓ ଗଳ୍ପ ପୁସ୍ତକ । ଉଲ୍ଲିଖିତ କଥା-କୃତିଗୁଡ଼ିକ ମୁଖ୍ୟତଃ ଔପନିବେଶିକ ସମାଜରୁ ମୁକ୍ତି ପାଇଥିବା ମଣିଷ ଓ ତାହାର ସମାଜ ସମ୍ପର୍କରେ ବିସ୍ତୃତ ଚିତ୍ର ପ୍ରଦାନ କରିଥାନ୍ତି । ଜଣେ ଗବେଷକ ଏ ସଂପର୍କରେ ଲେଖନ୍ତି (ପରଜା) ଉପନ୍ୟାସ ଆତ୍ମପ୍ରକାଶ କରେ । ୨ୟ ମହାସମର ସଂଘର୍ଷମୟ ବାତାବରଣ ମଧ୍ୟ ଦେଇ ୧୯୪୬ ମସିହାରେ ଓଡ଼ିଆ ସାହିତ୍ୟର ନବୀନ ଦୃଷ୍ଟିଭଙ୍ଗୀ ଓ ନୂତନ ଶିଳ୍ପ ସ୍ଥାପତ୍ୟ ନେଇ ଏହାକୁ ମହାଯୁଦ୍ଧୋତ୍ତର ମହାକାବ୍ୟ (Post war epic) କହିଲେ ଅତ୍ୟୁକ୍ତି ହେବ ନାହିଁ । (୩) । ଏହି ମହାକାବ୍ୟିକ ଦୃଷ୍ଟିଭଙ୍ଗୀ ପ୍ରାଚୀନ ଶ୍ରେଣୀବୈଷମ୍ୟ ଓ ବ୍ୟବସ୍ଥାକୁ ଅତିକ୍ରମ କରି ସତ୍ୟର ଉନ୍ମୋଚନ କରିବାକୁ ଯାଇ ଦେଖେ" । ଅବିନାଶ ବାବୁ ସମାଜ ମୁଖା ନିଜେ ହରିଜନ ଠାରୁ ଆହୁରି ନୀଚ, ଦୁର୍ବଳ ଓ ହିଂସ୍ର । ତାଙ୍କ ପୁଅ ଅଘୋର ସଭ୍ୟତାର ଡିଗ୍ରୀଧାରଣ କରି ମଧ୍ୟ ସେ ଆଉରି ନୀଚ ଓ ହୀନ । (୪) । ଏ ସବୁ ବକ୍ତବ୍ୟ ମଧ୍ୟରେ ୧୯୩୫-୩୬ରୁ ଓଡ଼ିଆ ସର୍ଜନାତ୍ମକ ଚିଂତନକୁ ସଂପୂର୍ଣ୍ଣ ଆକ୍ରାନ୍ତ କରି ରଖିଥିବା ସାମ୍ୟବାଦୀ ଓ ଗାନ୍ଧିବାଦୀ ଦର୍ଶନକୁ 'ପରଜା', 'ହରିଜନ' ଓ 'ଶାସ୍ତି' ଉପନ୍ୟାସରେ ମହାନ୍ତି ଭାତୃଦ୍ୱୟ ଆହୁତି ପ୍ରଦାନ କରିଥିଲେ ଯାହାର ଅବଶିଷ୍ଟାଂଶକୁ ସୁରେନ୍ଦ୍ର ଅନ୍ଧଦିଗନ୍ତରେ ପୂର୍ଣ୍ଣାହୁତି ଦେଇଥିଲେ । ସାମ୍ୟବାଦୀ ଚିଂତନ ଓ ଗାନ୍ଧିବାଦୀ ଦର୍ଶନରୁ ଓଡ଼ିଆ କଥାସାହିତ୍ୟର କଥନକୁ ମୁକ୍ତକରି ବାସ୍ତବବାଦୀ କରିବା ଥିଲା ୧୯୫୦ ପରବର୍ତ୍ତୀ ଓଡ଼ିଆ କଥାସାହିତ୍ୟର ଅସାମାନ୍ୟ ବିଶେଷତ୍ୱ । ସତେ ଯେପରି 'ପରଜା', 'ହରିଜନ', 'ଶାନ୍ତି', 'ଅବ୍ୟାପାର' ଓ 'ସର୍ବହରା' ଆଦି କଥା-କୃତି ଗୁଡ଼ିକ ଅମୃତର ସନ୍ତାନ, ମାଟିମଟାଳ, ଦାନାପାଣି, ନରକିନ୍ନର, ଯାତ୍ରାର ପ୍ରଥମ ପାଦ, ଢ଼େଉଢ଼େଉକା, ଶର୍ବରୀ, ଝଞ୍ଜା, ଅସୂର୍ଯ୍ୟ ଉପନିବେଶ,



Digitized by srujanika@gmail.com

ଯନ୍ତାଗୁମ, ବଜ୍ରବାହୁ, ବ୍ୟାକୁଳ ହୃଦୟ, ନୀଳଶୈଳ, କୁଳବୃଦ୍ଧ, ଚନ୍ଦ୍ର ଓ ଚମ୍ପା, ସ୍ୱପ୍ନର ସହର, ପାନ୍ଥଶାଳା ଓ ରକ୍ତ କରବୀ, ଅଚିହ୍ନା ପୃଥିବୀ, ଭଙ୍ଗା ଖେଳଣା, ମଣିହରା, ସମୁଦ୍ରର କ୍ଷୁଧା, ଲକ୍ଷ୍ମୀର ଅଭିସାର, ଶୃଣନ୍ତୁ ସର୍ବେ ଅମୃତସ୍ୟ ପୁତ୍ର, ସୁମିତ୍ରାର ହସ, ଅନ୍ଧ ରାତିର ସୂର୍ଯ୍ୟ, କୃଷ୍ଣଚୂଡ଼ା, ଓଃ କାଲ୍‌କାଟା, ପ୍ରାନ୍ତ ଯମକ, ଶାଳଗ୍ରାମ, ଭଡାଘର ଆଦି ବହୁ କଥା-କାହାଣୀର ଆବାହନୀ ଗାନ କରିସାରିଥିଲେ । ଏହି ସମୟର (୧୯୫୦-୧୯୭୫) ସମସ୍ତ କଥା-ପାଠକୁ ଗଭୀର ଭାବରେ ଅନୁଶୀଳନ କଲେ ମୁଖ୍ୟତଃ ଦୁଇଟି ଦିଗ ସ୍ପଷ୍ଟ ଭାବରେ ଉପଲବ୍ଧି କରିହୁଏ ।

ପ୍ରଥମଟି : ଭାରତୀୟ ସାହିତ୍ୟର ବିଶିଷ୍ଟ ଆଲୋଚକ ନାମୱର ସିଂହଙ୍କ ଭାଷାରେ- ଔପନିବେଶିକ ମୁକ୍ତ ସର୍ଜନ ମାନସିକତାର ପରିପ୍ରକାଶ (Decolonisation of Indian mind) ।

ଦ୍ୱିତୀୟଟି : ସୁଦୂର ନାଇଜେରିଆର ଔପନ୍ୟାସିକ ଚିନୁଆ ଆଚ୍‌ବୀଙ୍କ ଉପନ୍ୟାସ "Things Fall Apart" ଚେତନାର ପ୍ରତିଧ୍ୱନି ।

୨.୧ ନାମୱର ସିଂହ ଔପନିବେଶିକ ମୁକ୍ତ ଭାରତୀୟ ସର୍ଜନ ମାନସିକତାର ବ୍ୟାଖ୍ୟା କରିବାକୁ ଯାଇ କହିଛନ୍ତି : "The greatest event of World History in the 20th century has been the event of decolonization. The process of decolonization began after the second world-war. This new type of literature of Indian, African and latin American writers came to be known as "commonwealth literature" or the latest name "Third World Literature". If we took to this new literature, it is nothing but "new orientalism" of the post colonial age. The creative energy of the Indian / Asian writers, is in need of some distinct identify. It may be the identity of tradition or mordernity, regional or national identity of the one of experimentalism." (୫) ନାମ୍‌ୱାର୍ ଭାରତୀୟ ସାହିତ୍ୟ, ଆଫ୍ରିକୀୟ ଓ ଲାଟିନ୍ ଆମେରିକୀୟ ସାହିତ୍ୟ ପ୍ରସଙ୍ଗ ଉଲ୍ଲେଖ କଲାବେଳକୁ ୧୯୫୮ରେ ପ୍ରକାଶିତ ଚିନୁଆ ଆଚ୍‌ବୀଙ୍କ ଉପନ୍ୟାସ "Things Fall Aparts" ଚର୍ଚ୍ଚାର ପରିଧିକୁ ଆସେ ।



Digitized by srujanika@gmail.com

୨.୨ ୧୯୫୮ରେ ଚିନୁଆ ଆଚ୍‌ବୀଙ୍କ ରଚିତ ଉପନ୍ୟାସ "Things Fall Apart" ଉପନ୍ୟାସ ସହ ଗୋପୀନାଥ ମହାନ୍ତିଙ୍କ ୧୯୪୬ରେ ରଚିତ 'ପରଜା' ଉପନ୍ୟାସ ମଧ୍ୟରେ ଅଦ୍ଭୁତ ସାମଂଜସ୍ୟ ଦେଖିବାକୁ ମିଳେ । ବୈଷମ୍ୟ ଏତିକି ଆଚ୍‌ବୀଙ୍କ ନାୟକ ଓଁକାଂକୋ ମେସନ୍‌ଜରଟିକୁ ହତ୍ୟା କରିବାପରେ ଆତ୍ମହତ୍ୟା କରିଛି । କାରଣ ବ୍ରିଟିଶ୍ ନ୍ୟାୟବ୍ୟବସ୍ଥା ଉପରେ ଓଁକାଂକୋର ବିଶ୍ୱାସ ନଥିଲା ଏବଂ ଥିଲା ମଧ୍ୟ ନିଜ ସଂସ୍କୃତି, ପରମ୍ପରା ଓ ଐତିହ୍ୟ ପ୍ରତି ଗଭୀର ସମ୍ମାନବୋଧ । ସମ୍ମାନବୋଧ ନେଇ ସେ ଆତ୍ମହତ୍ୟା କରିଥିବା ସମୟରେ ମାଣ୍ଡିଆ ଜାନି ଲକ୍ଷ୍ମୀପୁର ପୋଲିସ୍ ଥାନାରେ ହାଜର ହୋଇ କହିଛି "ଆମେ ମଣିଷ ମାରୁଛୁ, ଆମକୁ ଯୋଉ ଦଣ୍ଡ ଅଛି ସେହି ଦଣ୍ଡ ଦିଅ" । ଗୋପୀନାଥ ମହାନ୍ତି ସାମାଜିକ ଅନ୍ୟାୟ ବିରୋଧରେ ସ୍ୱର ଉତ୍ତୋଳନ କରିଥିଲେ ହେଁ ବ୍ରିଟିଶ୍ ଔପନିବେଶିକ ନ୍ୟାୟିକ ବ୍ୟବସ୍ଥାକୁ ଚାଲେଞ୍ଜ୍ କରିନାହାନ୍ତି । ମେସେନ୍‌ଜର ପରି ଲେଥୁର ପ୍ରତାରଣା ଦେଶୀୟ ଅଶିକ୍ଷିତ ସାଧାରଣ ଜନତାଙ୍କ ବିପନ୍ନତାକୁ ଅଧିକ ତୀବ୍ର କରିଥିବା କଥା ଉଭୟ ଔପନ୍ୟାସିକ ବର୍ଣ୍ଣନା କରିଛନ୍ତି । ଆଚ୍‌ବୀ ତାଙ୍କ ଉପନ୍ୟାସରେ ବ୍ରିଟିଶ୍ ଔପନିବେଶିକ ସାମ୍ରାଜ୍ୟବାଦର ବିସ୍ତୃତି କୌଶଳକୁ ପ୍ରାଧାନ୍ୟ ପ୍ରଦାନ କରିଥିବା ସମୟରେ ଗୋପୀନାଥ ଏହି ଅବସ୍ଥାରେ ମଧ୍ୟସ୍ଥିଙ୍କ ଭୂମିକା ଓ ଆଦିବାସୀ ସମାଜ ଓ ସଂସ୍କୃତିର ବିପନ୍ନତାକୁ ପ୍ରାଧାନ୍ୟ ଦେଇଛନ୍ତି । ଗୋପୀନାଥଙ୍କ ପରେ ଆଚ୍‌ବୀ ଉପନ୍ୟାସଟି ରଚନା କରିଥିବା ସମୟରେ; ଆଚ୍‌ବୀଙ୍କ ଉପନ୍ୟାସର ପରବର୍ତ୍ତୀ ସମାଜର ଚିତ୍ର ଗୋପୀନାଥଙ୍କ ପରଜାରେ ଉପଲବ୍‌ଧ ହୋଇଥାଏ । ଓଡ଼ିଶାରୁ ନାଇଜେରିଆ ହଜାର ହଜାର ମାଇଲ୍ ଦୂରତ୍ୱରେ ଥିଲେ ମଧ୍ୟ ଔପନିବେଶିକ ସାମ୍ରାଜ୍ୟବାଦ ସବୁ ସମାଜରେ କିପରି ସମାନ ପ୍ରତିକ୍ରିୟା ସୃଷ୍ଟି କରିପାରିଥିଲା; ତାହାହିଁ ଲକ୍ଷଣୀୟ ପ୍ରସଂଗ ।

୨.୩ ବାମାଚରଣ ମିଶ୍ରଙ୍କ 'ବଟମହାପୁରୁଷ' ଗଳ୍ପ ଓ ଚିନୁଆ ଆଚ୍‌ବୀଙ୍କ ଉପନ୍ୟାସର ଭାଗ୍ୟ ମଧ୍ୟରେ ଅନେକ ସାମ୍ୟ ପରିଲକ୍ଷିତ ହୁଏ । "Things Fall Apart" ଉପନ୍ୟାସର ନାୟକ ଓଁକାଂକା ବ୍ରିଟିଶ୍ । ଉପନିବେଶବାଦର ପରାକ୍ରମରୁ ଉମୋଫିଆର ସଂସ୍କୃତି ଓ ପରଂପରାକୁ ରକ୍ଷା କରି ପାରିନଥିବାରୁ ତାହାର ପ୍ରତିକ୍ରିୟା ସ୍ୱରୂପ ସେ 'ମେସେନ୍‌ଜର' ଯିଏ ନିଜ ସଂପ୍ରଦାୟର ତାହାକୁ ହତ୍ୟା କରିଛି ଓ ନିଜେ ଏକ ଗଛରେ ଓହଳି ଆତ୍ମହତ୍ୟା କରିଛି । ତୃତୀୟ ପୃଥିବୀର ପ୍ରସଂଗ ଯେତେବେଳେ ମନକୁ ଆସେ; ସେତେବେଳେ ପ୍ରଶ୍ନବାଚୀଟିଏ ଛିଡା ହୁଏ ଓଁକାଂକା



Digitized by srujanika@gmail.com

ଓହଳି ଆତ୍ମହତ୍ୟା କରିଥିବା ଗଛଟି 'ବଟମହାପୁରୁଷ' ଗଛ ନୁହେଁତ ? କାରଣ ଆଚ୍‌ବୀଙ୍କ ଭାଷା ଓ ଚିଂତନ ବାମାଚରଣଙ୍କ ଭାଷା ଓ ଚିଂତନ ମଧ୍ୟରେ କୌଣସି ପାର୍ଥକ୍ୟ ନାହିଁ । ବାମାଚରଣ ପରିବର୍ତ୍ତନର ବାହକ ନବୀନ ପିଢ଼ି ଯେ ଅମିତ ପରାକ୍ରମର ଅଧିକାରୀ ଏଣୁ ଅପ୍ରତିହତ ତାହା ଏହି ଗଳ୍ପରେ ସ୍ପଷ୍ଟ ଭାବରେ ଉଲ୍ଲେଖ କରିଛନ୍ତି । ବାମାଚରଣ ଲେଖିଛନ୍ତି 'ଗୋଟିଏ ସଭ୍ୟତା ଗଲା, ଆଉ ଗୋଟିଏ ସଭ୍ୟତା ଆସିଗଲା । କିଛି ଡରିବାର ନାହିଁ । ମହାକାଳ ସଦା ଜାଗ୍ରତ' । (୬) । ଆଚ୍‌ବୀ ତାଙ୍କ ଉପନ୍ୟାସରେ ହତ୍ୟାର ପୂର୍ବବର୍ତ୍ତୀ ସମୟର ବର୍ଣ୍ଣନା କରିଯିବାକୁ ଯାଇ କିପରି ଏକ ଅଖଣ୍ଡ ନିରବତା ସବୁଆଡେ ଗ୍ରାସ କରିଯାଇଥିବା ଚିତ୍ରକୁ ଉପସ୍ଥାପିତ କରିବାକୁ ଯାଇ ଲେଖିଛନ୍ତି "In that brief mement the world seemed to stand still, waiting. There was utter silence. The men of umiofia were merged in to the mute back cloth of trees and giant creapers, waiting. ।୭ । ବୃକ୍ଷର ରୂପକ ମାଧ୍ୟମରେ ଉଭୟ ଲେଖକ ଔପନିବେଶିକ ପର ପୃଥିବୀର ଚିନ୍ତା ପ୍ରଦାନ କରିଛନ୍ତି । ଉଭୟ ଦେଶରେ ଇଂରାଜୀ ଶିକ୍ଷା ଯେଉଁ ନୂତନ ନବ-ଉପନିବେଶବାଦୀ ସଂସ୍କୃତି ଯେ ଅବଶ୍ୟମ୍ଭାବୀ ଏହା ଉଭୟ ଲେଖକ ନିଜ ନିଜ ରଚନା ମାଧ୍ୟମରେ ସୂଚନା ପ୍ରଦାନ କରିଛନ୍ତି । ବାମାଚରଣ ଏହି ପରିବର୍ତ୍ତିତ ପୃଥିବୀର ଚିତ୍ରପଟ୍ଟ ଅଙ୍କନ କରିବାକୁ ଯାଇ ଏହି ଗଳ୍ପରେ କହିଛନ୍ତି, "ବର୍ତ୍ତମାନ ଯୁଗରେ ନେତାଏ ପ୍ରଚାର କରୁଛନ୍ତି, ଧର୍ମ, ଆଧ୍ୟାତ୍ମିକତା ଫିଙ୍ଗିଦିଅ, ବିଜ୍ଞାନଯୁଗରେ ସେ ସବୁର ସ୍ଥାନ ନାହିଁ, ଶିଳ୍ପ ବ୍ୟବସାୟ ଦ୍ୱାରା ଅର୍ଥ ଉପାର୍ଜନ ବଢ଼ାଅ, ତାହାହିଁ ଜୀବନର ଏକମାତ୍ର ଲକ୍ଷ୍ୟ । ଧର୍ମ ଅଳୀକ କଳ୍ପନା, ଅର୍ଥ ବାସ୍ତବ ସତ୍ୟ" । ପରିବର୍ତ୍ତିତ ପୃଥିବୀର ନୂତନ ମୂଲ୍ୟବୋଧ ସଂପର୍କରେ ବାମାଚରଣ ଏ ଯେଉଁ ସୂଚନା ପ୍ରଦାନ କରିଛନ୍ତି, ଆଚ୍‌ବୀଙ୍କ ଉପନ୍ୟାସ ଗୁଡିକ ମଧ୍ୟ ସେହି ସମ୍ବାଦ ପରିବେଷଣ କରିଥାନ୍ତି । କହିବା ବାହୁଲ୍ୟ, ଆଚ୍‌ବୀଙ୍କ ରଚନା ସମଗ୍ର ଭରତୀୟ ଲେଖକଙ୍କ କେବଳ ଦୃଷ୍ଟି ଆକର୍ଷଣ କରିନାହିଁ; ପ୍ରେମଚାନ୍ଦଙ୍କ 'ଗୋଦାନ' ଉପନ୍ୟାସ ଠାରୁ ଆରମ୍ଭ କରି ବହୁ ଭାରତୀୟ ଲେଖକଙ୍କ କୃତି ସହ ତୁଳନାତ୍ମକ ଅଧ୍ୟୟନ କରାଯାଉଛି । (୮) ।

୩. 'ମହାଯୁଦ୍ଧ' ଗଳ୍ପ ମାଧ୍ୟମରେ ବାମାଚରଣ ଓଡ଼ିଆ କଥାସାହିତ୍ୟକୁ ପ୍ରବେଶ କରିଥିଲେ । ଦୀର୍ଘ ପଚିଶ ବର୍ଷର ତାଙ୍କ ସାହିତ୍ୟ କୃତିକୁ ଅନୁଶୀଳନ କଲେ ତାଙ୍କ ରଚନାରେ ପ୍ରାଚ୍ୟବାଦ (Orientalism) ଏକ ଗୁରୁତ୍ୱପୂର୍ଣ୍ଣ ବିଭବ ଭାବରେ



Digitized by srujanika@gmail.com

ଦୃଷ୍ଟିଗୋଚର ହୁଏ । ଏହି ପ୍ରାଚ୍ୟବାଦ ଦ୍ୱିତୀୟ ବିଶ୍ୱଯୁଦ୍ଧ ଓ ଭାରତୀୟ ସ୍ୱାଧୀନତା ପରବର୍ତ୍ତୀ ଲକ୍ଷଣ ଗୁଡ଼ିକରେ ସମୃଦ୍ଧ । ଏହି ଲକ୍ଷଣ ଗୁଡ଼ିକୁ ମୁଖ୍ୟତଃ ତିନୋଟି ପର୍ଯ୍ୟାୟଭୁକ୍ତ କରାଯାଇପାରେ । ସେଗୁଡ଼ିକ ହେଲା : (କ) ଗଣତନ୍ତ୍ରର ଶଠତା, ପ୍ରବଞ୍ଚନା ଓ ଦରିଦ୍ରର ସ୍ୱପ୍ନଭଙ୍ଗ । (ଖ) ଭାରତୀୟ ଐତିହ୍ୟ ଓ ଆଧ୍ୟାତ୍ମିକତାର ନବ ଅନ୍ୱେଷଣ । (ଗ) ନବୀନ ସାମାଜିକ ପୂନର୍ବିନ୍ୟାସ ଓ ନବୀନ ପିଢ଼ିର ନେତୃତ୍ୱ ।

୩.୧ ୧୯୫୦ ରୁ ୧୯୭୫ ମସିହା ପର୍ଯ୍ୟନ୍ତ ଓଡ଼ିଆ କଥାସାହିତ୍ୟ ଉପରୋକ୍ତ ତିନୋଟି ଭାବବଳୟକୁ ପ୍ରାଧାନ୍ୟ ଦେଇ ତାହାର କାହାଣୀକୁ ଗତିଶୀଳ କରାଇଛି । ଭାରତୀୟ ଗଣତନ୍ତ୍ର ସମସ୍ତ ବୁଦ୍ଧିଜୀବୀ, ଶିଳ୍ପୀ ଓ କଥାକାର ହୃଦୟରେ ଏକ ନୂତନ ସ୍ପନ୍ଦନ ଓ ସମ୍ଭାବନା, ଭାରତୀୟ ଲେଖକଙ୍କ ନିମିତ୍ତ ଏକ ମୁକ୍ତ ପୃଥିବୀ ପ୍ରଦାନ କରିଥିଲା । ଯେଉଁଥି ନିମିତ୍ତ ଏହି ସମୟରେ ଭାରତୀୟ ସାହିତ୍ୟ / ପ୍ରାଦେଶିକ ସାହିତ୍ୟ ଅତି ସ୍ୱାଚ୍ଛନ୍ଦ୍ୟରେ ତାହାର କାୟା ବିସ୍ତାର କରିଥିଲା । ଓଡ଼ିଆ ସାହିତ୍ୟ ଏହି ସମୟରେ ସବୁଠାରୁ ଅଧିକ ସ୍ଫିତ; ଉଭୟ ଗୁଣାତ୍ମକ ଓ ପରିମାଣାତ୍ମକ ଦୃଷ୍ଟିକୋଣରୁ । ଏଣୁ ବହୁ ଲେଖକଙ୍କ ଚିନ୍ତା ଓ ଚେତନାରେ ଆଶ୍ଚର୍ଯ୍ୟଜନକ ସାମ୍ୟ ପରିଲକ୍ଷିତ ହୋଇଥାଏ । ବାମାଚରଣଙ୍କ "ଗୋଟିଏ ମଧ୍ୟବିତ୍ତ ପରିବାରରେ ମୂଷା" ଗଳ୍ପର ଭାଷ୍ୟ ଶାନ୍ତନୁ କୁମାର ଆଚାର୍ଯ୍ୟଙ୍କ 'ଦୁର୍ବାର' ଗଳ୍ପର ବକ୍ତବ୍ୟ ପ୍ରାୟତଃ ସମାନ । ଉଭୟ ମୂଷାକୁ ହିଁ ନିଜ ନିଜ ଗଳ୍ପରେ ସମାନ ଅର୍ଥବୋଧକ ପ୍ରତୀକ ଭାବରେ ବ୍ୟବହାର କରିଛନ୍ତି । 'ମୂଷା'ର ମୃତ୍ୟୁ ମଧ୍ୟରେ ଗୋଟିଏ ଯୁଗର ସମାପ୍ତି; ନୂତନ ସମାଜର ଅଭ୍ୟୁଦୟ ଓ ନୂତନ ପିଢ଼ିର ଆଗମନ ସମ୍ପର୍କରେ ସୂଚନା ପ୍ରଦାନ କରାଯାଇଛି । ଏ ସମ୍ପର୍କରେ 'ଦୁର୍ବାର' ଗଳ୍ପରେ ଶାନ୍ତନୁ ଲେଖିଛନ୍ତି "ତା'ର ପ୍ରିୟ ବୁଦ୍ଧ ମୂର୍ତ୍ତିଟିକୁ ଏପରି ଅବସ୍ଥାରେ ଦେଖି ସେ ଗୋଟଏ ମୁହୂର୍ତ୍ତ ପାଇଁ ମୂକ ହୋଇଗଲା । ମୁଁ ଭାବିଥିଲି- ଏ ଯୁଗର ଶକ୍ତି ବୋଧହୁଏ ଏତିକି- ଯେତିକି ଆମର ଥିଲା ।

କିନ୍ତୁ ହଠାତ୍ ତା'ର ଆଖି ଦପ୍ ଦପ୍ ଜଳିଉଠିଲା" । ଏବଂ ଶେଷରେ ପୁଅ ମୂଷାକୁ ମାରି ପ୍ରତିଶୋଧ ନେଇଛି ଏବଂ ଏକ ନୂତନ ସମ୍ଭାବନାର ଆଶା ସଞ୍ଚାର କରିଛି । ଏହି ନୂତନ ପିଢ଼ିର ଅଭ୍ୟୁଦୟର କଥା ବାମାଚରଣ ମଧ୍ୟ ତାଙ୍କ 'କୁକୁଡ଼ା ଚାଷ' ଗଳ୍ପରେ ଉପସ୍ଥାପନ କରିଛନ୍ତି । ଏହି ଗଳ୍ପରେ ବାମାଚରଣ ସଂପୂର୍ଣ୍ଣ ଔପନିବେଶିକ ମାନସିକତା ନେଇ ଭାରତବର୍ଷର ଚିନ୍ତା ଉପସ୍ଥାପନ କରିବାକୁ



Digitized by srujanika@gmail.com

ଆଗ୍ରହ ଭରି ବୋଉକୁ ତାର ବହି ମଲାଟ ଛବି ଦେଖାଇଲା । ଛବିଟି ସତେ ମନୋରମ ହୋଇଛି । ତ୍ରିରଙ୍ଗି ଚିତ୍ର । ଗୋଲାର୍ଦ୍ଧର ଗୋଟିଏ ଚିତ୍ର । ଗୋଲାର୍ଦ୍ଧରେ ଭାରତ ଓ ଭାରତ ଉପରକୁ ଏସିଆ ଓ ଇଉରୋପ କାୟଦଂଶ । ଭାରତର ମାନଚିତ୍ରଟି ଗାଈର ପନ୍‌ହା ଭଳି ଝୁଲୁଛି । ଗୋଲାର୍ଦ୍ଧର ପଛପଟେ ଗୋଟିଏ ଭଦ୍ରମହିଳାର ଅଣ୍ଟା ପର୍ଯ୍ୟନ୍ତ ଚିତ୍ର, ଠିକ୍ ଯେମିତି ଗୋଲାର୍ଦ୍ଧ ପଛପଟୁ ଉଇଁ ଆସୁଛି ବିମ୍ବାଧରରେ ତାର ଦରଫୁଟା ହସ, ଆଖିରେ ଆଶାର ଉଜ୍ଜ୍ୱଳତା । କାଖ ତଳେ ଗୋଟିଏ ଗଞ୍ଜା ସେ ଚାକି ଧରିଛି । ଗୋଟିଏ କୁକୁଡା କେରଳ ଉପରେ ଛିଡା ହୋଇଚି । ତାର ପୁଚ୍ଛଟି ଦିଲ୍ଲୀ ଉପରକୁ । ଭଦ୍ରମହିଳାଟିର ଡାହାଣ ହାତଟି ଅତି ଆଦରରେ କୁକୁଡାର ପିଠି ଉପରେ ଥୁଆ ହୋଇଛି । କୁକୁଡାର ଠିକ୍ ପୁଚ୍ଛ ତଳକୁ ଗୋଟିଏ ନାଲି ଅଣ୍ଡା ଶୂନ୍ୟରେ ଏବଂ ଅନ୍ୟ ଗୋଟିଏ ଧଳା ଅଣ୍ଡା ଦିଲ୍ଲୀ ଉପରେ ଥିବା ଅଣ୍ଡା ଫାଟି ଯାଇଛି ଏବଂ ସେଥିରୁ ଅସଂଖ୍ୟ ଛୁଆ ବାହାରି ଭାରତଯାକ ବ୍ୟାପି ଯାଇଛି" । (୯) । ଉପନିବେଶ ସାମ୍ରାଜ୍ୟବାଦ ମୁକ୍ତ ଭାରତବର୍ଷର ଏପରି ବ୍ୟଞ୍ଜନାତ୍ମକ ଚିତ୍ର ସମସାମୟିକ ଭାରତୀୟ ସାହିତ୍ୟରେ ନିଶ୍ଚିତ ଭାବେ ଦୁର୍ଲଭ । ବାମାଚରଣ ଅତି ସଚେତନ ଭାବରେ କେରଳ ଓ ଦିଲ୍ଲୀର ଉଲ୍ଲେଖ କରିଥିବା ସମୟରେ ନାଲି ଅଣ୍ଡାକୁ ଶୂନ୍ୟରେ ଓ ଧଳା ଅଣ୍ଡାର ଛୁଆକୁ ଦିଲ୍ଲୀରୁ ଗ୍ରାମାଭିମୁଖୀ କରାଇବା ପଶ୍ଚାଦରେ ଏକ ସୁନେଲୀ ପ୍ରଗତିଶୀଳ ଭାରତବର୍ଷର ସମ୍ଭାବନା କଥା ଉଲ୍ଲେଖ କରିଛନ୍ତି । ଛୋଟ ବାଳକ ବାପୁ ଭିତରେ ବାପୁଜୀଙ୍କ ଚିତ୍ରବତ୍ତାକୁ ଅଭିବ୍ୟଞ୍ଜିତ କରି ବାମାଚରଣ ଗଳ୍ପଟିକୁ ଉପନିଷଦର ଶ୍ଳୋକ ମଧ୍ୟରେ ଶେଷ କରିଛନ୍ତି । ସମସାମୟିକତା ସହ ଅତୀତକୁ ସଂଯୋଗ କରିବା ନିମିତ୍ତ ମଧ୍ୟ ବାମାଚରଣ ଏହି ଗଳ୍ପରେ ସଚେଷ୍ଟ ଅଛନ୍ତି । କାରଣ ଚିନ୍ତନରେ ସେ ଜଣେ ଐତିହ୍ୟବାଦୀ ଲେଖକ; ଯିଏ ପରମ୍ପରା, ସଂସ୍କୃତି ଓ ଐତିହ୍ୟର ପୁନର୍ବିନ୍ୟାସକୁ ନିଜ କଥାସାହିତ୍ୟର ଭିତ୍ତି ଭାବରେ ସ୍ଥାପିତ କରିଛନ୍ତି ।

୩.୨ ସ୍ୱାଧୀନତା ପରବର୍ତ୍ତୀ ଓଡ଼ିଆ କଥାସାହିତ୍ୟରେ ପରମ୍ପରା, ସଂସ୍କୃତି ଓ ଆଧ୍ୟାତ୍ମିକତା ପ୍ରତି ଅଧିକ ଧ୍ୟାନ ପ୍ରଦାନ କରାଯାଇଛି । ଦ୍ୱିତୀୟ ବିଶ୍ୱଯୁଦ୍ଧ ପରେ ୟୁରୋପୀୟ ସାହିତ୍ୟରେ ସ୍ଥିତିବାଦୀ ଦର୍ଶନର ପ୍ରସାର ଏବଂ ଈଶ୍ୱରଙ୍କ ଅସ୍ତିତ୍ୱ ସଂପର୍କରେ ଯେଉଁ ପ୍ରଶ୍ନ ଉତ୍‌ଥାପନ ହୋଇଥିଲା; ଓଡ଼ିଆ କଥା ସାହିତ୍ୟରେ ଭାରତୀୟ ଆଧ୍ୟାତ୍ମିକତା ପ୍ରତି ଅଖଣ୍ଡ ବିଶ୍ୱାସ ରଖି ଏହି ସମୟରେ କଥାକାରମାନେ ଗଳ୍ପ ଓ ଉପନ୍ୟାସ ରଚନା କରିଛନ୍ତି । ୧୯୭୦ ପରବର୍ତ୍ତୀ ଓଡ଼ିଆ କଥାସାହିତ୍ୟରେ



Digitized by srujanika@gmail.com

ସ୍ଥିତିବାଦୀ ଦର୍ଶନର ଗଭୀର ପ୍ରଭାବ ଅନୁଭୂତ ହୋଇଥିବା ସମୟରେ ୧୯୭୦ ପୂର୍ବବର୍ତ୍ତୀ ଓଡ଼ିଆ କଥାସାହିତ୍ୟରେ ଭାରତୀୟ ସଂସ୍କୃତି ଓ ଆଧ୍ୟାତ୍ମିକ ଚିନ୍ତନ ପ୍ରତି ଗଭୀର ସମ୍ମାନବୋଧ ପ୍ରକାଶିତ ହୋଇଥିଲା । ବାମାଚରଣଙ୍କ ସହିତ ଶାନ୍ତନୁ କୁମାର ଆଚାର୍ଯ୍ୟ, କୃଷ୍ଣପ୍ରସାଦ ମିଶ୍ର, ମହାପାତ୍ର ନୀଳମଣି ସାହୁ, ଅଚ୍ୟୁତାନନ୍ଦ ପତି, ରାଜକିଶୋର ପଟ୍ଟନାୟକ, ମନୋଜ ଦାସ, ଚନ୍ଦ୍ରଶେଖର ରଥ, ବିଭୂତି ଭୂଷଣ ତ୍ରିପାଠୀ ଓ ଚୌଧୁରୀ ହେମକାନ୍ତ ମିଶ୍ର ପ୍ରମୁଖ ନିଜ ନିଜ ରଚନାରେ ଭାରତୀୟ ସଂସ୍କୃତି ଓ ଆଧ୍ୟାତ୍ମିକ ଭାବନାକୁ ଗଭୀର ସମ୍ମାନ ପ୍ରଦର୍ଶନ କରିଛନ୍ତି । ଏହି ସମସ୍ତ କଥାକାରଙ୍କ କଥା-ପାଠରେ ପ୍ରାଚ୍ୟବାଦ ଆଧ୍ୟାତ୍ମିକତାର ପୁନର୍ବିନ୍ୟାସ ଦେଖିବାକୁ ମିଳେ । ବାମାଚରଣଙ୍କ 'ମିମିର ସାହିତ୍ୟ ଶିକ୍ଷା' ଗଳ୍ପକୁ ଏହାର ଉଦାହରଣ ଭାବରେ ଗ୍ରହଣ କରାଯାଇପାରେ । "ମିମି ସାହସ ପାଇ ତା'ର ବଡବାପାର କାନେ କାନେ କହିଲା, "ଜଗନ୍ନାଥଙ୍କର ପାଦ ନାହିଁ ମୁଁ ଦେଖିଚି । ଆଉ ହୃଦୟଟାକୁ କବିଟା ଢ଼ାଳିଦେଲା । ତା ବାପା ଗାଳିଦେଲେ । ଆଚ୍ଛା ବଡବାପା, ହୃଦୟ ଢ଼ାଳିଲା କେମିତି" ? ମିମିର ଏହି ପ୍ରଶ୍ନ ମଧ୍ୟରେ ରହିଛି ଭାରତୀୟ ଆଧ୍ୟାତ୍ମିକ ଜିଜ୍ଞାସା ନିମିତ୍ତ ଏକ ନିର୍ବୋଧ ବାଳିକା ନୁହେଁ । ଏହି ଜିଜ୍ଞାସାର ଉତ୍ତର ଦେବାକୁ ଯାଇ ବାମାଚରଣ ଲେଖନ୍ତି "ହୃଦୟକୁ କେମିତି ଢ଼ାଳନ୍ତି ସେ କଥା ମୁଁ ଏ ପର୍ଯ୍ୟନ୍ତ ବୁଝିପାରିନାହିଁ, ତୋତେ କଅଣ ବୁଝାଇବି"- ବାକ୍ୟଟି ମଧ୍ୟରେ ରହିଛି ଭାରତୀୟ ଆଧ୍ୟାତ୍ମିକ ଚିନ୍ତନର ନିର୍ଯ୍ୟାସ । ପରିବର୍ତ୍ତିତ ପୃଥିବୀରେ ହେତୁବାଦୀ ଚିନ୍ତନର ପ୍ରଭାବ ସତ୍ତ୍ୱେ 'ବଟମହାପୁରୁଷ' ଗଳ୍ପରେ ବାମାଚରଣ କହନ୍ତି- "ଆଜି ପର୍ଯ୍ୟନ୍ତ ବି ରାତିରେ ବଟ ବିହାରୀଙ୍କୁ ଲୋକେ ସେଠି ବୁଲୁଥିବାର ଦେଖିଛନ୍ତି । ତାଙ୍କ କଠଉ ଠକ୍ ଠକ୍ ଓ ଦୀର୍ଘ ନିଃଶ୍ୱାସ ପକାଇବାର ଶବ୍ଦ ଅନେକ ଶୁଣୁଛନ୍ତି" । ଐତିହ୍ୟ ଓ ଭାରତୀୟ ଆଧ୍ୟାତ୍ମିକ ଚିନ୍ତନ ପ୍ରତି ଏହି କଥାକାର ମାନଙ୍କର ଥିଲା ଗଭୀର ବିଶ୍ୱାସ ।

୩.୩ ବାମାଚରଣ ତାଙ୍କର ଏକମାତ୍ର ଉପନ୍ୟାସ 'ଚନ୍ଦ୍ର ଓ ଚମ୍ପା' ସମ୍ପର୍କରେ କହିଛନ୍ତି, "ଯେଉଁ ସମୟରେ ଏକ ଦିଗରେ ନାନା ମତବାଦ ସୃଷ୍ଟି ହୋଇ ସବୁ ଧର୍ମରେ ଜଡତା ଆସିଛି ଏବଂ ଅନ୍ୟ ଦିଗରେ ନୂତନ ଭାବଧାରା, ନୂତନ ଆଶା ଓ ଶାନ୍ତି ସାମ୍ୟର ଆଲୋକ ଉଦୟ ହୋଇଛି, ଏହି ଆଖ୍ୟାୟିକାଟି ସେହି ସମୟର" । ଏଠାରେ ବାମାଚରଣଙ୍କ ଇତିହାସ ସୃଷ୍ଟି ପ୍ରଣିଧାନଯୋଗ୍ୟ । ସେ ସାମାଜିକ ପୁନର୍ଗଠନର ସମୟ ଖଣ୍ଡରେ ଥାଇ ଅତୀତର ସାମାଜିକ ପୁନର୍ଗଠନ ଓ ଅଭ୍ୟୁଦୟର



Digitized by srujanika@gmail.com

ସମୟକୁ ସ୍ମରଣ କରୁଛନ୍ତି । ଐତିହ୍ୟ ସହ ସମକାଳକୁ ସଂଯୋଗ କରିବାର ଏହା ଏକ ସର୍ବଶ୍ରେଷ୍ଠ ଉଦାହରଣ । କହିବା ବାହୁଲ୍ୟ; ଓଡ଼ିଆ ଅସ୍ମିତାର ଅନ୍ୱେଷଣ ଓ ପ୍ରତିଷ୍ଠା ନିମିତ୍ତ ସ୍ୱାଧୀନତା ପରବର୍ତ୍ତୀ ସମୟର ଓଡ଼ିଆ କଥାକାରମାନେ ବହୁ ପରିମାଣରେ ଇତିହାସର ଆଶ୍ରୟ ନେଇଛନ୍ତି । ଇତିହାସ ଓ ଧର୍ମକଥାରୁ ନିଜ ସମାଜର ଐତିହ୍ୟକୁ ସଂଗ୍ରହ କରି ପୁନଃପ୍ରତିଷ୍ଠା କରିବା ଦ୍ୱାରା ସମସାମୟିକ ବିଶ୍ୱରେ ନିଜ ସମାଜକୁ ଏକ ଐତିହ୍ୟବାଦୀ ସମାଜ ଭାବରେ ପ୍ରତିଷ୍ଠା ପ୍ରଦାନ କରିବାର ଆକାଂକ୍ଷାକୁ ପ୍ରକାଶିତ ହୋଇଥାଏ । ସୁରେନ୍ଦ୍ର ମହାନ୍ତିଙ୍କ ନୀଳଶୈଳ, ନୀଳାଦ୍ରି ବିଜୟ, ମହାନିର୍ବାଣ, ଶାନ୍ତି ମହାପାତ୍ରଙ୍କ ବୁଦ୍ଧଂ ଶରଣଂ ଗଚ୍ଛାମି, ନୁରଜାହାନ୍, ନୃସିଂହ ଚରଣ ପଣ୍ଡାଙ୍କ ଚଣ୍ଡାଶୋକ, ଧର୍ମାଶୋକ ଏବଂ ଖାରବେଳ ଆଦି ଉପନ୍ୟାସ ଓ ଗଳ୍ପ ଏହି ଚିନ୍ତନକୁ ଏକ ପ୍ରଭାବଶାଳୀ କଥା-ସ୍ରୋତ ଭାବେ ପ୍ରତିଷ୍ଠା ପ୍ରଦାନ କରିଛି । ଏମାନେ ସମସ୍ତେ ଇତିହାସକୁ ନିଜ କଥା-ଜୀବନରେ ଅଙ୍ଗେ ନିଭାଇଛନ୍ତି । ଏଣୁ ଏମାନଙ୍କ କଥା-କଳ୍ପ ଇତିହାସଠାରୁ ଭିନ୍ନ ହୋଇଥାଏ । କାରଣ "The difference between history as learned and history as lived." (୧୦) । ସମ୍ପୂର୍ଣ୍ଣ ଭିନ୍ନ କଥା । ସ୍ୱାଧୀନତା ପରବର୍ତ୍ତୀ ଓଡ଼ିଆ କଥାକାରମାନେ ଇତିହାସକୁ ପୁଣିଥରେ ନିଜ ଜୀବନରେ ଜୀଇଁଛନ୍ତି ଓ ସେହି ଜୀଇଁବାର ଅନୁଭବକୁ ଚରିତ୍ର ଓ କାହାଣୀ ମଧ୍ୟ ଦେଇ ଅବତାରଣା କରିଛନ୍ତି । ଏହି କଥାକାରମାନେ ପ୍ରାଚୀନ ଓ ଐତିହାସିକ ଭାରତୀୟ ଆତ୍ମାକୁ ପୁନଃସଂସ୍ଥାପନ କରିଛନ୍ତି ସ୍ୱାଧୀନତା ପରବର୍ତ୍ତୀ ସମୟରେ ଗଭୀର ଆତ୍ମବିଶ୍ୱାସର ସହ ଅସ୍ମିତାକୁ ଉପଲକ୍ଷ୍ୟ କରିଛି ।

୪. ୧୯୫୦-୧୯୭୫ ମଧ୍ୟରେ ରଚିତ ବିଶାଳ ଓଡ଼ିଆ କଥା-ପାଠ କେବଳ ଏକ ସର୍ଜନାତ୍ମକ କ୍ରିୟା ନୁହେଁ; ଏହା ମଧ୍ୟରେ ଅଭିବ୍ୟଞ୍ଜିତ ହୋଇଛି ଔପନିବେଶିକ ସାମ୍ରାଜ୍ୟମୁକ୍ତ ଅସ୍ମିତା ଅନ୍ୱେଷଣ ଓ ପ୍ରତିଷ୍ଠାର କାୟାକଳ୍ପ । ଏହି ଜଟିଳ ସାମାଜିକ ପୁନର୍ବିନ୍ୟାସ ପ୍ରକ୍ରିୟାର ସଠିକ୍ ଅବବୋଧ ନିମିତ୍ତ ନବ-ପ୍ରାଚ୍ୟବାଦ (Neo-orientalism) ବିଚାରଧାରା ହିଁ ସହାୟକ ହେବ ।

ପାଦୀକା :

(୧) The achivement to Independence in the lacations occured mainly after the second world war, often as a censequence of indigenous anti colorial nationalism and military struggle. India and Pakistan gained Independence in 1947,



Digitized by srujanika@gmail.com

ceylon (now Srilanka) in 1948. In 1957 Ghana became the lirst, followed by Nigeria in 1960. In 1962, Jamaica and Trinided and Tobago in the caribbean followed suit. The decades of the 1960s and 1970s saw busy decolonisation throuthout the declining past colouialism; Viva Books, New Delhi, 2010, Page-09

(୨) India Literature, Nagendra (ed.) Sahitya Akademi, New Delhi, Page-495

(୩) ମିଶ୍ର, ରାଜକିଶୋର, ଓଡ଼ିଆ ଉପନ୍ୟାସ ସାହିତ୍ୟର ପରିଚୟ; ଓଡ଼ିଶା ବୁକ୍‌ଷ୍ଟୋର, ୧୯୯୯, ପୃଷ୍ଠା - ୫୫୪

(୪) ତତ୍ରୈବ; ପୃଷ୍ଠା - ୫୬୫

(୫) Singh, Namvar, English Literature : Decoloning Indian Mind.

(୬) ଶତ୍ରୁଘ୍ନ ପାଣ୍ଡବ (ସଂପାଦକ) ବାମାଚରଣ ଗଳ୍ପ ସମ୍ଭାର, ନ୍ୟାସ୍‌ନାଲ୍ ବୁକ୍ ଟ୍ରଷ୍ଟ ଅଫ୍ ଇଣ୍ଡିଆ, ନୂଆଦିଲ୍ଲୀ, ୨୦୦୪, ପୃଷ୍ଠା-୪୨ ।

(୭) Chinia Achebe, Things Fall Apart; Penguin Books, 2001, Page-148

(୮) "Of the various approches that have been adopted by Indian Critics, the comparative approach is one of the most prominent : Achebe's theme and narrative strategies have been Juxtraposed with those of Indian writers like mulk Raj Anand, R.K. Narayan, Rabindranath Tagore and So on. Once instance of this is Sudhir Kumar's essay titled "Naratives of Nation" where he analyses "Things Fall Apart" and Premchand's Godan as "discouses of resistance and national construction", arguing that both the novels not only represent the effects of the colental encounter onthe respective traditional socities but also provide



Digitized by srujanika@gmail.com

a direction for the future course of nation building in the post independence era."- Reema Kansal and Amit Sarwal, Okonkwo's Sacritice : Through Indian Eyes; Chinna Acheve : An Anthology of Recent Criticism (ed. Mela Pandurang); Pencraft International, Delhi, 2010, Page-98.

(୯) ବାମାଚରଣ ଗଳ୍ପସମ୍ଭାର; ଶତ୍ରୁଘ୍ନ ପାଣ୍ଡବ (ସଂ), ନ୍ୟାସନାଲ ବୁକ୍ ଟ୍ରଷ୍ଟ ଅଫ୍ ଇଣ୍ଡିଆ, ନୂଆଦିଲ୍ଲୀ, ୨୦୦୪, ପୃଷ୍ଠା-୬୯

(୧୦) Jean Comaroff; The End of History, Again ? Pursuing the past in the postcolony; post colonia. studies and beyond; Ania Loomba (ed.), Permanent Black, Ranikhet, 2008, Page-125 to 149.

ପ୍ରତିକା : ଇସ୍ତାହାର

 ପୁଜା ବିଶେଷାଙ୍କ - ୨୦୧୫



Digitized by srujanika@gmail.com

# କାହିଁ ସେ ବାସ୍ନା, କାହାନ୍ତି ସେ ମଣିଷ !

ଶ୍ରୀମତୀ ନିରୂପମା ଆଚାର୍ଯ୍ୟ

"ତୋମାର ମତନ୍ ଦୟାଲ୍ ବନ୍ଧୁ ଆର୍ ପାବୋନା...

ଏଇ ବାଉଲ୍ ସଂଗୀତଟିର ରେକର୍ଡ ବାଜିଲା ମାତ୍ରେ ଆମ ଘରର ସସସ୍ତଙ୍କ ମୁହଁ ଥମ୍ ଥମ୍ ହୋଇଯାଏ, ଆଖି ଛଳ ଛଳ ହୁଏ । ତାଙ୍କ ଦୟା ସାଂସାରିକ ମୂଲ୍ୟବୋଧର ନୁହେଁ କି ବନ୍ଧୁତ୍ୱର ପରୀକ୍ଷା ରାଜଦ୍ୱାରରେ ନୁହେଁ, ସେ ସତେକି ବନ୍ଧୁତ୍ୱର ପ୍ରତୀକ ।

ସ୍ୱର୍ଗତଃ ବାମାଚରଣ- ଅତି ଦୁଃଖ ମୁହୂର୍ତ୍ତରେ ତାଙ୍କୁ ଖୋଜିଚୁ । ଅତି ଆନନ୍ଦ ବେଳାରେ ତାଙ୍କ ଅଭାବ ଆମକୁ କଷ୍ଟ ଦେଇଚି ।

ପିଲାଦିନୁ ମୁଁ ତାଙ୍କ ଗଳ୍ପ ଉପନ୍ୟାସର ମୁଗ୍ଧ ପାଠିକା । ତାଙ୍କର ପ୍ରଥମ ପରିଚୟ ପାଇଲି ତାଙ୍କ ସାନ ଭଉଣୀଙ୍କଠାରୁ ଯେଉଁଦିନ ସେ O.A.S. ପରୀକ୍ଷାରେ ପ୍ରଥମ ହେଲେ । ସେଇ ପିଲା ବୟସରେ ମଧ୍ୟ ମନେ ହେଉଥିଲା ମୋର ପ୍ରିୟ ଗାଳ୍ପିକଙ୍କୁ ଅଭିନନ୍ଦନ ଜଣାଇ ଚିଠି ଖଣ୍ଡେ ଲେଖିଦବା ପାଇଁ । ମୁଁ କଣ ସେଦିନ ଜାଣିଥିଲି



Digitized by srujanika@gmail.com

ଯେ ଯାହାଙ୍କୁ ବାହାହେବି ସେ ଜଣେ ପ୍ରତିଷ୍ଠିତ ସାହିତ୍ୟିକ ହୋଇ ମୋ ପ୍ରିୟ ଗାଳ୍ପିକଙ୍କ ପାଖରେ ବସିବେ ଓ ମତେ ତାଙ୍କୁ ଏତେ ପାଖରୁ ଦେଖିବାର ସୁଯୋଗ ମିଳିବ ।

ସେ ଆମ ଗେଟ୍ ପାଖକୁ ଆସିଲେ ମୁଁ ଜାଣିପାରେ 'ଚନ୍ଦ୍ର ଓ ଚମ୍ପା' 'ଜୀବନ ସାହିତ୍ୟ ଓ କଳା'ର ଲେଖକ ଆସିଗଲେ । ଗୋଟେ ମଧୁର ସେଣ୍ଟର ବାସ୍ନା ତାଙ୍କ ଆଗମନୀର ସୂଚନା ଦିଏ । ଏତେ ବଡ ଡେଙ୍ଗା ମଣିଷ ପିନ୍‌ପିନ୍ ଧଳା ଧୋତି ପଞ୍ଜାବିରେ ଭାରି ସୁନ୍ଦର ଦିଶନ୍ତି । ସନ୍ଧ୍ୟାରୁ ରାତି ଅଧ ପର୍ଯ୍ୟନ୍ତ ସାହିତ୍ୟ, ଦର୍ଶନ, ବିଜ୍ଞାନର ତାତ୍ତ୍ୱିକ ଆଲୋଚନାର ଅଦ୍ଭୁତ ଯୁକ୍ତିତର୍କ-ଚିତ୍କାର-ମନେହୁଏ ସେମାନେ ଯେମିତି କଳିକରୁଚନ୍ତି- ମଝିରେ ମଝିରେ ହୋ ହୋ ହସ । ଅଳ୍ପ ଦିନପରେ ଅଭ୍ୟାସ ହୋଇଗଲା । ସେ ସ୍ୱରମାନଙ୍କୁ ମୁଁ ଆଗ୍ରହରେ ଅପେକ୍ଷା କରି ରହିଲି ।

ରିଟାୟାର କରିବା ପରେ ଓକିଲାତି କରିବା ପାଇଁ ତାଙ୍କର ପ୍ରବଳ ଆଗ୍ରହ ଥିଲା । କିଛି ଦିନ କଲେ ମଧ, କିନ୍ତୁ ଶାରୀରିକ ଅସୁସ୍ଥତା ବାଧା ଦେଲା । ଦିନ ରାତି ଖଟୁଥିବା ଏତେ ବଡ ମଣିଷଟିଏ ଘରେ ବନ୍ଦୀ ହୋଇ ରହିଲେ । ସାହିତ୍ୟ ଓ ଉଚ୍ଚାଙ୍ଗ ସଂଗୀତ ହେଲା ଏକମାତ୍ର ଆନନ୍ଦ ।

ସଂସାର କଥା ତ କିଛି ବୁଝନ୍ତି ନାହିଁ । ଭଗବାନ ପ୍ରକୃତି ଜାଣି ଯୋଡିଟିଏ ଦେଇଥିଲେ । ତାଙ୍କ 'ମେଜ ବୌ' ଲାଗି ପାଞ୍ଚଟି ପିଲାଙ୍କ ସାଙ୍ଗେ ସେ ଆଉ ଜଣେ ।

କି ଅଦ୍ଭୁତ ସେ ଲୋକର ଆକର୍ଷଣ । କେବେ ଗୋଟିଏ ସନ୍ଧ୍ୟା ମୁଁ ଦେଖିନାହିଁ ସେ ଏକା ବସି ରହିଥିବା । କେହିନା କେହି ସେଠି ଜୁଟିଥାନ୍ତି ଓ ତତ୍ତ୍ୱ ବ୍ୟାଖ୍ୟା ଚାଲିଥାଏ । କ୍ୱାଟର ଛାଡିଲା ପରେ ରମାଦେବୀ ମହିଳା କଲେଜ ପଛପଟ ଫ୍ଲାଟରେ ଭଡାନେଇ ରହୁଥାନ୍ତି । ଆମ ଘରକୁ ପାଖ ହେଲା । ଅଧିକାଂଶ ସନ୍ଧ୍ୟା ତାଙ୍କ ଘରେ କଟିଲା । ପାଖରେ ବସିବାର ସାହସ ନକଲେ ମଧ ତାଙ୍କର ପ୍ରତ୍ୟେକଟି କଥାକୁ ମୁଁ କାନ ଡେରେ ।

ବାରଣ୍ଡାରେ ପୁରୁଣା ଆରାମ ଚୌକିଟିରେ ସାମ୍ନାରେ ଛୋଟ ଗୋଲ ଟେବୁଲ୍ ଉପରେ ବହି ପୁଳିଏ ଗଦେଇ ବସିଥିବା ଅଧିକାଂଶ ସମୟରେ ଦେଖିଚି । ପ୍ରତିଥର ଆମେ ଗେଟ୍ ବି ଖୋଲୁଣୁ ସେ ବାରଣ୍ଡା ଝର୍କାର ପର୍ଦାଟେକି ଦେଖିବେ ଓ ସାଙ୍ଗେ ସାଙ୍ଗେ ପଦାକୁ ବାହାରି ଆସିବେ । ଏତେ ସୁନ୍ଦର ହସି ସ୍ୱାଗତ କରନ୍ତି ଭୁଲି ହବନି । କେବଳ ସେ ନୁହଁନ୍ତି ସାରା ପରିବାର । ଫେରିଲାବେଳେ ବି ସେମିତି ରାସ୍ତା ପର୍ଯ୍ୟନ୍ତ ଆସିବେ । ସେଠି ପହଞ୍ଚିଲେ ସମୟ କୋଉ ଛଟକରେ ଚାଲିଯାଏ ଜଣାପଡେନି । ଥରେ ନୁହେଁ କେବେ କେବେ ଦୁଇ ତିନି ଡୁହା ଚା' ବୁଲିଯାଏ ।



Digitized by srujanika@gmail.com

ଗୋଟେ ଭାରି ସୁନ୍ଦର ଚାଇନାକ୍ଲେ କପ୍‌ରେ ଥରେ ଚା' ମିଳିଥିଲା ମତେ । କପ୍ ପ୍ଲେଟ୍ ପୁରୁଣା ହେଲେ ବି କେମିତି ଗୋଟେ ଅଲଗା ଲାଗିଲା । ପଚାରିଲି-

ପହଁରା କମ୍ପିଟିସନରେ ଯୋଗ ନେ ଦେବା ପାଇଁ ବାପା ରାଗିକରି ତାଙ୍କୁ ଘର ଭିତରେ ବନ୍ଦ କରି ରଖି ଦେଇଥିଲେ । ଶେଷ ମୁହୂର୍ତ୍ତରେ ଘରୁ ଛାଡ ପାଇ ନଈ କୂଳରେ ଗାମୁଛାପିନ୍ଧା ଅବସ୍ଥାରେ ପହଞ୍ଚି ଅନ୍ୟ ପ୍ରତିଯୋଗୀମାନଙ୍କ ସହିତ ମିଶି ପାଣିକି ଡେଇଁଲେ ଓ ପ୍ରଥମ ହୋଇ ସେଇ ଟି ସେଟ୍‌ଟି ପ୍ରାଇଜ୍ ପାଇଥିଲେ । ସେଇ ପ୍ଲେଟ ଦୁଇଟି ଶେଷ ସନ୍ତକ । କପ୍ ପ୍ଲେଟ୍ ଦୁଇଟି ଧୋଇଧାଇ ଥୋଇ ଦେଲି । ଦିଦିଙ୍କୁ ଅନୁରୋଧ କରିଥିଲି ଆଉ କେବେ ଏ ଦୁଇଟି ବ୍ୟବହାର ନକରି ଥୋଇ ଦବାକୁ । ତାଙ୍କ ମୃତ୍ୟୁ ପରେ କେତେଥର ମନ କରିଚି ସେ ଦୁଇଟି ନେଇ ଆସିବାକୁ । ଦିଦିଙ୍କୁ ସେ ସ୍ମୃତିରୁ ବଞ୍ଚିତ କରିବାକୁ ମନ ହୋଇନି ।

ବାରମ୍ବାର ଦେହ ଖରାପ ଲାଗି ରହିଲା । ଦୁର୍ବଳ ହବାକୁ ଲାଗିଲେ । ଶ୍ରୀମତୀ ମିତ୍ରଙ୍କ ଅକ୍ଳାନ୍ତ ପରିଶ୍ରମ ଦେଖିଲେ ମୁଣ୍ଡ ନଇଁଯାଏ । ଡାକ୍ତର ଔଷଧ, ପଥି, ଏଇ ଏକମାତ୍ର କଥାବାର୍ତ୍ତା- ଟଙ୍କାର ଅଭାବ, ମଣିଷର ଅଭାବ, ପିଲାଏ ସାନ ସାନ । କଥା ଛଳରେ ଶ୍ରୀମତୀ ମିତ୍ର ଦିନେ ମନ ଦୁଃଖ କରି କହୁଥାନ୍ତି- "ଡାକ୍ତର ପାଖକୁ ଯିବି, ଔଷଧ କିଣିବି, ହାଟ ବଜାର କରିବି, ପୁଣି ଭଲ ଦୁଧଟିକେ ପାଇଁ ଗଉଡ ଦୁଆରେ ଠିଆ ହେବି ତା ସାଙ୍ଗକୁ ରନ୍ଧାବଢ଼ା, ଘରକାମ, ଟଙ୍କା ପାଇଁତ ଆହୁରି ଚିନ୍ତା । ଏଥିରେ ମତେ କହୁଚନ୍ତି- ତୁମେ ତ ମତେ ଏକା ଘରେ ଛାଡିଦେଇ ପଦାରେ ବୁଲୁଚ, ମୁଁ ଦୁର୍ବଳ ହୋଇଗଲିଣି ନା ସେଥିପାଇଁ ମତେ ସାଙ୍ଗରେ ନବାକୁ ତୁମକୁ ଲାଜ ମାଡୁଚି, ଘରେ ଯେତିକି ସମୟ ରହୁଚ ମୋ ପାଖରେ ତ ଟିକେ ବସୁନ, ଖାଲି କାମର ବାହାନାରେ ଦୂରରେ ରହୁଚ । "ତାଙ୍କ ଆଖି ଲୁହ ଛଳ ଛଳ ହୋଇଗଲା- କହିଲେ, କେମିତି ମୁଁ ତାଙ୍କୁ ବୁଝେଇବି ତୁମରି ପାଇଁ ପଦାରେ ବୁଲୁଚି, ଭୋକ ଶୋଷ ଭୁଲି ଗଲିଣି, ରାତି ରାତି ଅନିଦ୍ରା ବାଧୁନି ।

ଅନେକ ସମୟରେ ହଠାତ୍ ନିଶ୍ୱାସ ନେବାରେ କଷ୍ଟ ହୁଏ ଓ ସାଙ୍ଗେ ସାଙ୍ଗେ ଅକ୍‌ସିଜେନ୍ ଦରକାର ପଡେ । କାହାରି ସାହାଯ୍ୟ ଲାଗି ଅପେକ୍ଷା ନ କରି ନିଶ୍ୱାସ ହୋଇ ଯାଉଛି କହୁଥିବା ସ୍ୱାମୀଙ୍କୁ ରିକ୍‌ସାରେ ଧରି ହସ୍‌ପିଟାଲ ଯିବା ତାଙ୍କର ଅଭ୍ୟାସ ହୋଇଯାଇଥିଲା । ଏତେ ପରିଶ୍ରମର ମୂଲ୍ୟ ରହିଲା କେଉଁଠି ? ଭଗବାନ ହାତ ଦେଇ ରଖିଲେ ନାହିଁ । ଆମେରିକାରୁ ଶେଷ ଚେଷ୍ଟା ଲାଗି ବହୁ ମୂଲ୍ୟବାନ ଇନ୍‌ଜେକ୍‌ସନ୍ ଟିଏ ଆସି ପହଞ୍ଚିଲା । ସେତେବେଳକୁ ସେ ଆଉ ନଥିଲେ ।



Digitized by srujanika@gmail.com

୧୯୭୫ ଫେବୃୟାରୀ ୨୧ । ଓଡିଆ ସାହିତ୍ୟର କି କ୍ଷତି ହେଲା ତା ଓଡ଼ିଆ ସାହିତ୍ୟର ଇତିହାସ ଆଲୋଚନା କରିବ । ଭଗବାନ କରନ୍ତୁ ମୋ ଜୀବନରେ କେବଳ ନୁହେଁ କାହାରି ଜୀବନରେ ସେ ଦୃଶ୍ୟର ପୁନରାବୃତ୍ତି ନ ହେଉ ।

ଚାରିଟା ବାଜିଯାଇଥାଏ । ରାଜୁ ଭାଇ (ଗାଳ୍ପିକ ରାଜ କିଶୋର ମହାନ୍ତି) ଗେଟ୍ ଖୋଲି ଭିତରେ ପଶିଲେ । ମୋ ନମସ୍କାର ନ ଫେରେଇ ସେ କହି ଲାଗିଲେ- "ବାମାବାବୁ ଚାଲିଗଲେ" । ମୁଁ ତାଙ୍କ "ଚାଲିଗଲେ" କଥାଟା ଠିକ୍ ବୁଝିପାରିଲି ନାହିଁ ।

"କୁଆଡେ ଚାଲିଗଲେ । ହସ୍‌ପିଟାଲ୍"

"ହଁ ହସ୍‌ପିଟାଲ୍ ନିଆ ହୋଇଥିଲା, ଦଶଟାବେଳକୁ ସେ ଚାଲିଗଲେଣି, ଏଇଲେ ଘରେ" ।

ତଥାପି ମୁଁ କଥାଟା ଠିକ୍ କରି ଧରି ପାରୁନଥାଏ । ମୋ ପିଲାଙ୍କ କାନ୍ଦ ଶୁଣି କଥାଟା ବୁଝିଲା ବେଳକୁ ରାଜୁଭାଇ କେତେବେଳେ ବାହାରି ଗଲେଣି ଜାଣି ପାରିଲି ନାହିଁ । ସେଇଠି ଠିଆ ହୋଇ ବହୁତ କାନ୍ଦିଚି । ତାପରେ ମୋର କର୍ତ୍ତବ୍ୟ ସ୍ଥିର କଲି । ଶେଷ ଦର୍ଶନର ଆଶା ରଖି ଘରୁ ବାହାରିଲି । ଏକୁଟିଆ ଏ ପରିସ୍ଥିତିରେ ଦିଦିଙ୍କୁ ସାମ୍ନା କରିବାର ସାହସ ହେଲାନି । ରମାଦେବୀ ମହିଳା କଲେଜ ହଷ୍ଟେଲ୍‌ରୁ ଖ୍ୟାତନାମା ଗାଳ୍ପିକା ଅଧ୍ୟାପିକା ବୀଣାପାଣି ମହାନ୍ତିଙ୍କୁ ସାଙ୍ଗରେ ନେଇ ଯିବି ଭାବି ସେଠି ପହଞ୍ଚିଲି । ସେ ସେଇମାତ୍ର ତାଙ୍କ ଘରୁ ଫେରିଥାନ୍ତି । ପୁଣିଥରେ ମୋ ସହିତ ବାହାରିଲେ ।

ଆମେ ହଷ୍ଟେଲ୍ ସାମ୍ନାଗେଟ୍ ଦେଇ ପଡିଆ ଆଡକୁ ମୁହେଁଇଚୁ, ହଠାତ୍ ଅଧ୍ୟାପିକା ମହାନ୍ତି ମୋ ହାତଟି ଚାପିଧରି କହିଲେ-

"ଏଇ ଦେଖ, ସେମାନେ ତାଙ୍କୁ ନେଇ ଯାଉଛନ୍ତି, ତୁମେ ଆଉ ତାଙ୍କୁ ଦେଖିପାରିବ ନାହିଁ" ।

ମୁଁ ତାଙ୍କ ହାତ ବଢ଼ାଇଥିବା ଦିଗକୁ ଚାହିଁଲି । କାହାକୁ ନେଇ ଯାଉଚନ୍ତି ଏମାନେ ? ଏଇ କଣ ଓଡ଼ିଶାର ଜଣେ ପ୍ରତିଷ୍ଠିତ ଲେଖକଙ୍କର ଶବ ଶୋଭାଯାତ୍ରା ? ମାଲଭାଇ ମାନଙ୍କ ଛଡା ଆଉ ୪/୫ଜଣ ଲୋକ । ସମସ୍ତେ ଦୌଡୁଚନ୍ତି । ସତେକି ଠିକଣା ଜାଗାରେ କାନ୍ଧରୁ ବୋଝ ଓହ୍ଲାଇ ଦେଲେ ଦାୟିତ୍ୱ ତୁଟିବ ।

ମୋ କାନ୍ଦ ବନ୍ଦ ହୋଇଗଲା । ମୋ ପିଲାଏ ବଗିଚା ଲଣ୍ଡା କରି କେତେ ଡାଲିଆ ସେବତୀ ତୋଳି ଦେଇଚନ୍ତି । ସେତକ ଦେଇ ପାଦ ଛୁଇଁବି ବୋଲି ଭାବି ଘର ଛାଡିଚି । ଏ କଣ ହେଲା ? ମୋ ଭିତରେ ଗୋଟେ ଅଦ୍ଭୁତ ଶକ୍ତି ଅନୁଭବ



Digitized by srujanika@gmail.com

ଏହି ଉପନ୍ୟାସ । ଐତିହାସିକ ପ୍ରେମ ବ୍ୟାଖ୍ୟାନ ଓ ଦାର୍ଶନିକ ଚିନ୍ତାଧାରା (Historical Romance and Philosophical Discourse)କୁ ସମ୍ମିଳିତ କରିବାର ଅପୂର୍ବ ପ୍ରୟାସର କେନ୍ଦ୍ର ବିନ୍ଦୁରେ 'ଚନ୍ଦ୍ର ଓ ଚମ୍ପା'ର ଅଧିଷ୍ଠାନ । ଏଣୁ ଏହା ଇତିହାସକୁ ଆଧାର କରି ବି କାଳ୍ପନିକ, କଳ୍ପନାର ପଲ୍ଲବନ ଥାଇ ବି ସାମାଜିକ । ସମକାଳୀନ ସମାଜର ବ୍ୟାଖ୍ୟାନ ଅନ୍ତରାଳରେ ବ୍ୟକ୍ତିତ୍ୱର ଅସ୍ମିତା ପ୍ରଖ୍ୟାପନ ହିଁ ଏହାର ମୂଳଲକ୍ଷ୍ୟ । ସମକାଳୀନ ସମାଜରେ ବ୍ୟକ୍ତିତ୍ୱର ପ୍ରତିଷ୍ଠା ପାଇଁ ଧର୍ମର ଦୁରୁପଯୋଗ, ଧର୍ମର ପ୍ରତିଷ୍ଠା ପାଇଁ ବିଭିନ୍ନ ସଂପ୍ରଦାୟର ଚକ୍ରାନ୍ତ, ଧର୍ମ ନାମରେ ଯୌନ ବ୍ୟଭିଚାରର ଅସଂଲଗ୍ନ ଚିତ୍ର ଏଥିରେ ପ୍ରଦତ୍ତ । ଏ ସବୁ ମଧ୍ୟରେ ଭାରତ ବାହାରେ କିପରି କଳିଙ୍ଗ ସଂସ୍କୃତି ବିସ୍ତାର ଲାଭ କରିଥିଲା ତାହା ହିଁ ପ୍ରତିପାଦ୍ୟ । କଳିଙ୍ଗର ବର୍ଣ୍ଣମୟ ଐତିହ୍ୟ, ବିଭିନ୍ନ ଧର୍ମାନ୍ଧତାର ପ୍ରାବଲ୍ୟ, ଯୌନ ଅଭିପ୍ସା ଭିତରେ ଚାପିହୋଇ ରହିଥିବା କାମନା ଏବଂ ଅତୀତ ପ୍ରବଣତାର ଚିତ୍ରିତ କାନ୍‌ଭାସ୍‌ରେ ପରିସ୍ଫୁଟ ଏହି ଉପନ୍ୟାସ । ବୌଦ୍ଧ ଧର୍ମର କ୍ରମଃ ତିରୋଧାନ ଏବଂ ବ୍ରାହ୍ମଣ୍ୟ ଧର୍ମର କ୍ରମଃ ଆବିର୍ଭାବର ପୃଷ୍ଠପଟରେ ଏକ ଶୁଚି ଶୁଭ୍ର ଐତିହାସିକ ଉପନ୍ୟାସ 'ଚନ୍ଦ୍ର ଓ ଚମ୍ପା' । ଅତୀତର ନିର୍ମୋହ ଚେତନାରେ ଆନ୍ଦୋଳିତ ବାମାଚରଣଙ୍କ ଲେଖକୀୟ ପୁଞ୍ଜିର ମୋହମୁଗ୍ଧ ଅବତାରଣା- 'ଚନ୍ଦ୍ର ଓ ଚମ୍ପା' । ଇତିହାସକୁ ବାସ୍ତବତାର ଭିତ୍ତିରେ ଠିଆକରି କ୍ଲାସିକ ପର୍ଯ୍ୟାୟକୁ ଉତ୍ତୀର୍ଣ୍ଣ କରିବାରେ ଯେଉଁ ଅଙ୍ଗୁଳିମେୟ ରଚନା ସିଦ୍ଧିପ୍ରାପ୍ତ ସେ ଭିତରେ 'ଚନ୍ଦ୍ର ଓ ଚମ୍ପା' ଅନ୍ୟତମ ।

ସମଗ୍ର ଭାରତ ବର୍ଷରେ ଦର୍ଶନ ଓ ଇତିହାସକୁ ନେଇ ଉପନ୍ୟାସ ରଚନାର ପରଂପରା ସୃଷ୍ଟି ହୋଇଥିଲା । ଉପନ୍ୟାସର ଚରିତ୍ର ଯାହାବି ହେଉ ନାୟକ ଥିଲେ ସମକାଳୀନ ଧର୍ମ ଓ ଦର୍ଶନ । ଏହି କ୍ରମରେ ବାଣଭଟ୍ଟର ଆତ୍ମକଥା, ଯଯାତି, ବାମମାର୍ଗ, ଗଙ୍ଗାରୁ ଭଲ୍‌ଗା ପ୍ରଭୃତି ଉପନ୍ୟାସକୁ ସ୍ମରଣ କରାଯାଇପାରେ । ରାହୁଲ ସାଂକୃତାୟନ, ଖାଣ୍ଡେକର, ଗୁରୁଦ, ହଜାରୀପ୍ରସାଦ ଦ୍ୱିବେଦୀ ପ୍ରମୁଖ କ୍ଲାସିକ ଉପନ୍ୟାସର ଯେଉଁ ଉତ୍ତୁଙ୍ଗ ଶିଖରକୁ ସ୍ପର୍ଶ କରିଥିଲେ ବାମାଚରଣଙ୍କ 'ଚନ୍ଦ୍ର ଓ ଚମ୍ପା' ସେହି ଶିଖରସ୍ପର୍ଶୀ ଉପନ୍ୟାସ ।

ବ୍ୟକ୍ତିର ଅନ୍ତର୍ନିହିତ ଆବେଦନକୁ ପଦଦଳିତ କରିବାର ଆସ୍ପର୍ଦ୍ଧା ବହନ କରୁଥିବା ସମାଜବ୍ୟବସ୍ଥା ଓ ଧର୍ମୀୟ ଅବବୋଧକୁ ଘୋର ନିନ୍ଦା କରିଛନ୍ତି କିର୍କେଗାଡ୍ । ଖ୍ରୀଷ୍ଟିୟାନ ଧର୍ମର ପ୍ରଚାର ସର୍ବସ୍ୱତା ଓ ଅର୍ଥହୀନ ସାମାଜିକ ଅନାଚାର ବିରୁଦ୍ଧରେ କିର୍କେଗାଡ୍ ଦୃଢ଼ ବିରୋଧର ସ୍ୱର ଉତ୍ତୋଳନ କରିଥିଲେ । ସ୍ୱାଧୀନ ଓ ମୁକ୍ତ



Digitized by srujanika@gmail.com

ବୌଦ୍ଧିକ ଜୀବନର ଉଦ୍‌ଗାତା ଭାବରେ ନିତ୍ସେ, କାମ୍ୟୁ, ହାଇଡଗାର ପ୍ରମୁଖ ସରଳ ସାବଲୀଳ ଓ ବର୍ଣ୍ଣମୟ ମାନବ ଜୀବନର ଜୟଗାନ କରିଛନ୍ତି । ସାର୍ତ୍ରେ ମଧ୍ୟ ମଣିଷକୁ ସବୁସ୍ତରରେ ଉପଯୁକ୍ତ ସମ୍ମାନ ପ୍ରଦାନ ଦିଗରେ ପଦକ୍ଷେପ ନେଇଛନ୍ତି । ମଣିଷକୁ ନିବିଡ ଭାବରେ ଭଲ ପାଇବା, ମାନବିକତାର ପ୍ରତିଷ୍ଠା ଅନ୍ତରାଳରେ ସମୃଦ୍ଧ ସମାଜ ବ୍ୟବସ୍ଥା ଗଠନର ପକ୍ଷପାତୀ ଥିଲେ ସେ । ତାଙ୍କ ମତରେ ଅସ୍ତିତ୍ୱବାଦ ହିଁ ମାନବବାଦ । ବାସ୍ତବରେ ଅସ୍ତିତ୍ୱବାଦୀ ଚିନ୍ତାଧାରା ମଣିଷର ମାନବୀୟ ମୂଲ୍ୟବୋଧର ପ୍ରତିଷ୍ଠାତା ଓ ଏକନିଷ୍ଠ ପୂଜାରୀ । ମଣିଷକୁ ନିବିଡ ଭାବରେ ଦେଖି ପ୍ରାଣବାନ ଭାବରେ ଦେଖେଇବାର ପ୍ରବଣତା ହିଁ ଏହାର ମର୍ମଗାଥା । ମାନବୀୟ ସତ୍ତାର ଉତ୍ତରିତ ପର୍ଯ୍ୟାୟକୁ ସେ ଦେଇଛନ୍ତି ଅଫୁରନ୍ତ ସମ୍ମାନ । ସାମାନ୍ୟ କାହାଣୀ ଭାଗକୁ ବିଭିନ୍ନ ଧର୍ମ ଧାରାର ଅଳୀକ ଛଦ୍ମତାରେ ମଣିଷର ଅହଂ ସହିତ ସମାବେଶିତ କରିଛନ୍ତି ଲେଖକ ।

ଚମ୍ପା ସାମାନ୍ୟ ଦୁର୍ଘଟଣାରେ ଚଳତ୍ ଶକ୍ତି ହରାଏ । ସେ ଛୋଟି ହୋଇଯିବାରୁ ପ୍ରେମ କରୁଥିବା ଚନ୍ଦ୍ର ତାକୁ ଦୂରେଇ ଦିଏ । ଏ ଉତ୍ସବ ମୁଖର ମୁହୂର୍ତ୍ତରେ ପ୍ରାଚୀନ ମନ୍ଦିର ପ୍ରାଙ୍ଗଣରେ ଦୁଃଖାଭିଭୂତ ଚମ୍ପା ଏକ ସୁନ୍ଦର କମନୀୟ ବାଳକକୁ ସାକ୍ଷାତ କରେ । ବାଳକ ତାକୁ କୁହନ୍ତି, "ସୋମଦତ୍ତଙ୍କ ତିନି ପୁଅ ଭିତରୁ ଏ ପୁଅ ସବୁଠୁଁ ଧାର୍ମିକ ସେ ଯଦି ତୁମକୁ ଆଶାବାଡି ଫିଙ୍ଗି ଚାଲିବାକୁ ଆଦେଶ ଦିଏ ତେବେ ତୁମର ଗୋଡ ତୁମେ ଫେରି ପାଇବ" । ବାଳକକୁ ଭଗବାନ ମନେକରି ଚମ୍ପା ଏହି ବକ୍ତବ୍ୟକୁ ମା' ଓ ମଧୁକରଙ୍କ ସମ୍ମୁଖରେ ପ୍ରକାଶ କରିଛି । ସୋମଦତ୍ତ ସୁଖୀପଲ୍ଲୀର ଜଣେ ଦରିଦ୍ର ବ୍ରାହ୍ମଣ । ଜ୍ୟେଷ୍ଠପୁତ୍ର ମାହାକାନ ପାତଞ୍ଜଳି ଶିଷ୍ୟ, ବେଦବିତ୍ ପରବର୍ତ୍ତୀ ପର୍ଯ୍ୟାୟରେ ମଗଧର ରାଜା ପୁଷ୍ୟମିତ୍ରଙ୍କର ପ୍ରଧାନମନ୍ତ୍ରୀ । ସେ ବୌଦ୍ଧ ଧର୍ମକୁ ବିଲୁପ୍ତ କରି ବ୍ରାହ୍ମଣ୍ୟ ଧର୍ମ ପ୍ରବର୍ତ୍ତନରେ ସଫଳ ହୋଇଥିଲେ । ସୋମଦତ୍ତଙ୍କ ଦ୍ୱିତୀୟ ପୁତ୍ର ମହାଶାଳ ଏକଦା ଖାରବେଳଙ୍କୁ ହିଂସ୍ର ସିଂହ କବଳରୁ ବଞ୍ଚାଇ ମହାସୈନ୍ୟାଧକ୍ଷ ପଦରେ ନିଯୁକ୍ତ ହୋଇଥିଲେ । ତୃତୀୟ ପୁତ୍ର ମହାସାର ଅନ୍ୟଜାତିର ଜଣେ କନ୍ୟାକୁ ବିବାହ କରି ବ୍ରାହ୍ମଣ ଜାତିରୁ ବିତାଡିତ ଏବଂ ମହାକଳଙ୍କ ରୂପେ ଆଖ୍ୟାତ । ଚମ୍ପା ଦେଖିଥିବା ବାଳକଙ୍କୁ ବିଭିନ୍ନ ସଂପ୍ରଦାୟ ନିଜର ଆରାଧ୍ୟ ଦେବତା ରୂପେ ପ୍ରମାଣ କରିବାକୁ ପ୍ରତିଯୋଗିତା ଆରମ୍ଭ କରିଛନ୍ତି । ମହାସିଦ୍ଧ ମହାକାନ ବା ମହାଶକ୍ତିଶାଳୀ ମହାଶାଳ ଉପଦେଶ ଦେବାପରେ ମଧ୍ୟ ଚମ୍ପାର ବିଡମ୍ବିତ ଭାଗ୍ୟ ସଫଳ ହୋଇପାରିନାହିଁ । ମହାକାନଙ୍କ ମୋହଭଙ୍ଗ



Digitized by srujanika@gmail.com

ଘଟଛି ସମସ୍ତଙ୍କ ଘୃଣାର ପାତ୍ର କିନ୍ତୁ ମାତାପିତାଙ୍କ ସେବାକାରୀ, ପରଦୁଃଖରେ କାତର ମହାସାରଙ୍କ ଆଦେଶରେ ଚମ୍ପା ନିଜର ଚାଲିବା ଶକ୍ତି ଫେରିପାଇଛି । ପରେ ପରେ ଚନ୍ଦ୍ର ଭଲପାଇଛି ଚମ୍ପାକୁ । ମାନବିକତା ହିଁ ଶ୍ରେଷ୍ଠ ଧର୍ମରୂପେ ପ୍ରତିଷ୍ଠା ପାଇଛି । ଚାର୍ବାକଙ୍କ ମାନବବାଦୀ ଚିନ୍ତାଧାରା ଓ ମୌଳିକ ଚିନ୍ତନ ଦ୍ୱାରା ମହାକାନ ପ୍ରଭାବିତ ହୋଇଛନ୍ତି । ସମସ୍ତ ଧର୍ମର ଊର୍ଦ୍ଧ୍ୱରେ ମାନବିକତାର ପ୍ରତିଷ୍ଠା ହୋଇଛି । ବୌଦ୍ଧ ସଂଘର ବିଚାର ବୈକଲ୍ୟ, ଗୁହ୍ୟସମାଜର ଅଶ୍ଳୀଳ ଉପାସନା, ସନାତନ ବ୍ରାହ୍ମଣ୍ୟ ଧର୍ମର ସ୍ୱାର୍ଥ ସର୍ବସ୍ୱ ପ୍ରଚାର, ଜୈନ ଧର୍ମର ଔଦ୍ଧତ୍ୟ ଭାଙ୍ଗିଯାଇଛି । ଚାର୍ବାକଙ୍କ ମାନସିକ ବିପ୍ଳବ ସୃଷ୍ଟିର ଚରମ ସତ୍ୟକୁ ଆବିଷ୍କାର କରିଛି । ଏମିତି ଏକ ଦାର୍ଶନିକ ଭାବଭୂମିରେ ଆଧ୍ୟାତ୍ମିକତା ବନାମ ମାନବିକତାର ନିର୍ଯ୍ୟାସକୁ ସୁନ୍ଦର ଭାବରେ ଉପସ୍ଥାପନା କରିଛନ୍ତି ବାମାଚରଣ । ସମୟର ଯୂପକାଷ୍ଠରେ ବଳୀପଡିଛି ଅଳୀକତା । ପ୍ରତିଷ୍ଠା ପାଇଛି ମାନବୀୟ ସଂବେଦନା ।

ସମର ସେଟ ମମ୍‌ଙ୍କର 'କାଟାଲିନା'ର କାହାଣୀ ଭାଗକୁ ଆହରଣ କରି ବାମାଚରଣ ଚନ୍ଦ୍ର ଓ ଚମ୍ପାର କାହାଣୀକୁ ଅଳଂକୃତ କରିଛନ୍ତି । କାଟାଲିନାର କାହାଣୀ ପରିବେଶ ଓ ପୃଷ୍ଠଭୂମି ଠାରୁ ଚନ୍ଦ୍ର ଓ ଚମ୍ପାର ପରିବେଶ ଓ ପୃଷ୍ଠଭୂମି ସ୍ୱତନ୍ତ୍ର । କାଟାଲିନାର ମହାସ୍ରୋତରେ ଅନ୍ଧ ଭାବରେ ଭାସି ନଯାଇ ବାମାଚରଣ ନିଜର ଏକ ସ୍ୱତନ୍ତ୍ର ପରିଚୟ ସୃଷ୍ଟି କରିପାରିଛନ୍ତି । କାଟାଲିନାର ଆହରଣ ପ୍ରକ୍ରିୟାକୁ ମର୍ଯ୍ୟାଦାବନ୍ତ କରିବା ପାଇଁ ବାମାଚରଣ ଓଡ଼ିଶା ଇତିହାସର ପ୍ରାଚୀନ ଗଳ୍ପକୁ ଉପଜୀବ୍ୟ କରିଛନ୍ତି । ବ୍ରାହ୍ମଣ୍ୟ ଧର୍ମ, ବୈଦିକ ସଂସ୍କୃତି ଓ ବୌଦ୍ଧ ଧର୍ମ ଆଚାର ମଧ୍ୟରେ ଚନ୍ଦ୍ର ଓ ଚମ୍ପାର ଆରୋପ ଯଥାର୍ଥ ଓ ସୌନ୍ଦର୍ଯ୍ୟନିଷ୍ଠ ହୋଇଛି । ମାନବୀୟ ଗୁଣାବଳୀର ଅପରୂପ ପରୀକ୍ଷା କ୍ଷେତ୍ର ରୂପେ 'ଚନ୍ଦ୍ର ଓ ଚମ୍ପା' ଉପନ୍ୟାସ ସିଦ୍ଧିପ୍ରାପ୍ତ । ଏହାର ସୌନ୍ଦର୍ଯ୍ୟବତ୍ତା ଯୁଗାନ୍ତକାରୀ ଏବଂ ସର୍ବକାଳୀନ ।

ଗ) ପ୍ରବନ୍ଧ ଓ ରମ୍ୟରଚନା

ଝଙ୍କାର ପୃଷ୍ଠାରେ ପ୍ରକାଶିତ ବାମାଚରଣଙ୍କ ଅନେକ ପ୍ରବନ୍ଧ ଓ ରମ୍ୟରଚନା ଅଶେଷ ଲୋକପ୍ରିୟତା ଅର୍ଜନ କରିଥିଲା । ତାଙ୍କ ଭାଷାରେ କୌଳୀନ୍ୟ ଓ ଓଜସ୍ୱିନୀ ସମ୍ଭାର ସହିତ ଲାଳିତ୍ୟ ଓ ସାବଲୀଳତା ତାଙ୍କୁ ଜଣେ ବିଶିଷ୍ଟ ପ୍ରାବନ୍ଧିକ ଓ ଚିନ୍ତାନାୟକର ସମ୍ମାନ ପ୍ରଦାନ କରେ । ବିଭିନ୍ନ ପତ୍ରପତ୍ରିକାରେ ପ୍ରକାଶିତ ପ୍ରବନ୍ଧ ଓ ରମ୍ୟରଚନା ସମୂହରୁ "ଏଣୁଷ ତେଣୁଷ" (୧୯୭୩, ଗ୍ରନ୍ଥମନ୍ଦିର) ସଂକଳନରେ ୮ଟି ରମ୍ୟରଚନା ପ୍ରକାଶିତ । ସେଗୁଡିକ ହେଲା ଶୋକ ସମ୍ବାଦ,



Digitized by srujanika@gmail.com

ଖୋସାମଦି ସପକ୍ଷରେ, ଯାଦୁକରର ଖେଳ, ଭଡାଟିଆ, ଗୋଟିଏ ବାକ୍ୟରଚନା, ଅପାଂକ୍ତେୟ ସାହିତ୍ୟ, କାହିଁକି କେଜାଣି, ଫୈୟାଜ୍ ଖାଁ । ବାମାଚରଣଙ୍କ ସର୍ବଶ୍ରେଷ୍ଠ ସମ୍ମାନପ୍ରଦ ପୁସ୍ତକ "ଜୀବନ ସାହିତ୍ୟ ଓ କଳା"ରେ ୧୦ଟି ପ୍ରବନ୍ଧ ଅନ୍ତର୍ଭୁକ୍ତ । ସେଗୁଡିକ ହେଲା ସୂଚନା ତତ୍ତ୍ୱ ଓ ଲୀଳା, ସାହିତ୍ୟ ଓ କଳା, ସାହିତ୍ୟ ବିଚାରକର ଗୁରୁଦାୟିତ୍ୱ, ଆଧୁନିକତା, ସାହିତ୍ୟ ଓ ସ୍ୱପ୍ନ, ହାସ୍ୟ ଓ ରସ, କ୍ଷୁଦ୍ରଗଳ୍ପ ଓ ଉପନ୍ୟାସ:ବ୍ୟଷ୍ଟି ଓ ସମଷ୍ଟି, ଉପମା, ପରିକ୍ରମା, ଅନୁଦାନ ବିଭ୍ରାଟ, ବାହୁଲ୍ୟ । ଏହି ପ୍ରବନ୍ଧଗୁଡିକରେ ବାମାଚରଣଙ୍କ ବିଶ୍ଳେଷଣାତ୍ମକ ଦୃଷ୍ଟିଭଙ୍ଗୀ ସହିତ ବହୁଶାସ୍ତ୍ରଦର୍ଶିତାର ପରିଚୟ ମିଳେ । କଳା, ସାହିତ୍ୟ, ଦର୍ଶନ, ବୈଦିକ ସାହିତ୍ୟ, ବୌଦ୍ଧ ଧର୍ମ ଦର୍ଶନ, ଜୈନ ଧର୍ମ ଦର୍ଶନ, ମନସ୍ତତ୍ତ୍ୱ, ବିଜ୍ଞାନ, ରାଜନୀତି, ଇତିହାସ ପ୍ରଭୃତି ଉପରେ ତାଙ୍କର ଗଭୀର ପ୍ରବେଶ ଏହି ପର୍ଯାୟର ପ୍ରବନ୍ଧଗୁଡିକୁ ଉତ୍କର୍ଷତାର କୋଟିକୁ ପହଞ୍ଚାଇଛି । ଅତି ସୂକ୍ଷ୍ମ ଭାବରେ ସେ ବିଭିନ୍ନ ପ୍ରସଙ୍ଗର ସଂଜ୍ଞା ନିରୂପଣ କରି ପାଠକକୁ ତାଙ୍କ ଲକ୍ଷ୍ୟସ୍ଥଳରେ ପହଞ୍ଚାଇ ଦେଉଥିଲେ । ଅତି ସହଜରେ ସେ କହିପାରୁଥିଲେ "ନାନ୍ଦନିକ କଳାର ଉଦ୍ଦେଶ୍ୟ ହେଲା, କାନ ଭିତର ଦେଇ ମରମକୁ ପ୍ରବେଶ କରି ମନ ପ୍ରାଣ ଆକୁଳ କରିବା ("ସଖୀ, କେବା ଶୁନାଇଲ ଶ୍ୟାମ ନାମ, କାନେର ଭିତର ଦିୟାମରମେ ପଶିଲ ଗୋ, ଆକୁଲ କରିଲ ମୋର ପ୍ରାନ୍") ଅର୍ଥାତ୍ ଇନ୍ଦ୍ରୀୟ ମାଧ୍ୟମରେ ହୃଦୟକୁ ଯିବା । ତତ୍ତ୍ୱକୁ ତେଣୁ ଲୀଳାରେ ଦେଖାଇବା ପାଇଁ ସାହିତ୍ୟର (ବ୍ୟାପକ ଅର୍ଥରେ) ସୃଷ୍ଟି" । (ସୂଚନା : ତତ୍ତ୍ୱ ଓ ଲୀଳା, ସାହିତ୍ୟ ଓ କଳା) ।

କଳାର ଉଦ୍ଦେଶ୍ୟ ତେଣୁ ସବୁକଥାକୁ ବା ତତ୍ତ୍ୱକୁ ଇନ୍ଦ୍ରୀୟସ୍ତରକୁ ଆଣି ମନମୁଦ୍ଧି ଆତ୍ମାକୁ ଉଦ୍ଦୀପିତ କରିବା । କୌଣସି ତତ୍ତ୍ୱ ଦ୍ୱାରା ଲେଖକ ବେଦନା ପାଇଥିବା ଉଦ୍‌ବୁଦ୍ଧ ହୋଇଥିବ ଏବଂ ସେହିକ୍ରମରେ ପାଠକ ଚିତ୍ତକୁ ପ୍ରଜ୍ଞାକୁ ପ୍ରଚୋଦିତ କରିବ । ତେବେ ଯାଇ ତତ୍ତ୍ୱଟିଏ ଘଟଣାଟିଏ କଳାରେ ରୂପାନ୍ତରିତ ହେବ । ବାମାଚରଣ ନିଜ ପ୍ରବନ୍ଧରେ ଇନ୍ଦ୍ରୀୟପ୍ରବଣ ଲେଖାଠାରୁ ବୁଦ୍ଧି ପ୍ରବଣ ଲେଖାକୁ ଉତ୍କୃଷ୍ଟ ଏବଂ ସବୁଠାରୁ ଉତ୍କୃଷ୍ଟ ଲେଖାରୂପେ ଆଧ୍ୟାତ୍ମିକକୁ ପ୍ରତିପାଦନ କରିଛନ୍ତି । ପରିକ୍ରମା ଶୀର୍ଷକରେ ମାନସ ମାର୍ଚ୍ଚ ୧୯୭୩ରୁ ମଇ ୧୯୭୩ରେ ପ୍ରକାଶିତ ପ୍ରବନ୍ଧଟି ବାମାଚରଣଙ୍କ ଏକ ଚମତ୍କାର ଉପସ୍ଥାପନା । ମାନସରେ ପ୍ରକାଶିତ ପ୍ରବନ୍ଧକୁ ପରିବର୍ଦ୍ଧିତ କରି ବାମାଚରଣ ପୁସ୍ତକରେ ସ୍ଥାନ ଦେଇଛନ୍ତି । ଏଥିରେ ଅନେକ ତଥ୍ୟ ନୂତନ ଭାବେ ସଂଯୋଜିତ ହୋଇଛି Uncertainity principle &



Digitized by srujanika@gmail.com

Quamtum mechanics, Nature of the physical world, ଆଲବର୍ଟ କାମ୍ୟୁ, ଶଙ୍କରାଚାର୍ଯ୍ୟ, ସଙ୍ଗୀତ, ଧ୍ୱନିତତ୍ତ୍ୱକୁ ନେଇ ପରିକ୍ରମାର ସାରସ୍ୱତ ଯାତ୍ରା । ଏଥିରେ ବିଜ୍ଞାନ ଠାରୁ ସାହିତ୍ୟ, ସମାଜ ଠାରୁ ସଙ୍ଗୀତର ଚର୍ଚ୍ଚା ବେଶ୍ ରୋଚକ ଓ ଶିଳ୍ପ ସଙ୍ଗତ ।

"ହାସ୍ୟ ଓ ରସ" ବାମାଚରଣଙ୍କ ଏକ ଉଚ୍ଚକୋଟିର ପ୍ରବନ୍ଧ । ଏଥିରେ ନିରପେକ୍ଷ ଭାବେ ହାସ୍ୟରସର ପୃଷ୍ଠଭୂମିକୁ ସେ ଅନାବରଣ କରିଛନ୍ତି । ବିଶ୍ଳେଷଣ ପ୍ରକ୍ରିୟା ମାଧ୍ୟମରେ ବାମାଚରଣ ସ୍ପଷ୍ଟ କରିଛନ୍ତି "ଅନ୍ୟ ଲୋକ ପ୍ରତି ନିଜର କ୍ରୋଧ, ଘୃଣା ଆଦି ଉଦ୍ରେକ ମାଧ୍ୟମରେ ହାସ୍ୟରସର ସୃଷ୍ଟି ହସ ପଛରେ ହସିବା ଲୋକର କ୍ରୂରତା ଛପି ରହିଥାଏ ଏବଂ ଯେଉଁ ଲେଖକ ଏସବୁ ଘଟନା ପରିବେଷଣ କରି ହସାଇବାର ଚେଷ୍ଟା କରେ ତାହାର ମଧ୍ୟ କ୍ରୁରତା ଓ ଅଶ୍ଳୀଳତା ପ୍ରକାଶ ପାଏ" । (ହାସ୍ୟ ଓ ରସ) ପରବର୍ତ୍ତୀ ସମୟରେ ହାସ୍ୟରସ ଆଦର୍ଶକୁ ଆଧାର କରି ଏହି କ୍ରୁରତାକୁ ବର୍ଜନ କରିଛି । ବାମାଚରଣଙ୍କ ଦୃଷ୍ଟିରେ," କୌଣସି ଆଦର୍ଶକୁ ଆଖି ଆଗରେ ରଖି କୌଣସି ଦୁର୍ବଳତାକୁ ଯେତେବେଳେ ହାସ୍ୟକର ଭାବରେ ନିନ୍ଦା କରାଯାଏ ତାହା ହୁଏ ବ୍ୟଙ୍ଗ" ।

କ୍ଷୁଦ୍ର ଗଳ୍ପ ଓ ଉପନ୍ୟାସର କଳାତ୍ମକ ବ୍ୟବଧାନକୁ ଲେଖକ ସ୍ପଷ୍ଟ କରିଛନ୍ତି । "କ୍ଷୁଦ୍ରଗଳ୍ପରେ ବ୍ୟକ୍ତିର ଦୃଷ୍ଟିରୁ ସମାଜର ବିଚାର ହୁଏ । ଉପନ୍ୟାସରେ ସମାଜର ଦୃଷ୍ଟିରୁ ବ୍ୟକ୍ତିର ବିଚାର ହୁଏ । କ୍ଷୁଦ୍ରଗଳ୍ପରେ ଏକକ ଦୃଷ୍ଟିରୁ ବହୁର ବିଚାର ଏବଂ ଉପନ୍ୟାସରେ ବହୁର ଦୃଷ୍ଟିରୁ ଏକର ବିଚାର । କହିପାରିନ୍ତି, କ୍ଷୁଦ୍ରଗଳ୍ପ ହେଉଛି ଆରୋହକମ୍ର (ଇଣ୍ଡକ୍ଟିଭ୍) ବ୍ୟାପ୍ତି, ବିଶେଷ (ପର୍ଟିକୁଲାର) ଦୃଷ୍ଟିରୁ ସାଧାରଣ (ଜେନେରାଲ୍) ବିଚାର । ଅପରପକ୍ଷରେ ଉପନ୍ୟାସ ହେଉଛି ଅବରୋହକ୍ରମ (ଡିଡକ୍ଟିଭ୍) ବ୍ୟାପ୍ତି, କୌଣସି ଯୁଗର ସାଧାରଣ ନିୟମ ବା ନୀତି ବା ହିତ ଦୃଷ୍ଟିରୁ ବ୍ୟକ୍ତି ବିଶେଷର ବିଚାର" । (କ୍ଷୁଦ୍ରଗଳ୍ପ ଓ ଉପନ୍ୟାସ : ବ୍ୟଷ୍ଟି ଓ ସମଷ୍ଟି) ।

"ଉପମା" ପ୍ରବନ୍ଧଟି ବୈଦିକ ଦର୍ଶନ ଏବଂ ଉପନିଷଦର ସ୍ୱରୂପ ବିଶ୍ଳେଷଣରେ ସକ୍ଷମ । ବୌଦ୍ଧ ଧର୍ମର ସାରନିର୍ଯ୍ୟାସ, ଶଙ୍କରଙ୍କ ବ୍ରହ୍ମସୂତ୍ର, ଆଇନ୍‌ଷ୍ଟାଇନ୍‌ଙ୍କ ଆପେକ୍ଷିକତା ବାଦର ସୂକ୍ଷ୍ମ ବିଚାର ଏହି ପ୍ରବନ୍ଧରେ କରାଯାଇଛି । ପରବର୍ତ୍ତୀ ପର୍ଯ୍ୟାୟରେ ରାମାନୁଜଙ୍କ "ବିଶିଷ୍ଟ ଅଦ୍ୱୈତବାଦ", ମାଧ୍ୱାଚାର୍ଯ୍ୟଙ୍କ ଦ୍ୱୈତବାଦ, ଶ୍ରୀଚୈତନ୍ୟଙ୍କ "ଅଚିନ୍ତ୍ୟ ଭେଦାଭେଦ" ବା "ଅଚିନ୍ତ୍ୟ ଦ୍ୱୈତାଦ୍ୱୈତ" ହସିତ ଲୀଳାବାଦ ଓ ମାୟାବାଦର ସୂକ୍ଷ୍ମ ରହସ୍ୟ ଏବଂ ସୃଷ୍ଟି ପ୍ରକ୍ରିୟା ଓ ମାନବ ଜୀବନରେ



Digitized by srujanika@gmail.com

ଏହାର ପ୍ରଭାବକୁ ବାମାଚରଣ ଆଧୁନିକ ଦୃଷ୍ଟିକୋଣରୁ ବିଚାର କରିଛନ୍ତି । ଏ ସମସ୍ତ ବାଦ ବେଦାନ୍ତରୁ ସାର ଗ୍ରହଣ କରିଥିବାର ପ୍ରତିପନ୍ନ ହୁଏ । ଏପରିକି ବେଦାନ୍ତ ଦିଏ ଆଧ୍ୟାତ୍ମିକ (ସ୍ପିରିଚୁଆଲ) ଐକ୍ୟ । ପରବର୍ତ୍ତୀ ଦର୍ଶନ ସବୁ ଦିଏ ନୈତିକ (ମୋରାଲ୍) ଐକ୍ୟ । ଆଧ୍ୟାତ୍ମିକ ଐକ୍ୟ ଅପରିବର୍ତ୍ତନୀୟ; କିନ୍ତୁ ଦେଶ କାଳ ପାତ୍ର ଅନୁସାରେ ନୈତିକ ଐକ୍ୟ ପରିବର୍ତ୍ତନଶୀଳ ଏବଂ କ୍ରମ ବିକାଶଶୀଳ । ଉପମା ପ୍ରବନ୍ଧର ଶେଷ ଭାଗରେ ଲେଖକ ଶେଲିଙ୍କ କବିତା, ରାମାୟଣ, କାଳିଦାସଙ୍କ ରଘୁବଂଶ, ବ୍ୟାସଦେବଙ୍କ ଉପମାର ଅପରିହାର୍ଯ୍ୟତା ଦର୍ଶାଇଲା ବେଳେ ଅନ୍ୟପକ୍ଷରେ ଆଧୁନିକ କବିଙ୍କ ଚନ୍ଦ୍ରର ଧବଳତ୍ୱକୁ ବବୁର୍ଚିର ପଗଡି ସହିତ ଏବଂ ଚନ୍ଦ୍ରର ବର୍ତ୍ତୁଳତ୍ୱକୁ ସେକାରୁଟି ସହିତ ତୁଳନାର ଆବେଗହୀନତାକୁ ସମାଲୋଚନା କରିଛନ୍ତି ।

"ପରିକ୍ରମା" ପ୍ରବନ୍ଧରେ ଧ୍ୱନି ଓ ସଂଗୀତ ଉପରେ ମାର୍ମିକ ବର୍ଣ୍ଣନା କରିଛନ୍ତି ଲେଖକ । ଭାବପ୍ରକାଶ ପାଇଁ ଧ୍ୱନିଠାରୁ ଭାଷା ଯାଏ ବିବର୍ତ୍ତନର ପର୍ଯ୍ୟାୟକୁ ବିଭିନ୍ନ ପ୍ରସଙ୍ଗ ଦେଇ ସ୍ପଷ୍ଟ କରାଯାଇଛି । ପରିକ୍ରମାର ଶେଷ ଭାଗରେ ଶୈଳୀ ବା ଫର୍ମ ଉପରେ କଳାତ୍ମକ ଟିପ୍ପଣୀ ବାଢ଼ିଛନ୍ତି ବାମାଚରଣ । ଏକ ଅମୂର୍ତ୍ତବେଦନା ହିଁ ଲେଖକର ପ୍ରକାଶଉନ୍ମୁଖୀତାକୁ ଦିଏ ନୂଆ ଏକ ଫର୍ମ । ବେଦନାହୀନ ଲେଖକ ସେହି ଫର୍ମକୁ ଅକ୍ତିଆର କଲେ ସେ ହୋଇଯାଏ ଫେଶନ । ବେଦନା ଥିଲେ ଯେକୌଣସି ଫର୍ମ ହୃଦୟଗ୍ରାହୀ ।

"ଅନୁବାଦ" ବିଭ୍ରାଟ ପ୍ରବନ୍ଧରେ ସାମାନ୍ୟ ଶବ୍ଦ ଅନୁବାଦ ବିଭ୍ରାଟ ଯୋଗୁ କିପରି ହିରୋସିମା ଉପରେ ପରମାଣୁ ବୋମା ପଡି ଲୋକଙ୍କ ଜୀବନହାନୀ କଲା ତାହା ହିଁ ବର୍ଣ୍ଣିତ ।

ଜୀବନ, ସାହିତ୍ୟ ଓ କଳା ପୁସ୍ତକର ଶେଷ ପ୍ରବନ୍ଧ ବାହୁଲ୍ୟ । ଏହା ଏକ ଦୀର୍ଘ ପ୍ରବନ୍ଧ । ଏହି ପ୍ରବନ୍ଧର କାନ୍‌ଭାସ୍ ବିସ୍ତିର୍ଣ୍ଣ, ସାହିତ୍ୟର ଅନେକ ରୂପାଙ୍ଗିକ ସେଥିରେ ପ୍ରତିଫଳିତ । ଚାର୍ଲିଚାପ୍‌ଲିନ୍‌ଙ୍କ ଉତ୍ସର୍ଗୀକୃତ କମେଡିର ସମ୍ଭାବନାମୟ ଦିଗ ସବୁକୁ ଏହି ପ୍ରବନ୍ଧରେ ଉପସ୍ଥାପିତ କରାଯାଇଛି । ବହୁ ଆୟାମ ବିଶିଷ୍ଟ ବାମାଚରଣଙ୍କ ସ୍ରଷ୍ଟାମାନସ ଓ ତାର ଅଭିବ୍ୟକ୍ତିର ଯଥାର୍ଥ ପରିପ୍ରକାଶ ବାହୁଲ୍ୟ । ଏହି ପ୍ରବନ୍ଧରେ କ୍ଷୁଦ୍ରଗଳ୍ପର ସ୍ୱରୂପଠାରୁ ରବୀନ୍ଦ୍ରନାଥ, ଚାର୍ଲିଚାପ୍‌ଲିନ୍‌ଙ୍କ ହାସ୍ୟରସପୂର୍ଣ୍ଣ ଅଭିନୟ, ଶ'ଙ୍କ ନାଟକ, ଡନ୍ କୁଇକସଟ୍ ଉପନ୍ୟାସର ରୋମାଞ୍ଚକର କାହାଣୀ ମଞ୍ଜୁଳ ଭାବେ ଗୁମ୍ଫିତ । ସେର୍ଭାନ୍ତୀଜ୍‌ଙ୍କ ଡନ୍ କୁଇକସଟରେ ହାସ୍ୟ ଭିତରେ



Digitized by srujanika@gmail.com

କାରୁଣ୍ୟର ସ୍ଥାପନା ସମସ୍ତ ଜଗତକୁ ଚମତ୍କୃତ କରିଥିଲା । ଭାରତୀୟ ସାହିତ୍ୟରେ ଭାଣ୍ଡ, ଦୁଆରୀ ପ୍ରଭୃତି ଚରିତ୍ରରେ ହାସ୍ୟରସର ଅବତାରଣାକୁ ଏଠାରେ ନିର୍ମୋହ ଆବେଗରେ ଲେଖକ ପରିବେଷଣ କରିଛନ୍ତି । ଲେଖକ ସାହିତ୍ୟର ମଞ୍ଚ ସ୍ୱପ୍ନ ରୂପେ ଅଭିହିତ କରିଛନ୍ତି । ସେହି ମଞ୍ଚକୁ କାରୁଣ୍ୟ ମଜ୍‌ଭୁତ ଓ ହାସ୍ୟ ବିସ୍ତାରିତ କରେ । ଆପଣାର ମାଟି ପ୍ରୀତିକୁ ବିସ୍ତାରିତ କରି ସାର୍ବଜନୀନ ପ୍ରଜ୍ଞା ଦ୍ୱାରା ଅଭିଷିକ୍ତ କରିବାରେ ବାମାଚରଣ ସିଦ୍ଧହସ୍ତ । ତାଙ୍କର ଭାବାଦର୍ଶ ଓ ମାଟି ପ୍ରୀତିର ସଂଘର୍ଷ ଓ ସମନ୍ୱୟ ପ୍ରତିଟି ପ୍ରବନ୍ଧକୁ ଦେଇଛି କାଳହୀନ ଦୀପ୍ତି ।

"ଶୋକ ସମ୍ୱାଦ" ପ୍ରବନ୍ଧର ମୂଳ ଭିତ୍ତି ଜଣେ ଅଜଣା ଲୋକର ମୃତ୍ୟୁ ସମ୍ୱାଦ ପରିବେଷଣ ଜନିତ । ଏହି ମୃତ୍ୟୁ ସମ୍ୱାଦକୁ ନେଇ ପ୍ରାବନ୍ଧିକ ମୃତ୍ୟୁର ଦାର୍ଶନିକ ବ୍ୟାଖ୍ୟା କରିଛନ୍ତି । ଏଥିରେ କାରୁଣ୍ୟର ଉତ୍କଟତା ଓ ନିର୍ବୋଧତାର ବାହୁଲ୍ୟ ହାସ୍ୟରସର ସଞ୍ଚାର କରୁଛି । ମୃତ୍ୟୁକୁ ନେଇ ଏକା ସାଥିରେ ଆଧାତ୍ମିକ ଓ ସାମାଜିକ ଭାବଧାରାର ପଲ୍ଲବନ ରଚନାଟିକୁ ସୁଖପାଠ୍ୟ କରିଛି । ବାମାଚରଣଙ୍କ ପ୍ରବନ୍ଧ ମଧ୍ୟରେ ଅନେକ ଦୃଷ୍ଟାନ୍ତ, ନୀତି ଶିକ୍ଷା ଓ କାହାଣୀର ସମାବେଶ ପାଠକକୁ ସ୍ତମ୍ଭୀଭୂତ କରିଦିଏ ।

"ଖୋସାମଦି ସପକ୍ଷରେ" ପ୍ରବନ୍ଧରେ ଏକ ମନୋରମ କାହାଣୀର ଅବତାରଣା ସହିତ ପ୍ରାବନ୍ଧିକ ନିଷ୍କର୍ଷରେ ପହଞ୍ଚିଛନ୍ତି- "ଖୋସାମଦି କଳା ଏବଂ ବିଜ୍ଞାନ ଉଭୟ, ଏବଂ କଳାବିଦ୍ୟାମାନଙ୍କ ଭିତରେ ଯେମିତି ସର୍ବଶ୍ରେଷ୍ଠ କଳାବିଦ୍ୟା, ବିଜ୍ଞାନମାନଙ୍କ ମଧ୍ୟରେ ବି ସେହିପରି" । ତୋଷାମଦର ବିଭିନ୍ନ ସ୍ୱରୂପକୁ ମାର୍ମିକ ଭାବରେ ଏଠାରେ ଉପସ୍ଥାପିତ କରାଯାଇଛି । ତୋଷାମଦିଆମାନଙ୍କୁ ନିର୍ମମ ଭାବେ ସମାଲୋଚନା କରାଯାଇଛି । ଏଠାରେ ରାଜା, ଉପରିସ୍ଥ ହାକିମ ଏବଂ ଭାର୍ଯ୍ୟା ଓ ପ୍ରଣୟିନୀମାନଙ୍କୁ କରାଯାଉଥିବା ଖୋସାମଦର ବିଭିନ୍ନତା ତଥା ସ୍ୱରୂପ ବିଶ୍ଳେଷଣ କରାଯାଇଛି । ଲେଖକଙ୍କ ଭାଷାରେ ଭାର୍ଯ୍ୟା ଓ ପ୍ରଣୟିନୀମାନଙ୍କୁ ଖୋସାମଦ ଏକ ସଂପୂର୍ଣ୍ଣ ଭିନ୍ନ କଳା ଓ ବିଜ୍ଞାନ ଏବଂ କଠିନତମ କଳା ଓ ବିଜ୍ଞାନ । ଏହା ଏକ ଚମତ୍କାର ରମ୍ୟରଚନା ।

"ଯାଦୁକରର ଖେଳ" ପ୍ରବନ୍ଧରେ ଯାଦୁକରମାନଙ୍କ ବିଭିନ୍ନ ଲୀଳାର ଅବତାରଣା କରାଯାଇଛି । ତନ୍ତ୍ର, ମନ୍ତ୍ର ଏବଂ ଭୋଜବାଜିର ଅବତାରଣା ସହିତ ଯାଦୁକରର ଆକର୍ଷଣୀୟ ବକ୍ତବ୍ୟ, ଗୀତ ଓ ଅଭିନୟ କିପରି ଦର୍ଶକଙ୍କୁ ସ୍ତମ୍ଭୀଭୂତ କରେ ତାହା ଏହି ପ୍ରବନ୍ଧର ମୁଖ୍ୟ ପ୍ରଭାବ ।



Digitized by srujanika@gmail.com

"ଭଡାଟିଆ" ପ୍ରବନ୍ଧରେ ବିଭିନ୍ନ ପ୍ରକାର ଭଡାଟିଆଙ୍କ ସ୍ୱରୂପ ଦର୍ଶାଯାଇଛି । ଭଡାଟିଆ ଖେଳାଳୀ, ଭଡାଟିଆ ଅଭିନେତା, ଭଡାଟିଆ ବରଯାତ୍ରୀଙ୍କ ବିଷୟ ସୁନ୍ଦର ବକ୍ତବ୍ୟ ମାଧ୍ୟମରେ ପ୍ରଦତ୍ତ ହୋଇଛି । ପ୍ରବନ୍ଧଟିରେ ମଣିଷକୁ ଏକ ଭାବାତ୍ମକ ଗୋପୀ ଏବଂ ସେ ପରମପୁରୁଷ ଶ୍ରୀକୃଷ୍ଣଙ୍କ ସହିତ ମିଳିତ ହେବାକୁ ଉନ୍‌ମୁଖ ବୋଲି ବର୍ଣ୍ଣିତ । ଲଜ୍ଜା, ଅଭିମାନ, ଗର୍ବ, ଅହଂ, କ୍ରୋଧକୁ ଜଳାଞ୍ଜଳି ଦେଇ ପ୍ରେମ, ମୈତ୍ରୀ, ସାମ୍ୟ ଗୁଣ ଆହରଣ କରି ବିନୟୀ ହେବା ହିଁ ବିଭୁକୃପା ।

"ଗୋଟିଏ ବାକ୍ୟ ରଚନା'ରେ ପୁଅର ସାଧାରଣ ବାକ୍ୟ ଗଠନକୁ ନେଇ ଜ୍ଞାନବିଜ୍ଞାନ ଓ ପୁରାଣର ଚର୍ଚ୍ଚା ହୋଇଛି । ସାଧାରଣ ଗୋଟିଏ ଘଟଣାକୁ ଅସାଧାରଣ କରିବାର କଳା ବାମାଚରଣଙ୍କୁ ବେଶ୍ ଜଣା । ସେଇ ସାଧାରଣ ଭିତ୍ତିରେ ବିଭିନ୍ନ ଦର୍ଶନର ଆଲୋଡନ କରି କାରୁଣ୍ୟ ଭିତରେ ପାଠକକୁ ଯୁଗପତ୍ ହାସ୍ୟ ଓ ବିସ୍ମୟରେ ବାନ୍ଧି ରଖିବା ବାମାଚରଣଙ୍କ ନିଆରାପଣ । ଏହି ପାରଙ୍ଗମତା ଗୋଟିଏ ବାକ୍ୟରଚନାରେ ପରିଦୃଶ୍ୟମାନ ।

"ଅପାଙ୍କ୍ତେୟ" ସାହିତ୍ୟ ପ୍ରବନ୍ଧରେ ବିଜ୍ଞାପନ ସାହିତ୍ୟ ଓ ଆଇନ ସାହିତ୍ୟ ସମ୍ପର୍କରେ ଲେଖକ ସୂଚନା ଦେଇଛନ୍ତି ।

"କାହିଁକି କେଜାଣି" ପ୍ରବନ୍ଧରେ ଭଣ୍ଡ ଧାର୍ମିକତାକୁ ବାମାଚରଣ ସମାଲୋଚନା କରିଛନ୍ତି । ବିଭିନ୍ନ ପ୍ରକାର ଲୋକଙ୍କ ସ୍ୱରୂପ ଏବଂ ସମାଜ ଜୀବନରେ ତାଙ୍କର ଭୂମିକାକୁ ସୁନ୍ଦର ରୂପେ ଏହି ପ୍ରବନ୍ଧରେ ବର୍ଣ୍ଣନା କରାଯାଇଛି । ମଣିଷ ଜୀବନର ଛଦ୍ମତାକୁ ଏଠାରେ କଳାତ୍ମକ ଭାବେ ଲେଖକ ପ୍ରକାଶ କରିଛନ୍ତି । ନିଜର ନ୍ୟୁନତା ପ୍ରକାଶ ଅନ୍ତରାଳରେ ନିଜର ମହାନତାକୁ ବିଜ୍ଞାପିତ କରିବାର ସହଜାତ ମାନସିକତା ପରିସ୍ଫୁଟ ହୁଏ । ମଣିଷ ସର୍ବକାଳୀନ ନିଜର ଅହଂକୁ ଗୁରୁତ୍ୱ ଦେଉଥିବା କଥା ଲେଖକ ସ୍ୱୀକାର କରିଛନ୍ତି । ବାମାଚରଣଙ୍କ ପ୍ରବନ୍ଧ ବିନ୍ଦୁରୁ ଆରମ୍ଭ ହୋଇ ସିନ୍ଧୁକୁ ସରିଯାଏ । ଏହି ପ୍ରବନ୍ଧରେ ମଣିଷ ପ୍ରାଣର ଛଦ୍ମତା, ପ୍ରକାଶର ଅଳୀକତା କହିଲାବେଳେ, ଦେହର ଉଲ୍ଲାସ ଓ ଦୋହାତୀତ ଆନନ୍ଦ ଏବଂ ମୈଥୁନର ଅପାର ଉନ୍ମାଦନା କଥା ଲେଖି ପକାଇଛନ୍ତି ।

"ଫୈୟାଜ ଖାଁ" ସଂଗୀତଜ୍ଞଙ୍କ ଉପରେ ପ୍ରବନ୍ଧଟି ପର୍ଯ୍ୟବେସିତ । ସଂଗୀତର ଚରମ ମାଧୁର୍ଯ୍ୟ ଓ ଅସୀମ ଐଶ୍ୱର୍ଯ୍ୟର ଭାବକୁ ଲେଖକ ପ୍ରକାଶ କରିଛନ୍ତି । ଅନନ୍ୟ କୋହ ଏବଂ ଅସୀମ ଆହ୍ଲାଦକର ବେଦନା ସଂଯାତ ଅବସ୍ଥାକୁ ଚିରବିରହ ଅବସ୍ଥା



Digitized by srujanika@gmail.com

କୁହାଯାଏ । ଯେଉଁ ଅବସ୍ଥାରେ ରହୁଥିଲେ ଶ୍ରୀରାଧା । ସେପରି ଏକ ଆଚ୍ଛନ୍ନ ଅବସ୍ଥା ଓ ମୋହାବିଷ୍ଟ ପ୍ରତ୍ୟୟ ସୃଷ୍ଟି କରୁଥିଲା ଫୈୟାଜ ଖାଁଙ୍କ ସଂଗୀତ । ଏହି ପ୍ରବନ୍ଧରେ ବିଭିନ୍ନ ଘରାନାର ସଂଗୀତ ଏବଂ ବିଭିନ୍ନ ରାଗର ତାତ୍ତ୍ୱିକ ବ୍ୟାଖ୍ୟା ଲେଖକଙ୍କ ସଂଗୀତ ଜ୍ଞାନର ପରାକାଷ୍ଠାକୁ ଅଭିବ୍ୟଂଜିତ କରେ ।

ବାମାଚରଣଙ୍କ ଉପରୋକ୍ତ ଦୁଇଟି ଗଦ୍ୟ ପୁସ୍ତକ ବ୍ୟତିରେକେ ଅନେକ ପ୍ରବନ୍ଧ ଝଙ୍କାରରେ ପ୍ରକାଶିତ । ଏହି ପ୍ରସଙ୍ଗରେ ସମାଜ ଓ ନେତୃତ୍ୱ (ଝଙ୍କାର, ୧୯/୩) ଓ ଥାପିରେ କୁହ ତଥାପିରେ ପ୍ରବନ୍ଧକୁ ସ୍ମରଣ କରାଯାଇପାରେ । ଥାପିରେ କୁହ ତଥାପିରେ ଏକ ରମଣୀୟ ରମ୍ୟରଚନା । ଏଥିରେ ଅବସରପ୍ରାପ୍ତ ଜୀବନର ସ୍ୱାଧୀନତା ବର୍ଣ୍ଣିତ । ଏହି ରମ୍ୟଚରନା ସଂପର୍କରେ ଲେଖକ ସୂଚନା ଦିଅନ୍ତି- "ମୋ ଜୀବନର କେତେଗୁଡିଏ କୌତୂହଳପ୍ରଦ ଅଭିଜ୍ଞତା । ଏ କୌତୁକ ଭିତରେ କାରୁଣ୍ୟ ମଧ ଅଛି । ଏହା କିନ୍ତୁ ଆଦୌ ଆତ୍ମଚରିତ ନୁହେଁ । ଏଥିରେ ଶତକଡା ପ୍ରାୟ ଷାଠିଏ ଭାଗ ସତ ଓ ଚାଳିଶ ଭାଗ କଳ୍ପନାର ରଙ୍ଗଦିଆ । ସ୍ଥାନ କାଳ ପାତ୍ରମାନଙ୍କ ନାମ ତେଣୁ ଉହ୍ୟ । ଅନ୍ୟାନ୍ୟ ବିଷୟ ଗୁଡିକ ନିଜର ଅଭିଜ୍ଞତା" (ଥାପିରେ କୁହ ତଥାପିରେ(୧) ଝଙ୍କାର ୨୫/୭) । ଏହି ରମ୍ୟରଚନାର ଦ୍ୱିତୀୟ ଭାଗ 'ମାନସ' ପତ୍ରିକାରେ ପ୍ରକାଶିତ । କମିଶନରଙ୍କ ଗ୍ରାମପଞ୍ଚାୟତ ପରିଦର୍ଶନ, ଚେୟାରମେନଙ୍କ ଉପସ୍ଥିତି ବୁଦ୍ଧି ଓ ପରିଦର୍ଶନର ହାସ୍ୟକର ବ୍ୟାପାରକୁ ଅତି ସୁନ୍ଦର ଭାବେ ଲେଖକ ଏହି ରମ୍ୟରଚନାରେ ବର୍ଣ୍ଣନା କରିଛନ୍ତି । କମିଶନରଙ୍କ ପରିଦର୍ଶନ ଗୌଣ ବରଂ ଖିଆପିଆ ଏବଂ ତାଙ୍କୁ ସ୍ୱାଗତ କରିବାର ତେଲିଙ୍ଗିବାଜା ପ୍ରଭୃତି ମୁଖ୍ୟ ରୂପେ ବର୍ଣ୍ଣିତ ।

ସମାଜ ଓ ନେତୃତ୍ୱ ପ୍ରବନ୍ଧଟି ଝଙ୍କାର ୧୯/୭ ସଂଖ୍ୟାରେ ପ୍ରକାଶିତ । ଏହାକୁ ଝଙ୍କାରର ଏକ ସ୍ୱତନ୍ତ୍ର ସ୍ତମ୍ଭ "ସାହିତ୍ୟ, ସମାଜ ଓ ସଂସ୍କୃତି"ରେ ସ୍ଥାନୀତ କରାଯାଇଥିଲା । ଏହି ସ୍ତମ୍ଭକୁ ଅନେକ ସମାଲୋଚକ ବାମାଚରଣଙ୍କ ଏକ ପୁସ୍ତକ ରୂପେ ଭ୍ରମବଶତଃ ବିବେଚନା କରିଥିବାର ଦେଖାଯାଏ । ସେ ଯାହାହେଉ ଉକ୍ତ ସ୍ତମ୍ଭରେ ପ୍ରକାଶିତ "ସମାଜ ଓ ନେତୃତ୍ୱ" ଆଲୋଚନାଟି ଟୟନବୀଙ୍କ A Sutdy in History ପୁସ୍ତକର ମାର୍ମିକ ଆକଳନ । ଏଠାରେ ଲେଖକ ମତପ୍ରଦାନ କରନ୍ତି ଉନ୍ନତି ପ୍ରୟାସୀ ସମାଜରେ ସାଂସ୍କୃତିକ ଅଗ୍ରଗତି ଠାରୁ ଆର୍ଥନୀତିକ ଓ ରାଜନୀତିକ ଅଗ୍ରଗତି ବିଚ୍ଛିନ୍ନ ହୋଇ ସ୍ୱତନ୍ତ୍ର ଭାବେ ବିକାଶ ଲାଭ କରିବା ଆଦୌ ଉଚିତ୍ ନୁହେଁ । ତା ଫଳରେ ଅନ୍ୟ ଦୁଇଟିର ବିକାଶ ମଧ ଅଚିରେ ଧୂଳିସାତ୍ ହୋଇଯାଏ ।



Digitized by srujanika@gmail.com

ପ୍ରବନ୍ଧ ବ୍ୟତୀତ ତାଙ୍କର ବିଛାଙ୍କିକା, ବୈଜ୍ଞାନିକର ବିବାହ ଓ ଶରଶଯ୍ୟା ପ୍ରଭୃତି ନାଟକ ଝଙ୍କାରରେ ପ୍ରକାଶିତ । ବିଛାଙ୍କିକା (ଏକାଙ୍କିକା) ଝଙ୍କାର ୧୩/୩ରେ ପ୍ରକାଶ ପାଇଥିଲା । ଏବଂ ପରବର୍ତ୍ତୀ ପର୍ଯ୍ୟାୟରେ "ମହାପୁରୁଷ ବାଗ" ଗଳ୍ପ ସଂକଳନରେ ସ୍ଥାନୀତ । ଏହା ରୂପକ ଶୈଳୀରେ ରଚିତ । ଏକ ବିଛାକୁ ମାରିବାକୁ ଯାଇ ନରବାବୁଙ୍କ ଭାବାନ୍ତର ଏବଂ ସ୍ୱଗତ ସଂଳାପ ହିଁ ଏହି ରଚନାର କଳାଶିଳ୍ପକୁ ସମୁଜ୍ଜ୍ୱଳ କରିଛି । "ବୈଜ୍ଞାନିକର ବିବାହ" ଏକାଙ୍କିକାଟି "ବଟ ମହାପୁରୁଷ" ସଂକଳନରେ ସ୍ଥାନୀତ ।

ପୂର୍ବରୁ ଏହା ଝଙ୍କାର ୫/୫ ସଂଖ୍ୟାରେ ପ୍ରକାଶିତ । Sir Arthur Conan Doyleଙ୍କର A Physiologist's Wife କ୍ଷୁଦ୍ର ଗଳ୍ପର ଅନୁସରଣରେ ଏହା ଲିଖିତ । ଏହି ନାଟିକାରେ ବୈଜ୍ଞାନିକ ମାନସିକତାରେ ଭାବପ୍ରବଣତା ଅପେକ୍ଷା ବାସ୍ତବତା ଓ ଯୁକ୍ତିର ସ୍ଥାନକୁ ଅଗ୍ରାଧିକାର ଦିଆଯାଇଛି । ଏତଦ୍‌ବ୍ୟତୀତ "ଶରଶଯ୍ୟା" ଏକାଙ୍କିକା ଝଙ୍କାର (୧୮/୨)ରେ ପ୍ରକାଶ ପାଇଥିଲା । ଏହା ଏକ କ୍ଷୁଦ୍ର ନାଟକ । ସଚିବାଳୟ ହେଡ୍ ଆସିଷ୍ଟାଣ୍ଟ ବୃଦ୍ଧ ଦେବବ୍ରତଙ୍କ ଆଦର୍ଶବାଦୀ ଜୀବନଚର୍ଯ୍ୟାକୁ ନାଟକରେ ଦର୍ଶାଯାଇଛି । ଦେବବ୍ରତ ଆଧ୍ୟାତ୍ମିକ ନୀତିକୁ ଜାବୋଡି କାର୍ଯ୍ୟ କ୍ଷେତ୍ରରେ ନିଜର ଆଦର୍ଶ ପ୍ରତିପାଦନ କରନ୍ତି । ପ୍ରତି ପଦେ ପଦେ ବିରୋଧର ସମ୍ମୁଖୀନ ହେଲେ ମଧ୍ୟ ସେ ପଛଘୁଞ୍ଚା ଦେଇନାହାନ୍ତି । ମଣିଷ ମନର ମାନସିକ ଆନ୍ଦୋଳନର ଚିତ୍ର ଏହି ନାଟକରେ ଅତିସ୍ୱଷ୍ଟ ଭାବରେ ପ୍ରଦର୍ଶିତ । ମାନବ ସମାଜର ବିଭିନ୍ନ ପିଢ଼ିର ଚାରିତ୍ରିକ ବିଶ୍ଳେଷଣ ନାଟକକୁ ଋଦ୍ଧିମନ୍ତ କରିଛି ।

ବାମାଚରଣଙ୍କ ବିଷୟ ଉପସ୍ଥାପନା ବହୁମୁଖୀ । ତଥ୍ୟ ବହୁଶାସ୍ତ୍ରଦର୍ଶୀ । ପ୍ରାଚ୍ୟ ପାଶ୍ଚାତ୍ୟ ଦର୍ଶନର ପ୍ରାବଲ୍ୟ ଭିତରେ ଲକ୍ଷ୍ୟସ୍ଥଳକୁ ଭେଦ କରିବାରେ ସେ ସବ୍ୟସାଚୀ । ବହୁ ଶାସ୍ତ୍ର, ଦର୍ଶନ, ଧର୍ମ, ସମାଜ ଧାରା, ଚରିତ୍ର ପ୍ରଭୃତି ଏବଂ ମାନବେତର ଜୀବର ଜୀବନ ଧାରାରୁ ଆପଣା ବିଚାର ନିଷ୍କାସିତ କରି ବକ୍ତବ୍ୟକୁ ପ୍ରାମାଣିକ ଓ ଯୁକ୍ତିନିଷ୍ଠ ଭାବରେ ଥୋଇବାରେ ସେ ସିଦ୍ଧହସ୍ତ । ଜୀବନ ଓ ଜଗତକୁ ସେ ଜିଜ୍ଞାସାପୂର୍ଣ୍ଣ ଦୃଷ୍ଟିନେଇ ଦେଖିଛନ୍ତି । ନିଜ ଭିତରେ ଉବୁଟୁବୁ ହେଉଥିବା ଜିଜ୍ଞାସାଗୁଡ଼ିକର ଉତ୍ତର ଖୋଜିଛନ୍ତି । ସୌନ୍ଦର୍ଯ୍ୟବୋଧ ଭିତରେ ଭାସି ନଯାଇ ସେ ଯେଉଁ ତାତ୍ତ୍ୱିକ ଜିଜ୍ଞାସାକୁ ବଞ୍ଚାଇ ରଖିଥିଲେ ତାହାହିଁ ତାଙ୍କୁ ଉଚ୍ଚକୋଟିର ପ୍ରବନ୍ଧ ରଚନାରେ ସାହାଯ୍ୟ କରିଛି । ନିତ୍ସେଙ୍କଠାରୁ ରବୀନ୍ଦ୍ରନାଥ ମାର୍କ୍ସଙ୍କଠାରୁ ରାମକୃଷ୍ଣ, ରାମାୟଣଠାରୁ ଡନ୍ କୁଇକସୋଟ ଏବଂ ଉପନିଷଦଠାରୁ ଫକୀରମୋହନ ମଧ୍ୟ ଦେଇ



Digitized by srujanika@gmail.com

ତାଙ୍କର ହୃଦୟର ଭାବାବେଗ ପ୍ରଶିକ୍ଷିତ ହୋଇଥିଲା । ଏହି ଭାବାବେଗକୁ କାରୁଣ୍ୟ ଓ ବେଦନା ଦେଇ ସେ ଲାଳନ କରିଥିଲେ । ତେଣୁ ତାଙ୍କର ଗଳ୍ପ ହେଉ ବା ପ୍ରବନ୍ଧ ସବୁଠି ଏକ ଶାଶ୍ୱତ କାରୁଣ୍ୟ ପ୍ରଚ୍ଛନ୍ନ ରହି ପାଠକର ଆତ୍ମକେନ୍ଦ୍ରକୁ ଆନ୍ଦୋଳିତ କରେ, ଆଚ୍ଛନ୍ନ କରେ । ଏହି ଆବେଗପ୍ରବଣ ଆନ୍ଦୋଳନ ଯେତିକି ଜ୍ଞାନପ୍ରଦ ସେତିକି ଆନନ୍ଦପ୍ରଦ ।

ତାଙ୍କ ଶୈଳୀ ଯୁଗାନୁସାରୀ ଏବଂ ଲାଳିତ୍ୟପୂର୍ଣ୍ଣ । ଶୈଳୀ ଭିତରେ ଦାର୍ଶନିକ ପ୍ରତ୍ୟୟ ସାରସ୍ୱତ ସୃଷ୍ଟିବୀଜକୁ ଅଥୟ କରେ । ଏହି ଅଥୟ ଦାର୍ଶନିକ ପ୍ରତ୍ୟୟ ବିଭିନ୍ନ ତତ୍ତ୍ୱ ଓ ତଥ୍ୟକୁ ସମାଜ ନିର୍ଭର, ବ୍ୟକ୍ତି ନିର୍ଭର ନକରି କରେ ଉପାଦାନ ନିର୍ଭର । ତେଣୁ ବାମାଚରଣଙ୍କ ସାରସ୍ୱତ ଜିଜ୍ଞାସା ସବୁବେଳେ ସଂଘର୍ଷରତ ଏବଂ ଏହି ସଂଘର୍ଷ ଭିତରେ ମାନବବାଦର ପ୍ରତିଷ୍ଠା ହିଁ ଏକମାତ୍ର ଲକ୍ଷ୍ୟ । ତ୍ୟାଗ ତିତିକ୍ଷା ସହିତ ପ୍ରେମ ପ୍ରତାରଣାର ଫଲ୍‌ଗୁ ସମାହିତ ହୋଇ ତାଙ୍କର ପ୍ରତିଟି ସୃଷ୍ଟିକୁ କରେ ସତ୍ୟ ଶିବ ସୁନ୍ଦର । ତେଣୁ ବାମାଚରଣଙ୍କ ସାହିତ୍ୟ, ସମାଜ, କଳା, ଜୀବନ ପରସ୍ପରର ପରିପୂରକ ଅନ୍ୟପକ୍ଷରେ ଏକ ଅବିଚ୍ଛେଦ୍ୟ ବନ୍ଧନରେ ସଂଶ୍ଳିଷ୍ଟ । ଏହି ପ୍ରେକ୍ଷିତରେ କହିହୁଏ ଯାଇପାରେ କଳାତ୍ମକ ବିଷୟ ବୈଚିତ୍ର୍ୟ ଓ ସାମଗ୍ରିକ ଅବଧାରଣାକୁ ଜୀବନ୍ୟାସ ଦେବାର କଳାକୁଶଳତା ଯୋଗୁ ବାମାଚରଣଙ୍କ ପ୍ରବନ୍ଧାବଳୀ ଯେପରି ଗୁରୁତ୍ୱପୂର୍ଣ୍ଣ, ବସ୍ତୁନିଷ୍ଠ ଉପସ୍ଥାପନା ଏବଂ ଦାର୍ଶନିକ ଜୀଜ୍ଞାସାର ଅପନୋଦନ ଦୃଷ୍ଟିରୁ ସେପରି ଅନତିକ୍ରମଣ୍ୟ ।





Digitized by srujanika@gmail.com

# ଶେଷରୁ ଆରମ୍ଭ

ଶ୍ରୀ ପୀତବାସ ରାଉତରାୟ

ବାମାଚରଣ ମିତ୍ରଙ୍କ ଜନ୍ମ ଶତବାର୍ଷିକୀ ପାଳିତ ହୋଇଥିଲା ୧୯ ଜୁଲାଇ ୨୦୧୫ରେ । ବାମାରଚରଣଙ୍କ ସୃଷ୍ଟିର ବିଭିନ୍ନ ଦିଗ ଉପରେ ଆଲୋକପାତ କରିବା ଥିଲା ଏହି ସାହିତ୍ୟ ସଭାର ମୁଖ୍ୟ ଉଦ୍ଦେଶ୍ୟ। ସେଦିନର କାର୍ଯ୍ୟକ୍ରମରେ ଉଦ୍‌ଘାଟନୀ ଉତ୍ସବରେ ପ୍ରସିଦ୍ଧ କବି ପଦ୍ମଭୂଷଣ ଶ୍ରୀ ରମାକାନ୍ତ ରଥ ଥିଲେ ଉଦ୍‌ଘାଟକ ଓ ପ୍ରସିଦ୍ଧ ଗାଳ୍ପିକ ଶ୍ରୀ ରାମଚନ୍ଦ୍ର ବେହେରା ଥିଲେ ମୁଖ୍ୟ ଅତିଥି। କେନ୍ଦ୍ର ସାହିତ୍ୟ ଏକାଡେମୀର ପରାମର୍ଶଦାତା କମିଟିର ଆବାହକ ବିଶିଷ୍ଟ ଗାଳ୍ପିକ ଶ୍ରୀ ଗୌରହରି ଦାସ ତାଙ୍କର ସ୍ୱାଗତ ଭାଷଣରେ ବାମାଚରଣ ମିତ୍ରଙ୍କର ଜୀବନ ଓ ସାହିତ୍ୟ ସମ୍ପର୍କରେ ବିଶଦ ସୂଚନା ଦେବା ପରେ ଉଦ୍‌ଘାଟକ ଶ୍ରୀ ରମାକାନ୍ତ ରଥଙ୍କର ପ୍ରଶାସନିକ ଜୀବନକାଳ ମଧ୍ୟରେ ଅବସରପ୍ରାପ୍ତ ଶ୍ରୀ ବାମାଚରଣଙ୍କର ଶାରୀରିକ ଅସୁସ୍ଥତା ଯୋଗୁ ମଞ୍ଜୁର ହୋଇଥିବା ଦଶହଜାର ଟଙ୍କା କିପରି ବାମାଚରଣ ମିତ୍ର ଗ୍ରହଣ ନ କରି ଅନ୍ୟ ଦୁସ୍ଥ କଳାକାରଙ୍କୁ ଦିଆଯାଉ ବୋଲି ଅନୁରୋଧ କରିଥିଲେ ତାହା ଶୁଣିବା ପରେ ସଭାଜନ ବାମାଚରଣଙ୍କର ବ୍ୟକ୍ତିତ୍ୱର ଏହି ଦିଗ ବିଷୟରେ ଅବଗତ ହୋଇଥିଲେ। ମୁଖ୍ୟ ଅତିଥି ଶ୍ରୀ ରାମଚନ୍ଦ୍ର ବେହେରା କହିଲେ ତାଙ୍କ ଅଧ୍ୟାପନା ଜୀବନର ଆରମ୍ଭ କରିବା ସମୟରେ ବାମାଚରଣଙ୍କର ପ୍ରଶାସନିକ ଜୀବନ କେନ୍ଦ୍ରାପଡ଼ାରୁ ଶେଷ ହୋଇଯାଇଥିଲା ମାତ୍ର ସେ କେବଳ ବାମାଚରଣଙ୍କ ବ୍ୟକ୍ତିତ୍ୱର ଝଲକ ଅନ୍ୟ ମାନଙ୍କଠାରୁ ଶୁଣିବାକୁ ପାଇଥିଲେ।

ଶେଷ ଅଧିବେଶନର ଶେଷ ବକ୍ତା ଭାବେ ମୁଁ ଲକ୍ଷ୍ୟ କଲି ବାମାଚରଣଙ୍କ ବିଦଗ୍ଧ ପାଠକପାଠିକାଙ୍କ ତାଙ୍କ ପ୍ରତି ଥିବା ଶ୍ରଦ୍ଧାଞ୍ଜଳି। ମୋ ଭାଷଣରେ ମୁଁ ଯେତେବେଳେ ଆରମ୍ଭ କଲି ଆଜିର ସଭାରେ ରମାକାନ୍ତ ରଥଙ୍କୁ ଛାଡ଼ିଦେଲେ ଯେତେ ବକ୍ତା ଭାଷଣ ଦେଲେ ସମସ୍ତେ ବ୍ୟକ୍ତ କଲେ ସେମାନେ ବାମାଚରଣଙ୍କ ସଂସ୍ପର୍ଶରେ ଆସିନାହାନ୍ତି ମାତ୍ର ମୁଁ ସୁଚାଇଦେବାକୁ ଚାହେଁ ଯେ ମୁଁ ଛାତ୍ର ଜୀବନରେ



Digitized by srujanika@gmail.com

ସାହିତ୍ୟ ରାଜ୍ୟରେ ପ୍ରବେଶ କରିବା ସମୟରେ ବାମାଚରଣଙ୍କୁ ବାରମ୍ବାର ଭେଟିଛି ଓ ତାଙ୍କର ଶାଳପ୍ରାଂଶୁ ଚେହେରା ସହ ପରିଚିତ ଅଛି ସେତେବେଳେ ସଭାଗୃହର ଶ୍ରୋତାଗଣ କରତାଳି ଦ୍ୱାରା ସ୍ୱାଗତ କରିଥିଲେ। ଏଇଥିପାଇଁ ଯେ ଅତିକମ୍‌ରେ ଦିନ ଭିତରେ ଜଣେ ତ ବକ୍ତା ମିଳିଲା ଯେ ବାମାଚରଣଙ୍କୁ କେବଳ ଦେଖିନାହିଁ ତାଙ୍କ ସହିତ ବେଶ୍ କିଛି ସମୟ ବିତାଇଛି, ତା'ପୁଣି ସାହିତ୍ୟକୁ ନେଇ, ହେଉ ପଛେ ତା'ର ଛାତ୍ରଜୀବନର ଅନୁଭୂତି। ଶେଷ ବକ୍ତା ଭାବେ ଆରମ୍ଭ କରିଗଲି ମୋର ତାଙ୍କ ସହିତ ବିତାଇଥିବା ଦିନଗୁଡ଼ିକର ବିବରଣୀ।

**ମୋର ଛାତ୍ର ଜୀବନର ବାମାଚରଣ :** ଉତ୍କଳ ବିଶ୍ୱବିଦ୍ୟାଳୟରେ ଉପାଧ୍ୟୟର ଛାତ୍ର ଥିବା ସମୟରେ କିଛି ବନ୍ଧୁ ଏକ ତ୍ରୈମାସିକ ସାହିତ୍ୟ ପତ୍ରିକା "ନବରଙ୍ଗ" ପ୍ରକାଶ କରିବା ପାଇଁ ଯୋଜନା କରିଥିଲୁ। ସେଥିପାଇଁ ଲେଖା ସଂଗ୍ରହ ଅଭିଯାନ ଯେତେବେଳେ ଆରମ୍ଭ କରିଥିଲୁ ସେତେବେଳେ ବାଣୀବିହାର ଛକରୁ ରାଜମହଲ ଛକ ପର୍ଯ୍ୟନ୍ତ (ଜନପଥ) ଗୋଟିଏ ଥର ବୁଲିଗଲେ ଆମକୁ ମିଳିଯାଉଥିଲେ ଚନ୍ଦ୍ରଶେଖର ରଥ, ବାମାଚରଣ ମିତ୍ର, ବୀଣାପାଣି ମହାନ୍ତି, ମହାପାତ୍ର ନୀଳମଣି ସାହୁ, ଶାନ୍ତନୁ କୁମାର ଆଚର୍ଯ୍ୟ, ଗୋପୀନାଥ ମହାନ୍ତି, ସୀତାକାନ୍ତ ମହାପାତ୍ର, ରବି ପଟ୍ଟନାୟକ, ସାତକଡ଼ି ହୋତା, ଯୁଗଳ କିଶୋର ଦତ୍ତ ଆଦି ଲେଖକଲେଖିକାଗଣ ଯେଉଁମାନେ ସେଇ ଜନପଥର ଦୁଇକଡ଼େ ବିଭିନ୍ନ କଲୋନୀରେ ରହୁଥିଲେ। ବାଣୀବିହାରରେ ମିଳି ଯାଉଥିଲେ କୃଷ୍ଣ ପ୍ରସାଦ ମିଶ୍ର ଓ ଗଣେଶ୍ୱର ମିଶ୍ର। ଏହା ଆମପାଇଁ ଥିଲା ବହୁତ ବଡ଼ ସୁଯୋଗ। ସଦ୍ୟ କଲେଜରୁ ପାସ୍ କରି ଉପାଧ୍ୟୟର ପାଇଁ ବାଣୀବିହାରରେ ପଢୁଥିବା ବେଳେ ଏଭଳି ସ୍ୱନାମଧନ୍ୟ ସାହିତ୍ୟିକଗଣଙ୍କୁ ହାତ ପାହାନ୍ତରେ ପାଇବା ଓ ଆମେ ବାଣୀବିହାରର ଛାତ୍ର ବୋଲି ସେମାନେ ଆମକୁ ଆଦର ଅଭ୍ୟର୍ଥନା କରିବା ଥିଲା ଆମ ପାଇଁ ବିରଳ ଅନୁଭୂତି।

ସେ ସମୟର ବାମାଚରଣ ମିତ୍ର ରମାଦେବୀ ମହିଳା ମହାବିଦ୍ୟାଳୟର ପଛ ପଟେ ଥିବା କ୍ୱାର୍ଟରରେ ରହୁଥିଲେ ଓ ସଦ୍ୟ ଅବସର ଗ୍ରହଣ କରିଥିଲେ। ଆମେ ତାଙ୍କୁ ଯେତେବେଳେ ପ୍ରଥମେ ଦେଖିଲୁ ତାଙ୍କର ଶାଳପ୍ରାଂଶୁ ଚେହେରା, ମାତ୍ର ହସହସ ମୁହରେ ସ୍ୱାଗତ ଆମକୁ ତାଙ୍କ ପ୍ରତି ଆକର୍ଷିତ କରିଥିଲା। ବାଣୀବିହାରର ଛାତ୍ରଗଣ ସାହିତ୍ୟ ପ୍ରତି ଅନୁରକ୍ତ ହୋଇ ଏକ ପତ୍ରିକା ଛପାଉଛନ୍ତି ଜାଣି ସେ ଅତି ଖୁସି ହୋଇଯାଇଥିଲେ ଓ ଅତି ଆଦରରେ ବସାଇ ଯୁବପିଢ଼ୀର ସାହିତ୍ୟ ପ୍ରତି



Digitized by srujanika@gmail.com

ଅନୁରକ୍ତି ବିଷୟରେ ବହୁ ପ୍ରଶ୍ନ ପଚାରିଥିଲେ । ତାଙ୍କର ଏହି ପ୍ରାଥମିକ ଆଲୋଚନା ଆମକୁ ତାଙ୍କ ପାଖେ ନିକଟତର କରିଥିଲା । ପରଦିନ ମାନଙ୍କରେ ମୁଁ ଏକା ଏକା ତାଙ୍କ ପାଖକୁ ଆସୁଥିଲି ଓ ବହୁ ସାହିତ୍ୟ ଆଲୋଚନାରେ ଭାଗ ନେଉଥିଲି । ମୁଁ ଲକ୍ଷ୍ୟ କରିଥିଲି ଯେ ସେ ତାଙ୍କ ସମସାମୟିକ ଲେଖକ ଓ ବୟୋଜ୍ୟେଷ୍ଠଙ୍କ ସହିତ ସମ୍ପର୍କ ରଖୁଥିଲେ ଓ ନିୟମିତ ଭାବେ ସାହିତ୍ୟ ଆଲୋଚନାରେ ଭାଗ ନେଉଥିଲେ । ମହାପାତ୍ର ନୀଳମଣି ସାହୁ, ଶାନ୍ତନୁ କୁମାର ଆଚାର୍ଯ୍ୟ, ଚନ୍ଦ୍ରଶେଖର ରଥ, କୃଷ୍ଣ ପ୍ରସାଦ ମିଶ୍ର ଆଦି ଲେଖକଙ୍କ ସହ ତାଙ୍କର ଥିଲା ଅତି ଅନ୍ତରଙ୍ଗ ସମ୍ପର୍କ ଓ ଗୋପୀନାଥ ମହାନ୍ତିଙ୍କୁ ସେ ବହୁତ ସମ୍ମାନ ଦେଉଥିଲେ । ବାଣୀବିହାରର ଛାତ୍ର ହିସାବରେ ଯୁବପିଢ଼ିର ସାହିତ୍ୟ ପ୍ରେମୀଙ୍କୁ ଦେଖି ସେ ଆହୁରି ଉତ୍ସାହିତ ହୋଇ ସବୁପ୍ରକାର ସାହାଯ୍ୟ କରିବାକୁ ପ୍ରତିଶ୍ରୁତି ଦେଇଥିଲେ ।

ସେ ସମୟର ଆଲୋଡ଼ନ ସୃଷ୍ଟିକାରୀ ଏକ ନୂତନ ପତ୍ରିକା "ମାନସ' ପ୍ରକାଶ ପାଉଥିଲା । ୧୯୭୩-୭୫ ମସିହା ଥିଲା ମାନସର ନିୟମିତ ଭାବେ ପ୍ରକାଶ ପାଇବାର ସମୟ । ଡକ୍ଟର କୃଷ୍ଣ ପ୍ରସାଦ ମିଶ୍ର ଥିଲେ ଏହାର ସମ୍ପାଦକ, ସେହି ପତ୍ରିକାରେ ଗୋଟିଏ ସଂଖ୍ୟାରେ ଆଗାମୀ ସଂଖ୍ୟାରେ କ'ଣ ପ୍ରକାଶିତ ହେବାକୁ ଯାଉଛି ତାହାର ଗୋଟିଏ ବିଜ୍ଞାପନ ପ୍ରକାଶ ପାଉଥିଲା ଯାହା ପାଠକୀୟ ଉତ୍କଣ୍ଠାକୁ ବଜାୟ ରଖିପାରିଥିଲା । ମୋର ମନେ ଅଛି ଗୋଟିଏ ସଂଖ୍ୟାରେ ପ୍ରକାଶ ପାଇଲା ଆସନ୍ତା ମାସରେ ଗଳ୍ପ ବିଭାଗରେ ପ୍ରସିଦ୍ଧ କଥାଶିଳ୍ପୀ ମନୋଜ ଦାସଙ୍କ ଗଳ୍ପ ପ୍ରକାଶ ପାଇବ । ସେହି ସମୟରେ ମୁଁ ତାଙ୍କ ଘରକୁ ଯାଇଥିଲି ଲେଖା ଆଣିବା ପାଇଁ । ସେ ମୋତେ ମାନସ ପୃଷ୍ଠାରେ ପ୍ରକାଶ ପାଇଥିବା ବିଜ୍ଞାପନ ଦେଖାଇ ଆସନ୍ତା ସଂଖ୍ୟାରେ ଗଳ୍ପଟି ପ୍ରକାଶିତ ହେବା ପରେ ଏକ ଆଲୋଚନା କରିବା ବୋଲି ପ୍ରସ୍ତାବ ବାଢ଼ିଲେ । ଯଥା ସମୟରେ "ମାନସ'' ପତ୍ରିକା ପ୍ରକାଶ ପାଇଲା ଓ ମନୋଜ ଦାସଙ୍କ କିମ୍ପୀରିଣୀ ଗଳ୍ପ ସେଥିରେ ପ୍ରକାଶ ପାଇଥିଲା । ମୁଁ ଯିବା ମାତ୍ରେ ସେ ଅତି ଖୁସିରେ ଏଭଳି ଚମତ୍କାର ଭାବେ କିମ୍ପୀରିଣୀ ଗଳ୍ପର ବାଖ୍ୟା କଲେ ମୋତେ ଲାଗିଲା ସେ ସତେ ଯେମିତି ସେ ଗଳ୍ପର ଲେଖକ । ଏଭଳି ସମଧର୍ମୀ ଓ ସମସାମୟିକ ଲେଖକମାନଙ୍କ ଭିତରେ ଏତେ ଅଭେଦ୍ୟ ସମ୍ପର୍କ ଆଜିକାଲି ଲେଖକ ଗୋଷ୍ଠୀରେ ବିରଳ । ସେ ସମୟରେ ବାମାଚରଣ ଥିଲେ ଏକ ଆଗଧାଡ଼ିର ଲେଖକ । ମୋର ଦେଖା ହେବା ବେଳକୁ ସେ ଅବସର ଗ୍ରହଣ କରିସାରିଥିଲେ ତେଣୁ ଯିବାମାତ୍ରେ ତାଙ୍କର ଡ୍ରଇଁରୁମ୍‌ରେ ବସାଇ ବହୁ ବିଷୟରେ ଆଲୋଚନା କରି ଯୁବ ପ୍ରାଣର ଉଲ୍ଲାସ ସଂଗ୍ରହ କରିବା



Digitized by srujanika@gmail.com

ପାଇଁ ଆଗ୍ରହୀ ହୋଇ ଉଠୁଥିଲେ । ମୁଁ ମଧ୍ୟ ତାଙ୍କଠାରୁ ଓଡ଼ିଆ ସାହିତ୍ୟ ଠାରୁ ଅରମ୍ଭ କରି ଭାରତୀୟ ସାହିତ୍ୟ ଓ ବିଶ୍ୱସାହିତ୍ୟ ସମ୍ପର୍କରେ ବହୁ ବିଷୟରେ କଥା ପ୍ରସଙ୍ଗରେ ଜାଣି ପାରୁଥିଲି । ସେ ତାଙ୍କର ନିଜ ରଚନାରୁ କିଛି କିଛି ଅଂଶ ପଢ଼ିବା ପାଇଁ ଦେଇ ମୋର ମତାମତ ଜାଣିବା ପାଇଁ ଚାହୁଁଥିଲେ । ଏଥିରୁ ଜାଣି ହେଉଥିଲା ସେ କେତେଦୂର ପାଠକ ସଚେତନ ଥିଲେ । ତାଙ୍କର ସେଇ ବିଶାଳ ଚେହେରା, ଲୁଙ୍ଗି ଉପରେ ହାତ ଥିବା ଗଞ୍ଜି ଓ ମୁହଁର ହସ ମୁଁ କେବେହେଲେ ଭୁଲିପାରିବି ନାହିଁ । ସେହି ସଭାରେ ମୁଁ ବ୍ୟକ୍ତ କରିଥିଲି ଯେ ତାଙ୍କର ରମ୍ୟରଚନା ଶୈଳୀ ମୋ ଲେଖକ ଜୀବନକୁ ବେଶ୍ ପ୍ରଭାବିତ କରିଅଛି ।

**ଏକାମ୍ର ପୁସ୍ତକ ମହୋତ୍ସବ ଓ ବାମାଚରଣ : ୨୦୧୫** ମସିହା ଓଡ଼ିଆ ବ୍ୟଙ୍ଗ ସାହିତ୍ୟର ଦୁଇ ମଉଡ଼ମଣି ଶ୍ରୀ ବାମାଚରଣ ମିତ୍ର ଓ ଶ୍ରୀ ଫତୁରାନନ୍ଦଙ୍କ ଥିଲା ଜନ୍ମ ଶତବାର୍ଷିକୀ ବର୍ଷ । ସେଥିପାଇଁ ଏକାମ୍ର ପୁସ୍ତକ ମହୋତ୍ସବର ସଭାପତି ଭୂମିକାରେ ମୁଁ ଉପ ସଭାପତି ଡକ୍ଟର ଅଭୟ କୁମାର ନାୟକ ଓ ସମ୍ପାଦକ ଶ୍ରୀ ଭାସ୍କର ଜେନାଙ୍କୁ ନେଇ ଏକ ବିଶେଷ ଷ୍ଟଲ ନିର୍ମାଣ କରିଥିଲୁ "ହାସ୍ୟମେବ ଜୟତେ" । ଏହି ଷ୍ଟଲରେ ଦୁଇ ଲେଖକଙ୍କ ଚିତ୍ର ସହିତ ସେମାନଙ୍କର ସମଗ୍ର ସାହିତ୍ୟ କୃତି ପାଠକଙ୍କ ନିମନ୍ତେ ପ୍ରଦର୍ଶନ ଓ ବିକ୍ରି ପାଇଁ ରଖାଯାଇଥିଲା । ବାମାଚରଣଙ୍କ ସମଗ୍ର ସାହିତ୍ୟ ସମ୍ଭାର ଚାରିଟି ପୁସ୍ତକ ଆକାରରେ ସୁବର୍ଣ୍ଣରେଖା ପ୍ରକାଶନ ସଂସ୍ଥା ପ୍ରକାଶ କରିଥିଲା ଯାହାର ମୁଖ୍ୟ ଥିଲେ ବିଶିଷ୍ଟ ଗାଳ୍ପିକ ଶ୍ରୀ ସୁରେନ୍ଦ୍ର କୁମାର ମିଶ୍ର । ସୁରେନ୍ଦ୍ର ବାବୁ ଆମକୁ ନିମ୍ନ ଚାରିଗୋଟି ପୁସ୍ତକ ମହୋତ୍ସବ ପାଇଁ ଯୋଗାଇ ଦେଇଥିଲେ ।

ବାମାଚରଣ ମିତ୍ର ଗଳ୍ପ ସମଗ୍ର - ୧

ବାମାଚରଣ ମିତ୍ର ଗଳ୍ପ ସମଗ୍ର - ୨

ବାମାଚରଣ ମିତ୍ର ରଚନା ସମଗ୍ର (ଉପନ୍ୟାସ ଓ ଡିଟେକ୍ଟିଭ ଗଳ୍ପ) - ୩

ବାମାଚରଣ ମିତ୍ର ରଚନା ସମଗ୍ର (ପ୍ରବନ୍ଧ ଓ ରମ୍ୟ ରଚନା) - ୪

ତା ବ୍ୟତୀତ ନ୍ୟାସନାଲ୍ ବୁକ୍ ଟ୍ରଷ୍ଟ ଦ୍ୱାରା ପ୍ରକାଶିତ ବାମାଚରଣ ମିତ୍ରଙ୍କ ସଂକଳନ ମଧ୍ୟ ପ୍ରଦର୍ଶିତ ହୋଇଥିଲା । ଆମେ ରଖିଥିବା ତାଙ୍କର ପ୍ରାୟ ସମସ୍ତ ପୁସ୍ତକ ମହୋତ୍ସବରେ ଅବଧିରେ ବିକ୍ରି ହୋଇ ଯାଇଥିଲା । ଏହା ସୂଚାଇ ଦିଏ ଯେ ବାମାଚରଣ ମିତ୍ରଙ୍କ ବିଦଗ୍ଧ ପାଠକପାଠିକାମାନେ ତାଙ୍କୁ କେତେ ଭଲ ପାଉଛନ୍ତି ।



Digitized by srujanika@gmail.com

କିଛିଟା ରହିଯାଇଥିବା ବହି ମୁଁ ଭୁବନେଶ୍ୱର ପୁରୁଣା ବସ୍‌ଷ୍ଟାଣ୍ଡସ୍ଥିତ ଓଡ଼ିଶା ଲେଖକ ସମବାୟ ସମିତିକୁ ବିତରଣ ପାଇଁ ଦେଇଛି । ତାଙ୍କ ତିରୋଧାନର ୪୦ ବର୍ଷ ବିତିଗଲାଣି ବହୁ ପ୍ରକାଶନ ସଂସ୍ଥା ନିଷ୍କ୍ରିୟ ହୋଇ ଗଲେଣି ମାତ୍ର ବାମାଚରଣ ପାଠକ ହୃଦୟରେ ବଞ୍ଚି ରହିଛନ୍ତି ଆଉ ବଞ୍ଚି ରହିଥିବେ କାଳ କାଳକୁ ।

ଏକାମ୍ର ପୁସ୍ତକ ମହୋତ୍ସବରେ ପ୍ରଦର୍ଶିତ ହୋଇଥିବା ବାମାଚରଣ ମିତ୍ରଙ୍କର କିଛି ଫଟୋ ଆମର ହସ୍ତଗତ ହୋଇଥିଲା ତାଙ୍କ ପରିବାରବର୍ଗଙ୍କ ଠାରୁ ବିଶେଷ କରି ତାଙ୍କର ସୁପୁତ୍ର ମନ୍ମୁମାନ ମିତ୍ରଙ୍କ ଠାରୁ । ସେଥିରୁ ଆମେ କିଛି ଚିତ୍ର ବଡ଼ କରି ପୁସ୍ତକ ମେଳାରେ ପ୍ରଦର୍ଶିତ କରିଥିଲୁ । ଗୋଟିଏ ଥିଲା ବାମାଚରଣଙ୍କ ଯୁବକ ଅବସ୍ଥାରେ ସନ୍ତରଣ ପ୍ରତିଯୋଗିତା ପାଇଁ ପ୍ରସ୍ତୁତ ହେଉଥିବାର ଚିତ୍ର । ଏଠାରେ ଉଲ୍ଲେଖ କରାଯାଇପାରେ ଯେ ସେ ଥିଲେ ବିଚକ୍ଷଣ ସନ୍ତରଣକାରୀ ଯିଏ ନଦୀ ବଢ଼ି ସମୟରେ ମହାନଦୀର ଜୋବ୍ରାଠାରେ ଗୋଟିଏ କୂଳରୁ ଅନ୍ୟ କୂଳକୁ ପହଁରି ପହଁରି ଚାଲିଯାଉଥିଲେ । ଅନ୍ୟ ଫଟୋଟି ଥିଲା ତାଙ୍କର ସାହିତ୍ୟିକ ଗୁରୁ ଗୋପୀନାଥ ମହାନ୍ତିଙ୍କ ସହିତ ବାମାଚରଣ, ଶାନ୍ତନୁ, ନୀଳମଣି ଓ କୃଷ୍ଣ ପ୍ରସାଦଙ୍କ ଚିତ୍ର ଯାହା ତାଙ୍କ ଆଲ୍‌ବମ୍‌ରେ ସାଇତା ହୋଇଥିଲା ।

ମନ୍ମୁମାନ ବାବୁ ଆମର ହାସ୍ୟମେବ ଜୟତେ ଷ୍ଟଲ ପାଇଁ ଗୋଟିଏ ପୋଷ୍ଟକାର୍ଡ଼ଟିଏ ଦେଇଥିଲେ ଯାହା ତାଙ୍କ ସମସାମୟିକ ବ୍ୟଙ୍ଗ ଲେଖକ ଫତୁରାନନ୍ଦଙ୍କ ସହ ସମ୍ପର୍କର ଏକ ସାର୍ଥକ ପରିଚାୟକ ଥିଲା । ସେହି ପୋଷ୍ଟକାର୍ଡ଼ରେ ଗୋଟିଏ ପାର୍ଶ୍ୱରେ ବାମାଚରଣଙ୍କ ଝଙ୍କାରରେ ପ୍ରକାଶ ପାଉଥିବା ପ୍ରବନ୍ଧଟି ଅତି ଉଚ୍ଚକୋଟୀର ବୋଲି ପ୍ରଶଂସା କରି ଫତୁରାନନ୍ଦ ଲେଖିଥିଲେ । ଅପରପାର୍ଶ୍ୱରେ ଫତୁରାନନ୍ଦ ଏକ କାର୍ଟୁନ୍ ଆଙ୍କିଥିଲେ ଯେଉଁଥିରେ ଫତୁରାନନ୍ଦ ସମ୍ପାଦିତ ଡଗରକୁ ବାମାଚରଣ ଲେଖା ନ ଦେଉଥିବାରୁ ତାଙ୍କର କ୍ଷୋଭ ପ୍ରକାଶ କରିଥିଲେ । କାର୍ଟୁନ୍‌ରେ ଲେଖାଯାଇଥିଲା ଫତୁରାନନ୍ଦଙ୍କ ଥାଳିଶୂନ୍ୟ ଥିବା ସ୍ଥଳେ ହରେକୃଷ୍ଣ ମହତାବଙ୍କ ଥାଳି ପୂର୍ଣ୍ଣ ହୋଇଛି କାରଣ ମହତାବଙ୍କ ସମ୍ପାଦିତ ଝଙ୍କାରରେ ବାମାଚରଣଙ୍କ ଲେଖା ପ୍ରକାଶିତ ହୋଇଛି । ଏହି କାର୍ଟୁନ୍‌ଟି ବହୁ ବ୍ୟକ୍ତିଙ୍କ ଦ୍ୱାରା ଉଚ୍ଚ ପ୍ରଶଂସିତ ହୋଇଥିଲା ।

**ସାହିତ୍ୟିକ ବାମାଚରଣ :**

ବାମାଚରଣ ଥିଲେ ଜଣେ ଅସାଧାରଣ ସାହିତ୍ୟିକ । ତାଙ୍କର ସାହିତ୍ୟ ସମ୍ବନ୍ଧରେ ବହୁ ସମାଲୋଚକ ବହୁ ମନ୍ତବ୍ୟ ଦେଇଛନ୍ତି ମାତ୍ର ତାଙ୍କର ପରମବନ୍ଧୁ



Digitized by srujanika@gmail.com

ଶ୍ରୀ ଜ୍ୟୋତିରିନ୍ଦ୍ର ମୋହନ ଦୋଆର୍ଦ୍ଦାରଙ୍କର ଉକ୍ତି ତାଙ୍କର ବ୍ୟକ୍ତିତ୍ୱ ଓ ଲେଖନୀ ସମ୍ପର୍କରେ ଏଇଭଳି ସୂଚାଏ।

"ପ୍ରକୃତରେ ସେ ଯେତେ ଗାଳ୍ପିକ ନଥିଲେ ସେ ଥିଲେ ଦାର୍ଶନିକ, ଚିନ୍ତନ ତାଙ୍କର ଲେଖିବାର ଉଦ୍ଦେଶ୍ୟ ଥିଲା ଜଣେ ସାଧାରଣ ମଣିଷ ହିସାବରେ ତାଙ୍କ ମନ ଭିତରର ଭିଡ଼ା ଓଟରାକୁ ସମୀକ୍ଷା କରି ବାହାରକୁ ଆଣି ଗଳ୍ପ ଆକାରରେ ପାଠକଙ୍କ ଆଗରେ ଥୋଇବା। ଉଦ୍ଦେଶ୍ୟ ନିଜକୁ ଖୋଲିଦେବା ନୁହେଁ, ଉଦ୍ଦେଶ୍ୟ ନିଜର ଅନୁଭୂତିକୁ ଅନ୍ୟାନ୍ୟ ଅନୁଭୂତି ସହିତ ସଂଶ୍ଲିଷ୍ଟ କରିବା। ଅନ୍ୟ ଭାବରେ କହିଲେ "ମଣିଷ ପ୍ରତି ଦରଦ' ଏହାହିଁ ବାମାଚରଣଙ୍କ ସାହିତ୍ୟ ସୃଷ୍ଟିର ମୂଳ ଉତ୍ସ, ତେଣୁ ତାଙ୍କ ଲେଖାରେ ଏକ ସହଜ, ସ୍ୱଚ୍ଛନ୍ଦ ଗତିଶୀଳତା ଆମେ ଲକ୍ଷ୍ୟ କରୁ ଯାହା ଏକ ସୁସ୍ଥ ଆନନ୍ଦ ପରିପୂର୍ଣ୍ଣ ମନର ପରିଚାୟକ।



To
SRI BAMACHARAN MITRA O.A.S
QR. 12/3, TYPE V A
UNIT 2
BHUBANESWAR

ବାମାଚରଣଙ୍କୁ ସାହିତ୍ୟିକ ପଟ୍ଟନାୟକଙ୍କ ପତ୍ର





Digitized by srujanika@gmail.com

> ଆତ୍ମ-ଚରିତ ନୁହେଁ । ଲେଖାଟିର ପ୍ରାୟ ଶତକଡ଼ା ଷାଠିଏ ଭାଗ ସତ ଏବଂ ଚାଳିଶ ଭାଗ କଳ୍ପନାର ରଙ୍ଗଦିଆ । ସ୍ଥାନ କାଳ ପାତ୍ରର ନାମ ସବୁ ତେଣୁ ଉହ୍ୟ । ଅନ୍ୟାନ୍ୟ ବିଷୟ ଗୁଡିକ ଲେଖକଙ୍କ ଅଭିଜ୍ଞତା ।

*(ଜଣେ ମହାନ୍ ବ୍ୟକ୍ତିଙ୍କ ଆତ୍ମ-ସମୀକ୍ଷା*
*ମୃତ୍ୟୁର ଅବ୍ୟବହିତ ପୂର୍ବରୁ ସ୍ୱ-ରଚିତ...)*

# ଥାପିରେ କହ ତଥାପିରେ ( ୨ )

ଶ୍ରୀ ବାମାଚରଣ ମିତ୍ର

କୁହାଯାଏ ଜୀବନଟା ହେଉଚି ବିଡାଏ କାମନା । (Life is a bundle of desires) ମୋର ଗୋଟିଏ କାମନା... ନା ନା, ତା ଆଗରୁ କାମନା ବିଷୟରେ କିଛି କହି ରଖେ ।

ପୃଥିବୀର ଦୁଃଖ ଦୁଃଖି ପରମ କାରୁଣିକ ବୁଦ୍ଧ ଏତେ ବିଚଳିତ ହୋଇପଡିଲେ ଯେ ଦିନ ରାତି ଅସ୍ଥିର ଭାବରେ କାଳ କଟାଇବାକୁ ଲାଗିଲେ । ଶେଷରେ ଦିନେ ରାତିରେ ରାଜ ପ୍ରାସାଦର ସମସ୍ତ ସୁଖ, ପରମାସୁନ୍ଦରୀ ଭାର୍ଯ୍ୟା ନବ ଯୁବତୀ ଗୋପାଙ୍କ ସୁପ୍ତ ଆଲିଙ୍ଗନ, ନବଜାତ ପୁତ୍ର ରାହୁଳ ତ୍ୟାଗ କରି ବାହାରି ଗଲେ ଦୁଃଖର କାରଣ ଓ ବିନାଶର ଉପାୟ ବାହାର କରିବାକୁ । ଆହାର ନାହିଁ, ନିଦ୍ରା ନାହିଁ, କ୍ଷୁଧାରେ ପେଟ କରତି ହୋଇ ଯାଉଥାଏ, ଗୋଟାଏ ବଡ ହାତୁଡିରେ କିଏ ଯେମିତି ମୁଣ୍ଡରେ ବାଡେଇଥାଏ, ପେଟ ପିଠିରେ ଲାଗି ଯାଇଥାଏ, ସମସ୍ତ ଶିରାପ୍ରଶିରା ଠେଲି ବାହାରି ପଡିଥାଏ । ଦୀର୍ଘ ଛଅଟି ବର୍ଷ ଏଇ ଅବସ୍ଥାରେ ସେ



Digitized by srujanika@gmail.com

ବସି ଚିନ୍ତା କରିବାକୁ ଲାଗିଲେ । କିନ୍ତୁ ତଥାପି ସେ କିଛି ପାଇଲେ ନାହିଁ । ଦିନେ ସ୍ଥିର କଲେ ଶରୀରକୁ ଏପରି ପୀଡା ଓ ଯନ୍ତ୍ରଣା ଦେଇ କିଛି ଲାଭ ନାହିଁ । ଧୀରେ ଉଠିଗଲେ ନିକଟସ୍ଥ ଗ୍ରାମକୁ ଭିକ୍ଷା କରିବାକୁ । ଭିକ୍ଷା ଆଣି ଆହାର କରି ସୁସ୍ଥ ହୋଇ ସେ ଗୋଟିଏ ଅଶ୍ୱତ୍ଥ ଗଛ ତଳେ ବସିଲେ ଚିନ୍ତା କରିବାକୁ । ସହସା ସତ୍ୟ ଉଦ୍‌ଭାସିତ ହେଲା । ସେ ଜ୍ଞାନ ପାଇଲେ, ବୁଦ୍ଧତ୍ୱ ପାଇଲେ । ସେ ଜ୍ଞାନ ହେଲା- ଜୀବନ ଦୁଃଖପୂର୍ଣ୍ଣ, ଦୁଃଖର କାରଣ କାମନା, କାମନାର ବିନାଶରେ ଦୁଃଖର ବିନାଶ, କାମନାର ବିନାଶପାଇଁ ଆବଶ୍ୟକ ସତ୍ ଜୀବନ ଯାପନ ଯଥା- ସତ୍ ଚିନ୍ତା, ସତ୍ କାର୍ଯ୍ୟ ଇତ୍ୟାଦି ଅଷ୍ଟମାର୍ଗ ।

ଏ ଯୁକ୍ତି ସରଳ ଓ ଅକାଟ୍ୟ । ଆମର ଦୁଃଖର ପଚସ୍ତରି ଭାଗର କାରଣ ଯେ କାମନା ଜନିତ ଏଥିରେ ତର୍କ କରିବାର କିଛି ନାହିଁ । ପୁଣି କାମନା ଭିତରେ ସଂଘର୍ଷ ଯୋଗୁ ପରସ୍ପର ଭିତରେ ସନ୍ଦେହ, ଭୟ, ଘୃଣା ଯେ କଳିତ କରାଳ ପରମାଣୁ ବୋମା ପକାଇ ମହାଧ୍ୱଂସ ସୃଷ୍ଟି କରିବା ପର୍ଯ୍ୟନ୍ତ ଯାଉଛି ଏହା ତ ପ୍ରତ୍ୟେକଙ୍କ ଅଙ୍ଗେ ନିଭାଇବା କଥା । ହିଂସାରେ ଉନ୍ମତ୍ତ ପୃଥ୍ୱୀ ନିତ୍ୟ ନିଠୁର ଦ୍ୱନ୍ଦ୍ୱର ସ୍ୱାଦରେ ପ୍ରତିଦିନର ସବୁ ସମ୍ବାଦପତ୍ର ତ ଭରପୂର । କାମନା ଗଲେ ଯେ ଅନ୍ତତଃ ପଚସ୍ତରି ଭାଗ ଦୁଃଖ ଚାଲିଯିବ ଏ ଯୁକ୍ତି ସହଜରେ ବୁଝି ହେଉଚି । ସାମାନ୍ୟ ବୁଦ୍ଧିରେ ବି ବୁଝାଯାଏ ଯେ କାମନା ହେଉଚି ବାରୁଦ ସ୍ତୂପ ଯାହା ଉପରେ ମଣିଷ ବସିଚି । କିନ୍ତୁ ଯୁକ୍ତିରେ ବୁଝିଯିବା ଗୋଟାଏ କଥା ଆଉ ସେଇ ଅନୁସାରେ କାମ କରିବା ଆଉ ଏକ କଥା । ଅବଶ୍ୟ ଯୁକ୍ତିରେ ବୁଝିଯିବା କମ୍ ବଡ କଥା ନୁହେଁ । କିନ୍ତୁ ଯୁକ୍ତିକୁ ମାନିନେଲାପରେ କାମ ସବୁ ଯଦି ଆପେ ଆପେ ବାଗେଇ ଯାଉଥାନ୍ତେ ତା ହେଲେ ତ କଥା ନ ଥାଆନ୍ତା । ଯେଉଁ ମନସ୍ତତ୍ତ୍ୱକୁ ବୁଝି ଖୁବ୍ ବିଚାରବନ୍ତ ଭାବେ ଯୁକ୍ତି କରୁଚି ଆଉ ଯେଉଁ କାମ କରାଉଚି ଏ ଦୁହେଁ ଅଲଗା ଓ ଏକ ମନର ଦୁଇ ଅଂଶ ବା ଦିଗ । ମନ ସଭା କରି ସମସ୍ତଙ୍କ କଥା ଦୃଷ୍ଟିରେ ରଖି ନାନା ଦିଗ ବିଚାର କରି ଇନ୍ଦ୍ରିୟମାନଙ୍କୁ କାମ କରିବା ପାଇଁ ଭଲ ଭଲ ବିଧାନଦିଏ । କିନ୍ତୁ ସେଇ ମନ ଯେତେବେଳେ କାମ କରିବାକୁ ବସୁଛି ସେତେବେଳେ ଭିନ୍ନରୂପ ଧରେ, ଇନ୍ଦ୍ରିୟ କଥାରେ କାମ କରେ । କେଉଁଠି ବିଧାନ ମାନୁ ନାହିଁ ତ କେଉଁ ବିଧାନମାନଙ୍କ ଏପରି ଅର୍ଥ କରୁଛି ଯାହା ଇନ୍ଦ୍ରିୟମାନଙ୍କୁ ତୃପ୍ତି ଦେବ । କାମ କରି ବସିବା ବେଳକୁ ଇନ୍ଦ୍ରିୟମାନେ ଟପ୍‌ଟାପ୍ ବାହାରି ଯୁକ୍ତିର ମନକୁ ଘେରି ଯାଉଛନ୍ତି । କାମ କରେଇବା ମନଠୁ ତାକୁ ବିଚ୍ଛିନ୍ନ କରି ଦେଉଛନ୍ତି ।



Digitized by srujanika@gmail.com

ଏ ହେଲା ସାଧାରଣ ଲୋକର ଅବସ୍ଥା । ସେ ନାଚାର । ତାଙ୍କୁ ଗାଳି ଫଜିତ ଦେଲେ କି ବାଡ଼େଇଲେ କି ଘୃଣା କଲେ ବା କଅଣ ହେବ । ନିଜେ ବୁଦ୍ଧତ ତାଙ୍କ ଆଶ୍ରମରେ ଦେଖୁଛନ୍ତି କେତେ ବିକୃତି ।

ଗୀତାରେ ଭଗବାନ କହିଲେ, ଗାଳି ଫଜିତ ଦେଲେ ବା ବାଡେଇଲେ (ମଣିଷ ନିଜେ ନିଜକୁ ବି ବାଡାଏ, ଇନ୍ଦ୍ରିୟ ରୋଧ କରିବାପାଇଁ ନିଜେ ନିଜକୁ ଗାଳିଦିଏ, ନିଜେ ନିଜ ଶରୀରକୁ ନାନା କଷ୍ଟଦିଏ) ହୁଏତ ଖରାପ କାମ ନ କରିପାରେ, ବାହ୍ୟ ପ୍ରକାଶକୁ ରୋକିପାରେ, କିନ୍ତୁ ମନେ ମନେ କାମନା କଥା ଭାଳୁଥାଏ ଯାହା ଫଳରେ ସେ ମିଥ୍ୟାଚାରୀ ହୁଏ ବା ବିକୃତ ହୋଇଯାଏ । ମହା ମହା ଜ୍ଞାନୀମାନଙ୍କ ମନକୁ ବି ଇନ୍ଦ୍ରିୟମାନେ ହରଣ କରି ନିଅନ୍ତି । କାରଣ ଇନ୍ଦ୍ରିୟମାନଙ୍କୁ ମୁଁ ସୃଷ୍ଟି କରିଥିବାରୁ ସେମାନେ ମୋ'ଶକ୍ତି ପାଇଛନ୍ତି । ମଣିଷକୁ ମୁଁ ଏତେ ଶକ୍ତି ଦେଇନାହିଁ ଯେ ସେ ଖାଲି ଶରୀର ବା ମାନସିକ ଶକ୍ତି ବଳରେ ଇନ୍ଦ୍ରିୟମାନଙ୍କ ନିଗ୍ରହ ସାଧନ କରିପାରିବ । ଇନ୍ଦ୍ରିୟ ନିଗ୍ରହଦ୍ୱାରା ଲାଭ ତ ନାହିଁ, ବରଞ୍ଚ କ୍ଷତି ଅଛି । ତେଣୁ ସେଥିପାଇଁ ଏତେ ବାଡେଇ ପିଟି ନ ହୋଇ ବିରାଟ ଆନନ୍ଦ ପାଇବା ପାଇଁ ମନ ବଳାଅ । ମୋର ବିରାଟତ୍ୱ ଭାବିଲେ ଯେଉଁ ବିରାଟ ଆନନ୍ଦ ପାଇବ ସେଥିରେ କ୍ଷୁଦ୍ର କାମନା ଉଭେଇ ଯିବ । ଭଲମନ୍ଦ, ପାପପୁଣ୍ୟ, ସତ୍ ଅସତ୍ ଧର୍ମାଧର୍ମ ସବୁ ମୋ ତିଆରି, ମଣିଷ ତିଆରି ନୁହେଁ, ଏ ତତ୍ତ୍ୱ ବୁଝି ସେଥିରେ ଉଦ୍‌ବୁଦ୍ଧ ହୋଇ ସେ ସବୁ ମୋତେ ସମର୍ପଣ କରିଦିଅ, ବୋଇଲେ ସେ ସବୁକୁ ନିଜର ବୋଲି ଭାବନାହିଁ । ତା' ହେଲେ ଦେଖିବ ଇନ୍ଦ୍ରିୟମାନେ ଶାନ୍ତ ହୋଇଯିବେ, ବୋଲକରା ହେବେ, ଖାଲି ମଙ୍ଗଳ କାମରେ ସହସ୍ରଗୁଣ ଶକ୍ତିରେ ଖଟିବେ । ଇନ୍ଦ୍ରିୟମାନେ ତୁମ ଦାସ ହେବେ । ଇନ୍ଦ୍ରିୟମାନେ ତ ସୁଖ ଚାହାଁନ୍ତି, ଗୋଟାଏ ବିରାଟ ସୁଖ ତାଙ୍କୁ ଦେଖାଅ । ଦୁଃଖର ବିନାଶ ହେଲେ ଯେ ସୁଖ ପାଇବ ତା ନୁହେଁ । ସୁଖ ପାଇଁ ସୁମ୍ପୂର୍ଣ୍ଣ ଅଲଗା ପ୍ରକାର ଚେଷ୍ଟା ଦରକାର । କାମନାର ବିନାଶ ପାଇଁ ପୁରା ମାତି ନ ଯାଇ ବିରାଟ ସୁଖ ପାଇବାକୁ ମନ ବଳାଅ । (ଶିବ ହେଉଛନ୍ତି ମଦନ-ଦହନ, କିନ୍ତୁ ଶ୍ରୀକୃଷ୍ଣ ହେଉଛନ୍ତି ମଦନ-ମୋହନ) । ଅବଶ୍ୟ ରାତି ଅଧରେ ହଠାତ୍ ନିଦ ଭାଙ୍ଗିଗଲେ ଝରକା ଭିତର ଦେଇ ଯେତେବେଳେ ଶୁଭ୍ର ଜ୍ୟୋସ୍ନା ପ୍ଲାବିତ ବିରାଟ ନୀଳ ଆକାଶରେ ତାରା ସବୁ ସ୍ତବ୍ଧ ହୋଇ ଅନାଇ ରହିଛନ୍ତି, ଗଛ ସବୁ ତପସ୍ୟାରତ ଋଷି ଭଳି ବସିଛନ୍ତ, ଚାରିଆଡ ନୀରବ, ସେତେବେଳେ ହଠାତ୍ ମନଟା ଉଦାସ ହୋଇଯାଏ, ମନେ



Digitized by srujanika@gmail.com

ହୁଏ କିଏ ଏ ବିରାଟ ସୁନ୍ଦର ପୁରୁଷ ଶୋଇ ରହିଛନ୍ତି ଯୋଗ ନିଦ୍ରାରେ ସମସ୍ତ ବିଶ୍ୱବ୍ୟାପୀ ? ମୁଁ କଅଣ ତାଙ୍କରି ଏକ ଅଂଶ ? କିନ୍ତୁ ସେ ଭାବକେତେ କ୍ଷଣ !

ଏ ଯୁକ୍ତି ବି ସରଳ ଓ ଅକାଟ୍ୟ । କିନ୍ତୁ ହାୟ ଭଗବାନ, ତୁମେ ଯେଉଁ ଇନ୍ଦ୍ରିୟସବୁ ଦେଇଛନା ସେମାନେ (ସାଧାରଣ ଲୋକଙ୍କ ଇନ୍ଦ୍ରିୟମାନେ ଅନ୍ତତଃ) ଚାହୁଁଛନ୍ତି ନିଇତି କିଲେ ରାସଗୋଲା, ନରମ ବିଛଣା, ଭଲ ଘର ଇତ୍ୟାଦି, ଆଖିରେ ଦେଖିପାରୁଥିବା, ହାତରେ ଧରି ପାରୁଥିବା, ଜିଭରେ ଆସ୍ୱାଦନ କରିପାରୁଥିବା ଭଳି ସୁଖମାନ । ସେମିତି ଅମୂର୍ତ୍ତ ସୁଖ (ଯାହାକୁ ଦେଖି ହେବ ନାହିଁ, ଧରି ହେବ ନାହିଁ, ସ୍ପର୍ଶ କରି ହେବନାହିଁ, ଖାଲି ଆତ୍ମାରେ ଜାଣି ହେବ) ଇନ୍ଦ୍ରିୟମାନଙ୍କୁ ତ ଟାଣି ପାରୁନାହିଁ । ସେମାନେ ସେ ଅମୂର୍ତ୍ତସୁଖ ପାଇବାପାଇଁ କାମ କରିବେ ବା କେମିତି । ସେଇଥିପାଇଁ ତ ଆମେ କାମନା ଛାଡି ପାରୁନାହୁଁ ।

ବର୍ଗସଁ (Bergson) କହିଲେ- ନା, ନା କାମନା ଛାଡିଲେ ତ ବିବର୍ତ୍ତନ ବନ୍ଦ ହୋଇଯିବ, କାମନାକୁ ଦୃଢ଼ ଭାବରେ ଧର । ଡାରୱଇନ୍ (Darwin) ସିନା କହିଲେ ଯେ ପାରିପାର୍ଶ୍ୱିକ ଅବସ୍ଥା, ବଞ୍ଚିବା ପାଇଁ ଖାଦ୍ୟର ପରିମାଣ, ଆକାର ଓ ପ୍ରକାର ଅନୁସାରେ ପ୍ରାଣୀର ବିବର୍ତ୍ତନ ଆପେ ଆପେ ହୁଏ, ଗୋଟିଏ ଭାଲୁମା'ର ଦୁଇଟି ଛୁଆରୁ ଖାଦ୍ୟ ଖୋଜୁ ଖୋଜୁ ଗୋଟିଏ ଥଣ୍ଡା ଦେଶକୁ ଓ ଅନ୍ୟଟି ଗରମ ଦେଶକୁ ଗଲେ କାଳକ୍ରମେ ସେମାନେ ଓ ସେମାନଙ୍କ ବଂଶଧରଙ୍କ ଆକାର ସ୍ୱଭାବ ଆଦି ସବୁ ଏମିତି ବଦଳି ଯାଏ ଯେ ଗୋଟିଏ ଅନ୍ୟଠାରୁ ସମ୍ପୂର୍ଣ୍ଣ ଭିନ୍ନ ହୋଇଯାଏ, କିନ୍ତୁ ବର୍ଗସଁ କହିଲେ ବିବର୍ତ୍ତନ ଖାଲି ବାହାରର ଚାପରୁ ଘଟେନାହିଁ, ପ୍ରାଣୀର ଭିତରର କାମନା ଶକ୍ତି ତା ଘଟାଏ । କାମନା ଶକ୍ତି ହେଉଛି ଅସଲ । ଜଳର କୀଟ ବର୍ଷ ବର୍ଷ ଧରି ସ୍ଥଳକୁ ଯିବା କାମନା କରୁ କରୁ ତାହାର ବଂଶଧରମାନଙ୍କ ଅତି ଧୀରେ ଧୀରେ ପରିବର୍ତ୍ତନ ହେଉ ହେଉ ଦିନେ ପାଦଗଜୁରେ, ଶାରୀରିକ ପରିବର୍ତ୍ତନ ଘଟେ । ଅତଏବ କାମନା ଛାଡିଲେ ତ ବିବର୍ତ୍ତନ ବନ୍ଦ ।

ଏ ଯୁକ୍ତି ବି ସରଳ ଓ ଅକାଟ୍ୟ । ମଣିଷର ଦିବାସ୍ୱପ୍ନ ଇଚ୍ଛା (wish)ରେ ପରିଣତ ହୁଏ, ଇଚ୍ଛା ସଂକଳ୍ପ (will)ରେ ପରିଣତ ହୁଏ ଓ ସଂକଳ୍ପହିଁ କାମ କରାଏ । କିନ୍ତୁ ସାଧାରଣ ଲୋକର ଦିବାସ୍ୱପ୍ନହିଁ ସବୁ । ଅସଂଖ୍ୟ ଦିବାସ୍ୱପ୍ନରୁ କେଇଟା ବା ଇଚ୍ଛାସ୍ତରକୁ ଯାଏ ବା ଇଚ୍ଛାସ୍ତରରୁ କେଇଟା ବା ସଂକଳ୍ପ ସ୍ତରକୁ ଯାଏ । ବିଛଣାରେ ପଡ଼ି ସେ ଖାଲି ସୁଖର ସ୍ୱପ୍ନ ଦେଖୁଥାଏ । ଭାବୁଥାଏ ଅନ୍ୟ କାହାରି ଶକ୍ତି ବଳରେ ମୁଁ ଏ ସବୁ ସୁଖ ପାଇଯାଆନ୍ତି କି। ସେ ଭଗବାନଙ୍କୁ ଡାକୁଥାଏ ଏଇଥିପାଇଁ, କିଛି



Digitized by srujanika@gmail.com

ପୋତାଧନର ସନ୍ଧାନ ପାଇଯିବା ପାଇଁ । ପ୍ରେମ ହେଉ ବା ଟଙ୍କା ହେଉ ସହଜରେ ଓ ଅନ୍ୟର ଚେଷ୍ଟାରେ ପାଇବା ପାଇଁ ସେ ଦିବାସ୍ୱପ୍ନ ଦେଖୁଥାଏ । ଯାହାକୁ କହନ୍ତି, ସେ କିଳାପୋତେଇ କଳାବଙ୍କାଗିରେ ମନ ବଳାଏ । ଏହାହିଁ ମୋ ଭଳି ସାଧାରଣ ଲୋକଙ୍କ ଅବସ୍ଥା ।

ମାର୍କସ କହିଲେ, ବ୍ୟକ୍ତିକୁ ଯଦି ସ୍ୱାଧୀନତା ଦିଆଯାଏ ଓ ବ୍ୟକ୍ତିର ସଂକଳ୍ପକୁ ଯଦି ସ୍ୱୀକାର କରାଯାଏ ତେବେ ସମାଜରେ ମାତ୍ର କେଇ ଜଣଙ୍କ ଆଧିପତ୍ୟ ଶୋଷଣ ଅତ୍ୟାଚାରକୁ କାଏମ କରି ଦିଆଯିବ । କାରଣ ମାତ୍ର ଅଳ୍ପ କେଇଜଣ ସଂକଳ୍ପ ସ୍ତରକୁ ଯାଇପାରିବେ । ତେଣୁ ବ୍ୟକ୍ତିକୁ କରିବାକୁ ହେବ ସମ୍ପୂର୍ଣ୍ଣ ସାମାଜିକ ଏବଂ ସଂକଳ୍ପକୁ କରିବାକୁ ହେବ ସାମାଜିକ । ସଂକଳ୍ପ କେବଳ ସାମାଜିକ ସ୍ଫୁରଣ ହେବ, ବ୍ୟକ୍ତି ସ୍ତରରେ ନୁହେଁ । ଏହାପାଇଁ ଦରକାର ଜବରଦସ୍ତି । କାରଣ ବଞ୍ଚିବା ପ୍ରବୃତ୍ତିଟାହିଁ ବ୍ୟକ୍ତିଗତ ଏବଂ ତେଣୁ ମନୁଷ୍ୟର ସାମ୍ୟଭାବ ଓ ସମାଜଚିନ୍ତା ଛାଏଁ ଛାଏଁ ଆସିବ ଏକଥା ଭାବିବା ମୂର୍ଖତା । ଯେତେ ଭଗବାନଙ୍କୁ ଡାକିଲେ ବି ଆସିବ ନାହିଁ, ଓଲଟା ଧର୍ମ ହେବ ଶୋଷଣର ଆଉ ଏକ ପନ୍ଥା । ଜବରଦସ୍ତି ଆର୍ଥିକ, ସାମାଜିକ, ରାଜନୀତିକ ସମତା ଆଣିଲେ ତାର ସାମ୍ୟଭାବ ଓ ସମାଜ ଚେତନା ବାଧ ହୋଇ ଆସିବ ।

ଏ ଯୁକ୍ତି ବି ସରଳ ଓ ଅକାଟ୍ୟ । ଯଦି ମଣିଷ ନିଜେ କିଛି ନ କରୁଛି ତାକୁ କରିବାକୁ ବାଧ କର । କରୁ କରୁ ସେଇଟାକୁ ସେ ଆଦରି ଯିବ । ମତ ଯଦି ଇନ୍ଦ୍ରିୟବାଟେ ଯାଉଛି ତେବେ ଇନ୍ଦ୍ରିୟ ବାଟ ବନ୍ଦ କରିଦିଅ । ବ୍ୟକ୍ତି ଯଦି ସମତା ଓ ସାମ୍ୟ ନ ଆଣୁଛି ତେବେ ସମାଜ ସମତା ଓ ସାମ୍ୟ ଆଣି ଦେଉ, ବ୍ୟକ୍ତି ବଦଳି ଯିବ । ନା ରହେଗା ବାଁଶ୍, ନା ବଜେଗି ବାଁଶ୍‌ରି । ବାଉଁଶ ଥିବ ନା ବଇଁଶି ବାଜିବ, କାଟି ସଫା କରିଦିଅ ବାଉଁଶ ବଣ । କିନ୍ତୁ ସମାଜବାଦ ବା ସାମ୍ୟବାଦ ପାଇଁ ବିପ୍ଲବ ବେଳେ ଯେଉଁ ପ୍ରେରଣା ଥାଏ କାଳକ୍ରମେ ତା ମଉଳି ଯାଏ । ପୁଣି ବ୍ୟକ୍ତିଗତ ସମ୍ପତ୍ତିପାଇଁ କାମନା ଜାଗେ । ମନେହୁଏ ବାଉଁଶ ଗଲା, କିନ୍ତୁ କିଛି କାଳ ପରେ ଦେଖାଯାଏ ପୁଣି ଗଜୁରିଲାଣି, ଦୁର୍ନୀତି ମୁଣ୍ଡ ଟେକିଲାଣି । ଦୁର୍ନୀତି ମୂଳରେ ତ ଅଛି ବ୍ୟକ୍ତିର ଏକକ ସ୍ୱାର୍ଥ, ସୁଖ ପାଇବାର ଚେଷ୍ଟା । ମାଓ ସେ ତୁଙ୍ଗଙ୍କ ଉପଦେଶାବଳୀ ଯେଉଁମାନେ ପଢ଼ିଛନ୍ତି ସେମାନେ ଜାଣନ୍ତି ମନ୍ତ୍ରୀ ଓ କର୍ମଚାରୀମାନଙ୍କ ବିଳାସ ବ୍ୟସନ ପ୍ରସାର ପାଇଥିବାରୁ ମାଓ କିପରି ବାରମ୍ବାର ସତର୍କ କରାଇ ଦେଇଛନ୍ତି । ମାଓ ଦିନେ ଯିବେ । ଲେନିନ୍ ଗଲେ ଓ ଧୀରେ



Digitized by srujanika@gmail.com

ଧୀରେ ବ୍ୟକ୍ତିଗତ କାମନାକୁ ପ୍ରଶ୍ରୟ ଦିଆଗଲା । ସେଥିପାଇଁ ଅନେକ ମତ ଦିଅନ୍ତି ବିପ୍ଳବ ଲାଗି ରହିଥିବା ଦରକାର । ଥରକୁ ଥର ବାଉଁଶ, କାଟି ସଫା କରିବା ଦରକାର । କିଏ କରିବ ? ସେଇ ମଣିଷ ତ ! ତା ଛଡା, ମେଣ୍ଟା ଧୋଉ ଧୋଉ ତ ନିର୍ବାଳ ହୋଇଯିବ । ଗୀତାରେ ଭଗବାନ ମଧ କହିଛନ୍ତି ମଣିଷର ସବୁ କାମ (ଖାଇବା ପିନ୍ଧିବା ଭଳି ସାଧାରଣ ସବୁ କାମ ବି) ଯଜ୍ଞ କାମ ବୋଲି ଭାବିବ । ଗୀତାରେ ଯଜ୍ଞ ମାନେ ସାମୁହିକ ମଙ୍ଗଳ ପାଇଁ ଯେ କୌଣସି କର୍ମ । ନିଜେ ଖାଉଚ ସତ, କିନ୍ତୁ ନିଜର ସୁଖ ପାଇଁ ଖାଉ ନାହଁ । ସମାଜର ମଙ୍ଗଳ ପାଇଁ ଖାଉଚ ସମାଜର ମଙ୍ଗଳ ପାଇଁ ନିଜର ସ୍ୱାସ୍ଥ୍ୟ ଭଲ ରଖୁଚ । ନିଜ ବଗିଚାରେ ପନିପରିବା କରୁଚ କି କୁକୁଡା ପାଳିଚ । ଭାବ ନାହିଁ ତା ନିଜ ସୁଖ ପାଇଁ କରୁଚ, ଭାବ ସମାଜର ମଙ୍ଗଳ ପାଇଁ ତା କରୁଚ । କାରଣ ତା ହେଲେ ବଜାର ଉପରେ ଚାପ ଉଣା ହେବ, ମୂଲ୍ୟ ସ୍ଥିର ରହିବ । କାମ ସେଇୟା ହେବ, ଖାଲି ଭାବଟା ବଦଳିବ । ସେତିକିରେ ବ୍ୟକ୍ତିର ତାମସିକତା ଆଧ୍ୟାତ୍ମିକତାରେ ପରିଣତ ହେବ । ସେଇଥିପାଇଁ ଗୀତା କୁହେ, ସମାଜ ଯେତେ ଜବରଦସ୍ତି କରୁନା କାହିଁକି ଗୋଟାଏ ସ୍ତରରେ ତାକୁ ବ୍ୟକ୍ତିର ଆଧ୍ୟାତ୍ମିକ ଚେତନା ଉପରେ ନିର୍ଭର କରିବାକୁ ପଡିବ । ତେଣୁ ବ୍ୟକ୍ତିର ଆଧ୍ୟାତ୍ମିକ ବିକାଶ ପାଇଁ ମୂଳତଃ ଚେଷ୍ଟା କାରିବାକୁ ପଡିବ । ତା ନ ହେଲେ କୌଣସି ସାମାଜିକ ବା ଅର୍ଥନୀତିକ ପ୍ରଚେଷ୍ଟା ସଫଳ ହେବନାହିଁ, ସବୁ ଦୁର୍ନୀତିରେ ପରିଣତ ହେବ ।

ସବୁ ଯୁକ୍ତି ସରଳ ଓ ଅକାଟ୍ୟ । କିନ୍ତୁ ସାଧାରଣ ମଣିଷ ଗୁଡାଏ କାମନା, ଅନେକ ଗୁଡାଏ ଦିବାସ୍ୱପ୍ନ ଭିତରେ ଥାଏ । ଗୋଟାଏ ଦି'ଟା ଦିବାସ୍ୱପ୍ନ ନୁହେଁ । ଚାହୁଁ ଚାହୁଁ କେତେ କଥାକୁ ସେ ଛୁଇଁ ଯାଉଥାଏ, କେଉଁଠି ସ୍ଥିର ହୋଇ ରୁହେ ନାହିଁ । ସେଥି ଭିତରୁ କେତୁଟାର ବିନାଶ ହୁଏ ନୈତିକ ଚେତନା ଯୋଗୁ ବା ଅନ୍ୟାନ୍ୟ କେତେକ କାରଣରୁ ଅଳ୍ପ କେତୁଟା ସଙ୍କଳ୍ପରେ ପରିଣତ ହୁଏ କି ନ ହୁଏ । ଆହୁରି ଅଳ୍ପ କେତୁଟା ସମର୍ପିତ ହୋଇ ଶାନ୍ତ ହୋଇଯାଏ । ଆଉ ଅନେକ ଭୟ (ନିନ୍ଦା, ଅପବାଦ, ବାପ, ମା, ଭାଇ, ଭଉଣୀ, ସମାଜ, ପୁଲିସ, ସ୍ନେହ ଶ୍ରଦ୍ଧା ହରାଇବାର ଭୟ) ଯୋଗୁ ବନ୍ଦୀ ହୋଇଥାନ୍ତି । ଏମାନଙ୍କ ବାହାରେ ଆହୁରି ଅନେକ ଅନେକ ଯେଉଁ କାମନାମାନ ରହିଗଲା ତା ପାଇଁ ହାହୁତାଶ, ସରୁ ଅଲକ୍ଷ୍ୟ ନିଃଶ୍ୱାସଟିଏ । ବାହାରକୁ ଏମାନଙ୍କ ପ୍ରକାଶ ଏମିତି କ୍ଷୀଣ, ହେଲେ ଏମାନଙ୍କ କ୍ଷେତ୍ର ବିରାଟ, ଚେର ଗଭୀର ଓ ସୁଦୂର ପ୍ରସାରୀ ଏବଂ ଜଟିଳତା ମଧ ବହୁତ



Digitized by srujanika@gmail.com

ଏମାନେ ସୃଷ୍ଟି କରନ୍ତି । ଦର୍ଶନ, ସାହିତ୍ୟ, ମନସ୍ତତ୍ୱ ପାଇଁ ଏହା ଉର୍ବର କ୍ଷେତ୍ର, ଚିକିତ୍ସା ବିଜ୍ଞାନ ମଧ୍ୟ ଏ କ୍ଷେତ୍ରକୁ ପ୍ରବେଶ କଲାଣି, କାରଣ ସେ କହିଲାଣି ଯେ ଅଧିକାଂଶ ବ୍ୟାଧିର କାରଣ ଏଇଠି ଥାନ୍ତି, ଏମିତିକି ବିଇଞ୍ଚ ଭଳି ରୋଗର ବି ।

ବିନାଶ, ସଂକଚ୍ଛୀକରଣ, ସମର୍ପଣ, ଭୟ ପ୍ରଦର୍ଶନ ଦ୍ୱାରା ବନ୍ଦୀକରଣମାନଙ୍କ ପରିସର କେତେ ହେବ ତାହା ଗଭୀର ଚିନ୍ତାର ବିଷୟ । ସରକାର ପାଇଁ ଏକ ଜଟିଳ ବ୍ୟାପାର । କିନ୍ତୁ ଶିକ୍ଷା ହେଉଚି ସବୁରି ମୂଳ । ଶିକ୍ଷା ଦେଉଁ ଦେଉଁ ଯା'ହବ । ତହିଁକି କା ହାତ ନାହିଁ । ମଣିଷ ଯେମିତି ଅନିଶ୍ଚିତ, ରାଷ୍ଟ୍ରର, ସଭ୍ୟତାର ଦେଶର ଜୀବନ ମଧ୍ୟ ସେମିତି ଅନିଶ୍ଚିତ ଏକଥା ଖାଲି ବିରାଟ ରାଷ୍ଟ୍ର ଓ କୂଟନୀତିଜ୍ଞ ଚର୍ଚ୍ଚିଲ୍ କହି ନାହାନ୍ତି ଆଧୁନିକ ବିଜ୍ଞାନ ମଧ୍ୟ କହୁଚି । ଅନିଶ୍ଚିତ ବିଧାନ (Law of uncertainty) ବୋଲି ଗୋଟାଏ ନୈସର୍ଗିକ ବିଧାନ ଅଛି ବୋଲି ବିଜ୍ଞାନ କହୁଛି । ଆପଣ ଚୌକିରେ ବସିଛନ୍ତି ନିଶ୍ଚିନ୍ତରେ, କିନ୍ତୁ ହୁଏତ ହଠାତ୍ ପରମାଣୁମାନଙ୍କ ଏପରି ମୌଳିକ ପରିବର୍ତ୍ତନ ଘଟିବ ଯେ ଚୌକିଟି ଉପରକୁ ଉଠିଯିବ । ଏତେଦିନ ଧାରଣା ଥିଲା ପ୍ରତ୍ୟେକ କାର୍ଯ୍ୟର କାରଣ ଅଛି । କିନ୍ତୁ ବିଜ୍ଞାନ କହିଲାଣି କାରଣ ନଥାଇ ବି କାର୍ଯ୍ୟ ହୁଏ । ତେଣୁ ଆପଣ କାର୍ଯ୍ୟ କରିବେ, କିନ୍ତୁ ଫଳ କଅଣ ନେବ ତାହା ଅନିଶ୍ଚିତ ଯେହେତୁ ତାହା ଅନ୍ୟାନ୍ୟ ଅନେକ ଘଟଣା ଉପରେ ନିର୍ଭର କରେ ଯାହା ଉପରେ କୌଣସି ହାତ ନାହିଁ, ଏମିତିକି ଆପଣଙ୍କ ଜ୍ଞାନର ପରିସର ବାହାରେ ସେମାନେ, ଆପଣଙ୍କ ଜ୍ଞାନର ପରିସର ଯେତେ ବଢୁନା କାହିଁକି । ତେଣୁ କର୍ମଣ୍ୟେବାଧିକାରସ୍ତୁ ମା ଫଳେଷୁ କଦାଚନ । ସେ ଯାହା ହେଉ, ସାଧାରଣ ମଣିଷ ଏତେ ଭାବିଚିନ୍ତି ମାପିଚୁପି ପ୍ରତ୍ୟେକର ପରିସର ସ୍ଥିର କରେ ନାହିଁ । ଠେଲାପେଲାରେ ପ୍ରତ୍ୟେକର ପରିସର ସ୍ଥିର ହେଉଥାଏ ବଦଳୁଥାଏ, ଏମିତି ଚାଲିଥାଏ । ଅର୍ଥାତ୍ ପରିବାରର, ଗୋଷ୍ଠୀର, ସମାଜର ଓ ଦେଶର ପ୍ରତ୍ୟେକଙ୍କ କାମନା ଅନ୍ୟମାନଙ୍କ କାମନାକୁ ଠେଲି ନିଜର କାମନାର ପରିସର ବଢ଼ାଇବାକୁ ଚେଷ୍ଟା କରୁ କରୁ ଯେଉଁ ପ୍ରତ୍ୟକ୍ଷ ବା ପରୋକ୍ଷ ଠେଲାପେଲା ଲାଗେ ସବୁଥିରେ ପ୍ରତ୍ୟେକଙ୍କ କାମନାର ପରିସର ଆପେ ଆପେ ସ୍ଥିରୀକୃତ ହୋଇ ଯାଉଥାଏ ଓ ପୁଣି ବଦଳୁଥାଏ । ଏ ପରିସର ବୃଦ୍ଧି ଯେ ଖାଲି ସଂଘର୍ଷ ମାଧ୍ୟମରେ ଅନ୍ୟକୁ ଦବାଇ ହୁଏ ତା ନୁହେଁ । ସ୍ନେହ, ଶ୍ରଦ୍ଧା, ଆର୍ଥିକ ସାହାଯ୍ୟ ଦ୍ୱାରା ଅନ୍ୟକୁ ଆୟତ୍ତ ମଧ୍ୟ କରାଯାଏ । 'ପ୍ରେମଦ୍ୱାରା ଶତ୍ରୁକୁ ଜୟକର' କଥାର ମହତ୍ତ୍ୱ ଯାହା ଥାଉ ନା କାହିଁକି ମୂଳ ଉଦ୍ଦେଶ୍ୟଟି ହେଉଚି ଅପର ପକ୍ଷ ମୋର କାମନାରୁ କିଛିଟା



Digitized by srujanika@gmail.com

ଅନ୍ତତଃ ସ୍ୱୀକାର କରୁ । ଅନ୍ୟକୁ କବଳିତ କରିବା ପାଇଁ ପ୍ରତିଯୋଗୀମାନଙ୍କ ଭିତରେ ଯେମିତି ଗରମ ଯୁଦ୍ଧ ଚାଲେ, ଅନ୍ୟକୁ ଆୟତ୍ତ କରିବା ପାଇଁ ଶୀତଳ ଯୁଦ୍ଧ ବି ଚାଲେ । ଏମିତି ପ୍ରତ୍ୟେକେ ଯେ ଯାହା ଦାଉଁରେ ଅଛନ୍ତି, ପ୍ରତ୍ୟେକେ ନିଜ ପାଇଁ ନିଜେ, କେହି କାହାରି ନୁହନ୍ତି ଭାବିବା ବେଳକୁ ମନେ ହୁଏ ଚାରିଆଡେ ବିପଦ ତାକୁ ଘେରି ରହିଚି, ଭାରି ଡର ମାଡେ, ଅସହାୟ ଲାଗେ । ସେତେବେଳେ ସେ ପଚାରେ, ନିଃସ୍ୱାର୍ଥ ପ୍ରେମ କଅଣ ନାହିଁ ତେବେ ? ମନକୁ ମନ ଉତ୍ତର ଦିଏ, ଅଛି ନିଶ୍ଚୟ ଅଛି, ପ୍ରେମମୟ ଭଗବାନ ଅଛନ୍ତି । ସେ ଖୋଜେ ଆତ୍ମାକୁ, ଯିଏ ଦବ ଐକ୍ୟ । ସାଧାରଣ ମଣିଷ ଏହି ଭୟରୁହିଁ ଆତ୍ମାକୁ ଖୋଜେ । କିନ୍ତୁ କ୍ୱଚିତ କଦବା କୋଟିକେ ଗୋଟିଏ ଏକ ଏକ ଯୁଗରେ ଜଣେ ଜଣେ ଦେଖାଯାନ୍ତି ଯେ ସ୍ୱାର୍ଥରୁ ଜାତ ଭୟ ପାଇଁ ନୁହଁ, ପ୍ରେମଯୋଗୁହିଁ ଆତ୍ମାକୁ ଖୋଜନ୍ତି ଓ ପାଆନ୍ତି । ସେମାନେ ଲୋକଙ୍କୁ କହନ୍ତି କାମନା ଛାଡ, ସ୍ୱାର୍ଥଛାଡ, ଭଗବାନଙ୍କୁ ସବୁ ସମର୍ପଣ କର । ଲୋକେ ତାଙ୍କୁ ଦେଖି ମୁଗ୍ଧ ହୁଅନ୍ତି, ବିହ୍ୱଳ ହୁଅନ୍ତି, ଆଶ୍ଚର୍ଯ୍ୟ ହୁଅନ୍ତି ଯେ ଏଭଳି ନିଃସ୍ୱାର୍ଥ ଲୋକର ଆବିର୍ଭାବ ହୋଇଚି । ଲୋକେ କାମନାରୁ ମୁକୁଳିବାକୁ ଚାହାନ୍ତି, ହେଲେ ପାରନ୍ତି ନାହିଁ ।

କାମନା ବିଷୟରେ ସବୁ ଧର୍ମ, ଅବତାର, ଦାର୍ଶନିକ, ଜ୍ଞାନୀ, ମୁନି କେତେ ନା କେତେ କହି ଯାଇଛନ୍ତି । କିନ୍ତୁ ଦାମ ବାରିକ ଯାହା କହିଛି ପଢ଼ିଲେ ମନଟା ହଠାତ୍ ହାହା କରି କାନ୍ଦେ । ଦାମ ବାରିକ୍ କଥା ପଢ଼ିଲି ପ୍ରଫୁଲ୍ଲ ମହାନ୍ତିଙ୍କ 'ମୋ ଗାଁ ମୋ ଜୀବନ' ବହିରେ । ସେ କଟକ ଜିଲ୍ଲାର ନାନପୁର ଗ୍ରାମ ଜଣେ ଆର୍କିଟେକ୍ଟ୍ ଯେ ବର୍ତ୍ତମାନ ବିଲାତରେ ବସବାସ କରୁଛନ୍ତି । ମାଇଁ ଭିଲେଜ୍, ମାଇଁ ଲାଇଫ୍ ବୋଲି ଇଂରାଜିରେ ଖଣ୍ଡେ ଚମତ୍କାର ବହି ଲେଖିଛନ୍ତି । ତାଙ୍କ ଗ୍ରାମର ନାନା ଲୋକେ ନିଜ ଅଭିଜ୍ଞତା ବିଷୟରେ ଯାହା କହିଛନ୍ତି ସେ ତାହା ଅବିକଳ ଥୋଇ ଦେଇଛନ୍ତି । ଦାମ ବାରିକ ଜଣେ କୁଷ୍ଠରୋଗୀ । ତା ସ୍ତ୍ରୀ ତିନୋଟି ଝିଅକୁ ନେଇ ତାକୁ ଛାଡି ଚାଲିଯାଇ ଅନ୍ୟ ଜଣକୁ ବିବାହ କରିଚି । ଦାମ ବାରିକକୁ ସମସ୍ତେ ଘୃଣା କରି ଗାଁରୁ ତଡି ଦେଇଛନ୍ତି । ତାର ଜମିକୁ ଜଣେ ଧନୀ ମାଡି ବସିଚି । ସେ ନିଃସହାୟ, ଏକା । ତଥାପି ସେ କହୁଚି– ମୁଁ ଏ ଘୃଣା ନେଇ ବଞ୍ଚିଛି, ଜୀବନଟା ଅଛି ଏଇ ଦେହରେ, ଆଉ ଏ ଦେହ ପ୍ରତି ମୁଁ ଆସକ୍ତ, ଛାଡି ଦେଇପାରୁନାହିଁ ।

ଜୀବନରେ ତୃପ୍ତ କାମନାଠୁ ଅତୃପ୍ତ କାମନାର ସଂଖ୍ୟା କେତେନା କେତେ ଗୁଣ ଅଧିକ । ହାହୁତାଶ ଓ ଦୀର୍ଘନିଃଶ୍ୱାସର ସୁଅରେ ତୃପ୍ତ କାମନାର ତୃପ୍ତି ଭାସିଯାଏ ।



Digitized by srujanika@gmail.com

ହାହୁତାଶର ପସରା ମେଲି ଦିଏ ମଣିଷ । ଜଣ ଜଣ ଧରି କହୁଥାଏ, ଦେଖ ଗୋ ଦେଖ ମୋ ଦୁଃଖ, ଶୁଣ ଟିକିଏ, ଟିକିଏ ଆଖି ପକାଇ ଯାଅ ମୋ ଅତୃପ୍ତ କାମନାର ତାଲିକା ଉପରେ । ଚଢ଼ା ଦାମ ଯୋଗୁ ଫୁଲକୋବିଟିଏ କିଣି ନପାରିବାର ଦୁଃଖ ସେ ବଜାରରୁ ଫେରିବାବେଳେ ଯେତେ ଲୋକଙ୍କ ସାଙ୍ଗରେ ଦେଖାହୁଏ ଜଣ ଜଣ କରି କହୁଥାଏ ଆଉ ଅଭିଶାପ ଦେଉଥାଏ ପ୍ରଧାନମନ୍ତ୍ରୀଙ୍କଠାରୁ ଆରମ୍ଭ କରି ଚପରାଶି ପର୍ଯ୍ୟନ୍ତ, କୋଟିପତିଠାରୁ ଆରମ୍ଭ କରି ଦୋକାନୀ ପର୍ଯ୍ୟନ୍ତ । ଯିଏ ନ ଶୁଣେ ଏ ଦୁଃଖ, ବା ଶୁଣି ଦି'ପଦ ସହାନୁଭୂତିର କଥା ନ କୁହେ କି ତା ଗାଳି ସହିତ ଆଉ ଦି'ପଦ ଗାଳି ଯୋଡି ନ ଦିଏ ତା' ଉପରେ ବି ସେ ରାଗିଯାଏ ।

ଏ ଅତୃପ୍ତ କାମନାର ତାଲିକା ପୁଣି ଦୁଇ ଭାଗରେ ବିଭକ୍ତ । ଥୋଡେ ପାଇଁ ମଣିଷ ଅନ୍ୟକୁ ପୂରା ଦାୟୀ କରି ଗାଳି ଦେଇ କିଛିଟା ଅତୃପ୍ତି ଜନିତ ରାଗ ଖଲାସ କରିଦିଏ, ମାନସିକ ଚାପ କିଛିଟା ଉଶ୍ୱାସ ହୋଇଯାଏ । କିନ୍ତୁ ଆଉ କେତେକଙ୍କ ପାଇଁ ସେ କାହାକୁ ଦାୟୀ କରିପାରେନା, ନିଜକୁହିଁ ଦାୟୀ କରେ - ଇସ୍, କି ଭୁଲ କଲି ରେ, ଏମିତି ନ କରି ସେମିତି କରିଥିଲେ କେତେ ସୁଖରେ ଥାନ୍ତି ଆଜି, ମୋରି ତ ଭୁଲ୍, କହିବି କାହାକୁ । ଭିତରେ ଭିତରେ କ୍ରୋଧ କୁହୁଳୁଥାଏ ଓ ନାନା ବିକୃତି ସୃଷ୍ଟି ହୁଏ । ପ୍ରସଙ୍ଗତଃ କହେ ସ୍ୱାମୀ-ସ୍ତ୍ରୀ ସମ୍ପର୍କ ବିଷୟରେ ଭଲ ଭଲ ବଡ ବଡ ଆଦର୍ଶ କଥା କୁହା ହୋଇଛି । କିନ୍ତୁ ଯେଉଁସବୁ କାରଣ ସ୍ୱାମୀ-ସ୍ତ୍ରୀକୁ ବାନ୍ଧି ରଖିଥାଏ ସେଥିରୁ କିଛିଟା ସେ ସମ୍ପର୍କ ବିଷୟରେ ଆଶା ବା ସ୍ୱପ୍ନ ଓ କିଛିଟା ବାସ୍ତବ ଉପରେ ପ୍ରତିଷ୍ଠିତ । ଯେଉଁ ଦେଶ ବେଶି ବାସ୍ତବବାଦୀ ସେ ଦେଶରେ ଛାଡପତ୍ର ବେଶି ଏବଂ ଯେଉଁ ଦେଶ ବେଶି ଆଶା ଓ ସ୍ୱପ୍ନ ବିଳାସୀ ସେ ଦେଶରେ ଛାଡପତ୍ର ସଂଖ୍ୟା ଊଣା ବୋଲି ମନେ ହୁଏ । ସେ ଯାହାହେଉ ଏଇ ଷାଠିଏ ବର୍ଷର ଜୀବନ ଓ ତା ଭିତରୁ ବତ୍ରିଶ ବର୍ଷ ବିବାହିତ ଜୀବନର ଅଭିଜ୍ଞତାରୁ ମୁଁ ଅନ୍ତତଃ ଯାହା ବୁଝିଛି ତାହା ହେଉଚି-ଅତୃପ୍ତ କାମନା ଜନିତ ସଞ୍ଚିତ ହେଉଥିବା କ୍ରୋଧକୁ ଖଲାସ କରିବା ଭଳି ଜଣେ ମାତ୍ର ବ୍ୟକ୍ତି ଭଗବାନ ଦେଇଛନ୍ତି । ସେ ହେଉଚି ସ୍ତ୍ରୀ ପାଇଁ ସ୍ୱାମୀ ଏବଂ ସ୍ୱାମୀ ପାଇଁ ସ୍ତ୍ରୀ । ପୁତ୍ର, କନ୍ୟା, ପୁତ୍ରବଧୂ, ଜାମାତା, ଭଣଜା, ଭାଣିଜୀ ଇତ୍ୟାଦି ଇତ୍ୟାଦି ଏପରିକି ଗୋଟାଏ ବୟସ ପରେ ବାପା ବୋଉ ବି ତୁମର ବକାବକି ସହ୍ୟ କରିବେ ନାହିଁ, ଅନ୍ୟ ପରେ କା କଥା ସବୁ ସମ୍ପର୍କ ଜଗିରଖି ଚଳିବା ଭଳି ସମ୍ପର୍କ । ଏତି ଜଗିରଖି ଚଳିବା ବଡ କଷ୍ଟକର କାରଣ ମନ ଉପରେ ଏହାଭାରି ଚାପ ସୃଷ୍ଟି କରେ । କେବଳ ଗୋଟିଏ ସମ୍ପର୍କିତ ବ୍ୟକ୍ତି ପାଖରେ



Digitized by srujanika@gmail.com

ମଣିଷ ସବୁଠାରୁ ଊଣା ଜଗିରଖି ଚଳେ, ତେଣୁ ବକାବକି କରିବା ପାଇଁ ଏବଂ ପରସ୍ପରର ଦୁର୍ବାର ଅହଂକୁ ସହ୍ୟ କରିବା ଭଳି ଗୋଟାଏ ଲୋକ ନିହାତି ଦରକାର, ନିଷ୍କଳ ଜୀବନ ଯାପନ କରିବା ପାଇଁ । କାରଣ କାମନାଜନିତ କ୍ରୋଧ ଖଲାସ କରିବା ଏବଂ ଖୋଲାଖୋଲି ଅହଂପ୍ରକାଶ ପାଇଁ ନିହାତି ଦରକାର ଅନ୍ତତଃ ଜଣେ ଲୋକ ନିଜର ସ୍ୱାସ୍ଥ୍ୟରକ୍ଷା ପାଇଁ । ସେଇ ବ୍ୟକ୍ତିଟି ହେଉଚି ସ୍ତ୍ରୀ ପାଇଁ ସ୍ୱାମୀ ଓ ସ୍ୱାମୀ ପାଇଁ ସ୍ତ୍ରୀ, ତେଣୁ ତାକୁ ଛାଡପତ୍ର ଭାରି ଖରାପ; କାରଣ ବାରମ୍ବାର ଏପରି ବୁଝାମଣା ସୃଷ୍ଟି କରିବା ଅସମ୍ଭବ । ଏ ବିଷୟରେ ଗୋଟିଏ ସୁନ୍ଦର କାହାଣୀ ଅଛି । ବହୁକାଳ ପୂର୍ବେ ଥରେ ଜଣେ ମୁସଲମାନ ଭଦ୍ରଲୋକ ନିଜ ଯୁବତୀ ସ୍ତ୍ରୀଙ୍କୁ ଛାଡି ହଜ୍ କରିବାକୁ ବାହାରିଲାବେଳେ ସ୍ତ୍ରୀଙ୍କୁ ଉପଦେଶ ଦେଲେ ଯେ ଯଦି ତୁମର ଯୌନକ୍ଷୁଧା ନିହାତି ଅସମ୍ଭାଳ ହୁଏ ତେବେ ପାଖଘରେ ଯେଉଁ ଜ୍ଞାନୀ ଭଦ୍ରବ୍ୟକ୍ତିଟି ଅଛନ୍ତି ତାଙ୍କ ସହିତ କ୍ଷୁଧା ମେଣ୍ଟାଇବ । ସେ ଯୁଗରେ ହଜିଯାଇ ଫେରିବା ଯେମିତି ସମୟ ସାପେକ୍ଷ ସେମିତି ବିପଜ୍ଜନକ ଥିଲା । ସ୍ତ୍ରୀ ବହୁକାଳ ନିଜକୁ ସଂଯତ ରଖିଲେ । କିନ୍ତୁ ଥରେ ତାଙ୍କର ଭାରି ଇଚ୍ଛା ହେଲା । ସେ ପଡିଶାଘର ଭଦ୍ର ଲୋକଙ୍କୁ ସ୍ୱାମୀଙ୍କ କଥା ଜଣାଇବେ ବୋଲି ଭାବୁଥାନ୍ତି । ସେ ଲକ୍ଷ୍ୟ କରିଥିଲେ ଯେ ଭଦ୍ରଲୋକ ଜଣକ ଧନୀ ହେଲେ ହେଁ ଗୋଟାଏ କଣାଦଦରା ଢ଼ାଳ ଧରି ବାହାରପାଣି ଯାନ୍ତି । ତାଙ୍କ ସହିତ ଆଳାପ କରିବା ସ୍ଥଳରେ ଯୁବତୀଟି ଏହାର କାରଣ ପଚାରିବାରୁ ସେ କହିଲେ, ଭଉଣୀ ବହୁବର୍ଷ ହେବ ଏହି ଢ଼ାଳ ସାମନାରେ ମୁଁ ନିଜକୁ ଉଲଗ୍ନକରି ଆସୁଚି, ପୁଣି ଗୋଟାଏ ନୂଆଢ଼ାଳ ସାମନାରେ ଉଲଗ୍ନ ହେବାକୁ ବାଧିବ, ଲାଜ ଲାଗିବ । ଯୁବତୀଟି ସ୍ୱାମୀଙ୍କ ଉପଦେଶର ମର୍ମ ବୁଝିପାରି ପୁଣି ନିଜକୁ ସଂଯତ କରିବାର ବଳ ପାଇଲେ । କିମ୍ବା ସେ ନିଜ ଭାଗ୍ୟକୁ ଦୋଷ ଦିଏ ବା ଜଣାଏ ଗାଏ, କୃପାନିଧି ହେ ତିଳେ ମୋ ପ୍ରତି କୃପା ନାହିଁକି । କିଛିଟା ହାଲୁକା ଲାଗେ । ମୋରି କଥା ଧରନ୍ତୁ । ମୁଁ ଯଦି ସେକ୍ରେଟେରିଏଟ୍ କିରାଣି ଚାକିରି ଛାଡି ହିନ୍ଦୋଳ ଗଡଜାତର ଡିଷ୍ଟ୍ରିକ୍ଟ ମାଜିଷ୍ଟ୍ରେଟ ଚାକିରି (ଦରମା ମାତ୍ର ପଚସ୍ତରି ଟଙ୍କା) ନେଇଥାନ୍ତି ହଉ ପଛେ ଅତି କ୍ଷୁଦ୍ର ଏକ ଗଡ଼ଜାତର ଅନିଶ୍ଚିତ ଚାକିରି ଓ ତା'ର ଦରମା ମୋର ସେତେବେଳର କିରାଣି ଦରମାଠୁ ବି ଊଣା, ତାହେଲେ କମିଶନର ହୋଇ ଅବସର ନେଇଥାନ୍ତି କାରଣ ତାହାର କେଇମାସ ପରେ ଗଡ଼ଜାତ ମିଶ୍ରଣ ହେବାରୁ ମୁଁ ଅନ୍ତତଃ ଏସ୍.ଡି.ଓ. ଭାବରେ ସରକାରଙ୍କ ଦ୍ୱାରା ଗୃହୀତ ହୋଇଥାନ୍ତି ଇତ୍ୟାଦି ଇତ୍ୟାଦି ।



Digitized by srujanika@gmail.com

ଏତେ କଥା କହିବାର ଉଦ୍ଦେଶ୍ୟ ହେଉଚି ଏଇୟା ଯେ ମୋର ଗୋଟିଏ କ୍ଷୁଦ୍ର କାମନା ବିଷୟରେ କହିବି ଯାହା ଶୁଣିଲେ ଆପଣ ନିଶ୍ଚେ କହିବେ, ମଲା ଯା ଖୋଳ ପର୍ବତ ମାର ମୂଷା । ଦେଖ ହୋ, ଷାଠିଏ ବର୍ଷର ବୁଢ଼ା ହୋଇ ଏତେ ପାଠ ପଢ଼ି ଏତେ କଥା ଜାଣି ବତ୍ରିଶ ବର୍ଷ ଆଗେ ବାହାବେଳେ ବ୍ୟାଣ୍ଡ୍ ପାର୍ଟି ବାଜା ବାଜି ନଥିଲା ଯେ ତାପାଇଁ ଦୁଃଖ ଯାଇନାହିଁ । ଦେଖୁଚି ଭାରି ଛୋଟମନ ଏଙ୍କର । ଅନ୍ୟ ବେଳକୁ ସମସ୍ତେ ତାକୁ ଗୋଟାଏ ବଡ ଆଦର୍ଶରେ ପକେଇ ବିଚାର କରନ୍ତି । କିନ୍ତୁ ନିଜ ବେଳକୁ ଫା ଫା ।

କାଳେ ଆପଣ ଏମିତି କିଛି କହି ମୋତେ ଛି ଛାକାର କରିବେ ସେଇଥିପାଇଁ ସାଧାରଣ ଲୋକର କାମନା ବିଷୟରେ ଏତେକଥା କହିଲି । ଏଇ ଛି ଛି କାରକୁ ମଣିଷର ଭାରି ଡର । ପ୍ରାଣପଣେ ସେ ଲାଗିଥାଏ ଅନ୍ୟ ଆଖିରେ ମହତ୍ ଦିଶିବାକୁ । ତା ପାଇଁ କେତେ ଛଳନା, କେତେ ସଫେଇ, କେତେ ଘୋଡାଘୋଡି, କେତେ ମିଥ୍ୟାଚରଣ । ପୁଣି ବି କେତେ ଦୁଃସାହସିକ କାମ, କେତେ ଭଲପଣିଆ, କେତେ ଦାନ, କେତେ ତ୍ୟାଗ, କେତେ ସେବା ।

ବଞ୍ଚି ରହିବାର ଯେଉଁ ମୌଳିକ ଜୈବ ପ୍ରବୃତ୍ତି ଅଛି ସେଇଥିରୁ କଅଣ ନିଜେ କେମିତି ଟିକେ ଭଲ ଖାଇବ, ଟିକେ ସୁଖରେ ରହିବ ଏଇ ଇଚ୍ଛା ଜାତ ? ତା ହେଲେ ବି କ୍ଷତି ହୁଅନ୍ତା ନାହିଁ । ଅନ୍ୟମାନଙ୍କ ଉପରେ ଆଧିପତ୍ୟ ବିସ୍ତାର କରିବା, ଅନ୍ୟମାନଙ୍କ ସ୍ନେହ, ଶ୍ରଦ୍ଧା, ସମ୍ମାନ, ଭୟ ଆଦିଦ୍ୱାରା ଆନୁଗତ୍ୟ ଲାଭ କରିବା, ଅନ୍ୟମାନଙ୍କଠାରୁ ବଡ଼ ହେବା ଏ ଇଚ୍ଛାମାନ ସେଇସବୁ ଗୋଳମାଳ ସୃଷ୍ଟି କରେ । ଏସବୁ ବି କଅଣ ସେଇ ବଞ୍ଚି ରହିବାର ସାଧାରଣ ଜୈବ ପ୍ରବୃତ୍ତିରୁ ଜାତ ? ଏସବୁର ବିପରୀତ ଇଚ୍ଛାମାନ (ମୁଁ କେହି ନୁହେଁ, ମୁଁ କିଛି ନୁହେଁ ଭାବମାନ) ବି ତା ହେଲେ ନିଶ୍ଚୟ ଜୈବ ପ୍ରବୃତ୍ତି ? ମନେହୁଏ ଏ ସବୁକୁ ନୈତିକ ଦିଗରୁ ବିଚାର କରି ଏମାନଙ୍କୁ ଘୃଣ୍ୟ ନ କହି ଜୀବ ବିଜ୍ଞାନ (biology) ଦୃଷ୍ଟିରୁ ବିଚାର କଲେ ବୋଧହୁଏ ଏସବୁକୁ ସାମୁହିକ ମଙ୍ଗଳ ପାଇଁ ଚାଳିତ କରିବାର ଭଲ ବାଟ ମିଳିଯାନ୍ତା । ଗୀତା ଅବଶ୍ୟ ଏ ଦିଗରୁ ବିଚାର କରିବାର ଚେଷ୍ଟା କରି କହିଚି- ପ୍ରକୃତିଂ ଯାନ୍ତି ଭୂତାନି ନିଗ୍ରହ କିମ୍ କରିଷ୍ୟତି... । କିନ୍ତୁ ଏ ବିଷୟରେ ବୋଧହୁଏ ଆହୁରି ଅଧିକ ବୈଜ୍ଞାନିକ ଗବେଷଣା ଦରକାର ।

ତା ଛଡା ଆପଣ ତ 'ମାଷ୍ଟ୍ରେ'କୁ ଜାଣି ନାହାନ୍ତି କି ତାଙ୍କ ସହିତ ମୋର ସମ୍ପର୍କ କଥା ଜାଣି ନାହାନ୍ତି କି ତାଙ୍କ ବ୍ୟାଣ୍ଡ ପାର୍ଟି କଥା ଜାଣି ନାହାନ୍ତି । କାହିଁ ପଇଁତିରିଶ



Digitized by srujanika@gmail.com

ବର୍ଷ ଆଗ କଥା ସେ । 'ମାଷ୍ଟର' କହିଥିଲେ, ଅରେ ଦାଦା, ତୁମ୍‌ହାଗ ସାଦିମେ ହାମ୍ ହମାରା ପାର୍ଟି ଲେଇଯିବୋ । ସ୍ରିଫ୍ ଯାନେ ଆନେକା ଖର୍ଚ୍ଚାଙ୍ଗ ଦେବୋ ଯବ୍ ତୁମ୍‌ହାରା ବିହାତ ମେ ସାଦି ହୋବୋ । କଟକ୍‌ମେ ହୋବୋ ତ କୁଛ୍‌ଭି ନହିଁ ଦିବୋ । ଦିଲ୍ ଭର୍‌କେ ସବ୍ ରାଗ୍ ବଜାଇବୋ । ଖୁବ୍ ମୈଫିଲ୍ କରିବୋ ।

ମୋ ବାହା ମୋ ଗାଁରେ ହୋଇଥିଲା । କନ୍ୟାଘର ଆମ ଘରଠୁ ଛଅ ଘର ପରେ । ଦୁହେଁହିଁ ନିମ୍ନ ମଧ୍ୟବିତ୍ତ । ଅତଏବ କଟକରେ କରିବା ପ୍ରଶ୍ନହିଁ ନ ଥିଲା । ଖଣ୍ଡେ ଜମି ବିକ୍ରି କରି ବାହାଘର ଖରଚ ତୁଲାଇବାକୁ ପଡିଥିଲା । ମୁଁ ସେତେବେଳେ ଚାଳିଶ ଟଙ୍କାର କିରାଣି । ମାତ୍ର ତିନି ବର୍ଷ ଆଗେ ବାପାଙ୍କ ଦେହାନ୍ତ ହୋଇଥାଏ । ମୋ ବାହାଘରେ ଦୁଇ ପକ୍ଷର କାହାରି ସେମିତି ଉତ୍ସାହ ବା ଆଗ୍ରହ ବି ନଥାଏ । ଏମିତି ବର ପକ୍ଷରୁ ଯେଉଁ ଶାଢ଼ି ଲଜ୍ଜ୍ୟାବସ୍ତ୍ର କନ୍ୟାକୁ ଅବଶ୍ୟ ଦେବା କଥା ଏବଂ କନ୍ୟା ଯାହାକୁ ସାରା ଜୀବନ ସାଇତି ରଖିଥାଏ ତାକୁ ଅନ୍ୟ ଜଣକ ପାଖରୁ ଧାର ଆଣି କନ୍ୟାକୁ ଦିଆଯାଇ ବାହା ପରେ ତାକୁ ଫେରାଇ ଦେବା କଥା ସ୍ଥିର ହେଲା ।

ଏଥିରେ 'ମାଷ୍ଟର'ଙ୍କ ବ୍ୟାଣ୍ଡ୍ ପାର୍ଟିକୁ ଗାଁକୁ ନେବା କଥା କହିବ କେଉଁ ବେହିୟା । ଗାଁର ସିନ୍ଧୁ ମଳିକହିଁ ବାଜା ବଜାଇଲା । ଦୁଇଟା ଢୋଲ, ଗୋଟାଏ ମହୁରୀ, ହଳେ ଗିନି । ଦଳଖାଇ ଦଳଟିଏ । କୌଣସି ସ୍ପୃହା ନାହିଁ ଯେମିତି ବଜାଇବାକୁ । ସେଥିରେ ପୁଣି ପ୍ରତ୍ୟେକ ସ୍ୱାଧୀନ ଭାବରେ ବଜାଇ ଥାନ୍ତି, କାହାରି ସହିତ କାହାରି କୌଣସି ମେଳ ନଥାଏ । ଏମିତି ତ ସେମାନେ ସ୍ୱାଧୀନ ଭାବେ ବଜାନ୍ତି, ତା ଉପରେ ପ୍ରଚୁର ତାଡିପାନ ସେମାନଙ୍କୁ ଆହୁରି ସ୍ୱାଧୀନ କରି ଦେଇଥାଏ । ମହୁରିଆ ବେସୁରା ବଜାଉ ଥାଏ ଜେମାଦେଇ କାନ୍ଧରୁ ପ୍ରଥମ ଯୋଡ଼ିଏ ଧାଡି ଗୁରାଇ ତୁରାଇ । ଢୋଲିଆ ବେତାଲୁଆ ପ୍ରାଣପଣେ ଢ଼ାଇଁ ଢ଼ାଇଁ ପିଟି ଚାଲିଥାଏ ଢ଼ୋଲକୁ । ଗିନି ଧରିଥିବା ପିଲାଟି ଏଣେତେଣେ ଚାହୁଁଥାଏ ଓ ମନେ ପଡିଗଲେ କେବେ କେମିତି ବଜେଇ ଦେଉଥାଏ ।

ଖେତୁ ଭାଇ ଶାସ୍ତ୍ରୀୟ ସଙ୍ଗୀତ ପାଇଁ ସର୍ବସ୍ୱତ୍ୟାଗୀ ସଦାବେଳେ ନୂତନ ନୂତନ ତାନ୍ ବିଷୟରେ ଚିନ୍ତା କରୁଥାନ୍ତି ଓ ତାନ୍ ସହିତ ଭାବର ସମ୍ପର୍କ ନିରୂପଣ କରୁଥାନ୍ତି । ଥରେ ତ ସାଇକଲ ଚଳାଉ ଚଳାଉ ଦୁଇହାତ ଟେକି ଗୋଟାଏ ତାନ୍ ଛାଡି ଦେଲେ। ସେ ପଡିଯାଇ ଖଣ୍ଡିଆ ଖାବରା । ଏଇ ଖେତୁଭାଇ ଓ ଧଡ଼ିଭାଇ ସହିତ ଅଳ୍ପ ବୟସରୁ ସମ୍ପର୍କରେ ଆସି ମୁଁ ମଧ୍ୟ ହୋଇଯାଇଥିଲି ଶାସ୍ତ୍ରୀୟ ସଙ୍ଗୀତପ୍ରିୟ ।



Digitized by srujanika@gmail.com

ସେ ବିଷୟରେ କିଛି ଜାଣି ନଥିଲେ ବି ଶାସ୍ତ୍ରୀୟ ସଙ୍ଗୀତ ଅନୁଭବ କରିବା କଥା, ବୁଝିବା କଥା ନୁହେଁ । କବିତା ବିଷୟରେ ମଧ୍ୟ କୁହା ହୋଇଚି ଯେ ତାକୁଇ ଭଲ କବିତା ବୋଲି ଜାଣିବ ଯାହାକୁ ବୁଝିବା ଆଗରୁ ଅନୁଭବ କରାଯାଏ । ଯାହାକୁ ବୁଝିବା ପରେ ଅନୁଭବ କରାଯାଏ, ବୋଇଲେ ଯାହାର ଅନୁଭବ ବୁଝିବା ଉପରେ ନିର୍ଭର କରେ ଓ ବୁଝିଥିବା କଥାକୁ ଅନୁସରଣ କରେ ତାହା ମୂର୍ତ୍ତ, ଇନ୍ଦ୍ରିୟନିଷ୍ଠ । ଯାହାକୁ ଅନୁଭବ କରିବା ପରେ ବୁଝାଯାଏ, ବୋଇଲେ ଯାହାକୁ ବୁଝିବା ଅନୁଭବ ଉପରେ ନିର୍ଭର କରେ ଓ ଅନୁଭବକୁ ଅନୁସରଣ କରେ ତାହା ଅମୂର୍ତ୍ତ, ଇନ୍ଦ୍ରିୟାତୀତ ।

ଖେତୁଭାଇ ଓ ଧଡିଭାଇ ସହିତ ମିଶି ଶାସ୍ତ୍ରୀୟ ସଙ୍ଗୀତ ପ୍ରତି କାନ ଓ ମନ ତିଆରି ହୋଇଯାଇଥାଏ । 'ଉତ୍କଳ ସଙ୍ଗୀତ ସମାଜ'ରେ କିଛି ଦିନ ତବଲା ବାଦନ ବି ଶିଖିଥିଲି । ତେଣୁ ବେତାଲୁଆ ଓ ବେସୁରା ବାଜା ଭାରି ପୀଡା ଦେଉଥାଏ । ସେଥିରେ ପୁଣି ବସିଥାଏ ଗୋଟାଏ କେଉଁ ମାନ୍ଧାତା ଅମଳର ଖୋଲା ପାଲିଙ୍କି ଉପରେ ଯାହାର ବହନ ଦଣ୍ଡଟି ମଝିଆ ମଝି ଥିବାରୁ ମୁଣ୍ଡ ଝୁଙ୍କାଇ ବା ତେରେଛାଇ ବସିବାକୁ ପଡେ । ସେ ଦଣ୍ଡରୁ ଝୁଲୁଥିବା ମଇଳା ଦରଛିଣ୍ଡା ଝୁମ୍ପାମାନ ନାକ ସାମନାରେ ଲଡର ବଡର ହୋଇ ଦୁର୍ଗନ୍ଧ ବିକିରଣ କରୁଥାନ୍ତି । ମୁଁ ପୁଣି ପିଲାବେଳୁ ଅତର ପ୍ରିୟ । ସେଥିରେ ମୁଣ୍ଡରେ ନାଇଥାଏ ଗାଁ ମାଳୀ ତିଆରି ନାନା ପ୍ରକାର ରଙ୍ଗୀନ କାଗଜର ଗୋଟାଏ ଗୋଟାଏ ଲମ୍ୱାଳିଆ ଗଧ ଟୋପି ଭଳି ମକୁଟଟାଏ ଯାହାକୁ ଦେଖିଲେ କାନ୍ଦ ମାଡୁଥାଏ । ସେଇ ମୁକୁଟକୁ ପୁଣି ପିନ୍ଧିବାକୁ ପଡିବ ସବୁବେଳେ, ଅନ୍ତତଃ ହାତଗଣ୍ଠି ଶେଷ ହେବାଯାଏ । ମନରେ ସ୍ଫୂର୍ତ୍ତି ନାହିଁ, ସାଜସଜ୍ଜା ବେଳକୁ ସବୁ ମନା ଅଥଚ ନିୟମ ବେଳକୁ କଡ଼ାକଡ଼ି, ଏହା ବଡ଼ ପୀଡାଦାୟକ (ଅବଶ୍ୟ ଖାଲି ସାଜସଜ୍ଜା ଅଥଚ ନିୟମକୁ ଆଖ୍ଯା ହେଉଚି ବ୍ୟଭିଚାର) । ମୋର ବନ୍ଧୁମାନେ ମୋ ପାଖେ ପାଖେ ଚାଲିଥାନ୍ତି । ଲଜ୍ଜାରେ କାନ୍ଦ ମାଡୁଥାଏ । ମନେ ପଡି ଯାଉଥାଏ 'ମାଷ୍ଟାର'ଙ୍କ, ଦୁଶି ଯାଇଥାଏ ମାଷ୍ଟାର ବ୍ୟାଣ୍ଡ ପାର୍ଟି, 'ମାଷ୍ଟାର'ଙ୍କୁ ଘେରି ଚାଲିଛନ୍ତି, ଶୁଭି ଯାଉଥାଏ 'ମାଷ୍ଟାର'ଙ୍କ କ୍ଲାରେଓନେଟରେ ନାନା ରାଗରାଗିଣୀ, ବିଶେଷତଃ ସେଇ ଗୀତଟି- 'ବାବୁଲା ମେରା ନୈୟାର ଛୁଟ ଯାଏ । ଚାରୋ କାହାର ମିଲୋ, ଡୁରୀୟା ମଙ୍ଗାଓ, ଆପ୍‌ନା ବେଗାନା ଛୁଟ ଯାଏ ।'

ମାତ୍ର ସେଇ ଦୁଇ ଧାଡିର ଗୀତ । କଥା ବସ୍ତୁ ଅତି ସରଳ । ନବବିବାହିତା କନ୍ୟା ଶାଶୂଘରକୁ ଯିବାବେଳେ କହୁଚି- ମୁଁ ତ ବାପ ଘର ଛାଡିଯାଉଛି । ମୋର



Digitized by srujanika@gmail.com

ସବୁ ସୁଖ ସ୍ୱାଧୀନତା ଚିରଦିନ ପାଇଁ ଗଲା । ଏତେ ବାଜା, ଜିନିଷପତ୍ର ଜାକଜମକର କି ଦରକାର । ଗୋଟିଏ ସାନ ଡୋଲି ଓ ଚାରିଜଣ ବାହକ ଆଣ ସେଇଥିରେ ମୁଁ ଯିବି, ଆଉ କିଛିର ଦରକାର ନାହିଁ ।

କିନ୍ତୁ ଏହି ଗୀତଟି ଶାସ୍ତ୍ରୀୟ ସଙ୍ଗୀତ ରାଜ୍ୟରେ ଅତିପ୍ରିୟ, ସବୁଠୁ ବେଶୀ ପରିଚିତ । ସାଧାରଣ ଲୋକେ ବି ବୋଲନ୍ତି । ଏହାର ରାଗ ଭୈରବୀ । ଭୈରବୀ ସକାଳ ବେଳାର ରାଗ ଯାହା ପଦ୍ମ ମୁକୁଳିତ ହେବାର ବେଦନା ସୁଚାଏ । ପ୍ରାତଃକାଳୀନ ରାଗ ଗୋଷ୍ଠୀରେ ଅନେକରାଗ ଅଛି-ଭୈରବୀ, ଭୈରବ, ଭୈରୋଁ, ଗୁନ୍‌କେଲୀ, ଲଜ୍ଜିତ, ଲଲିତ ପଞ୍ଚମୁ ଆହିରି ଭୈରବ ଭାଙ୍କାର ଇତ୍ୟାଦି । ଭିନ୍ନ ଭିନ୍ନ ରାଗ ମୁକୁଳିତ ହେଉଥିବା ପଦ୍ମର ଭିନ୍ନ ଭିନ୍ନ ଅବସ୍ଥାର ଭାବ ସୃଷ୍ଟି ପରି ମନେ ହୁଏ । ଭୈରବୀ ରାଗରେ ଯେଉଁ ଭାବ ସୃଷ୍ଟି ହୁଏ ତାହା ମନେ ହୁଏ ଏହିପରି - ପୂର୍ବଦିଗ ଲାଲ ପଡିଲାଣି, ସୂର୍ଯ୍ୟ ଆଉ ଅଳ୍ପ ସମୟ ପରେ ଦେଖାଦେବେ । ପଦ୍ମକଢ଼ିଟି ପ୍ରାୟ ପାଣି ଉପର ପର୍ଯ୍ୟନ୍ତ ଉଠି ଆସିଲାଣି ଆଉ ଅଳ୍ପକେ ପାଣି ଉପରକୁ ବାହାରି ସୂର୍ଯ୍ୟଙ୍କୁ ଦେଖିବ । ସାମାନ୍ୟ ବିଳମ୍ବ ତାକୁ ଅଧୀର କରୁଛି । ଅଥଚ ପଙ୍କଶଯ୍ୟା ଯେମିତି ତାକୁ ତଥାପି ଛାଡିନାହିଁ, ତଥାପି ମନ ତା'ପାଇଁ ବ୍ୟାକୁଳ ହେଉଚି । ଭାରି ବିକଳ ହେଉଚି ସେ । ଭାଙ୍କାର ରାଗରେ ଭାବ ହୁଏ ଯେମିତି ପୂର୍ବଦିଗ ଅନ୍ଧକାର ପାତଳ ହୋଇ ଆସିଲାଣି, ପଦ୍ମକଢ଼ିଟି (ସେ ଏବେ ନିଦାବୁଜା) ଶର୍ଯ୍ୟାରୁ ଉଠି ଭିଡ଼ିମୋଡ଼ି ହୋଇ ଦେହର ଜଡ଼ତା ନାଶ କରୁଛି, ନିଦ ଭାଙ୍ଗିନାହିଁ, ଆଖି ମୁଦା, ସେ ଯେ ପ୍ରସ୍ଫୁଟିତ ହେବାକୁ ଯାଉଛି ତାକୁ ଏ କଥା ଜଣା ନଥିଲେହେଁ ତା ଅଜାଣତରେ ତାକୁ ସେ କଥା ସ୍ପର୍ଶ କଲାଣି ।

ଉକ୍ତ ଗୀତଟିକୁ ଗାନ୍ କରାଯାଏ ଠୁଙ୍ଗରି (style) ରେ । ଠୁଙ୍ଗରିକୁ କୁହାଯାଏ ରୀତି ଅର୍ଦ୍ଧ ଶାସ୍ତ୍ରୀୟ । ଖାଣ୍ଟି ଶାସ୍ତ୍ରୀୟ ହେଉଛନ୍ତି ଧ୍ରୁପଦ, ଧାମାର ଓ ଖେୟାଲ । ଧ୍ରୁପଦ ଓ ଧାମାର ହେଉଛନ୍ତି ଅମୂର୍ତ୍ତ (abstract) ଶାସ୍ତ୍ରୀୟ ସଙ୍ଗୀତଜ୍ଞମାନଙ୍କ ଭିତରେ ମଧ୍ୟ ଖୁବ୍ ଅଳ୍ପ ଏହାର ମର୍ଯ୍ୟାଦା ବର୍ତ୍ତମାନ ବୁଝନ୍ତି । ସାଧାରଣ ଲୋକଙ୍କ ପକ୍ଷରେ ଏହା ଏକଦମ ନୀରସ । ଏହାର ସ୍ୱର ବିସ୍ତାରରେ କୌଣସି ପ୍ରକାର ଆଳଙ୍କାରିକତା ନିଷିଦ୍ଧ । ସ୍ୱର ସବୁର ସିଧା ସଳଖ ବ୍ୟବହାର, ତାନ୍ ଆଦି କିଛିନାହିଁ । ଅବଶ୍ୟ ବୋଲ ଥାଟ ଗମକ ଲୟକାରୀ ଏ ସବୁ ଅଛି, କିନ୍ତୁ ବଡ ଓଜନିଆ ତାନ୍‌କାରୀ ।

ତାନ୍‌ସେନ୍ ଥିଲେ ଧ୍ରୁପଦିଆ । ସେ ଅନେକ ନୂତନ ନୂତନ ରାଗ ଦେଇ ଯାଇଛନ୍ତି । ସେଗୁଡିକ ତାଙ୍କ ନାମରେ ନାମିତ-ମିଆଁ କି ମଲ୍ଲାର, ମିଆଁକି ଟୋଡି,



Digitized by srujanika@gmail.com

ଇତ୍ୟାଦି । ସଙ୍ଗୀତରେ ହରିଦାସ ବାବାଜୀଙ୍କ ଶିଷ୍ୟ ରାମତନୁ ପାଣ୍ଡେଙ୍କ ପ୍ରତିଭା ଦେଖି ଗୁଣଗ୍ରାହୀ ସମ୍ରାଟ ଆକବର ତାଙ୍କୁ ନିଜ ଦରବାରରେ ରଖିନେଲେ । ପରେ ରାମତନୁ ହେଲେ ମିଆଁ ତାନସେନ । କିମ୍ବଦନ୍ତୀ (ଇତିହାସଠାରୁ ବେଶୀ ପ୍ରଭାବଶାଳୀ ହେଉଚି କିମ୍ବଦନ୍ତୀ) ଅଛି ଥରେ ଆକବର ତାନସେନଙ୍କୁ କହିଲେ- ତୁମେତ ଏତେ ବଡ ଗାୟକ । ତୁମ ଓସ୍ତାଦ କେତେବଡ ଗାୟକ ନ ହୋଇଥିବେ । ଥରେ ତାଙ୍କ ଗାନ ମୋତେ ଶୁଣାଅ ।

ତାନସେନ କହିଲେ- ସାହନସାହ, ସେ ତ କୌଣସି ମଣିଷ ସାମନାରେ ଗାଆନ୍ତି ନାହିଁ, ଭଗବାନଙ୍କ ସାମନାରେ ଗାଆନ୍ତି । କେହି ସାଧୁସନ୍ଥ ଗଲେ କେବେ କେବେ ଗାଆନ୍ତି ।

ଆକବର ଜିଦ୍ ଧରିବାରୁ କଥା ହେଲା ଆକବର ସାଧୁଙ୍କ ବେଶରେ ଯିବେ ହରିଦାସଙ୍କ ନିର୍ଜନ କୁଟୀରକୁ । ସାଥିରେ ଥିବେ କେବଳ ତାନସେନ । ଦିନେ ଦୁହେଁ ଗଲେ । ହରିଦାସ ସେତେବେଳେ ଭଗବାନଙ୍କୁ ତାଙ୍କ ଗାନ ଶୁଣାଉଥିଲେ । ଆକବର ସେ ସଙ୍ଗୀତ ଶୁଣି ମୁଗ୍ଧ ହୋଇଗଲେ । ଫେରିବା ପରେ ଆକବର ତାନସେନଙ୍କୁ କହିଲେ- ତାନସେନ, ତୁମେ ତ ମୋ ଦରବାରରେ ଏପରି ଗାଅ ନାହିଁ ।

ତାନସେନ କହିଲେ – ସାହାନ୍‌ସାହ, ମୋ ଗୁରୁଜୀ ଗାନ ଶୁଣାନ୍ତି ଦିନ୍‌ଦୁନିଆର ମାଲିକ, ସବୁ ସମ୍ରାଟଙ୍କ ସମ୍ରାଟ ଭଗବାନଙ୍କୁ । ଆଉ ମୁଁ ଶୁଣାଏ ଜଣେ ମଣିଷକୁ । ମୋ କଣ୍ଠରୁ ଏପରି ସଙ୍ଗୀତ କିପରି ବାହାରିବ ।

ତାନସେନ ଅନେକ ଗୀତ ମଧ୍ୟ ରଚନା କରି ଯାଇଛନ୍ତି । ସେମାନଙ୍କ ମଧ୍ୟରେ ଇମନ୍ ରାଗରେ ଏଇ ଧ୍ରୁପଦଟି ପ୍ରସିଦ୍ଧ-

ଚରଣନ ସୁଖ ଚିରଞ୍ଜୀବ ମାଧୋ
ଦଲନ ସୁଖ ରାଜ କରୋ ।
ବଂଶୀ ଅଧର ରାଜତ ରାଜରାଜ
ଧର୍ମ ମୁଖାଟ ଛତ୍ର ବଡ଼ୋ ।
ଲାଖ ମୁରତ ନାମ ଲେତ
କହେ ମିଆଁ ତାନ ସେନ
ତନମନଧନ ସୁଖ ପାୟୋ ରାଜରାଜ ।



Digitized by srujanika@gmail.com

ଆଉରଙ୍ଗଜେବ୍‌ଙ୍କ (କୋରାନରେ ସଙ୍ଗୀତ ନିଷିଦ୍ଧ ଥିବାରୁ ସେ ଥିଲେ ଘୋର ସଙ୍ଗୀତ ବିରୋଧୀ) ପରେ ମୋଗଲ ସାମ୍ରାଜ୍ୟ ଓ ବଂଶ ଛିନ୍ନଭିନ୍ନ ହୋଇଗଲା ସେତେବେଳେ ମୁହମ୍ମଦ ସାହ (୧୭୧୯-୧୭୪୮) ନାମରେ ଜଣେ ବଂଶଧର ଦିଲ୍ଲୀର ସମ୍ରାଟ ଥିଲେ । ସେ ଥିଲେ ଅତ୍ୟନ୍ତ ବିଳାସୀ, ମଦ୍ୟପ ଓ ସଙ୍ଗୀତପ୍ରିୟ । ସେଇ ହେତୁରୁ ସେ ମହମ୍ମଦ ସାହ 'ରଙ୍ଗିଲା' ନାମରେ ପ୍ରସିଦ୍ଧ । ଏଙ୍କ ସମୟରେ ୧୭୪୧ରେ ପାରସ୍ୟର ନାଦିର ସାହ ଦିଲ୍ଲୀ ଆକ୍ରମଣ କରି ଯେଉଁ ନାରକୀୟ କାଣ୍ଡ ଘଟାଇଥିଲେ ତା ପଢ଼ିଲେ ଆତଙ୍କ ଜାତ ହୁଏ । ସେ ହିଁ ବିଖ୍ୟାତ କୋହିନୂର ହୀରା ନେଇ ଯାଇଥିଲେ । ମହମ୍ମଦ ସାହ ଇତିହାସରେ ଏକ କଳଙ୍କିତ ସମ୍ରାଟ । କିନ୍ତୁ ସଙ୍ଗୀତ ରାଜ୍ୟରେ ସେ ଅମର । ଆକବର ଯେମିତି ତାନସେନ ପାଇଁ ପ୍ରସିଦ୍ଧ, ମୁହମ୍ମଦ ସାହ ସେମିତି ଦୁଇ ପ୍ରସିଦ୍ଧ ସଙ୍ଗୀତଜ୍ଞ ଭ୍ରାତା 'ସଦରଙ୍ଗ୍' ଓ 'ଅଦାରଙ୍ଗ୍' ପାଇଁ ପ୍ରସିଦ୍ଧ । ଏ ଦୁହେଁ ଥିଲେ ଖେୟାଲିଆ । ଅବଶ୍ୟ ଖେୟାଲର ପ୍ରବର୍ତ୍ତକ ଥିଲେ ସାତଶହ ବର୍ଷ ପୂର୍ବେ ଆଲାଉଦ୍ଦିନ ଖିଲ୍‌ଜୀଙ୍କ ସଭାସଦ ଅମିର ଖସ୍ରୁ । ଅସାଧାରଣ ପ୍ରତିଭାବାନ ଲୋକ ସେ ଥିଲେ । ଏକାଧାରରେ ସେ ସୈନିକ, କବି, ସଙ୍ଗୀତଜ୍ଞ, ରାଜନୀତିଜ୍ଞ, ଶାସନନୀତିଜ୍ଞ, ସବୁଥିଲେ । ତାଙ୍କୁ କୁହାଯାଏ ଭାରତର ଲିଓନାର୍ଦୋ ଦା ଭିଞ୍ଚୁ । 'ସଦାରଙ୍ଗ୍' ଅନେକ ଗୀତ ମଧ ରଚନା କରି ଯାଇଛନ୍ତି ଏବଂ ପ୍ରତ୍ୟେକର ଭଣିତା ହେଉଚି 'ମହମ୍ମଦ ସାହ ରଙ୍ଗିଲା' ବା ସଦାରଙ୍ଗ ମୁହମ୍ମଦ ସାହ' । ତାଙ୍କର ଗୋଟିଏ ଖେୟାଲ ଗାନ (ରାଗ କାମୋଦ) ।

କାରେ ଯାନେ ନ ଦୁଙ୍ଗି  
ଏହି ମାୟି ଆପନେ ବାଲମ୍‌କୋ ।  
ନୟନନମେ କର ରଖୁଁ  
ପଲଖ ନ ମୁଦମୁଦ ।  
ଚମକ ବିଜରି ମେହ ବରଷେ  
ସଦାରଙ୍ଗିଲେ ମୁହମ୍ମଦ ସାହ  
ବରଷେ ମେହା ବୁଁ ଦ ବୁଁ ଦ ।

(ମିଆଁ ତାନସେନଙ୍କ ଗୀତରେ ଯେଉଁ ସାହିତ୍ୟିକ ମୂଲ୍ୟ ଅଛି ଏଥିରେ ତାହା ନାହିଁ) । ତାଙ୍କ ଗୀତ ଗୁଡ଼ିକର ଏବେ ବି ବୋଲା ହୁଏ । ରାଜନୀତିକ ଇତିହାସରେ କୁଖ୍ୟାତ ଏବଂ ସଙ୍ଗୀତ ଇତିହାସରେ ପ୍ରଖ୍ୟାତ ମୁହମ୍ମଦ ସାହଙ୍କ ଦରବାରରେ



Digitized by srujanika@gmail.com

ଏହିପରି ସଙ୍ଗୀତର ଏକ ନୂତନ 'ଘରାନା' (school) ସୃଷ୍ଟି ହେଲା ଯାହାର ନାମ ହେଲା 'ରଙ୍ଗିଲା ଘରାନା' ।

ଆଧୁନିକ ଯୁଗରେ ସେଇ 'ରଙ୍ଗିଲା ଘରନା'ର ପ୍ରସିଦ୍ଧ ଗାୟକ ହେଉଛନ୍ତି ଆଫ୍‌ତାବ୍ ଏ ମୌସିକି (ସଙ୍ଗୀତ ସୂର୍ଯ୍ୟ) ଉସ୍ତାଦ ଫୈୟାଜ ଖାଁ, ଏହାଙ୍କ ବିଷୟରେ କିଛି ବିସ୍ତାରିତ ଭାବରେ ମୁଁ ମୋର 'ଏଣ୍ଣୁଷ୍ଟ ତେଣ୍ଣୁଷ୍ଟ' ବହିରେ କହିଚି) । ସେ ଥିଲେ ଧାମାରିଆ । କିନ୍ତୁ ଖେୟାଲ, ଠୁମରି, ଦାଦ୍‌ରା, ଗଜଲ୍ ବି ସେ ଗାଇଛନ୍ତି ସମାନ ସ୍ତରରେ । ତାନସେନଙ୍କ ପରେ ଏତେ ବଡ ପ୍ରତିଭାବାନ ଗାୟକ ବୋଧହୁଏ ଆଜି ପର୍ଯ୍ୟନ୍ତ ଜନ୍ମି ନାହାନ୍ତି ।

ମଝିରେ ଧ୍ରୁପଦ ଧାମାରର ଆଦର କମି ଯାଇଥିଲା । କିନ୍ତୁ ବର୍ତ୍ତମାନ ଧୀରେ ଧୀରେ ତାହା ଆଦର ପାଉଛି । ଲିଖିତ ସାହିତ୍ୟ ଯେମିତି ଅମୂର୍ତ୍ତ ଆଡକୁ ଗତି କରୁଛି ସଙ୍ଗୀତ (ବ୍ୟାପକ ଅର୍ଥରେ ସଙ୍ଗୀତ, ନୃତ୍ୟ, ଚିତ୍ରାଙ୍କନ, ଭାସ୍କର୍ଯ୍ୟ ମଧ ସାହିତ୍ୟ) ମଧ ସେମିତି ପୁଣି ଅମୂର୍ତ୍ତ ଆଡକୁ ଯାଉଛି । ଚିତ୍ରାଙ୍କନ ତ ପୁରାପୁରି ଅମୂର୍ତ୍ତ ହୋଇସାରିଲାଣି । ଭାସ୍କର୍ଯ୍ୟ ମଧ ।

ଠୁମରିକୁ ଅର୍ଦ୍ଧ ଶାସ୍ତ୍ରୀୟ କୁହାଯିବାର କାରଣ ହେଉଚି ଏଥିରେ ଇନ୍ଦ୍ରିୟ ଆବେଦନ ଓ ଭାବପ୍ରବଣତା ଟିକିଏ ବେଶୀ । ଖେୟାଲରେ ମଧ ଅଛି, କିନ୍ତୁ ଅନେକ ଊଣା । ଦାଦରା ଓ ଗଜଲ୍‌ରେ ଖୁବ୍ ବେଶୀ । ଏମାନେ ଭାଷା ଉପରେ ଅନେକଟା ନିର୍ଭରଶୀଳ । କିନ୍ତୁ ଏମାନେ ଶାସ୍ତ୍ରୀୟ ସଙ୍ଗୀତ ଭିତରେ ଗଣ୍ୟ ହୁଅନ୍ତି ଏଇଥିପାଇଁ ଯେ ସ୍ୱରବିସ୍ତାର ମାଧମରେ ମଧ ଏମାନେ ଭାବ ପ୍ରକାଶ କରନ୍ତି ଏବଂ ଭାବର ଦୃଷ୍ଟି ଥାଏ ଅମୂର୍ତ୍ତ ଚେତନା ଉପରେ ।

ନବୀବ ୱାଜିଦ୍ ଆଲି ସାହ ନ ଥିଲେ ଠୁମରି ବୋଧହୁଏ ଆଜି ନଥାନ୍ତା । ସେ ଥିଲେ ଅଯୋଧାର ନବାବ । ଲଖ୍‌ନୌ ଥିଲା ତାଙ୍କ ରାଜଧାନୀ । ୱାଜିଦ୍ ଆଲି ଅତ୍ୟନ୍ତ ମଦ୍ୟପ ଓ ବିଳାସୀ ନବାବ ଥିଲେ । କିନ୍ତୁ ଥିଲେ ଭାରି ସଙ୍ଗୀତପ୍ରିୟ । ୧୮୫୬ରେ ଇଂରେଜମାନେ ତାଙ୍କୁ ନବାବ ଗାଦିରୁ ତଡି ଦେଇ ଅଯୋଧାକୁ ଖାସ୍ କରିନେଲେ । ଯେଉଁ ବିଷୟକୁ ଭିତ୍ତି କରି ଲିଖିତ ପ୍ରେମ୍‌ଚାନ୍ଦ୍‌ଙ୍କ ବିଖ୍ୟାତ ଗଳ୍ପ "ଶତରଞ୍ଜ୍ କି ଖିଲାଡି", ପୁଣି ଯାହା ଅନୁସରଣରେ ନିର୍ମିତ ସତ୍ୟଜିତ୍ ରାୟଙ୍କ ସେଇ ନାମର ଫିଲ୍ମ। କିନ୍ତୁ ନବାବର ପୂର୍ଣ୍ଣ ମର୍ଯ୍ୟାଦାରେ ଏକ ବିରାଟ ଶୋଭାଯାତ୍ରାରେ ତାଙ୍କୁ ଆଣି କଲିକତାର ମାଟିଆବୁରୁଜରେ ଏକ ବଡ ପ୍ରାସାଦରେ ରଖିଲେ ଓ ବର୍ଷକୁ ବାରଲକ୍ଷ ଟଙ୍କା ପେନ୍‌ସନ୍ ଖଞ୍ଜିଦେଲେ । ସେଠି ଦିନରାତି



Digitized by srujanika@gmail.com

ଚବିଶ ଘଣ୍ଟା ଶାସ୍ତ୍ରୀୟ ସଙ୍ଗୀତ ବୋଲା ହେଉଥିଲା ଯେମିତି ସର୍ବଦା ଶାସ୍ତ୍ରୀୟ ସଙ୍ଗୀତ ତାଙ୍କ କାନରେ ପଡେ । ଦୁଇଶହ ସରିକି ଓସ୍ତାଦ ସେ ପୋଷିଥିଲେ । ବଙ୍ଗଳାର ସୌଭାଗ୍ୟ ଯେ ଓ୍ୟାଜିଦ ଆଲି କଲିକତାରେ ରହିଲେ । ସେଇ ଦିନଠୁ ବଙ୍ଗଳାରେ ଶାସ୍ତ୍ରୀୟ ସଙ୍ଗୀତର ଆଦର ହେଲା ଓ ଯଦୁଭଟ୍ଟ ଭଳି ଅନେକ ପ୍ରତିଭାବାନ ଗାୟକ ବାହାରିଲେ । ଆଧୁନିକ ଯୁଗରେ ସ୍ୱର୍ଗୀୟ ଉସ୍ତାଦ୍ ବଡେ ଗୁଲାମ୍ ଅଲି ଖାଁ ଥିଲେ ପ୍ରସିଦ୍ଧ ଠୁଙ୍ଗରିଆ । ତାଙ୍କର 'କ୍ୟା କରୁ ସଜ୍‌ନୀ ନ ଆୟେ ବାଲାମ୍, ତଡ଼ପିତ ବିତେ ମୋରେ ଉନବିନ ରାତିଆଁ' ଠୁଙ୍ଗରିରେ ସେ ଅପୂର୍ବ ମୂର୍ଚ୍ଛନା ତୋଳିଛନ୍ତି । 'ନ ଆୟେ ବାଲାମ୍' କହିଲାବେଳେ ମନେହୁଏ ଯେମିତି ବିରହବିଧୁରା ପ୍ରେମିକା ବେଦନାରେ ଲୋଟି ଯାଉଛି । ଦାଦ୍‌ରା ଓ ଗଜଲ୍‌ରେ ସେମିତି ମୂର୍ଚ୍ଛନା ତୋଳିଥିଲେ ସ୍ୱର୍ଗୀୟା ବେଗମ୍ ଅଖ୍‌ତର୍ । ୧୯୭୪ ଅକ୍ଟୋବର ମାସ ଶେଷ ଆଡକୁ ରେଡିଓ ସଙ୍ଗୀତ ସମ୍ମିଳନୀରେ ଯୋଗ ଦେବାକୁ ହାଇଦ୍ରାବାଦ ଯାଇ ସେଇଠି ସେ ହଠାତ୍ ହୃଦ୍‌ରୋଗରେ ଆକ୍ରାନ୍ତ ହୋଇ ପ୍ରାଣତ୍ୟାଗ କଲେ । ଶାସ୍ତ୍ରୀୟ ସଙ୍ଗୀତର ଆଦର ଏତେ ବଢ଼ିଲାଣି ଯେ ତାଙ୍କ ମୃତ୍ୟୁରେ ରାଷ୍ଟ୍ରପତି ଓ ପ୍ରଧାନମନ୍ତ୍ରୀ ବ୍ୟଥିତ ହୋଇ ଶୋକ ବାର୍ତ୍ତା ପଠାଇଥିଲେ । ୧୯୫୦ରେ କିନ୍ତୁ ଏ ଅବସ୍ଥା ନ ଥିଲା । ନଭେମ୍ବର ୧୯୫୦ରେ ଯେତେବେଳେ ଫୈୟାଜ ଖାଁଙ୍କ ଦେହାନ୍ତ ହେଲା ସେତେବେଳେ ସମସ୍ତେ ନୀରବ । କେଉଁ କେଉଁ ଖବରକାଗଜରେ ତାଙ୍କ ମୃତ୍ୟୁ ସମ୍ବାଦ ଏକ ନଗଣ୍ୟ ସମ୍ବାଦ ଭାବରେ ବାହାରିଥିଲା ।

ନବାବ ଓ୍ୟାଜିଦ୍ ଅଲି ସାହ୍‌ଙ୍କୁ ଯେତେବେଳେ ତାଙ୍କ ଲଖ୍‌ନୌ ପ୍ରାସାଦରୁ ବିରାଟ ଶୋଭାଯାତ୍ରାରେ ଜାକଜକମ ସହ ନିଆଗଲା ସେ ତାହା ଦେଖି ଅତି ଦୁଃଖରେ ସେଇଠି ରଚନା କରିଥିଲେ- 'ବାବୁଲ ମେରା ନୈୟାର ଛୁଟ ଯାୟେ...' । ଅତି କରୁଣ ସ୍ୱରରେ ତାକୁ ବୋଲି ବି ଥିଲେ ସେତେବେଳେ ।

ଦୁଃଖକୁ ବ୍ୟକ୍ତିର ଚରିତ୍ର ସହିତ ବା ଘଟନା ସହିତ ଯୋଗ ନ କରି କେବଳ ଦୁଃଖର ଅମୂର୍ତ୍ତ ଭାବଟି ଅନୁଭବ କରନ୍ତୁ । ଜଣେ କୋଟିପତିକୁ ହତ୍ୟା କରିବାକୁ ଯାଇ ତାକୁ ନ ପାଇବାରୁ ଦୁଇଜଣ ଖୁନୀଙ୍କର ବ୍ୟର୍ଥତା ଆର୍ନେଷ୍ଟ ହେମିଙ୍ଗ୍‌ୱେ ଗୋଟିଏ କ୍ଷୁଦ୍ର ଗଳ୍ପରେ ଦେଖାଇଛନ୍ତି । ସଦାବେଳେ ଭାବକୁ ଘଟନା ଓ ବ୍ୟକ୍ତି ସହିତ ଦେଖିବାରେ ଆମେ ଅଭ୍ୟସ୍ତ । ଭାବର ଅମୂର୍ତ୍ତ ରୂପ କଳ୍ପନା କରି ହୁଏନା । ଏହା ଏକ ଭାବପ୍ରବଣତାହୀନ ଭାବ । ସାହିତ୍ୟର ବର୍ତ୍ତମାନ ଗତି କିନ୍ତୁ ସେଇଆଡ଼େ । ଏହାର ପରିଣାମ ଓ ଉପକାରିତା ବିଷୟରେ ସନ୍ଦିହାନ ହେବା ସ୍ୱାଭାବିକ ।



Digitized by srujanika@gmail.com

'ମାଷ୍ଟର' ଅତି ଚମତ୍କାର ଭାବରେ ତାଙ୍କ କ୍ଲାରିଓନେଟରେ ସେ ଠୁଙ୍ଗୁରିଟି ବଜାଉ ଥିଲେ । ଶୁଣି କେତେଥର ମୋ ଆଖିକୁ ପାଣି ଆସିଯାଇଛି ।

'ମାଷ୍ଟର'ଙ୍କ ଇନ୍ତକାମ୍ ଅନେକ ବର୍ଷ ହେବ ହୋଇଗଲାଣି । କଟକରେ ସେ 'ମାଷ୍ଟର' ନାମରେ ପରିଚିତ ଥିଲେ । ସେ ଥିଲେ ବୋଧ ହୁଏ ବଙ୍ଗୀୟ ମୁସଲମାନ । ତାଙ୍କ କଥାରେ ଉର୍ଦ୍ଦୁ, ବଙ୍ଗଳା, ଓଡ଼ିଆ, ଇଂରାଜିର ଆମୋଦ ଦାୟକ ସମିଶ୍ରଣ । ଅନ୍ତତଃ କ୍ରିୟାପଦଟିକୁ ଓଡ଼ିଆ କରିବାର ସେ ଆପ୍ରାଣ ଚେଷ୍ଟା କରନ୍ତି ।

ବିକ୍ଟିବଜାରରୁ ରେଡ଼ିଓ ଷ୍ଟେସନ ଆଡ଼େ ଅଳ୍ପ ଦୂର ଗଲେ ବାଁ ଆଡ଼କୁ ଗୋଟାଏ ଗଳି ପଡ଼େ ତେଲଙ୍ଗା ସାହି ଆଡ଼କୁ । ସେଇ ଗଳି ମୁଣ୍ଡରେ ଗୋଟାଏ ମାଟି ଘରେ ସେ ରହୁଥିଲେ । ଘର କାନ୍ଥରେ ଝୁଲା ହୋଇଥାଏ ଗୋଟାଏ ସାନ ସାଇନ୍‌ବୋର୍ଡ ମାଷ୍ଟର ବ୍ୟାଣ୍ଡ ପାର୍ଟି, ପ୍ରୋ. ମାଷ୍ଟର ନୂର୍ ହୋସେନ୍' । ଉଭୟ ଇଂରାଜିରେ ଓ ଓଡ଼ିଆରେ ଲେଖା । ତାଙ୍କୁ ମୁଁ ପ୍ରଥମ ଦେଖେ ସୁଲତାନ ଖାଁଙ୍କ ଘରେ । ଖାଁଙ୍କୁ 'ଇଦ୍ ମୁବାରକ୍' ଦେବାକୁ 'ମାଷ୍ଟର' ତାଙ୍କ ଘରକୁ ଯାଇଥିଲେ । ମୁଁ ସେତେବେଳେ ଖାଁଙ୍କୁ ଇଦ୍ ମୁବାରକ ଦେଇସାରି ଇଦ୍ ଖାନା ଖାଇବାକୁ ଅପେକ୍ଷା କରୁଥାଏ । 'ମାଷ୍ଟର'ଙ୍କ' ଘର ନିକଟରେ ଖାଁଙ୍କ ଘର । ସୁଲତାନ ଖାଁ ଜଣେ ଆଫଗାନି, ଅର୍ଥାତ୍ କାବୁଲିୱାଲା । ତାଙ୍କ ପାଖରୁ ମୁଁ ମଝିରେ ମଝିରେ ଧାର ନେଉଥିଲି । ବେଶୀ ନୁହେଁ, ପାଞ୍ଚଟଙ୍କା ଭିତରେ । କହିବାକୁ କୁଣ୍ଠା ଲାଗୁଥିଲେ ହେଁ କହିବାକୁ ପଡୁଚି ଯେ ଧଡିଆ ମିଆଁ ହୋଟେଲରେ ମାଂସ ଚାଁପ୍ ଖାଇବାପାଇଁ ସେ ଧାର ମ କରୁଥିଲି । ଧଡ଼ିଆ ମିଆଁର ଚାଁପ୍ ପ୍ରସିଦ୍ଧ ଥିଲା । ଅନେକ ବଡ ବଡ ହୋଟେଲରେ ମୁଁ ଖାଇଚି, କଟକରେ ନୁହେଁ ଖାଲି, କଲିକତାରେ, ପାଟନାରେ ଓ ଦିଲ୍ଲୀରେ ମଧ୍ୟ । କିନ୍ତୁ ସେମିତି ଚାଁପ୍ କେଉଁଠି ଖାଇନାହିଁ । ସେତେବେଳେ ମୁଁ ସାମାନ୍ୟ ଚାଳିଶ ଟଙ୍କାର ଚାକିରିଆ । ଘର ଅଭାବୀ । ସବୁ ଦରମା ଦେଇ ଦେଉଥିଲି । ସେଥିରୁ ପୁଣି ମାଗି ଚାଁପ୍ ଖାଇବାକୁ ଟଙ୍କା ନେବା ଅସମ୍ଭବ । ଏଣେ ଧଡ଼ିଆ ମିଆଁ ଚାଁପ୍ ଖାଇବାକୁ ଦୁର୍ବାର ଲୋଭ । ଆପଣ ହସିବେ, କିନ୍ତୁ ଏ ଲୋଭ ଦମନ କରିବାକୁ ମୁଁ କାଳୀମନ୍ଦିରରେ କେତେ ପ୍ରାର୍ଥନା କରିଚି । ଥରେ ମନେ ହେଲା ଯେହେତୁ ଧଡ଼ିଆ ମିଆଁ ମୁସଲମାନ କଦମରସୁଲରେ ଆଲ୍ଲାଙ୍କୁ ଓ ମହମ୍ମଦଙ୍କୁ ପ୍ରାର୍ଥନା କରିବାକୁ ପଡିବ । ପ୍ରଥମେ ଦେହଟା କେମିତି ଶୀତେଇ ଉଠିଲା । ମନେ ହେଲା ଆଉ ଗୋଟାଏ ପାପ କରୁଚି । କିନ୍ତୁ ମହମ୍ମଦଙ୍କୁ କହିବାକୁ ହିଁ ପଡ଼ିବ ନ ହେଲେ ଧଡ଼ିଆ ମିଆଁ ଛାଡିବ ନାହିଁ । ମନକୁ ମାଡି ମକଚି କଦମରସୁଲରେ



Digitized by srujanika@gmail.com

ପ୍ରାର୍ଥନା ଚଳେଇଗଲି । ପରେ ଚର୍ଚ୍ଚକୁ ଯାଇ ଯିଶୁଖ୍ରୀଷ୍ଟଙ୍କୁ ପ୍ରାର୍ଥନା କଲେ କେମିତି ଲାଗେ ବୋଲି ନିଜକୁ ନିଜେ ପରୀକ୍ଷା କରି ଦେଖିଲି ଆଦୌ ସେମିତି ଲାଗିଲା ନାହିଁ । ଏହାର କାରଣ କଅଣ କେଜାଣି । ଯେ କୌଣସି ହିନ୍ଦୁ ମନକୁ ଯୀଶୁଖ୍ରୀଷ୍ଟ ସହଜରେ ଧରିପାରେ । କିନ୍ତୁ ମହମ୍ମଦ ଜଣେ ହିନ୍ଦୁର ମନକୁ ଧରିବା ବଡ଼ କଷ୍ଟସାଧ । ଏହାର କାରଣ ହୁଏତ ନିଛକ ଐତିହାସିକ ହୋଇପାରେ । ବ୍ୟାପାରଟା କଅଣ ବୋଲି ଜାଣିବା ପାଇଁ ମୁଁ କୋରାନ୍ ଓ ବାଇବେଲ ଭଲ ଭାବରେ ପରେ ପଢ଼ିଲି । ଖ୍ରୀଷ୍ଟଧର୍ମ ଅପେକ୍ଷା ଯୀଶୁଖ୍ରୀଷ୍ଟଙ୍କ ଜୀବନୀ ବେଶୀ ଆକର୍ଷଣ କରେ । ହିନ୍ଦୁଧର୍ମ ଭଳି ଖ୍ରୀଷ୍ଟଧର୍ମ ଏମିତି କିଛି ସୂକ୍ଷ୍ମ ତାତ୍ତ୍ୱିକ ବିଶ୍ଳେଷଣ ନାହିଁ। କିନ୍ତୁ ଯୀଶୁଖ୍ରୀଷ୍ଟଙ୍କ ଜୀବନ ଅଦ୍ଭୁତ, ତାଙ୍କ ସାହସ, ପ୍ରେମ ଓ ଶକ୍ତି । ତା ସହିତ ତାଙ୍କର ଏ କରୁଣ ପରିଣାମ ମିଶି ମନକୁ ଆଚ୍ଛନ୍ନ କରିଦିଏ । କିନ୍ତୁ ମହମ୍ମଦ ବଡ଼ କଡ଼ା ଅବତାର । ତାଙ୍କର ମହତ୍ତ୍ୱ ବୁଝିବା କଷ୍ଟକର । ମରୁଭୂମି ଭଳି ଶୁଷ୍କ, ରୁକ୍ଷ । ଗୀତା, ଭାଗବତ ତୁଳନାରେ କୋରାନ୍‌ରେ ଦାର୍ଶନିକ ତତ୍ତ୍ୱ ନାହିଁ କହିଲେ ଚଳେ । ଯାହା ବା ଅଛି ତାହା ହିନ୍ଦୁ ପକ୍ଷରେ ଅତି ମାମୁଲି । ସାମାଜିକ ଶୃଙ୍ଖଳା ପାଇଁ କଡ଼ା ଆଇନମୂଳକ ନିର୍ଦ୍ଦେଶ ବେଶୀ । କିନ୍ତୁ ଜଣେ ହିନ୍ଦୁ ପକ୍ଷରେ ମହମ୍ମଦ୍‌ଙ୍କ ମହତ୍ତ୍ୱ ବୁଝିବା କଷ୍ଟକର ହୁଏ, କାରଣ ଗୀତା ଭାଗବତରେ ସୂକ୍ଷ୍ମ ଦାର୍ଶନିକ ତତ୍ତ୍ୱର ବ୍ୟାଖ୍ୟାନ ସହିତ ସେ ପରିଚିତ ଓ ତେଣୁ ଭାବେ ଧର୍ମ ମାନେ ଦର୍ଶନ । କିନ୍ତୁ ମହମ୍ମଦଙ୍କ ମହତ୍ତ୍ୱ ବୁଝିବାକୁ ହେଲେ ସେତେବେଳକାର ଆରବ ଲୋକଙ୍କ ଅବସ୍ଥା ବୁଝିବାକୁ ପଡିବ । ସେତେବେଳେ ଆରବମାନେ ଥିଲେ ଜଘନ୍ୟ ବର୍ବର ଓ ନିହାତି ଅସଙ୍ଗଠିତ । ଭଗବାନ ସେମାନଙ୍କ କଳ୍ପନାରେ ନ ଥିଲା । ମହମ୍ମଦ ଏଇ ମଣିଷମାନଙ୍କୁ ସଂଗଠିତ କରି ଗଢ଼ିଲେ ଏକ ସଭ୍ୟ ସମାଜ ଓ ସେ ସମାଜକୁ ଦେଲେ ଏକ ସଭ୍ୟତା, ସଂସ୍କୃତି ଓ ଭଗବତ୍ ବିଶ୍ୱାସ, ଭାବ, ସ୍ୱପ୍ନ । ତାଙ୍କ କାର୍ଯ୍ୟ ତେଣୁ ବୁଦ୍ଧ, ଯୀଶୁଖ୍ରୀଷ୍ଟ ଆହୁରି ବା ଯେ କୌଣସି ଅବତାରଠାରୁ ହୁଏତ ଆହୁରି କଷ୍ଟ ସାଧ ଥିଲା । (ଏଇଠି ତାଙ୍କ ମହତ୍ତ୍ୱ ବୋଲି ମୁ ଭାବେ) । ଅପରିସୀମ ମାନସିକ ଶକ୍ତି ଦ୍ୱାରା ହିଁ ସେ ଦୁଃସାଧ ସାଧନ କରିଥିଲେ । କିନ୍ତୁ ନା ଆଲ୍ଲା ନା ମୁହମ୍ମଦ ନା କାଳୀ ନା କୃଷ୍ଣ କେହି ମୋତେ ସାହାଯ୍ୟ କଲେନାହିଁ, ଧାର ବି ତେଣୁ ଚାଲିଲା 'ଚାପ' ଖିଆ ବି ଚାଲିଲା ! ପ୍ରତ୍ୟେକ ଥର ଖାଇବାପରେ ମନଟା ଭାରି ଖରାପ ହୋଇଯାଏ ଗୋଟାଏ ବଡ ନୈତିକ ଅଧଃପତନ ଘଟିଲା ବୋଲି, କାରଣ ଏକେ ତ ଧାରକରି ଖାଉଚି, ସେଥିରେ ପୁଣି କାବୁଲିଓ୍ୱାଲାଠୁ ଧାର, ତା ପୁଣି



Digitized by srujanika@gmail.com

ଘରେ ନାନାପ୍ରକାର ମିଛ (କଚେରୀରେ ଅମୁକର ବିଦାୟ ସମ୍ବର୍ଦ୍ଧନା ପାଇଁ ଚାନ୍ଦା କି ଭୋଜିପାଇଁ ଚାନ୍ଦା ଇତ୍ୟାଦି) କହି ଟଙ୍କା ଆଣିବାକୁ ପଡୁଥିଲା । ପ୍ରତ୍ୟେକଥର ଖାଇବାପରେ ପ୍ରତିଜ୍ଞା କରେ ଏଇ ଶେଷ । କିନ୍ତୁ କିଛିଦିନ ପରେ ପୁଣି ଲୋଭ ମାଡି ବସେ । ପୁଣି ଯାଏଁ ସୁଲତାନ ଖାଁ ପାଖକୁ । ଯିବାବେଳେ କାନ୍ଦ ମାଡୁଥାଏ, ନିଜ ଉପରେ ରାଗ ହେଉଥାଏ, ମନେ ମନେ କହୁଥାଏ ଭଗବାନ ତୁମେ କଅଣ ନାହଁ । କିନ୍ତୁ ଗୋଡ଼ ତା'ର ଚାଲିଥାଏ ସୁଲତାନ ଖାଁ ଘର ଆଡ଼େ । ଶେଷରେ ଯେଉଁଦିନ ଖାଏ ତା ପର ଦିନ ନିର୍ଜ୍ଜଳ ଉପବାସ ବି ରହିବାକୁ ଲାଗିଲି । ସେଥିରେ ବି ହେଲାନାହିଁ । କାମ ଓ କ୍ରୋଧ ଦମନ ପାଇଁ ବି ଏମିତି କରୁଥିଲି । କିନ୍ତୁ କିଛି ହୋଇନାହିଁ । ଏମିତି ଅନେକ ଦୁର୍ଗୁଣ ମୋର ରହିଗଲା । ଏଥିରେ ମହାତ୍ମାମାନେ କେମିତି କହୁଛନ୍ତି କାମ, କ୍ରୋଧ, ଲୋଭ ଆଦିକୁ ଦମନ କରିବାକୁ କେଜାଣି । ନିଜ କାମନାକୁ ଓ ଇନ୍ଦ୍ରିୟକୁ ନିଜଠାରୁ ଭିନ୍ନ ବୋଲି ଦେଖିବ ଓ ତାକୁ ତୁଲେଇ ତାଲେଇ ଭଲ ବାଟରେ ନେବ ଏ କଅଣ ସହଜ କଥା, କହିଦେଲେ ହେଲା ।

ନୈତିକ ଅଧଃପତନ ହେଉ ବା ଯା ହେଉ, ଏଥିରେ କିନ୍ତୁ ଦୁଇଟି ଲାଭ ହେଲା । ପ୍ରଥମ ଲାଭ ହେଲା ଯେ ଯେଉଁ ଦିନ ଧାର ଶୋଧ କରିଦେବି ବୋଲି କଥା ଦେଇଥାଏ ଠିକ୍ ସେଇଦିନ ଯେ କୌଣସି ଉପାୟରେ ହେଉ ଟଙ୍କା ଯୋଗାଡକରି ଟଙ୍କା ଶୋଧ କରି ଦେଉଥିବାରୁ ମୁଁ ଜଣେ ଇମାନ୍‌ଦାର୍ ଆଦ୍‌ମି ବୋଲି ସୁଲତାନ୍‌ର ସାର୍ଟିଫିକେଟ ପାଇଲି (ସତ କଥାଟା କିନ୍ତୁ ହେଉଚି ଯେ ରବୀନ୍ଦ୍ରନାଥଙ୍କ 'କାବୁଲିଓ୍ୱାଲା' କ୍ଷୁଦ୍ରଗଳ୍ପରେ କାବୁଲିଓ୍ୱାଲା ପ୍ରତି ମିନିର ଯେଉଁ ଧାରଣା ଓ ଭୟ ଥିଲା ମୋର ମଧ ସେଇ ଧାରଣା ଓ ଭୟ ଥିଲା) ଓ ତା ସହିତ ବନ୍ଧୁତ୍ୱ ହୋଇଯିବାରୁ ପ୍ରତ୍ୟେକବର୍ଷ ଇଦ୍ ଦିନ ଇଦ୍‌ଖାନା ପାଇଁ ତା ପାଖରୁ ନିମନ୍ତ୍ରଣ ପାଇଲି । ଦ୍ୱିତୀୟ ଲାଭଟି ହେଲା ମସ୍‌ଜିଦ୍‌ରେ ପ୍ରାର୍ଥନା କରୁଥିବା ଯୋଗୁ ଓ ସୁଲତାନ ଜରିଆରେ ଅନେକ ମୁସଲମାନ ସହିତ ବନ୍ଧୁତ୍ୱ ହୋଇଯିବାରୁ ମାନସିକ ବ୍ୟାପ୍ତି । ଅବଶ୍ୟ ସେତେବେଳେ ସେ କଥାଟା ବୁଝି ପାରୁନଥିଲି, ଏବେ ବୁଝୁଚି । ଚାରି ବର୍ଷ ତଳେ ହଠାତ୍ ଦିନେ ଦେଖା ହୋଇଥିଲା । ଆନନ୍ଦରେ କୁଣ୍ଢାଇ ପକାଇ କହିଲା, ଆରେ ଭାମାବାବୁ ସଲାମ୍ ଆଲେକମ୍, ମୁଲାକାତ୍‌ହିଁ ନହିଁ ତୁମ୍‌ହାରା, ହମ୍ ତ ଇସ୍ ଲିୟେ ଐସା ଗମ୍‌ଦିଦା (ମହାଦୁଃଖି) ଥା କ୍ୟା କହୁଁ । ତୁମ୍ ବଡେ ରିଝା ନେଓ୍ୱାଲା (ଆନନ୍ଦ ସଞ୍ଚାରକ) ଆଦମି ହୋ । ଫିର କ୍ୟା କହୁଁ ଖୁଦାକା ରହମ୍ ଔର୍ ମର୍ଜିକେ ହିସାବ, କଲ୍‌ହି ତୁମ୍‌ହାରା ଇୟାଦ୍ ଆୟା, ଆଜ୍ ମୁଲାକତ୍,



Digitized by srujanika@gmail.com

ମେହେରବାନ୍ । (ଭଗବାନଙ୍କ ଦୟା ଓ ଇଚ୍ଛା କଥା କଣ କହିବି, କାଲି ତୁମ କଥା ମନେ ପଡିଥିଲା, ଆଜି ଦେଖାମିଳିଲା ଖୁଦା ଅସୀମ ଦୟାଳୁ) ।

ସୁଲତାନ ଘରେ ପ୍ରଥମେ 'ମାଷ୍ଟାର'ଙ୍କୁ ଦେଖିଥିଲି । ଆଳାପ ହୋଇ ନ ଥିଲା । ପତଳା କାଳିଆ ଲୋକଟି । ବୟସ ଯୋଗୁଁ କଣ୍ଠନଳି ପାଖର ଚମ ଲୋଚାକୋଚା ହୋଇ ଝୁଲି ପଡିଥାଏ । ଚେହେରା ବି ଦିଶୁଥାଏ ଅନେକ ବୟସର ଭଳି । କିନ୍ତୁ ମୁଣ୍ଡର ଓ ନିଶ ଚକଚକ କାଳିଆ ବାଳ ଭ୍ରମ ସୃଷ୍ଟି କରୁଥାଏ । ପରେ ଜାଣିଲି 'ମାଷ୍ଟାର' ପୁଣି ନୂଆ ସାଦି ପରେ କଲପ ଲଗାନ୍ତି ।

ଥରେ ସୁଲତାନ ଘର ଦୁଆର ମୁହଁରେ ଛିଡା ହୋଇ 'ମାଷ୍ଟାର' ଜଣେ ହିନ୍ଦୁକୁ ଗାଳି ଦେଉଥାନ୍ତି ଯାଇଛା ତାଇ-ଶାଲେ ହିନ୍ଦୁ ଲୋକ୍ ବହୁତ ହରାମି ଅଛେ । ଶାଲେ କବ୍‌ଭି ମୁହଁପର୍ କୁଛ୍ ନହିଁ ବୋଲିବୋ, ହାତ ଯୋଡ଼୍‌କେ ଖାଡ଼ା ରହିବୋ, ଯେତନାଭି ଗାଲିଦୋ । ଲକିନ୍ ଐସା ହରାମି ଭିତର୍ ଭିତର୍ ତୁମ୍‌ହାର ତେର କାଟୁଥେବୋ । ଅଚାନକ ଦେଖିବୋ ତୁମ୍‌ହାରା ସତିଆନାଶ ହୋ ଗୟା, ତବା ହୋଗିୟା । ଗାୟକୁ ଶାଲେ ଲୋକ ମା' ବୋଲକେ ଉସ୍‌କା ଚାରୋଁ ପୟାଛୁକେଁ ରୋଜ ସଲାମ୍ କରିବୋ ଅଉର୍ ଉସ୍‌କା ମୁହଁ ମେ ଜ୍ୟାଦା ନେହିଁ ଘାସ କା ପତର୍ ଦୋଠୋ ଦେବୋ ଖାନେକୋ । ଲେକିନ୍ ଶୁଖା ଶୁଖାକେ ମାରିବୋ ଉସ୍‌କୁ । ଗାୟ ଚରନେକେ ଲିୟେ ମୁଘଲ୍ ଯୁଗ୍‌ସେ ସରକାର ଯୋ ଗୋଚର ରଖାହେ ହର୍ ଗାଓଁ ମେ ଶାଲେ ଲୋକ୍ ଉସ୍‌କୁ ଭିତ ରଖିଲା ନେହିଁ, ଜବରଦସ୍ତି ଚାଷ୍ କରଦେତା ହେ । ଶାଲେ ଲୋକ୍ ବିଲକୁଲ୍ ଜଙ୍ଗଲି ଛିଲୋ । ମୁସଲମାନ ଆୟ ତବ୍ ନା ଗାନା ବଜା ପେଇଟିଙ୍ଗ୍ ପହନ୍‌ନା ଖାନାପିନା ଶିଖିଲୋ । ନହିଁ ତୋ ଶାଲେ ସାଁପ ପଥିଥର ଗଛକୋ ପୂଜା କରୁଥିବେ । ତୁମ୍‌କୁ ସରିଫ୍ ବନାୟା ମୁସଲମାନ ।

ସେଦିନ ଲୋକଟା ଉପରେ ଭୀଷଣ ରାଗ ହୋଇଥିଲା । ମନେ ମନେ ରକ୍ତ ଚାଉଳ ଚୋବାଉଥାଏ । କିନ୍ତୁ ପରେ ଥରେ ଜଣେ ମୁସଲମାନକୁ ମୋରି ସାମାନାରେ ଗାଳି ଦେବାର ଶୁଣିଲି-ଆବ୍‌ବେ ଯାଓ ଶାଲା ବୟେଲ ଗାଡି ଚଲାଓ ନହିଁତୋ ଗୁଣ୍ଡାମି କରୋ । ତୁମ୍ ଶାଲା କ୍ୟା ସମ୍‌ଝୋଗେ ଗାନା ବଜାନା । ସମଝତା ହେୟ ହିନ୍ଦୁ । ମୁସଲମାନି ଗାନା ତୋ ହିନ୍ଦୁସେ ଲିୟା । ହଜ୍‌ରତ୍ ହରିଦାଶ୍ ନହିଁ ଥା ତୋ ତାନସେନ କାହାଁ ବନ୍‌ତା । ଖୁଦ୍ ତାନ୍‌ସେନ୍ ତୋ ଥା ହିନ୍ଦୁ । ଆବବେ ହିନ୍ଦୁସ୍ଥାନ କୋ ହର୍ ମୁସଲମାନ ତୋ ହିନ୍ଦୁ ଥା ସ୍ରିଫ୍ କୈ ଶାଲ୍ ପହଲେ । ସାହନସାହ ଆକବରେ ହିନ୍ଦୁକା କଦ୍ର ସମ୍‌ଝା ତବ୍ ନା ଏତ୍‌ନା ବଡା ସାହନସାହ



Digitized by srujanika@gmail.com

ହୁଆ । ଆଉରଙ୍ଗଜେବ୍ ହିନ୍ଦୁକୋ ନଫ୍‌ରତ୍ କିୟା ଔର୍ ସଲତ୍‌ନତ୍ ଖୋୟାୟା । ଯାଓଯାଓ ହିନ୍ଦୁକା ଶାସ୍ତ୍ର ପଢ଼ୋ ତବ୍ ଆଖେଁ ଖୋଲି ଯିବୋ । ଆୟା ହେ ମୁସ୍‌ଲିମ୍ ଲିଗ୍ ମେମ୍ବର ବନାନେ ମୁଝେ । ମରୋଗେ ଶାଲେ ତୁମ୍ ଔର୍ ତୁମ୍‌ହାର ଜିନ୍‌ହା । ଭାଗୋ ହିୟାଁ ସେ ବେଅକୁଫ୍ ।

ଏଇ ସଂକ୍ରାନ୍ତରେ ଆଉ ଦୁଇଜଣଙ୍କ କଥା ମନେ ପଡେ । ୧୯୩୦ରେ ମୁଁ ଯେତେବେଳେ ରେଭେନ୍‌ସା କଲେଜିୟେଟରେ ନବମ ଶ୍ରେଣୀର ଛାତ୍ର, ବୟସ ଚଉଦ, ସେତେବେଳେ ଆମର ଗଣିତ ଶିକ୍ଷକ ଥିଲେ ହମିଦ ଖାଁ । ସେ ସେମିତି ଦୁଇଧର୍ମର ପିଲାଙ୍କୁ ସମାନ ଭାବରେ ତୁଚ୍ଛ ତାଚ୍ଛଲ୍ୟ କରି ଗାଳି ଦେଉଥିଲେ । କିନ୍ତୁ ଧର୍ମଶିକ୍ଷା (ସେତେବେଳେ ପ୍ରତିଦିନ ଧର୍ମଶିକ୍ଷା ପାଇଁ ଗୋଟିଏ କ୍ଲାସ ଥିଲା)ବେଳେ ତାଙ୍କ ଅସଲ ସ୍ୱରୂପ ଦେଖା ଯାଉଥିଲା । କେଉଁଦିନ ସେ ବାଇବେଲ୍ ପଢ଼ି ବୁଝାଉଥିଲେ, କେଉଁଦିନ ଗୋଟିଏ ଶ୍ଳୋକ ପଢ଼ି ବୁଝାଉଥିଲେ, କେଉଁଦିନ କୋରାନରୁ ବୋଲି ବୁଝାଉଥିଲେ । ପଢ଼ିଲାବେଳେ ସେ ଭାବବିହ୍ୱଳ ହୋଇ ଯାଉଥିଲେ, ଆଖି ଛଳଛଳ ହୋଇଯାଉଥିଲା, ପକେଟରୁ ରୁମାଲ କାଢ଼ି ବାରମ୍ୱାର ଆଖି ପୋଛୁ ଥିଲେ । ଅନେକଥର ତାଙ୍କ କଣ୍ଠ ଏମିତି ରୁଦ୍ଧ ହୋଇଯାଉଥିଲା ଯେ ସେ ମୁଣ୍ଡ ତଳକୁ ପୋତି ଅନେକକ୍ଷଣ ନୀରବରେ ଛିଡା ହୋଇ ରହୁଥିଲେ । ଶ୍ଳୋକ ହେଉ ବା ବାଇବେଲ ହେଉ ବା କୋରାନ ହେଉ ସବୁଥିରେ ସେ ବିହ୍ୱଳ ହୋଇପଡୁଥିଲେ । ମନେ ଅଛି ସେ ଯେତେବେଳେ ବୋଲୁଥିଲେ- କୋଟିସୂର୍ଯ୍ୟ କିରୀଟ ଲଲାଟେ କସ୍ତୁରୀ ତିଳକମ୍, ପଦ୍ମନାଭମ୍ ସୁନ୍ଦରମ୍... ସେତେବେଳେ ସେ ନିଜକୁ ସମ୍ଭାଳି ପାରୁନଥିଲେ । କିନ୍ତୁ ସବୁଠୁ ଅପୂର୍ବ ଦିଶୁଥିଲା ତାଙ୍କ ମୁଖମଣ୍ଡଳ । ଚିବୁକତଳେ ଗୋଳିଆ ଦାଢ଼ି । ନିଶ ମୁସଲମାନି ଢ଼ଙ୍ଗରେ କଟା, ଉପର ଓଠ ଉପରେ ଖୁବ୍ ସାନ ସାନ କିନ୍ତୁ ଓଠର ଦୁଇ ପ୍ରାନ୍ତରେ ହଠାତ୍ ବଡ ବଡ ଓହଳା ନିଶ । ମୁଣ୍ଡରେ ମୁସଲମାନି ଟୋପି । ଶ୍ଳୋକ ବୋଲିବାବେଳେ ନିଶର ପ୍ରାନ୍ତ ହଲହଲ ହେଉଥାନ୍ତି । ଏଇ ଖାଣ୍ଟି ମୁସଲମାନି ମୁଖମଣ୍ଡଳରୁ ନିଃସୃତ ହେଉଥିଲା ପରିଷ୍କାର ନିର୍ଭୁଲ ଶୁଦ୍ଧ ସଂସ୍କୃତର ଶ୍ଳୋକ । କେମିତି ଗୋଟାଏ ଅଦ୍‌ଭୁତ ଲାଗୁଥିଲା, ଅପୂର୍ବ ରୋମାଞ୍ଚ ସୃଷ୍ଟି କରୁଥିଲା । ଆଉ ଜଣେ ଥିଲେ ଖାନୁ ମିଆଁ । ଏମିତି ସୁନ୍ଦର ଥିଲା ତାଙ୍କ ଚେହେରା ଯେ ମୁଁ ପିଲାବେଳେ ତାଙ୍କୁ ଅନେଇ ରହୁଥିଲି । ସିନ୍ଦୁରା ଆମ୍ବ ଭଳି ନାଲିଆଗୋରା ଦେହର ରଙ୍ଗ । ଅଧର କାନ୍ତି । ପେଟଟି ଟିକେ ବଡ । ଏକଦମ ଛାତି ତଳୁ ପିନ୍ଧା ଗେରୁଆ ରଙ୍ଗର ଧୋତି ଏବଂ ଘୋଡି ହୋଇଥାନ୍ତି ଗେରୁଆ ଚାଦର । ପାଦରେ ଗେରୁଆ ରଙ୍ଗର



Digitized by srujanika@gmail.com

କ୍ୟାନ୍‌ଭାସ୍ ଚଟି ସିଲ୍କ ଭଳି ପାଚିଲା ଦାଢ଼ି ଆବକ୍ଷ ଲମ୍ବିତ । ମୁଣ୍ଡରେ ସେମିତି ପାଚିଲା ବାବୁରି ବାଳ ବେକ ପର୍ଯ୍ୟନ୍ତ ଝୁଲି ସାନ ସାନ କୁଣ୍ଡଳି ଭଳି ମୋଡି ହୋଇଯାଇଥାଏ । ମୁଣ୍ଡରେ କଳା ଗୋଲ ମୁସଲମାନି ଟୋପି । ହାତରେ ଛଡ଼ି, ମୁଣ୍ଡରେ ଛତା । ଏଇ ବେଶ ସଦାବେଳେ । ସେ ସୁନ୍ଦର ଗାନ କରି ପାରୁଥିଲେ ଏବଂ କଟକର ସବୁ ବଡ ଲୋକଙ୍କ ଘରେ ଝିଅମାନଙ୍କୁ ଗାନ ଶିଖାଉଥିଲେ । ଭଦ୍ର ମହଲରେ ସେ ଥିଲେ ଜଣେ ଅତି ସମ୍ମାନିତ ବ୍ୟକ୍ତି । ରାସ୍ତାରେ ଗଲାବେଳେ ମୁହଁରେ ସଦାବେଳେ ସ୍ମିତହାସ୍ୟ ଏବଂ ଦୃଷ୍ଟି ଉଦାସ । ଜଣେ ବନ୍ଧୁ ଘରେ ସେ ଗାନ ଶିଖାଉଥିଲେ । ସେଇଠି ଶୁଣିଥିଲି ତାଙ୍କ ଗାନ-ବଲ୍‌ମାର ଚୁନରିଆ ଲାଲ ରଙ୍ଗା ଦେ ନ୍ୟାୟକୋ ରାଗରେ) । ଅପୂର୍ବ କଣ୍ଠ ଓ ଗାଇବାର ଅପୂର୍ବ ଭଙ୍ଗୀ । ଭାବିଥିଲି ନିଶ୍ଚୟ କୌଣସି ଧନୀ ଭଦ୍ରଲୋକ । କିନ୍ତୁ ଦିନେ ଦେଖିଲି ବାହାରୁଛନ୍ତି ଗୋଟାଏ ପତନୋନ୍ମୁଖ ଅତି ସାନ ଚାଳଘରୁ । ସେ ଘର ତାଙ୍କର । ଆଶ୍ଚର୍ଯ୍ୟ ହୋଇଯାଇଥିଲି । କାନ୍ଦକାନ୍ଦ ଲାଗିଲା । ଆହୁରି ଆଶ୍ଚର୍ଯ୍ୟର କଥା ଯେ ତାଙ୍କ ପୁଅ ସେତେବେଳେ ଥିଲା କଟକର ଜଣେ ଅତି କୁଖ୍ୟାତ ଗୁଣ୍ଡା ।

ଆଉ ଜଣକ କଥା କହିବାକୁ ପଡିଲା । ଏଙ୍କର ଗୌରବ କରିବାର କିଛି ନାହିଁ । ତଥାପି ହାଜର ହୋଇ କହିଲେ, ହାମେ ବି ଅଛ । ସେ ଥିଲେ ଆମ ସାହିର ଖଲିଫା ଇମ୍‌ଦାଦ ମିଆଁ । ତାଙ୍କର ଇନ୍ତକାମ୍ ହେବାର ବି ବହୁ ବର୍ଷ ବିତିଗଲାଣି । ସେ ବାଡିଖେଳ, ଖଣ୍ଡାଖେଳ ଓ ବାଘନାଚ ଶିଖାଉଥିଲେ । ନିଜେ ସେ ସବୁ କରୁଥିଲେବି ବାଘ ନାଚରେ ସେ କଟକରେ କିଛି ଖ୍ୟାତି ଅର୍ଜିଥିଲେ । ମୁହରମ୍ ବେଳେ ସେତେବେଳେ ବାଘନାଚ ବାହାରୁ ଥିଲା । ମୁଣ୍ଡରୁ ପାଦ ଯାଏ ହରିତାଳ ରଙ୍ଗ ମଖା ହୁଏ ଖୁବ୍ ବହଳ ଭାବରେ । ତା ଉପରେ କଳାରଙ୍ଗର ପଟାପଟା ଚିତ୍ର । କାହାର କାହାର ବା କଲରାପତରିଆ ବାଘ ଭଳି ଗୋଲ ଗୋଲ ଚିତ୍ର, ଆଉ କାହାର ଲମ୍ବା ପଟାପଟା ଦାଗଗୁଡିକ ଲତା ଭଳି । ମୁଣ୍ଡରେ କାନଢ଼ଙ୍କା ଟୋପି ଦେହ ଭଳି ଚିତ୍ରିତ ହୋଇଥାଏ । ଆଖିରେ ନାଲି ଚଷମା । ଓଠର ଦୁଇ ପ୍ରାନ୍ତରୁ ନାଲିରଙ୍ଗର ବଙ୍କାଟଙ୍କା ଚଉଡା ରେଖା ଲମ୍ବି ଯାଇଥାଏ ଗୋଡ ପର୍ଯ୍ୟନ୍ତ ରକ୍ତ ବୋହି ଯାଉଥିବା ଭଳି । ଦୁଇ ଦାନ୍ତ ମଝିରେ ଛେଳି ପିଠ କି କଲିଜାଟିଏ କାମୁଡି ଧରିଥାଏ । ଭୟଙ୍କର ଦିଶୁଥାଏ । ଏଇ ସାଜରେ ବାଜା ସହିତ ତାଳେ ତାଳେ ବାଘ ନାଚେ । ତାଳ ଭିନ୍ନ ଭିନ୍ନ ଲୟର । ପ୍ରଥମେ ବିଲମ୍ବିତ । ଜଙ୍ଗଲ ଭିତରେ ବାଘ ଛପି ଛପି ଯାଉଥାଏ ଶିକାର ପାଇଁ ଏଣେତେଣେ ଚାହିଁ ଚାହିଁ ।



Digitized by srujanika@gmail.com

ଶିକାର ଗୋଟାଏ ନଜରରେ ପଡ଼ିଗଲା । ବାଘ ଲଇଁ ପଡି ପଛେଇ ପଛେଇ ଆସିଲା ନାଚି ନାଚି । ବୃତ୍ତାକାରରେ ଛିଡା ହୋଇଥିବା ଦର୍ଶକମାନେ ଫାଙ୍କ ହୋଇଯାନ୍ତି । ବୃତ୍ତ ବାହାରେ କିଛି କ୍ଷଣ ବାଘ ବୁଲି ବୁଲି ନାଚିଲା । ତାଳ କିଛି ଦ୍ରୁତ । ତାପରେ ବାଘ ହଠାତ୍ ଡିଆଁମାରିଲା ବୃତ୍ତ ମଝିକୁ । ବେଶ୍ ଦ୍ରୁତ ଲୟରେ ନାଚ ସେତେବେଳେ । ତା'ପରେ ହଠାତ୍ ଆହୁରି ଦ୍ରୁତ । ବାଘ ଆଉ ଏକାଡିଆଁ ମାରେ ଶିକାର ଉପରକୁ । ତା'ପରେ ମାଂସ ବିଦାରି ବିଦାରି ଖାଇବାର ଅତି ଦ୍ରୁତ ଲୟର ନାଚ । ମାଂସ ଖାଇସାରିବା ପରେ ଅତି ଦ୍ରୁତଲୟରେ ଉଦ୍ଦାମ ନୃତ୍ୟ ଭୟଙ୍କର ସେ ନୃତ୍ୟ ତାରି ଭିତରେ ଇମ୍‌ଦାଦ ମିଆଁ ଖଣ୍ଡେ ଖଣ୍ଡେ ପାନ ଖାଉଥାନ୍ତି ଓ ଦୁଇ ଓଠରେ ଫର୍‌ର୍ ଫର୍‌ର୍ ଭଳି ଗୋଟାଏ ଅଦ୍‌ଭୁତ ଶବ୍ଦ କରି ପାନ ସିଠା ପକାଉଥାନ୍ତି । ଭାରି ପାନଖୋର ସେ । ଜଣେ ଥୋଡାଏ ପାନଧରି ଖଣ୍ଡେ ଖଣ୍ଡେ ପାନ ବଢ଼େଇ ଦେଉଥାଏ । ନାଚପରେ ବାଲତି ବାଲତି ପାଣି ବୁହା ହୋଇ ବାଘ ଉପରେ ଢ଼ଳା ହୁଏ । ହରିତାଳ ରଙ୍ଗ କାଳେ ଦେହକୁ ଭାରି ଗରମ କରିଦିଏ । ଇମ୍‌ଦାଦା ଖୁବ୍ ବଢ଼ିଆ ନାଚୁଥିଲେ । ତାଙ୍କର ଗୋଟାଏ ଗୋଡ ଗୋଦର । ସେ ଆସିଲେ ଲୋକେ କୁହନ୍ତି, ହେଇ ଗୋଦରା ବାଘ ଆସିଗଲା । ଲୋକଙ୍କ ଭିଡ ଜମିଯାଏ ଇମ୍‌ଦାଦ୍‌ଙ୍କ ନାଚ ଦେଖିବାକୁ । ଗୁଣ୍ଡା ବୋଲି ତାଙ୍କର ବଦନାମ ବି ଥିଲା । ମୁଁ ଦେଖିଲା ବେଳକୁ ସେ ବୁଢ଼ା ହୋଇ ଗଲେଣି, ନାଚ ଛାଡି ନ ଥାନ୍ତି ତଥାପି । ସେ ପ୍ରତିଦିନ କାଠଯୋଡି ନଦୀ କୂଳରେ ଥିବା କାଳୀ ମନ୍ଦିରରେ ଭାଗବତ ବୋଲା ହେବା ବେଳେ ତନ୍ମୟ ହୋଇ ଶୁଣୁଥିଲେ । ମଝିରେ ମଝିରେ ପ୍ରଶ୍ନ କରି ଅର୍ଥ ବୁଝି ନେଉଥିଲେ । ଭାଗବତ ପାଠ ଶେଷରେ କାଳୀକୁ ମୁଣ୍ଡିଆ ମାରି ଘରକୁ ଫେରୁଥିଲେ । ତାଙ୍କର ପ୍ରଧାନ ବ୍ୟବସାୟ ଥିଲା ବଢ଼ିବେଳେ କାଠଯୋଡିରେ ଭାସି ଯାଉଥିବା କାଠ ସବୁ ଧରି ବିକ୍ରି କରିବା । ମୂଳଧନର ବ୍ୟବସାୟ । ବଢ଼ି ତିନିମାସ ସେ ସକାଳୁ ସଞ୍ଜ ଯାଏଁ ନଈକୂଳରେ ଥାନ୍ତି ଓଦା ଲୁଗାରେ । କାଠ ଧରି ଗଦା କରି ଦିଅନ୍ତି । ଯେତେ ବଡ ବଢ଼ି ହେଉ ତାଙ୍କର ଭୟ ନାହିଁ । ପହଁରି ପହଁରି ସେ ପ୍ରାୟ ନଦୀର ଆରପାରି ପର୍ଯ୍ୟନ୍ତ ଚାଲି ଯାଆନ୍ତି । ମୁଁ ମୁଗ୍ଧ ହୋଇ ଅନାଇ ରହିଥାଏ । ବିରାଟ ବିରାଟ ଗଛମାନ ସେ ଭିଡି ନେଇ ଆସନ୍ତି । ବେଶ୍ ରୋଜଗାର କରୁଥିଲେ । ସେଥିରେ ଥିଲା ତାଙ୍କ 'ମନପଲି' ।

ବନ୍ଧୁତ୍ୱ ହେବା ପରେ ଥରେ ''ମାଷ୍ଟର''ଙ୍କୁ ପଚାରିଥିଲି ସେ ଉଭୟ ହିନ୍ଦୁ ଓ ମୁସଲମାନଙ୍କୁ ସେଭଳି ଗାଳି ଦେଉଥିଲେ କିପରି । ''ମାଷ୍ଟର'' କହିଥିଲେ ଯେ



Digitized by srujanika@gmail.com

ସେ ଓ୍ୱାଜିବ କଥାହିଁ କହିଥିଲେ ଦୁଇଜଣଯାକଙ୍କୁ । ଆଉ ମୋ ଛାତିରେ ଟିପ ମାରି କହିଥିଲେ; ଯେ ଯବ୍ ସନ୍ଥା ତବ୍ ଫିକ୍ରୁ କାହେ, ଡର୍ କିସ୍‌ସେ । ତୁମ୍‌ହାରା ସଙ୍ଗ ଦିଲ୍...କି ହାଁ ମୁଝକୋ ମାଲୁମ... ଇସ୍ ଲିୟେ ତୋ...କହିଲି; ନହିଁ ଜୀ, ଖୁନ୍ ପାନି ସେ ମୋଟା ହୋତାହି ହେୟ । ଆପ୍‌କୁ କ୍ୟା ମାଲୁମ୍ ଯୋ ହମାରା ଦିଲ୍‌ମେ ଚୋଟ୍ ନହିଁ ଆୟା....

ସେ କହିଥିଲେ; ଅରେ ଦାଦା, ମଗଜ୍ ଖୁନ୍‌କୁ ପାନି ବନା ଦେତା । ଖୁନ୍ ପାନି ହୋନା ଚାହି । ତୁମ୍‌ହାରା ମଗଜ୍ ହେୟ । ଆଦ୍‌ମି ତୋ ଆଦ୍‌ମି, ମୁସଲମାନ୍ କ୍ୟା ଔର୍ ହିନ୍ଦୁ କ୍ୟା । ସବ୍‌ହି ତୋ ମିଟ୍‌ଟି (ମାଟି) ଔର ପାନି । ଆଓ ଏକ୍ ଦରବାରି କାନାଡା ରାଗ ଶୁନାଇବୋ, ସବ୍ ସମଝ୍ ଯିବୋ । ଥୋଡା କଷର୍ (ଦୋଷ) ଯୋ ଅଛେ ଚଲେ ଯିବୋ ।

''ମାଷ୍ଟାର'' ସେଦିନ ଯେଉଁ ପ୍ରଶଂସା କରିଥିଲେ ତାହାର ଯୋଗ୍ୟ ନ ଥିଲେ ହେଁ ଆତ୍ମସାତ୍ କରିଥିଲି । କିନ୍ତୁ ସେଇଦିନୁ ପ୍ରାଣପଣେ ଚେଷ୍ଟା କରିଚି ଦେଶ, ଜାତି, ଧର୍ମରୁ ମଣିଷକୁ ବିଚ୍ଛିନ୍ନ କରି ଦେଖିବାକୁ । ବୁଝିଚି ଯେ ସେ ଗୁଡାକ କୃତ୍ରିମ ଭେଦ । ଭେଦାଭେଦର ଅସଲ କାରଣ ଆହୁରି ଗଭୀର । ଆଉ ସେ ହେଉଚି ସ୍ୱାର୍ଥ ବୁଦ୍ଧି ଯାହା ମଣିଷକୁ ଏକକ କରି ପ୍ରତ୍ୟେକକୁ ଅଲଗା ଅଲଗା କରିଦିଏ । ସେଇ ଏକକ ସ୍ୱାର୍ଥନିଷ୍ଠ ଦୁର୍ବଳ ଅହଂ ଶକ୍ତି ଆହରଣ କରିବା ପାଇଁ ଆଉ ଗୋଟାଏ ଶକ୍ତିଶାଳୀ ଅହଂ ସୃଷ୍ଟି କରେ ଦେଶ, ଜାତି, ଧର୍ମ ମାଧ୍ୟମରେ ।

''ମାଷ୍ଟାର''ଙ୍କ ଉଦାରତା କଥା ଥରେ ଜଣେ ବନ୍ଧୁଙ୍କୁ କହିଥିଲି । ବନ୍ଧୁ କହିଲେ; ଭାଇ, ଅସଲ କଥାଟି ହେଉଛି ତୁମ ''ମାଷ୍ଟାର''ଙ୍କ ପେଟପୋଷା ହୁଏ ହିନ୍ଦୁଙ୍କ ପାଇଁ । ହିନ୍ଦୁଙ୍କ ଭଳି ଆଉ କାହାରି ପର୍ବ ପର୍ବାଣି, ବାହା ବ୍ରତ ଏକେଇଶିଆ ଇତ୍ୟାଦି ସାରାବର୍ଷ ତ ଲାଗି ନଥାଏ କି ଅନ୍ୟମାନଙ୍କ ଯାହା ବା ବର୍ଷକେ ଗୋଟେ ପର୍ବ ଅଛି ସେଥିରେ ବାଜା ବଜାଇବା ଦରକାର ପଡେନାହିଁ କି ବାହାଘର ପାଇଁ ଦରକାର ପଡେନାହିଁ । ତାଙ୍କ ବ୍ୟବସାୟ ତାଙ୍କୁ ଉଦାର କରିଚି ।

ହୋଇପାରେ ତାହା ଏକ କାରଣ । କିନ୍ତୁ ଯେଉଁଥିପାଇଁ ହେଉ, ଯେତେ ପରିମାଣରେ ବା ହେଉ, ହୋଇ ପାରିଚି ତ ।

ବାସ୍ତବିକ ସେତେବେଳେ 'ମାଷ୍ଟାର'ଙ୍କ ଆୟ ବେଶ୍ ଥିଲା । କଟକରେ ତାଙ୍କର ଥିଲା ସେତେବେଳେ ଏକମାତ୍ର ବ୍ୟାଣ୍ଡ୍ ପାର୍ଟି । ସାରାବର୍ଷ ଡାକରା ଥାଏ । ଦୂର ଦୂରାନ୍ତର ଗ୍ରାମରୁ ଓ ଅନ୍ୟାନ୍ୟ ସହରରୁ ବି ଡାକରା ଆସେ । ତା ଛଡା ଥାଏ



Digitized by srujanika@gmail.com

ଶୋଧ କରିବାପାଇଁ ପ୍ରାୟ ପ୍ରତିଦିନ ସିନେମା ବିଜ୍ଞାପନ । ସେତେବେଳେ କାନ୍ଥ ବାଡରେ ଯତ୍ରତତ୍ର ଲେଖି ବା ପୋଷ୍ଟର ମାରି ସିନେମା ବିଜ୍ଞାପନ ଦେବାର ଉତ୍ପାତ ଏତେ ନଥିଲା । ସବାକ୍ ଚଳଚ୍ଚିତ୍ର ସେତେବେଳକୁ କଟକକୁ ଆସି ନଥାଏ । ସିନେମା ଘର ଥିଲା ଦୁଇଟି । ବର୍ତ୍ତମାନ କଟକ ରେଡିଓ ଷ୍ଟେସନ ଷ୍ଟୁଡିଓ ସାମନାରେ 'ସିନେମା ପ୍ୟାଲେସ୍' ଓ ବର୍ତ୍ତମାନର 'ଅନ୍ନପୂର୍ଣ୍ଣା ଥିଏଟର' ଘର ହତାରେ 'ଶ୍ରୀଦୁର୍ଗା ସିନେମା' ଯାହା ପରେ ହେଲା 'ହଲ୍‌ମୁକ୍ ସିନେମା' । କେବେ କେବେ 'ଚାମେରିଆ ଟୁରିଂ ସିନେମା' ଆସି ତମ୍ବୁ ପକାଉ ଥିଲା । ଅଧିକାଂଶ ଚଳଚ୍ଚିତ୍ର ଥିଲା ଇଂରାଜିରେ ଓ ମଝିରେ ଭଝିରେ ହିନ୍ଦି-'ଲୟଲା-ମଜନୁ', 'ଶିରିଫରହାଦ୍', 'ହାତିମତାଇ', 'ବାଗ୍‌ଦାଦ୍ କା ଚୋର' । 'ମାଷ୍ଟାର' ଭିଟଲ ଥିଲେ ହିନ୍ଦି ଫିଲ୍ମର ଖୁବ୍ ଜନପ୍ରିୟ ଅଭିନେତା । ମୁଣ୍ଡରେ ବୋଝେବାଳ । ଡିଆଁ ମାରୁଥିଲେ ଯେ ଦଶ ମହଲା କୋଠା ଉପରୁ ତଳକୁ ଠିଆ ଠିଆ ଓ ସେମିତି ଠିଆ ଠିଆ ତଳୁ ଦଶମହଲା କୋଠା ଉପରକୁ । କିନ୍ତୁ ଇଂରାଜିରେ ଅତି ଉତ୍କୃଷ୍ଟ ଛବି ସବୁ ଆସୁଥିଲା- 'ଅଙ୍କଲ୍ ଟମ୍‌ସ କ୍ୟାବିନ୍', 'କ୍ୟୋ ଭାଡିସ୍', 'ୱେ ଡାଉନ୍ ଇଷ୍ଟ', ୱେ ଅଭ୍ ଅଲ୍ ଫେଶ୍', 'ହଞ୍ଚବ୍ୟାକ୍ ଅଭ୍ ନୋତ୍ରେଦାଁ, 'ଲେ ମିଜାରେବ୍‌ଲେ', 'ଜୁଲିୟସ୍ ସିଜାର୍', 'ନେରୋ' 'କ୍ଲିଓପାଟ୍ରା', 'ମାର୍କୋପୋଲୋ' 'ଥିଫ୍ ଅଫ୍ ବାଗ୍‌ଦାଦ୍', 'ରବିନ୍ ହୁଡ୍', 'ବେନ୍‌ହୁର୍' । ଏହାଛଡା ଚାର୍ଲିଙ୍କ ଅପୂର୍ବ ଫିଲ୍ମ୍ ସବୁ ! ଆବହ ସଙ୍ଗୀତ ସୃଷ୍ଟି କରିବାପାଇଁ ଜଣେ ପର୍ଦା ତଳେ ଟେବୁଲ ହାରମୋନିୟମ୍ ବଜାଉଥିଲା । ବିଜୁଳି ଆଲୁଅ ଆସି ନଥିଲା । ସନ୍ଧ୍ୟାପରେ କଟକ ଅନ୍ଧାର । ପ୍ରତ୍ୟେକ ସିନେମାରେ ଆଲୁଅ ଯୋଗାଉଥିଲା ନିଜସ୍ୱ ସାନ ଡାଇନାମୋ ।

ପ୍ରତିଦିନ ସକାଳ ଆଠଟାରେ ଗୋଟାଏ ଘୋଡାଗାଡି ବଜାର ବଜାର ବୁଲେ ବଡ ବଡ ସିନେମା ପୋଷ୍ଟର ନେଇ । ଗାଡି ପଛରେ ଓ ଦୁଇ ପାଖରେ ପୋଷ୍ଟର ମରା ହୋଇଥାଏ । ଲୋକଙ୍କ ଦୃଷ୍ଟି ଆକର୍ଷଣ କିରିବା ପାଇଁ ଗାଡି ଭିତରେ ''ମାଷ୍ଟାର'' କ୍ଲାରିଓନେଟ ବଜାଉଥାନ୍ତି ଓ ଜଣେ ଢୋଲକ ବଜାଉଥାଏ । ''ମାଷ୍ଟାର'' ତନ୍ମୟ ହୋଇ ନାନା ରାଗ ପରିବେଷଣ କରୁଥାନ୍ତି । ଏତେ ସୁନ୍ଦର ଲାଗୁଥିଲା ଯେ ଅନେକ ସମୟରେ ମୁଁ ଗାଡିର ପଛପଟେ ଥିବା ପାଦ ଦାନି ଉପରେ ବସି ଥୋଡେ ବାଟ ଚାଲିଯାଏ ଶୁଣୁ ଶୁଣୁ । ପିଲାଏ ପାଟି କରୁଥାନ୍ତି, 'ଏ ଗାଡି ବାଲା ପିଛେ' । ଗାଡି ଚାଳକ ସାମନାପଟୁ ସପାଂ ସପାଂ କରି ପଛପଟକୁ



Digitized by srujanika@gmail.com

ଚାବୁକ ମାରେ । ଗୋଟାଏ ଦି'ଟା ମୁଣ୍ଡରେ କି ଗାଲରେ ବସି ବି ଯାଏ । ତାର ଭଳି ଟାଣ ସେ ଚାବୁକରେ ପାହାର ଭାରି କାଟେ । କିନ୍ତୁ ତଥାପି ବସିଥାଏ ଗାଲମୁଣ୍ଡ ଆଉଁସୁ ଆଉଁସୁ ।

ସେ ପିଲାବେଳ କଥା । ଏହାର ବହୁବର୍ଷ ପରେ ''ମାଷ୍ଟର''ଙ୍କ ସହିତ ଆଳାପ ହୁଏ ଧଡିଭାଇଙ୍କ ମାଧ୍ୟମରେ । ''ମାଷ୍ଟର'' ଥିଲେ ଖେତୁଭାଇ ଓ ଧଡିଭାଇଙ୍କ ଦୋସ୍ତ । ବିଶେଷତଃ ଧଡି ଭାଇଙ୍କ । ଧଡିଭାଇ ଥାନ୍ତି (ଅନ୍ତତଃ ସେତେବେଳେ ଥିଲେ (ବର୍ତ୍ତମାନ କଣ୍ଠରେ ମୋଟ ତୁଳସୀ ମାଳି ଓ କପାଳରେ ବୈଷ୍ଣବୀୟ ଚିତା ଘେନି ସେ ପୁରା ବୈଷ୍ଣବ) ସବୁଥିରେ । ଖଟା, ମିଠା, ପିତା ସବୁ ତୁଉଣର ପରିବା ସେ । ଏଣେ ଶ୍ରୀ ଚୈତନ୍ୟ ମଠରେ ଭାବବିହ୍ୱଳ ହୋଇ ଗାଆନ୍ତି 'କୃଷ୍ଣ ନାମ ଭଜମନ, ସଂସାର ମାୟା ଛାଡିରେ', ତେଣେ ବେଶ୍ୟାଘରେ ଢୁଲୁ ଢୁଲୁ ଆଖିରେ ଗାଆନ୍ତି 'ତେରେ ଛାତି ପର୍‌ଲଗ୍ ଯାଉଁ' । ତାଙ୍କରି ପାଖରୁ ଶବଦାହର ନାନା କୌଶଳ- ପବନର ଗତି ଦେଖି କେମିତି ଭାବରେ ଚିତା ସଜାଇବାକୁ ଓ କାଠ ସଜାଇବାକୁ ପଡିବ ଯେମିତିକି କାଠ ହୁହୁ ଜଳି ନ ଯାଏ ଆଉ ଶବ ସେମିତି ପଡିଥାଏ, କଅଣ କଲେ ଶବ ଦେହରେ କାଳି ପଡିବନାହିଁ, କାଳି ପଡିଲେ କେମିତି ଝୁଣା ଛାଟି ଛଡାଇବାକୁ ପଡିବ, ଶବ ଚିତାରୁ ଗଳି ତଳେ ପଡିଗଲେ କେମିତି ତାକୁ ପୁଣି ଟେକି ଚିତାରେ ଥୋଇବାକୁ ପଡିବ, ନିଆଁର ରଙ୍ଗ କେମିତି ଦିଶିଲେ ଚିତା ଅଳ୍ପ ସମୟରେ ପୋଡିବ କି ଡେରିରେ ପୋଡିବ ଜଣାଯିବ ଇତ୍ୟାଦି । ହାୟ, ମୋର ଏ ଜ୍ଞାନ କିଛି ଉପକାରରେ ଲାଗିବ ନାହିଁ । ହୁଏତ ମୋ ଶବ ବିଚରାଟି ଅନାଡି ହାତରେ ପଡି କେତେ ବାଡିଆ ଓ କେଞ୍ଚା ଖାଇବ । କାରଣ ମୋ ଦେହରେ ଚର୍ବି ବୋଲି କିଛି ନାହିଁ । ଚର୍ବିବାଲା ଶବକୁ ଶବବାହକମାନେ ଗାଳି ଦିଅନ୍ତି । କିନ୍ତୁ ଶବ ଦାହକମାନେ ଖୁବ୍ ଭଲ ପାଆନ୍ତି । କାରଣ ଚିତା ସଜାଇ ଶବକୁ ଶୁଆଇ ନିଆଁ ଲଗାଇ ଦେଲେ ବାସ୍ ଆଉ କିଛି କରିବାକୁ ପଡେନାହିଁ, ଚର୍ବିରେ ସେ ଆପେ ଆପେ ଜଳି ଭସ୍ମ ହୋଇଯାଏ ପ୍ରାୟ ଦେଢ଼ଘଣ୍ଟା ଭିତରେ । କିନ୍ତୁ ଶୁକୁଟା ଶବ ବଡ ହଇରାଣ କରେ । ବାରମ୍ବାର କଳା ପଡିଯାଏ ଓ ଯେତେ ଝୁଣା ଛାଟିଲେ ବି କଳା ଯାଏ ନାହିଁ । ସେତେବେଳେ ବାଡେଇ ବାଡେଇ କଳା ଝାଡିବାକୁ ପଡେ । ଅଧିକାଂଶ ସମୟରେ କାଠ ଜଳି ଯିବାରୁ ଶବଟା ଗଳି ପଡେ । ସେତେବେଳେ ପୁଣି ତାକୁ ବାଉଁଶରେ ଟେକି ବାହାରକରି ନୂଆ କରି କାଠ ଦେଇ ଚିତା ସଜାଇ ଶବକୁ ଟେକି ତା ଉପରେ



Digitized by srujanika@gmail.com

ଥୋଇ ପୋଡିବାକୁ ପଡେ । ପକ୍କା ତିନି ଚାରିଘଣ୍ଟାର ଅକ୍ଳାନ୍ତ ପରିଶ୍ରମ । ଶବଦାହକମାନେ ଶବର ଚଉଦ ପୁରୁଷ ଉଦ୍ଧାର କରି ଗାଳି ଦେଉଥାନ୍ତି । ଧଡିଭାଇ ସହିତ ମୁଁ କେତେ ନା କେତେ ଶବ ପୋଡାଇଛି । ଖାନ୍‌ନଗର ଅଞ୍ଚଳରେ ସେତେବେଳେ ଥିଲା ଘୋର ଜଙ୍ଗଲ । ଖୁନ୍ ହେଉଥିଲା । ସନ୍ଧ୍ୟାପରେ ସିଆଡେ କେହି ଯାଉନଥିଲେ । ଘୋର ଅନ୍ଧାର । ମୁଁ ଭାରି ଭୀରୁ । ଭୁତ ଡର ମୋର ଭାରି । କିନ୍ତୁ ରାତିରେ ଖାନ୍‌ନଗରକୁ ଶବ ନେଇ ନେଇ ସେ ଡର ଭାଙ୍ଗିଲା । ସେତେବେଳେ ଶ୍ମଶାନରେ ଚିତାପାଇଁ କାଠ ରଖୁଥିଲେ ଜଣେ କାପାଳିକ ସନ୍ନ୍ୟାସୀ । ଜାଣି ନଥିବା ଲୋକ ଦେଖିଲେ ବେହୋସ ହୋଇଯିବ । ସେ ମଦ ବି ରଖୁଥିଲେ ମଲା ଚଣ୍ଡିଆଙ୍କ ପାଇଁ ।

ଧଡ଼ିଭାଇ ଅବଲୀଳାକ୍ରମେ ଧପ୍‌ପା ଦେଉଥିଲେ ବା ମିଛ କହୁଥିଲେ ଓ ଅବଲୀଳାକ୍ରମେ କେତେ ତ୍ୟାଗ ବି କରୁଥିଲେ । ଗୋଟିକ ପାଇଁ ଅନୁଶୋଚନା ତିଳେନାହିଁ କି ଅନ୍ୟଟି ପାଇଁ ବାହାଦୁରି କରିବା ଆଦୌ ନାହିଁ । ଠିକ୍ ତାଙ୍କର ଓଲଟା ହେଉଛନ୍ତି ମୋର ଅନ୍ୟତମ ବନ୍ଧୁ 'ଉସ୍ତାଦଜୀ' । ଧଡ଼ି ଭାଇ ଭଳି ସେ ମଧ୍ୟ ମୋଠୁ ବୟସରେ ବଡ । ମୋର ପଢ଼ାରେ ଗୁରୁ ଓ ଅନ୍ୟସବୁ ବିଷୟରେ ମୋର ଉତ୍ସାହଦାତା ଯୋଗୁ ମୁଁ ତାଙ୍କୁ ଉସ୍ତାଦଜୀ ଡାକୁଥିଲି । ତାଙ୍କଭଳି ନିୟମନିଷ୍ଠ, ନୀତିବାନ, ସଂଯମୀ, ସତ୍ୟବାଦୀ, ପରୋପକାରୀ ସମାଜରେ କ୍ୱଚିତ୍ ଦେଖାଯାନ୍ତି ।

କଥାରେ କଥାରେ ଥରେ କଅଣ ଗୋଟାଏ ସାମାନ୍ୟ ଜିନିଷ ଉସ୍ତାଦଜୀଙ୍କୁ ମାଗିଥିଲି । ମୋ ମାଗିବାରେ ଆଦୌ ଆନ୍ତରିକତା ନଥିଲା କି ସେ ଜିନିଷଟା ମୋର ଆଦୌ ଜରୁରୀ ଦରକାର ନ ଥିଲା, ନହେଲେ ବି ଚଳନ୍ତା । ଉସ୍ତାଦଜୀ କହିଥିଲେ ପରଦିନ ଚାରିଟା ବେଳକୁ ଦେଇଯିବେ ବୋଲି । ପରଦିନ ଠିକ୍ ସେତିକିବେଳେ ସେ ଜିନିଷଟି ନେଇ ହାଜର ଖୁବ୍ ଝଡି ବର୍ଷା ଭିତରେ । ମୁଁ ତ ସେ କଥା ଏକଦମ୍ ଭୁଲି ଯାଇଥିଲି । ସେ ଯେତେବେଳେ ତାକୁ ମୋତେ ଦେଲେ ବୁଝିବି ପାରିଲି ନାହିଁ କାହିଁକି ସେ ମୋତେ ଦେଉଛନ୍ତି ସେ ଜିନିଷଟି । ଟିକେ ପରେ ଯେତେବେଳେ ମନେ ପଡିଲା ଭାରି ଲଜ୍ଜିତ ହେଲି, ବାରମ୍ବାର କ୍ଷମା ମାଗିଲି । ମଝିରେ ମଝିରେ ଧଡିଭାଇଙ୍କୁ ନିହାତି ଖରାପ ଲାଗିଛି ଏକ ଚେରହୀନ ଆଦର୍ଶହୀନ, ସ୍ୱେଚ୍ଛାଚାରୀ ଲୋକ ବୋଲି । ପୁଣି କେବେକେବେ ଉସ୍ତାଦଜୀଙ୍କୁ ଖରାପ ଲାଗିଛି ତାଙ୍କର ଏତେ ନୀତି ନିୟମ ଶ୍ୱାସରୋଧ କରିଦେବା ଭଳି ଲାଗିଛି ।



Digitized by srujanika@gmail.com

ଉକ୍ତ ଘଟଣାଟି ବିଷୟରେ ଯେତେବେଳେ ଭାବିଚି ଯେ ଉସ୍ତାଦଜୀ ମୋ ପ୍ରତି ସ୍ନେହ ବଶତଃ ନୁହେଁ, କର୍ତ୍ତବ୍ୟ ନିଷ୍ଠା ହେତୁ ଏତେ ଝଡବର୍ଷା ଭିତରେ ବି ମୋତେ ସେ ଜିନିଷଟି ଦେବାକୁ ଆସିଥିଲେ ମନଟା ଫିକା ପଡିଯାଇଚି । ପୁଣି ପରେ ଯେତେବେଳେ ଦେଖିଚି ଯେ ଯେଉଁ ଲୋକପ୍ରତି ସେ ଅତି ବିରକ୍ତ ତା ପାଇଁ ମଧ୍ୟ ଏମିତି କଷ୍ଟ ସ୍ୱୀକାର କରିଛନ୍ତି ସେତେବେଳ ମନେ ହୋଇଚି ନୀତିନିଷ୍ଠା ବି ମଣିଷକୁ ଔଦାର୍ଯ୍ୟ ଦିଏ । ଶତ୍ରୁ ମିତ୍ର ଭେଦ ଘୁଞ୍ଚାଇ ଦିଏ । ଏକଥା ଭାବି ଅଭୀଭୂତ ହୋଇଚି । ଏଇ ଔଦାର୍ଯ୍ୟ ପାଇଁ ବୋଧହୁଏ ଧଡିଭାଇ ଓ ଉସ୍ତାଦଜୀ ଭିତରେ ସ୍ନେହପୂର୍ଣ୍ଣ ନିବିଡ ବନ୍ଧୁତ୍ୱ ଥିଲା ।

ମୁଁ ଏ ଦୁଇ ଡଙ୍ଗାରେ ଗୋଡ ରଖିବ ବହୁବର୍ଷ ଚାଲିଚି । ଫଳରେ ଯାହା ହେବାର ମୁଁ ହୋଇଛି । ମୁଁ ମାଛ ନୁହେଁ କି କୁକୁଡା ନୁହେଁ । ଭାରି ଭୀରୁ । ସବୁ କଥାକୁ ସମସ୍ତଙ୍କୁ ମୋର ଭୟ । ଅତି ନୀତିବାନ ହେବାକୁ ବି ଭୟ, କାଳେ କାହାରି ସହିତ ସଂଘର୍ଷ ହୋଇଯିବ ବୋଲି । ମାମୁଲିଠୁ ବେଶୀ ହେବାକୁ ଡର ଅଥଚ ହେବାର ଦିବାସ୍ୱପ୍ନ । କେହି ମୋତେ ପ୍ରଶଂସା କଲେ ବି ଡର ମାଡେ । ମନ କୁହେ ହରି ହେ, କେତେ ପ୍ରକାର ଡର ମଣିଷକୁ ଦେଇଛ, ଏଥିରେ ମଣିଷ ଉଧେଇବ କେମିତି । କେମିତି ଯିବ ଏସବୁ ଡର ଭୟ ।

ଏଭଳି ଚରିତ୍ର କାହାରି ଅପ୍ରିୟ ହୁଅନ୍ତି ନାହିଁ ସତ, ହେଲେ କାହାରି ପ୍ରିୟ ବି ହୁଅନ୍ତି ନାହିଁ । କେହି ଏହାକୁ ପ୍ରାଧାନ୍ୟ ବା ଗୁରୁତ୍ୱ ଦିଅନ୍ତି ନାହିଁ କି ମନେ କରନ୍ତି ନାହିଁ ଏ ବ୍ୟକ୍ତିର କୌଣସି ପ୍ରତିଭା ଥାଇପାରେ । ତେଣୁ କିଛି ପ୍ରତିଭା ଦେଖିଲେ ଲୋକେ ବିଶ୍ୱାସ କରନ୍ତି ନାହିଁ, ଭାବନ୍ତି ଦୈବାତ୍ ଗୋଟାଏ ଭଲ କରି ପକେଇଚି କିମ୍ବା କେଉଁଠୁ କିଛୁ ନକଲ କରି ନିଜ ନାଁରେ ଚଳେଇ ଦେଇଛି । ଏଣୁ କେହି କୌଣସି ଦାୟିତ୍ୱ ତାକୁ ଦିଅନ୍ତି ନାହିଁ । ଏଭଳି ଲୋକେ ଅଭିମାନରେ ଜର୍ଜରିତ ହୋଇ ଦେଖେଇବି ହୁଏ ଯେ ସେ ଅପଦାର୍ଥ । କାହାରି ସହିତ ସେ ମିଶି ପାରେନାହିଁ । ମନ ତା'ର ବିଶେଷ ଭାବରେ ଅନ୍ତମୁଖୀ ହୋଇଯାଏ । ଅନ୍ୟର ଦୋଷ ଅପେକ୍ଷା ନିଜ ଦୋଷକୁ ସେ ବଡ କରି ଦେଖେ ଓ ଯନ୍ତ୍ରଣା ପାଏ ।

ଧଡିଭାଇ କୁଆଡୁ କୁଆଡୁ ସାଙ୍ଗ ସବୁ ଜୁଟାନ୍ତି । ସବୁସ୍ତରର ଲୋକଙ୍କ ସହିତ ସେ ଆପଣାର ହୋଇପାରନ୍ତି । କୌଣସି ଲଜ୍ୟା ବା କିଛି ବାଛ ବିଚାର ନାହିଁ । ଥରେ ଜଣଙ୍କ ଘରକୁ ବରଯାତ୍ରୀ ନିମନ୍ତ୍ରଣରେ ଯାଇଥିଲୁ । ତାଙ୍କର ଚାରି ଦଳ ବାଜାବାଲା ଆସିଥାନ୍ତି- ଢ଼ୋଲ, ତେଲେଙ୍ଗି, ଡ୍ରମ୍ ଓ ବ୍ୟାଣ୍ଡ ପାର୍ଟି । ଶୋଭାଯାତ୍ରା



Digitized by srujanika@gmail.com

ବାହାରିବାବେଳେ ଦେଖିଲି ଧଡିଭାଇ ତେଲେଙ୍ଗି ବାଜାଦଳ ଭିତରେ ତାଳ ଦେଉଛନ୍ତି ଉତ୍ସାହର ସହିତ ଆଉ ସେ ଦଳ ତାଙ୍କ ଚାରିପଟେ ବୁଲିବୁଲି ନାଚି ନାଚି ବଜାଉଛନ୍ତି ସତେ କି ଏତେଦିନେ ସେମାନେ ଜଣେ ସମଝ୍‌ଦାର ପାଇଛନ୍ତି ।

ଧଡିଭାଇଙ୍କୁ ଦେଖିଲେ 'ମାଷ୍ଟାର' ଆନନ୍ଦରେ ବିଗଳିତ ହୋଇ ଯାଉଥିଲେ ! ବିଜ୍ଞାପନ ଗାଡିରେ ତନ୍ମୟ ହୋଇ ବଜାଇ ଚାଲିଛନ୍ତି ସେ । ହଠାତ୍ ରାସ୍ତାରେ ଧଡିଭାଇ ସହିତ ଦେଖା ହୋଇଗଲା । ଧଡିଭାଇ ସାଇକେଲରେ ଅଫିସ ଯାଉଛନ୍ତି । 'ମାଷ୍ଟାର' ନଛୋଡବନ୍ଧା । ସାଇକେଲ ଉଠିଲା ଗାଡି ଉପରକୁ । ଧଡିଭାଇ କ୍ଷୀଣ ପ୍ରତିବାଦ ପରେ ଗାଡି ଭିତରେ ବସିଲେ ଓ ଢ଼ୋଲକ କୋଳକୁ ନେଲେ । ସେଦିନ ଗାଡିବାଲା ବ୍ୟସ୍ତ । ସାରା ସହର ବୁଲି ବୁଲି ଗାଡି ଫେରୁ ଫେରୁ ଦିନ ଚାରିଟା କି ସନ୍ଧ୍ୟା । ଧଡିଭାଇଙ୍କ ଆଉ ଅଫିସ କଥା ମନେନାହିଁ । ସେ ବି ମସ୍‌ଗୁଲ ହୋଇ ବଜାଉଛନ୍ତି ଢ଼ୋଲକ ।

ଥରେ ଗୋଟେ କାଣ୍ଡ ଘଟିଥିଲା । ରାତି ପ୍ରାୟ ଦଶଟା ବେଳେ ମୁଁ ଓ ଧଡିଭାଇ ତାସ ଖେଳି ଫେରୁଥାଉ । ଚୌଧୁରୀ ବଜାରରେ ଭେଟିଲୁ ଗୋଟାଏ ବିରାଟ ବରଯାତ୍ରୀ ଶୋଭାଯାତ୍ରା । କେତେ ନା କେତେ ମଟର, ଆଲୁଅ, ବାଣଫୁଟା ସହ ଶୋଭାଯାତ୍ରା ଚାଲିଥାଏ । ସାମନାରେ 'ମାଷ୍ଟାର' ବ୍ୟାଣ୍ଡ ପାର୍ଟି । ସମସ୍ତେ ଚକଚକିଆ ପୋଷାକ ପିନ୍ଧିଥାନ୍ତି । କିନ୍ତୁ 'ମାଷ୍ଟାର' ପିନ୍ଧିଥାନ୍ତି ସେମିତି ଧଳା ଢ଼ିଲା ପେଣ୍ଟ, ଧଳା ପଞ୍ଜାବି ଓ ତା' ଉପରେ କଳା ଛାତିଖୋଲା କୋଟ, ମୁଣ୍ଡରେ ଲମ୍ବା ଫେଜ୍ ଟୋପି ।

ଦେଖିଲେ ଅଟକାଇବେ ବୋଲି ମୁଁ ଓ ଧଡ଼ିଭାଇ ମୁହଁ ବୁଲାଇ ଚାଲି ଯାଉଥିଲୁ । କିନ୍ତୁ 'ମାଷ୍ଟାର'ଙ୍କ ନଜର ଠିକ୍ ପଡିଛି ଧଡ଼ିଭାଇ ଉପରେ । ପାଟି କରି ଡାକ ଚାଡୁଥାନ୍ତି, ଆରେ ଦାଦା ଠହରୋ, ଠହରୋ, ଚୋନୋ ଚୋନୋ କାହାଁ ଭାଗୁଛୋ । ବାଧ ହୋଇ ଅଟକିଲୁ । 'ମାଷ୍ଟାର' ଅଟକିଲେ ଓ ତାଙ୍କ ସହିତ ତାଙ୍କ ଦଳଟିଯାକ ।

ସେଇଠୁ କିଛି ଆଉ ନ କହି 'ମାଷ୍ଟାର' ସାଙ୍ଗେ ସାଙ୍ଗେ ଧଇଲେ ବସନ୍ତ ରାଗ୍- 'ଫଗୁଆ ବ୍ରିଜ୍ ଦେଖନକୋ ଚଲୋରେ..' । ପକ୍‌କା କୋଡିଏ ମିନିଟ । ସେ ସରିବା ସାଙ୍ଗେ ସାଙ୍ଗେ ଧଇଲେ ଛାୟାନଟ୍ ରାଗରେ-'ପାୟେଲକି ଝନ୍‌କାର'... । ଯେ ବି କୋଡିଏ ମିନିଟ । ମନେ ହେଉଥାଏ ଯେମିତି ରଙ୍କାଳିଆ ହୋଇ ସେ ବଜାଇ ଯାଉଛନ୍ତି, ଅନେକ ଦିନ ଖାଇବାକୁ ନ ପାଇ ଖାଇବାକୁ ମିଳିଲେ ଯେମିତି ହୁଅନ୍ତି । ବରଯାତ୍ରୀ ଦଳ ସେତେବେଳକୁ ଅଥୟ ଡାକ ଛାଡିଲେଣି, ଆରେ ଚଲୋ ଚଲୋ । କିଏ ଶୁଣୁଛି ସେ କଥା । 'ମାଷ୍ଟାର' ସେତେବେଳକୁ ଧରିଲେଣି



Digitized by srujanika@gmail.com

କାଠି ପୁଙ୍ଗରି- ହୋଲି ଖେଲତ ନନ୍ଦକୁମାର...ଧଡିଭାଇ ବି ସେତେବେଳକୁ ସବୁ ଭୁଲି ଯାଇ ମସ୍‌ଗୁଲ୍ ହୋଇ ତାଳ ଦେଉଥାନ୍ତି । ବରଯାତ୍ରୀମାନଙ୍କ ହଟ୍ଟଗୋଳ ଓ କ୍ରୁଦ୍ଧ ଆଦେଶ ସେମାନଙ୍କ କାନରେ ଆଦୌ ପଡୁନଥାଏ । ମୁଁ ବାଧ ହୋଇ କହିଲି, ମାଷ୍ଟରଜୀ, ଏତ୍‌ନାହି ହୋୟେ, ସାଦିକା ଲଗନ୍ ବିତା ଯାତା...

'ମାଷ୍ଟର' ଖପା ହୋଇ କହିଲେ, ଅରେ ରଖ୍‌ଖୋ ଲଗନ୍, ଶାଲେ ଅର୍ଡର ଦେତା 'ଲାରେ ଲପ୍‌ପା' ବଜାନେ... । ଜିନ୍ଦଗୀ ବରବାଦ୍ ହୋ ଗୟା । ଅଭି ତୋ ଥୋଡ଼ା ଆରାମ ମିଲିବୋ ।

ବରଯାତ୍ରୀ ଭିତରୁ ଜଣକ କାନରେ ପଡ଼ିଗଲା ଏକଥା । ସେ ଭୀଷଣ ରାଗି ଯାଇ 'ମାଷ୍ଟର'ଙ୍କୁ ଆଗେଇ ଯିବାକୁ କହି ଠେଲି ଦେଲେ । 'ମାଷ୍ଟର'ଙ୍କ ଆଖି ଦେଖିଲି ସାଙ୍ଗେ ସାଙ୍ଗେ ଲାଲ ପଡିଗଲା । ସେ କଟମଟ କରି ଅନେଇଲେ, ସେ ଲୋକ ଆଡେ । ବାଜାଦଳଟି ଯାକ ଖେଦି ଆସିଲେ । 'ମାଷ୍ଟର' ସେମାନଙ୍କୁ ହାତ ଉଠାଇ ଶାନ୍ତ ରହିବାକୁ କହିଲେ ।

ଗୋଟାଏ ତୁମୁଳ କାଣ୍ଡ ଘଟିଯିବ ବୁଝିପାରିଲି । 'ମାଷ୍ଟର' ଡରିବା ଲୋକ ନୁହଁନ୍ତି ଓ ତାଙ୍କ ଦଳଟି ଯାକ ମାଡପିଟ କରିବାକୁ ତମତମ ହେଉଥାନ୍ତି । ଅଯଥା ଆମ ଦୁଇଟା ଫାଲତୁ ଲୋକ ପାଇଁ ଏ କାଣ୍ଡ । ବରଯାତ୍ରୀମାନଙ୍କ ରାଗ ପଡିଲା ଆମ ଉପରେ । ଆମେହିଁ ହୋଇଗଲୁ ସବୁ ଗୋଳମାଳର କାରଣ । ମୋତେ ଭାରି ଡର ମାଡୁଥାଏ । ମନେ ମନେ ଧଡ଼ିଭାଇ ଉପରେ ଭାରି ରାଗୁଥାଏ । 'ମାଷ୍ଟର' ସେମିତି ତେଡ଼ି ଅନେଇ ରହିଥାନ୍ତି । ଆମ ଉପରେ ଗାଳି ବର୍ଷୁଥାଏ ।

ତାହାରି ଭିତରେ ଧଡ଼ିଭାଇ ଆଗେଇ ଯାଇ ସେ ବରଯାତ୍ରୀ ଜଣକୁ ଅତି ନରମ କଣ୍ଠରେ ପଚାରିଲେ, କାହା ବାହାଘର ଆଜ୍ଞା । ବଡ ସୁନ୍ଦର ବରଟିଏ ଏକା । ଖୁବ୍ ଧନୀଘର ହେବ ନିଶ୍ଚେ । ସୁନ୍ଦର ଶୋଭାଯାତ୍ରା ହୋଇଚି ।

ତାହାର ଉତ୍ତର ଦେଇ ସେ ଜଣକ ପୁଣି ଗୋଟାଏ କଅଣ ରାଗତ ଭାବରେ କହିବାକୁ ଯାଉଥିଲେ । ଧଡ଼ିଭାଇ ଆଶ୍ଚର୍ଯ୍ୟ ସସଂଭ୍ରମେ ସବୁ ଶୁଣି ପୁଣି ପଚାରିଲେ, ବର କଅଣ କରନ୍ତି ଆଜ୍ଞା!

ସେ ଜଣକ ଉତ୍ତର ଦେଲେ । ଧଡ଼ିଭାଇ ଶୁଣି ପୁଣି ଆଶ୍ଚର୍ଯ୍ୟ ହେଲେ । ସେ ଜଣକ ଉତ୍ତର ଦେଇ ସାରି ପୁଣି ରାଗତ ଭାବରେ କଅଣ କହିବାକୁ ଯାଉଥିଲେ, ଧଡ଼ିଭାଇ ପଚାରିଲେ, ଆଜ୍ଞା ବର ମୋଟର କିଏ ସଜାଇଚି, କି ସୁନ୍ଦର ହୋଇଚି ।



Digitized by srujanika@gmail.com

ସେ ଉତ୍ତର ଦେଲେ, ମୁଁ ସଜାଇଚି । ତେବେ ବି ମୋ ମନ ଲାଖି ହେଲା ନାହିଁ ତରବରରେ ।

କହିସାରି ପୁଣି ସେ ରାଗି 'ମାଷ୍ଟର'ଙ୍କୁ କଅଣ କହିବାକୁ ଯାଉଥିଲେ କିନ୍ତୁ ଧଡ଼ିଭାଇଙ୍କ ଆଉ ଏକ ପ୍ରଶଂସାସୂଚକ ପ୍ରଶ୍ନରେ ବନ୍ଦ ହୋଇଗଲେ । ଏମିତି ସେ ରାଗି କଅଣ କହିବାକୁ ଯାଉଥାନ୍ତି ଧଡ଼ିଭାଇଙ୍କ ଅନ୍ତରଙ୍ଗ ଓ ପ୍ରଶଂସାସୂଚକ ପ୍ରଶ୍ନରେ ବନ୍ଦ ହୋଇ ଯାଉଥାନ୍ତି । ଶେଷକୁ ସେ ଏକଦମ ଶାନ୍ତ ପଡିଗଲେ ।

ଇତି ମଧ୍ୟରେ ବରକର୍ତ୍ତା ଓ ଅନ୍ୟ ପୁରୁଖା ଲୋକେ ଆସି ଯାଇଥାନ୍ତି । ଧଡ଼ିଭାଇ ସେମାନଙ୍କୁ ମୁଣ୍ଡ ଝୁଙ୍କାଇ ନମସ୍କାର କରି ପଚାରିବାକୁ ଲାଗିଲେ ନାନା ପ୍ରଶ୍ନ । ବରକର୍ତ୍ତା ଭାରି ଗମ୍ଭୀର ଲୋକ । ସେ ଧଡ଼ିଭାଇଙ୍କୁ ଯଥାଯଥ ଉତ୍ତରଦେବା ଭିତରେ ସବୁ କଥା ବୁଝି କ୍ଷୁର୍ଣ୍ଣ ହୋଇ କହିଲେ, ଆଚ୍ଛା ଆଚ୍ଛା ବର୍ତ୍ତମାନ ଆଗାନ୍ତୁ ।

'ମାଷ୍ଟର' କିନ୍ତୁ ବେଧଡକ କହିଲେ- ଆରେ ପଗ୍‌ଲୁ ନା କ୍ୟା । ହାମେ କାଫି ରାଗ୍‌କୋ ବିନ୍‌ତିକର୍‌କେ ବୁଲାୟା, ଓ୍ୱ ମେହେରବାନ୍ ଆୟେ କରକେ ଭି, ଅଉର୍‌ଭିୟନ୍‌କୁ ଚଲାଯାନେକୋ କହିବୋ । ଲାରେ ଲପ୍‌ପା ବଜାଇବୋ । ଦିମାକ୍ ଖରାପ୍ ହୋଗୟା ତୁମ୍‌ହାରା । ଓ୍ୱ ହୋ ନେହି ସକିବୋ । ରୁପିୟା ଓ୍ୟାପସ ଲେ ଲୋ ।

ବରକର୍ତ୍ତା କିଛି ବୁଝି ପାରିଲେ ନାହିଁ ଏକଥାରୁ । କାହାକୁ ବିନତି କରି ଡକା ହେଲା, କିଏ ବା ଫେରିଯିବ ରାଗି ଓ କାହିଁକି । ସେ ଆବାକାବା ହୋଇ ଅନେଇଲେ । ଧଡ଼ିଭାଇ କଥାଟା ବୁଝାଇବାକୁ ଚେଷ୍ଟା କଲେ ଯେ ରାଗରାଗିଣୀମାନଙ୍କୁ 'ମାଷ୍ଟର' ସାକ୍ଷାତ ଦେବ ଦେବୀ ମଣନ୍ତି, ବହୁତ ନେହୁରା ହୋଇ 'ମାଷ୍ଟର' କାଫି ରାଗକୁ ଆଣିଥିଲେ, ପୁରା ନ ବଜାଇଲେ କାଫିରାଗର ଦେବତା ରାଗି ଚାଲିଯିବେ ଓ 'ମାଷ୍ଟର' ପାଖକୁ ଆଉ କେବେ ଆସିବେ ନାହିଁ । ବରକର୍ତ୍ତା ତାଚ୍ଛଲ୍ୟର ହସ ହସି କହିଲେ, ଆଚା ଆଚ୍ଛା ଦଶ ମିନିଟ୍ ଭିତରେ ଆପଣ କାଫିକୁ ବିଦାୟ ଦିଅନ୍ତୁ ।

''ମାଷ୍ଟର'' ପୁଣି ଧରିଲେ କାଫି ଠୁଙ୍ଗରି । ବଜାଇଲେ ଦଶ ମିନିଟ୍ । ଆହୁରି କିଛି ସମୟ ବଜାଇ ଥାନ୍ତେ । କିନ୍ତୁ ଧଡ଼ିଭାଇ ତେହାଇ (ଶେଷ ତାଳ) ଦେବାରୁ ହସି ବନ୍ଦ କଲେ । ଶୋଭାଯାତ୍ରା ଆଗେଇଲା । କିନ୍ତୁ ପୁଣି ଗୋଟାଏ ଗୋଳମାଳ । 'ମାଷ୍ଟର' ଧଡ଼ିଭାଇ ହାତ ଧରି ପକାଇ କହିଲେ; ଆରେ ଦାଦା ହାମାର ସାଥ୍ ଆଓ ବାଓତ୍ ଖାଇବୋ ମୋର ସାଥ୍ ।



Digitized by srujanika@gmail.com

କି ଆଶ୍ଚର୍ଯ୍ୟ ତା କେମିତି ସମ୍ଭବ । ଜଣା ନାହିଁ ଶୁଣା ନାହିଁ । ଆମେ ଦି'ଟା ଫାଲତୁ ଲୋକ । ନିମନ୍ତ୍ରଣ ଖାଇବାକୁ ଯିବୁ କେମିତି ବରଯାତ୍ରୀ ସହିତ । 'ମାଷ୍ଟାର'ଙ୍କ ମୁଣ୍ଡ ବିଗିଡି ଗଲା ନା କଅଣ ମୁଁ ରାଗିଯାଇ ପ୍ରତିବାଦ କଲି । 'ମାଷ୍ଟାର' ହସି କହିଲେ ଆରେ ଦାଦା ଉସ୍‌ମେ ସରମ୍ କାହେ । ତୁମ୍ ତୋ ହାମାର ପାର୍ଟିକା ଆଦ୍‌ମି ଅଛେ । ଆଓ ଆଓ ।

ସେ ମୋତେ ପ୍ରାୟ ଘୋଷାଡ଼ି ନେଲେ । ଧଡ଼ିଭାଇ ମଧ୍ୟ ହସି କହିଲେ, ଆରେ ଆନା । ଅଗତ୍ୟା ଗଲି । କିଛିକ୍ଷଣ ପରେ ଦେଖିଲି ଧଡ଼ିଭାଇ ବରଯାତ୍ରୀମାନଙ୍କ ସହିତ ବେଶ୍ ଜମେଇ ନେଇ ହସି ହସି ସେମାନଙ୍କ ସହିତ ଗପି ଗପି ଚାଲିଛନ୍ତି । କନ୍ୟାଘରେ ସେମାନେ ତାଙ୍କୁ ସେମାନଙ୍କ ସହିତ ବସି ଖାଇବାକୁ ଡାକୁଥିଲେ । କିନ୍ତୁ ଧଡ଼ିଭାଇ ବସିଲେ 'ମାଷ୍ଟାର'ଙ୍କ ଦଳ ସହିତ ଓ ବେଶ୍ ଖୁସିରେ ଖାଇଲେ । ମୋତେ କିନ୍ତୁ ଲଜ୍ଜା ଲାଗୁଥିଲା । ମୁଁ ଖାଇ ପାରୁନଥାଏ । ଧଡ଼ିଭାଇ ଏଟା ଖା ସେଟା ଖା ବଢ଼ିଆ ହୋଇଚି କହି କହି ମୋତେ ଅନେକ ଖୁଆଇ ଦେଲେ ।

ସେଇଠି ଧଡ଼ିଭାଇ 'ମାଷ୍ଟାର'ଙ୍କୁ ଖବର ଦେଇଥିଲେ ଯେ ମୋ ବାହା ଆଉ ଦି'ମାସ ପରେ ହେବ । 'ମାଷ୍ଟାର' ଆନନ୍ଦରେ ମୋତେ କୁଣ୍ଢାଇ କହିଥିଲେ ଯେ ତାଙ୍କୁ ଯେମିତି ମୁଁ ନିଶ୍ଚୟ ଖବର ଦିଏ ଠିକ୍ ବେଳେ । ଆଉ ଏ ଖୁସି ଖବର ପାଇଁ ଖାଇବା ପରେ ବଜାଇ ଥିଲେ ଜୟଜୟନ୍ତୀ ରାଗରେ 'ଲାଗି ଲଗନ୍...' ।

ମୁଁ ସେଇ 'ମାଷ୍ଟାର'ଙ୍କୁ ଲୁଚିଥିଲି ବାହାବେଳେ । ତାଙ୍କୁ ନ ନେଇ ପାରିବାର ଅବଶୋଷ ମୋର ଏ ପର୍ଯ୍ୟନ୍ତ ଯାଇନାହିଁ । 'ମାଷ୍ଟାର'ଙ୍କ କଥା ମନେ ପଡିଲେ ସେ କଥା ମନେ ପଡେ ।

କେଉଁଠି 'ମାଷ୍ଟାର'ଙ୍କ ରାଗ ସଙ୍ଗୀତ ମୋ ସହିତ ବାଜି ବାଜି ଯାଇଥାନ୍ତା, କେଉଁଠି ସିନ୍ଧୁ ମଳିକର ବେତାଲୁଆ ବେସୁରା ଢ଼ାଉଁ ଢ଼ାଉଁ ପେଁ ପେଁ ବାଜା । ଧଡ଼ିଭାଇ କିନ୍ତୁ ସେଇ ବାଜାକୁ ମାତ୍ କରିଦେଲେ । ସେମାନଙ୍କୁ ସପ୍ରଶଂସ ଦୃଷ୍ଟିରେ ଚାହିଁ ତାଳ ଦେଇ ଦେଇ ସେମାନେ ଉତ୍ସାହିତ ହେଲେ । ଧଡ଼ିଭାଇଙ୍କ ଗଳା

ସହିତ ପେଏଁକାଳି ଠିକ୍ ସୁରରେ ବଜାଇଲା ତାଙ୍କ ଗିନିବାଲା ସହିତ ଢ଼ୋଲ ବି ଠିକ୍ ତାଳ ଦେଇ ଓ ଗତି ଶିଖାଇ ଧଡ଼ିଭାଇ ଲୋକ ଜମେଇ ଦେଲେ । ବାଜାବାଲାମାନେ ମହା ଉତ୍ସାହରେ ଧଡ଼ିଭାଇଙ୍କୁ ମଝିରେ ରଖି ତାଙ୍କ ଚାରିପଟେ ଚକ୍‌କର ମାରି, କେତେବେଳେ ପୁଣି ଖୁବ୍ ଜୋରେ, ଢ଼ାଉଁ ଢ଼ାଉଁ ବଜାଉ ବଜାଉ



Digitized by srujanika@gmail.com

ଧଡ଼ିଭାଇଙ୍କ ପଛେ ପଛେ ଆଗକୁ ଥୋଡା ବାଟ ଖେଦି ଯାଇ ଓ ସେଇ ବାଗରେ ପଛେଇ ପଛେଇ ପଛକୁ ଖେଦି ଆସି, କେତେବେଳେ ବା ଟିପି ଟିପି ବଜାଉ ବଜାଉ ଅଣ୍ଟା ହଲେଇ ହଲେଇ ଧୀର ମନ୍ଥର ଗତିରେ ଗୋମୂତ୍ର ଗତିରେ ଆଗେଇ ଯାଇ ଚକ୍‌କର ମାରି ମାରି ବାମଡିଆଁ ମାରି ମାରି ପଛେଇ ଆସି ଦେଖଣାହାରିଙ୍କ ଭିତରେ ମହା ଖୁସିର ଢ଼େଉ ଖେଳାଇ ଦେବାରେ ଲାଗିଲେ । ସେଇ ଦଳଖାଇ ଦରମରା ବାଜାବାଲାଙ୍କ ପୁଣି ଏତେ କରାମତି ଥିଲା ଦେଖି ଗାଁ ବାଲାମାନେ ଚମତ୍କୃତ ହେଲେ, ଗର୍ବିତ ଅନୁଭବ କଲେ (ବଜାଉତ ଭଲା ସହରର ବାଜାବାଲା ଏମିତି !) ।

ମୋର କିନ୍ତୁ ମନେ ପଡି ଯାଉଥାଏ ''ମାଷ୍ଟାର''ଙ୍କ ଭୈରବ ଠୁଙ୍ଗରି- 'ବାବୁଲ ମେଗା ନୈୟାର ଛୁଟ ଯାଏ...' । ଦୃଶି ଯାଉଥାଏ 'ମାଷ୍ଟାର'ଙ୍କ ଚେହେରା । ଆଖିକୁ ପାଣି ଆସି ଯାଉଥାଏ । ଠିକ୍ ସେତିକିବେଳେ ହ୍ୟାପ ମୁକୁଟଟାରେ ବୋଧ ହୁଏ କେଉଁ ଯୋଡଯାଗାରୁ ଅଠା କି କଦଳୀ ପଟୁଆର ସିଲାଇ ଖସିଯାଇ ଫାଙ୍କ ହୋଇ ଯାଇଥାଏ ଯେ ସେଟା ଢ଼ିଲା ହୋଇ ବାରମ୍ବାର ଆଖି ଉପରକୁ ମାଡି ଆସୁଥାଏ ଓ କାଳେ କିଏ ଦେଖି ପକେଇବ ବୋଲି ମୁଁ ନାନା ବାହାନା କରି ତାକୁ ଟେକି ଧରୁଥାଏ ବୋଲି ଲଜ୍ଜା ଜନିତ କ୍ରୋଧରେ କୋହ ଆହୁରି ବଢ଼ିଯାଉଥାଏ ।

ମାନସ, ଏପ୍ରିଲ - ୧୯୭୫



'ଥାପିରେ କହ ତଥାପିରେ' ରେ'ତ ବାମାବାବୁ ନିଜର ପରିଚୟ ନିଜେ ଦେଇଗଲେ । ଆଉ ତାଙ୍କର ଘନିଷ୍ଠ ବନ୍ଧୁ ଔପନ୍ୟାସିକ, ଗାଳ୍ପିକ, ଶ୍ରୀ ଶାନ୍ତନୁ ଆଚାର୍ଯ୍ୟଙ୍କୁ କହିଗଲେ ଏହି ପରିଚୟକୁ ମାନସରେ ପ୍ରକାଶ କରିଦେବା ପାଇଁ । ସ୍ୱର୍ଗତ ମିତ୍ରଙ୍କ ଅନ୍ତିମ ଲେଖା, ଏହା ତାଙ୍କ ମୃତ୍ୟୁର ଅବ୍ୟବହିତ ପୂର୍ବରୁ ଲିଖିତ ।



Digitized by srujanika@gmail.com

ସ୍ୱର୍ଗୀୟ ମିତ୍ରଙ୍କର ଲେଖା ଝଙ୍କାରରେ ପ୍ରକାଶ ନ ପାଉଥିଲେ ବିଭିନ୍ନ ମହଲରୁ ଅଭିଯୋଗ ହେଉଥିଲା । ତାଙ୍କର ଏକ ସ୍ୱତନ୍ତ୍ର ପାଠକ ଗୋଷ୍ଠୀ ଥିଲେ । ଯଦି ସେ ଆଉ କିଛିଦିନ ବଞ୍ଚିଥାନ୍ତେ, ତା'ହେଲେ ଓଡ଼ିଆ ସାହିତ୍ୟକୁ ଆହୁରି କିଛି ଦାନ କରି ଯାଇଥାନ୍ତେ...

ଜାନକୀ ବଲ୍ଲଭ ପଟ୍ଟନାୟକ

ଆମେ ସେଦିନର ସାଙ୍ଗ, ମୁଁ ଓ ବାମାଚରଣ ଏକା ସାଙ୍ଗରେ କାଠଯୋଡ଼ି ନଈକୁ ପୁରା ବନ୍ୟା ବେଳେ ପହଁରି ଘାଟ ପାର କରୁଥିଲୁ । ଯଦି ବାମାଚରଣ ଭଳି ଆଜି ଓଡିଶାରେ ସଚ୍ଚୋଟ ଅଫିସର୍ ଥାନ୍ତେ ତାହେଲେ ଓଡିଶାର ଏ ଦୁର୍ଗତି ହୁଅନ୍ତା ନାହିଁ....

ବିଜୁ ପଟ୍ଟନାୟକ

ଗତ କୋଡିଏ ବର୍ଷ ଧରି ଯେଉଁ ମୁଷ୍ଟିମେୟ ଲେଖକମାନଙ୍କ ଦ୍ୱାରା ଓଡ଼ିଆ ସାହିତ୍ୟ ସମୃଦ୍ଧ ହୋଇଛି ସେ ତନ୍ମଧ୍ୟରୁ ଥିଲେ ଅନ୍ୟତମ । ସେ ସମାଜତତ୍ତ୍ୱ, ଇତିହାସ ଓ ସାହିତ୍ୟ ଉପରେ ଏତେ ବିସ୍ତୃତ ଭାବରେ ପାଠ କରିଛନ୍ତି ଯେ ମୁଁ ତାଙ୍କ ସହିତ କୌଣସି ବିଷୟରେ ଆଲୋଚନା କରିବାକୁ ଗଲେ ସବୁବେଳେ ସଂକୁଚିତ ହୋଇପଡୁଥିଲି...

ଅଖିଳମୋହନ ପଟ୍ଟନାୟକ

ଖାଲି ମନୋରଞ୍ଜନ ପାଇଁ ଗଳ୍ପ ଲେଖିବା ତାଙ୍କ ଉଦ୍ଦେଶ୍ୟ ନଥିଲା । ଗଳ୍ପ ମାଧ୍ୟମରେ ସାମାଜିକ, ନୈତିକ, ରାଜନୈତିକ ଅବସ୍ଥାରେ ଯେଉଁଠି ଯାହା ତାଙ୍କୁ ଭୁଲ ବୋଲି ଲାଗୁଛି ସେ ବିଷୟରେ ଆଲୋଚନା କରି ତାଙ୍କ ମତ ସେ ପ୍ରକାଶ କରୁଥିଲେ...

ଗୋପୀନାଥ ମହାନ୍ତି

ଏତେ ଜୀବନ୍ତ ମଣିଷ, ଏତେ ବନ୍ଧୁତ୍ୱ ମଣିଷ, ଏଭଳି ସତ୍ୟସନ୍ଧ, କାରୁଣିକ ହୃଦୟ, ହାସ୍ୟ ପରିହାସ ନିପୁଣ, ଭଗବତ୍ ପରାୟଣ ବିପ୍ଲବୀ ଆତ୍ମା ମୁଁ ତାଙ୍କଛଡା ଆଉ ଦ୍ୱିତୀୟ ଦେଖିନାହିଁ

ମହାପାତ୍ର ନୀଳମଣି ସାହୁ

ବାମାଚରଣଙ୍କ ଗପରେ ଏକ ଭିନ୍ନ ଆକର୍ଷଣ ରହିଛି । ବାହାରୁ କିଛି ନଥିବା ଭଳି ପ୍ରତୀତ ହେଉଥିଲେ ମଧ୍ୟ ଥରେ ଗଳ୍ପ ପଢା ଆରମ୍ଭ ହେବା ମାତ୍ରେ ନ ସରିବା ଯାଏଁ ତାହା ରଖିବାକୁ ଇଚ୍ଛା ହୁଏ ନାହିଁ..

ରମାକାନ୍ତ ରଥ

ପାଠକଗଣ ଓ ତାଙ୍କର ବନ୍ଧୁ, ଆମେ ସବୁ ତାଙ୍କୁ ପାଉ ତାଙ୍କ ବହିର ପୃଷ୍ଠାରେ ଓ ସ୍ମୃତିରେ । ଦୀର୍ଘ ଶରୀର, ସାଧାରଣ ଭାବେ ସରଳ ଓ ହସ ହସ ମୁହଁ । ଦେଖାହେଲେ ଖୁସିଟିଏ, ସାହିତ୍ୟ ଓ ସଂଗୀତ କଥା । ମଜ୍ଜିଗଲା ଭଳି ଲୋକ. ଯାହା ଭଲ ଲାଗିଲା ସେଥିରେ ହଜିଗଲା ଭଳି ମଣିଷଟିଏ, ଅକୃତିମ,ସ୍ନେହୀ ମଣିଷ..

ସୀତାକାନ୍ତ ମହାପାତ୍ର

ବାମାବାବୁଥିଲେ ଜଣେ ଉଚ୍ଚ ଦରର ସ୍ରଷ୍ଟା ଓ ଦରଦୀ ମଣିଷ । ତାଙ୍କ କାଳଜୟୀ ସୃଷ୍ଟି ପାଇଁ ସେ ଓଡିଆ ସାରସ୍ୱତ ସାହିତ୍ୟ ଜଗତରେ ଅମର ରହିବେ...

ଚନ୍ଦ୍ରଶେଖର ରଥ

ଜଣେ ଖେଳୁଆଡ ମନୋଭାବ ନେଇ ବାମାଚରଣ ସଂସାରର ଦୁଃଖ, ଜଞ୍ଜାଳ ଓ ବିପଦକୁ ହସି ହସି ଆଦରି ନେଇ ତାର ସାହିତ୍ୟ ସୃଷ୍ଟିରେ ମାତି ଯାଇଥିଲା, ତେଣୁ ସେହି ଦୃଷ୍ଟିରୁ ମୁଁ ଭାବେ ତାର ଆତ୍ମାର ଊର୍ଦ୍ଧ୍ୱରେ ବିଚରଣ କରିବାକୁ ସେ ଭଲ ପାଉଥିଲା..

ପ୍ରାଣବନ୍ଧୁ କର

Digitized by srujanika@gmail.com